# ସାରଳା ଦାସ : ଏକ ଅଧ୍ୟୟନ

ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର



ପ୍ରକାଶକ :
ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରଣ :
ତପନ କୁମାର ମହାପାତ୍ର
ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍,
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ଅଗଷ୍ଟ, ୨୦୦୬

ମୂଲ୍ୟ : ଟ.୧୯୦/-
ସାଦା ବନ୍ଧେଇ : ଟ.୧୭୦/-

[ Printed in 70 gsm M.L. Paper ]

M/c=3 (C:\inner\sar-inn.p65)(sarala.pm5)

# ଉପକ୍ରମ

ସାରଳାଦାସ ଓଡିଶାରେ 'ସଂସାରଜନହିତେ' ଗ୍ରନ୍ଥ ରଚନାର ସୂତ୍ରପାତ କଲେ । ତାଙ୍କର ଭାଷା ସଂସାରଜନଙ୍କ ମୁହଁର ନିରଳଂକୃତ ପରାକୃତ ; ଶୈଳୀ ଓ ଭାବ ସବୁ ସଂସାରଜନୋଚିତ । ତାଙ୍କର ମହାଭାରତ ଓ ଚଣ୍ଡୀପୁରାଣକୁ ପୁରାଣପଣ୍ଡାମାନେ ଗ୍ରାମେ ଗ୍ରାମେ ପ୍ରଚାର କରୁଥିଲେ । ଗଞ୍ଜାମର ଦାସକାଠିଆ ଦଳ ତାଙ୍କ ମହାଭାରତର ହରଣ-ଶରଣ-ମରଣାଖ୍ୟ ଅଂଶଗୁଡ଼ିକ ଏକ ଏକ ସଂପୂର୍ଣ୍ଣ ରଚନା ଭାବରେ ଖୁବ୍ ରୋଚକ ଶୈଳୀରେ ପହଞ୍ଚାଉଥିଲେ ସଂସାରଜନଙ୍କ ପାଖରେ । ସାରଳା-ମହାଭାରତାଦି ତାଳପତ୍ର ପୋଥି ରୂପେ ନକଲ କରାଯିବାର ଉଦ୍ଦେଶ୍ୟ ଥିଲା ପୁରାଣ-ସଭାରେ ସଂସାରଜନଙ୍କ ଆଗରେ ତାହାର ପରିବେଷଣ । ଏହି ମୌଖିକ ପରମ୍ପରା ହିଁ କବି ସାରଳାଦାସଙ୍କୁ ସମଗ୍ର ଓଡିଶାରେ, ଏପରିକି ପ୍ରତିବେଶୀ ଆନ୍ଧ୍ର ଓ ବଙ୍ଗ ଦେଶରେ ପ୍ରାୟ ପାଞ୍ଚଶହ ବର୍ଷ ଉଜ୍ଜୀବିତ କରି ରଖିଥିଲା ।

ମୁଦ୍ରାଯନ୍ତ୍ର ପ୍ରାଦୁର୍ଭାବ ପରେ ତାଳପତ୍ର ପୋଥି ଉତାରିବା ପ୍ରକ୍ରିୟା କ୍ଷୀୟମାଣ ହେଲା । କ୍ରମଶଃ ମୁଦ୍ରିତ ପୁସ୍ତକ ତାଳପତ୍ର ପୋଥିର ସ୍ଥାନ ଦଖଲ କଲା । ସେତେବେଳେ ପ୍ରକାଶକ ସାରଳା-ମହାଭାରତକୁ ମଧ ଛାପିଲେ । କିନ୍ତୁ ଛାପିବା ସୁବିଧା ପାଇଁ ତଥା ତଦ୍ୱାରା ଗାଇବା ସୁକର ହେବ ବୋଲି ବିଚାରି ଦାଣ୍ଡୀଶୈଳୀକୁ ବଦଳାଇଦେଲେ ଚଉଦ ଅକ୍ଷରୀ ଛନ୍ଦରେ । ମୁଦ୍ରିତ ସାରଳା-ମହାଭାରତ ଶସ୍ତା-ସୁଲଭ ହେବାରୁ ସାରଳା-ମହାଭାରତର ସମାଲୋଚନା ପାଇଁ ବାଟ ଖୋଲିଲା । ଅଧିକାଂଶ ସମାଲୋଚକ ମୁଦ୍ରିତ ପୁସ୍ତକର ପାଠକ । ସେମାନେ ଅବଶ୍ୟ ପାଠଭେଦ ସୂଚାଇବା ଲକ୍ଷ୍ୟରେ ତାଳପତ୍ର ପୋଥିକୁ ମଧ ବିରଳତଃ ବ୍ୟବହାର କରୁଥିଲେ ।

ସାରଳାଦାସଙ୍କ ସୃଷ୍ଟି ସଂସାରଜନହିତେ ଥିଲା । କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ଓ ସୃଷ୍ଟି ସଂପର୍କରେ ଯେଉଁ ସମାଲୋଚନା ସାହିତ୍ୟର ଉଦୟ ହେଲା ତାହାର ହିତାଧିକାରୀ ସଂସାରଜନେ ରହିଲେ ନାହିଁ, ସେମାନେ ହେଲେ ସାହିତ୍ୟ-ସଂସ୍କୃତି-ବିଚାର-ଦକ୍ଷ, ସ୍ୱଭାଷା ସାହିତ୍ୟାଭିମାନୀ ପଣ୍ଡିତଜନ । ଏମାନେ କେହି ପୁରାଣ-ସଭାର ଶ୍ରୋତା ନଥିଲେ, ଥିଲେ ଘନ୍ଟେ ନିରୋଳାରେ ବସି ଗ୍ରନ୍ଥବିଶ୍ଳେଷଣ କରୁଥିବା ବିଜ୍ଞ ପାଠକ । ପରିସ୍ଥିତି ବିଚିତ୍ର ! ସ୍ରଷ୍ଟା ଯେଉଁ ଗୋଷ୍ଠୀପାଇଁ ଲେଖୁଥିଲେ ସମାଲୋଚକ ସେହି ଗୋଷ୍ଠୀର ନୁହନ୍ତି ଓ ସେହି ଗୋଷ୍ଠୀ ପାଇଁ ସେ ସମାଲୋଚନା ଲେଖୁନାହାନ୍ତି ମଧ । ଯଦି ସମାଲୋଚକ ମୂଳଗ୍ରନ୍ଥ ପାଠ ପ୍ରତି ସମାଲୋଚନା-ପାଠକର ଶ୍ରଦ୍ଧା ଓ ଆଗ୍ରହକୁ ଜାଗରୂକ କରାଇ ନ ପାରନ୍ତି ତେବେ କବି ଓ ମୂଳଗ୍ରନ୍ଥ ପାଇଁ ସମାଲୋଚନା ମୂଲ୍ୟହୀନ ହୋଇପଡ଼ିବ । ଏହି ବିଚାର

ମଧ୍ୟରେ ମୁଁ ଏହି ସମାଲୋଚନାତ୍ମକ ପୁସ୍ତକଟି ରଚନା କରିଛି । ସାରଳାଦାସଙ୍କ ଲେଖାରେ ସାଢ଼େ ପାଞ୍ଚଶହରୁ ଊର୍ଦ୍ଧ୍ୱ ବର୍ଷ ତଳର ବହୁବିଧ ବିଷୟ – ଅର୍ଥନୀତି, ସମାଜନୀତ ଲୋକାଚାର, ରାଜନୀତି, ଇତିହାସ, ଭୂଗୋଳ, ଧର୍ମ ଧାରଣା, ଦର୍ଶନ ଆଦି ଏବଂବିଧ ବିଷୟ ସଂଚିତ ହୋଇ ରହିଛି । ତା ଏକପ୍ରକାର ଶବ୍ଦମୟ ଯାଦୁଘର । ସେ ସଂସ୍କୃତରୁ ଅନୁବାଦ କରିଥିଲେ ଏହି ବିଚିତ୍ର ଯାଦୁଘରକୁ ଗଢ଼ିପାରିନଥାନ୍ତେ । ସମାଲୋଚକ ନିଜେ ସେହି ଯାଦୁଘର ପରିଦର୍ଶନ କରି ଅନ୍ୟମାନଙ୍କ ଆଗରେ ତାହାର ବର୍ଣ୍ଣନା ଦେବା ମଧ୍ୟରେ ଯାଦୁଘର ପରିଦର୍ଶନ ପାଇଁ ଅନ୍ୟମାନଙ୍କ ମନରେ ଆଗ୍ରହ ଜାତ କରାଇପାରିଲେ ହିଁ ତାଙ୍କର ଯାଦୁଘର ବର୍ଣ୍ଣନା ସାର୍ଥକ ହେବ । ସାରଳାଦାସଙ୍କ ରଚନା ମନ୍ଦିରରେ ପ୍ରବେଶ କରିବା ପରେ ପାଠକମାନେ ସାଢ଼େପାଞ୍ଚଶହ ବର୍ଷ ତଳର ସଂସାରଜନ ସ୍ତରକୁ ଯିବାକୁ ହିଁ ହେବ, ଅନ୍ୟଥା ସେ ସାରଳାଦାସଙ୍କ ଇପ୍‌ସିତ 'ଶ୍ରୋତା' ହୋଇପାରିବେ ନାହିଁ । ସେହି ସ୍ତରକୁ ସମୟ-ଯାନରେ ପଛକୁ ଫେରିବା ଚାହୁଁଥିବା ପାଠକମାନେ ଏହି ପୁସ୍ତକର ଅଧିକାରୀ, ଅନୁବନ୍ଧ ଚତୁଷ୍ଟୟର ପ୍ରଥମ ଅନୁବନ୍ଧ ।

ଦ୍ୱିତୀୟ ଅନୁବନ୍ଧ ବିଷୟ, ତାହାହେଲା ସାରଳାଦାସଙ୍କ ବ୍ୟକ୍ତିତ୍ୱର କଳନା ଓ ତାଙ୍କ ଅକ୍ଷରକୀର୍ତ୍ତିଗୁଡ଼ିକର ମୂଲ୍ୟାଙ୍କନ । ଏହା ପୁସ୍ତକରେ ଆଲୋଚିତ ହୋଇଛି ।

ତୃତୀୟ ଅନୁବନ୍ଧ ସମ୍ବନ୍ଧ, ଅର୍ଥାତ୍ ମୋର ବିଷୟ ସହିତ ସମ୍ପର୍କ । ଅର୍ଦ୍ଧଶତାବ୍ଦୀ ପୂର୍ବେ ମୁଁ ସାରଳାଦାସଙ୍କ ମହାଭାରତ ପ୍ରତି ଆକୃଷ୍ଟ ହୋଇଥିଲି ଗୋଟିଏ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ । ସେତେବେଳେ 'ଝଙ୍କାର'ରେ ସାରଳାଦାସଙ୍କ ସ୍ଥାନ-କାଳ ନେଇ ସୁପଣ୍ଡିତ ଗୋପୀନାଥ ମହାନ୍ତିଙ୍କ ଲେଖା ଖୁବ୍ ଚହଳ ଓ ବାଦ-ପ୍ରତିବାଦ ସୃଷ୍ଟି କରିଥିଲା । ସେତେବେଳେ ମୁଁ ଓକିଲାତି ଆରମ୍ଭ କରୁଥିଲି, ହାତରେ ବ୍ରିଫ୍ କମ୍ ଥାଏ, ତେଣୁ ବିଭିନ୍ନ ଗ୍ରନ୍ଥ ପଢ଼ି ସମୟ କାଟୁଥାଏ । ମୁଁ ଗ୍ରନ୍ଥାଗାରରୁ ଏକ ପୁରୁଣା ଗ୍ରନ୍ଥ ପାଇ ପଢୁଥିଲି । ତାହା ଭିତରେ ବାଳଗଙ୍ଗାଧର ତିଳକଙ୍କର Orion (କାଳପୁରୁଷ) ପୁସ୍ତକ ଥିଲା । ତିଳକ ଏଥିରେ ବେଦରେ ବର୍ଣ୍ଣିତ ନକ୍ଷତ୍ରସ୍ଥିତିର ବିଶ୍ଳେଷଣ ପୂର୍ବକ ବେଦର କାଳନିରୂପଣ କରିଛନ୍ତି । ସାରଳାମହାଭାରତରେ କବି ଶତାଧିକ ସ୍ଥାନରେ ପଞ୍ଜାଙ୍ଗ ବିବରଣ ଦେଇଥିବା କଥା ଜାଣିଥିଲି । ସେହି ପଞ୍ଜାଙ୍ଗଗୁଡ଼ିକ ଧରି ସାରଳାଦାସଙ୍କ କାଳନିରୂପଣ କରିପାରିବି ବୋଲି ଭାବି ସାରଳା-ମହାଭାରତ ପଢ଼ିଲି । ଘରେ ତାଳପତ୍ର ପୋଥି ଆକାରରେ ସାରଳାମହାଭାରତ ଓ ଚଣ୍ଡୀପୁରାଣ ଥାଏ । ତାକୁ ଆମୂଳଚୂଳ ପଢ଼ିଲି । ମୋର ବି.ଏସ୍‌ସି. ପାଠ ମଧ୍ୟରେ ଗଣିତର ଏକ ବିଷୟ ଥିଲା ଏଷ୍ଟ୍ରୋନମି (ଗଣିତ ଜ୍ୟୋତିଷ) । ସାରଳାଦାସଙ୍କ ପଞ୍ଜାଙ୍ଗରୁ କାଳ ନିର୍ଣ୍ଣୟ ଆଶାରେ ସେ ଜ୍ଞାନକୁ ବିଭିନ୍ନ ଜ୍ୟୋତିଷ ଗ୍ରନ୍ଥ ପଢ଼ି ବଢ଼ାଇଲି । ଏ ଆଶା ମୋର ପୂରଣ ହେଲାନାହିଁ, କାରଣ ସାରଳାଦାସ ମନଗଢ଼ା ପଞ୍ଜାଙ୍ଗ ଦେଇଛନ୍ତି ସିନା, ତାଙ୍କ ସମୟର ପଞ୍ଜାଙ୍ଗ ଦେଇନାହାନ୍ତି । ଉଦ୍ଦେଶ୍ୟ ବ୍ୟର୍ଥ ହେଲେ

ହେଁ ମୋର ସେଥିରୁ ଲାଭ ହେଲା – (୧) ସାରଳାଦାସଙ୍କୁ ଆମୂଳାନ୍ତ ପାଠ, (୨) ପ୍ରାଚୀନ ଭାଷା ପରିଚିତି ଇତ୍ୟାଦି ଯାହା ସାରଳାଦାସଙ୍କ ସମ୍ପର୍କରେ ଆଲୋଚନା କରିବାକୁ ମୋତେ ଖୋରାକି ଯୋଗାଇଲା । ପରେ ମୋର ଅଧ୍ୟୟନରୁ ପ୍ରାପ୍ତ ଜ୍ଞାନ ସହିତ ଅନ୍ୟାନ୍ୟ ଆଲୋଚକଙ୍କ ଜ୍ଞାନର ତୁଳନା ପାଇଁ ମନୋନିବେଶ କଲି । ମୋର ଅଧ୍ୟୟନର ସ୍ୱାତନ୍ତ୍ର୍ୟ ଉପରେ ମୋର ଭରସା ଜନ୍ମିବାରୁ, ଅନେକ ସେମିନାର୍‌ରେ ମୋର ମତ ଉପସ୍ଥାପନ କଲି ଓ ଝଙ୍କାର, ପାଞ୍ଚଜନ୍ୟ ଆଦି ପତ୍ରିକାରେ ପ୍ରବନ୍ଧ ଲେଖିଲି ।

ସାରଳାଦାସ ଅଧ୍ୟୟନର ଏକ ଅଭାବିତ ପୂର୍ବ ଦିଗନ୍ତ ମୁଁ ଲୋକଲୋଚନକୁ ଆଣିଲି 'ବିଚିତ୍ର-ରାମାୟଣ' ଆବିଷ୍କାର କରି । ମୋର ସୌଭାଗ୍ୟ ଯେ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ପୁରାଣ 'ବିଚିତ୍ର ରାମାୟଣ' ଓ ପ୍ରାଚୀନତମ କାବ୍ୟ ନରସିଂହ ସେଣଙ୍କ 'ଗୋପକେଳି'କୁ ମୁଁ ଉଦ୍ଧାର କରିଛି ଓ ପ୍ରକାଶିତ କରାଇଛି । ଏହି ପୁସ୍ତକରେ ସାରଳାଦାସଙ୍କ ସଂପର୍କରେ ମୋର ବିଚାରର ବିଶେଷତ୍ୱ ତୁଳନାତ୍ମକ ଅଧ୍ୟୟନକାରୀମାନେ ସହଜରେ ବାରିପାରିବେ । ମୋର ଅଧିକାଂଶ ସିଦ୍ଧାନ୍ତ ସାଧାରଣରେ ଗୃହୀତ ବିଶ୍ୱାସକୁ ଖଣ୍ଡନ କରୁଛି, ସବୁ ସ୍ଥଳେ ଯୁକ୍ତି ଦେଇ । ବହୁସଂଖ୍ୟକ ଆଲୋଚକଙ୍କ ସହିତ ମୁଁ ଏକମତ ହେଉନାହିଁ ବୋଲି ପାଠକମାନେ ମୋତେ ଅଗ୍ରାହ୍ୟ କଲେ ସେମାନେ ଯୁକ୍ତିକୁ ପ୍ରାଥମିକତା ଦେଉନାହାନ୍ତି ବୋଲି ମୁଁ ଭାବିବି । କୌଣସି ପାଠକ ମୋ ଯୁକ୍ତିର ଦୁର୍ବଳତା ଦେଖାଇପାରିଲେ ମୁଁ ଦୁଃଖିତ ହେବି ନାହିଁ, କାରଣ, ମୁଁ ଯୁକ୍ତିର ବିଜୟକାମୀ, ଭାବାବେଗର ନୁହେଁ ।

ଚତୁର୍ଥ ଅନୁବନ୍ଧ ହେଉଛି ପ୍ରୟୋଜନ । ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗ ସମ୍ପର୍କରେ ଓଡ଼ିଆ ପାଠକଙ୍କୁ ଚେତାଇବା ଲକ୍ଷ୍ୟରେ ମୁଁ ଧାରାବାହିକ ଲେଖାଲେଖି କରି ଆସିଛି । ଏହି ପୁସ୍ତକଟି ଶେଷରେ ପ୍ରକାଶପାଇଲେ ମଧ୍ୟ ସାହିତ୍ୟର ଆଦିଯୁଗ ସହିତ ସଂପୃକ୍ତ ପରବର୍ତ୍ତୀ ତଥାକଥିତ 'ପଞ୍ଚସଖା' ସାହିତ୍ୟର ବିଚାର ମୋର ଅତୀତର ବର୍ଣ୍ଣବୋଧ ପୁସ୍ତକରେ ରହିଛି । ପଞ୍ଚସଖା ଯେ ଏକ ପ୍ରବଞ୍ଚନା ତାହା ମୁଁ ପ୍ରଥମେ ଦର୍ଶାଇଲି ୧୯୬୦ରେ । ଏହି ପୁସ୍ତକରେ ଭାଗବତକାର ଜଗନ୍ନାଥ ଦାସ ଅତିବଡ଼ି ଜଗନ୍ନାଥଦାସ ହୋଇନଥିବା ଓ ରାମାୟଣକାର ବଳରାମ ଦାସ ମତ୍ତବଳରାମ ଦାସ ନ ଥିବା କଥା ପ୍ରମାଣିତ କରିଛି । ଆଉ ମଧ୍ୟ, ଉପେନ୍ଦ୍ରଭଞ୍ଜଙ୍କ ଜୀବନବୃତ୍ତାନ୍ତ ଓ ରଚନାବଳୀରେ ଥିବା ଗୁରୁତର ପ୍ରମାଦର ସଂଶୋଧନ କରିଛି । ମୋର ପ୍ରାଚୀନ ସାହିତ୍ୟ ବିଷୟକ ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ ନରସିଂହ ସେଣଙ୍କ 'ଗୋପକେଳି' (ଓ ଅନ୍ୟାନ୍ୟ କ୍ଷୁଦ୍ର ରଚନା), 'ପୀତାମ୍ବର ଦାସ ଅଧ୍ୟୟନ', 'ବଳଦେବ ରଥ ଅଧ୍ୟୟନ', 'ବଳଦେବ ରଥ : ସାହିତ୍ୟ ସାଧନା ଓ ସିଦ୍ଧି' ଉଲ୍ଲେଖନୀୟ ।

ମୋର ଅଧ୍ୟୟନ ସର୍ବମୁଖ ନୁହେଁ । ଯେଉଁ ଅଭିନବ ଦିଗରୁ ମୁଁ ସାରଳାଦାସଙ୍କୁ ଦେଖିଛି ତାହା ଜଣାଇବା ହିଁ ମୋର ଲକ୍ଷ୍ୟ । ତେଣୁ ଏହାର ପାଠକ ଅନ୍ୟ ଆଲୋଚକଙ୍କୁ ପାଠ କଲେ ଭିନ୍ନ ଦିଗରୁ ସାରଳାଦାସଙ୍କ ଆକଳନ କରାଯାଉଥିବା ବିଷୟରେ ଅବହିତ ହେବେ । ଏଣୁ ଏହାକୁ ଅନ୍ୟ ଆଲୋଚନାର ବିକଳ୍ପ ବୋଲି ଗ୍ରହଣ ନ କରି ପରିପୂରକ ବୋଲି ଗ୍ରହଣ କରାଯିବା ଉଚିତ ହେବ । ସବୁଠାରୁ ବଡ଼ କଥା, ପାଠକ ଅନ୍ୟର ମତରେ ଭାସି ନ ଯାଇ ନିଜେ ଗ୍ରନ୍ଥ ପଢ଼ି ନିଷ୍ପତ୍ତିରେ ପହଞ୍ଚିବେ । ପାଠକଙ୍କ ସୁବିଧା ପାଇଁ ମୁଁ ଏଥିରେ ଓଡ଼ିଶା ସରକାରଙ୍କଦ୍ୱାରା ପ୍ରକାଶିତ ସାରଳା-ମହାଭାରତକୁ ହିଁ ଆଶ୍ରୟ କରିଛି; ତାହାର ଦୋଷ ତ୍ରୁଟି ସତ୍ତ୍ୱେ ତାହା ମୁଦ୍ରିତ ମହାଭାରତଗୁଡ଼ିକ ମଧ୍ୟରେ ସର୍ବଶ୍ରେଷ୍ଠ ।

ଏ ପୁସ୍ତକ ରଚନାର ପରିକଳ୍ପନା ତିନି ବର୍ଷ ତଳୁ କଲିଣି । ସାରଳାଦାସ ବିଷୟକ ମୋର ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ସଜାଡ଼ି ଅଧିକ ଅଧ୍ୟାୟମାନ ରଚନା କଲି । ଗ୍ରନ୍ଥ ମନ୍ଦିରର ଶ୍ରୀ ଅଭିରାମ ମହାପାତ୍ରଙ୍କ ସୁଦୃଷ୍ଟି ଏହା ଉପରେ ପଡ଼ିଲା, ଏହା ମୋ ଭାଗ୍ୟର କଥା । ତାଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି ।

ପୁରୁଣା ଡାକଘର ସାହି, ଛତ୍ରପୁର (ଗଞ୍ଜାମ) — **ସଚ୍ଚିଦାନନ୍ଦ ମିଶ୍ର** ୧୦/୮/୨୦୦୬

୮

# ସୂଚୀପତ୍ର



—

# ପ୍ରଥମ ଅଧ୍ୟାୟ

## ସିଦ୍ଧ ସାରୋଳ ଚଣ୍ଡୀ

ସାରଳା ଦାସ[୧] ତାଙ୍କ ମହାଭାରତରେ ଓ ଚଣ୍ଡୀପୁରାଣରେ ଅନେକାନେକ ସ୍ଥାନରେ ତାଙ୍କର 'ବରଦାତ୍ରୀ' ଆରାଧ୍ୟା ଦେବୀଙ୍କର ପରିଚୟ ଜଣାଇଛନ୍ତି, ମହିମା ବର୍ଣ୍ଣନା କରିଛନ୍ତି ଓ ସ୍ତବ ଗାଇଛନ୍ତି । ସେ ସବୁର ସମ୍ୟକ୍ ଆଲୋଚନା ମହାକବିଙ୍କର ଜୀବନାଦର୍ଶକୁ ବୁଝିବା ପାଇଁ ତଥା ତାହାଙ୍କର ବାସସ୍ଥାନ ନିରୂପଣ କରିବା ପାଇଁ ବିଶେଷ ସହାୟକ । ସେ ଶାକ୍ତ ଥିଲେ ଓ ତାହାଙ୍କର ବାସସ୍ଥାନ ଜଗତସିଂହପୁର ଜିଲାର ଝଙ୍କଡ଼ ଥିଲା ବୋଲି ସାଧାରଣତଃ ଗୃହୀତ ହେଉଥିବା ବିଶ୍ୱାସ ଅମୂଳକ ଥିବା ଏଥିରୁ ଜଣା ପଡୁଛି ।[୨]

### କବିଙ୍କ ନାମ

ଅଧୁନା କବିଙ୍କର ନାମଟି ସାରଳା ବା ଶାରଳା ଓ ଉପନାମ (ସଂଜ୍ଞା)ଟି ଦାସ ବୋଲି ପ୍ରାୟ ସମସ୍ତେ ଧରି ନେଉଛନ୍ତି । ବଳରାମ ଦାସ, ଜଗନ୍ନାଥ ଦାସ, ମାର୍କଣ୍ଡ ଦାସ ଆଦି ନାମର 'ଦାସ' ଅଂଶଟି ଉପନାମ ହେବା ସମ୍ଭବ । ପାତ୍ର, ନାୟକ, ସାହୁ ଆଦି ଉପନାମ ପରି ଦାସ ମଧ୍ୟ ଏକ ସୁପ୍ରଚଳିତ ଓଡ଼ିଆ ଉପନାମ । କିନ୍ତୁ ସାରଳାଦାସ ନାମର

---

(୧) ସାରଳା ଦାସ ନାମର ବନାନ ବିଭିନ୍ନ ତାଳପତ୍ର ପୋଥିରେ ଭିନ୍ନ ଭିନ୍ନ ଥିବା (ଏପରିକି ଜଣେ ଲେଖନକାର ମଧ୍ୟ ଭିନ୍ନ ଭିନ୍ନ ରୂପରେ ଲେଖୁଥିବା) ଦେଖାଯାଏ; ଯଥା– ଶାରଳା ଦାସ, ଶାରୋଳାଦାସ, ଶାରୋଳ ଦାସ, ସାରଳାଦାସ, ସାରୋଳା ଦାସ, ସାରୋଳ ଦାସ । ଦାସ ବିକଳ୍ପେ ଦାଶ ଭାବରେ ମଧ୍ୟ ଲେଖାହୁଏ । ସାରଳାଦାସ ବନାନଟି ସଂପ୍ରତି ସାଧାରଣ ଭାବରେ ଚଳୁଥିବାରୁ ତାହାକୁ ଗ୍ରହଣ କରିନେବାକୁ ହେଉଛି ।

(୨) ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ ଓଡ଼ିଶା ସଂସ୍କୃତି ବିଭାଗ ଦ୍ୱାରା ପ୍ରକାଶିତ 'ସାରଳା ମହାଭାରତ'ରେ ଗୃହୀତ ପାଠକୁ ଏହି ପୁସ୍ତକରେ ବ୍ୟବହାର କରାଯାଇଛି । ଅନ୍ୟ ସୂତ୍ରରୁ ପାଠ ନିଆଯାଇଥିଲେ ତାହାର ସୂଚନା ସେହି ସ୍ଥାନରେ ଦିଆଯାଉଛି । ଯେଉଁ କଥନର ପ୍ରମାଣ ସାରଳା ମହାଭାରତରେ ରହିଛି ସେହି କଥନ ଶେଷକୁ ଚନ୍ଦ୍ରବନ୍ଧନୀ ମଧ୍ୟରେ ପର୍ବର ନାମ ଓ ପୃଷ୍ଠା ସଂଖ୍ୟା ଲେଖାଯାଉଛି । ପର୍ବ ବିଶେଷଟି ଦୁଇ ଭାଗରେ ମୁଦ୍ରିତ ହୋଇ ଦ୍ୱିତୀୟ ଭାଗରେ ପୃଥକ୍ ପୃଷ୍ଠାକ୍ରମ ଦିଆଯାଇଥିବା କ୍ଷେତ୍ରରେ ପର୍ବର ନାମ ପୂର୍ବରେ ୨ ସଂଖ୍ୟା ଲେଖାଯାଉଛି । 'ସାରଳା ମହାଭାରତ'ର ଉଦ୍ଧୃତିଗୁଡ଼ିକର ସୂଚନା ମଧ୍ୟ ଅନୁରୂପ ରୀତିରେ ଲେଖାହେଉଛି ।

ଦାସ ଉପନାମ ହୋଇନପାରେ । ଏହା ନାମର ଅଂଶ ବିଶେଷ ମାତ୍ର । ଦେବୀଙ୍କ ନାମ ସାରଳା ହେବା ହେତୁରୁ ଦେବୀଭକ୍ତ ଭାବରେ ପରିଚୟାତ୍ମିକ ନାମ ସାରଳା ଦାସ । ଆଧୁନିକ ଲେଖକମାନେ 'ସାରଳା ଯୁଗ', 'ପ୍ରାକ୍ ସାରଳା ଭାଷା', 'ସାରଳା ପରିକ୍ରମା' 'ସାରଳା ସ୍ମରଣିକା', 'ସାରଳା ସାହିତ୍ୟ' ଭଳି ଅଭିବ୍ୟକ୍ତିମାନ ବ୍ୟବହାର କରୁଛନ୍ତି, ଯେଉଁଠି ମହାଭାରତକାର କବିଙ୍କର ନାମଟି 'ସାରଳା' ବୋଲି ଗୃହୀତ ହେଉଛି । କାଳିଦାସଙ୍କ ରଚନାବଳୀକୁ କାଳୀ-ସାହିତ୍ୟ ବା ଚଣ୍ଡୀଦାସଙ୍କ ପଦାବଳୀକୁ ଚଣ୍ଡୀ-ପଦାବଳୀ ବୋଲି ଅଭିହିତ କଲେ ଯେଉଁ ଭ୍ରମ ହେବ, ଏହା ସେହିପରି ଭ୍ରମ । ଦେଖାଯାଉଛି ସ୍ୱୟଂ କବି ଆପଣାକୁ ସମଧିକତଃ ସାରଳାଦାସ ନାମରେ ପରିଚିତ କରାଇଥିବା ଭଳି ବହୁ ସ୍ଥାନରେ ନିଜକୁ 'ସାରଳାଚଣ୍ଡୀ ଦାସ' ନାମରେ ମଧ୍ୟ ଅଭିହିତ କରାଇଛନ୍ତି:—

ବଦୟନ୍ତି ଶୂଦ୍ରମୁନି ଶ୍ରୀ ସାରୋଳଚଣ୍ଡୀ ଦାସ । (ଆଦି ୯୪୮)
ବଦୟନ୍ତି ଶୂଦ୍ରମୁନି ସାରୋଳା ଚଣ୍ଡୀ ଦାସ । (ମଧ୍ୟ ୩୪୧)
ଶ୍ରୀ ବାକ୍ୟ ଦେବୀଚରଣେ ଶ୍ରୀ ସାରୋଳାଚଣ୍ଡୀ ଦାସ । (ମଧ୍ୟ ୬୪୯)

ଆହୁରି ଆହୁରି ଅନେକ ସ୍ଥାନରେ ନାମଟି ସାରଳାଚଣ୍ଡୀ ଦାସ ରୂପରେ ସ୍ଥାନ ପାଇଛି । ନାମଟି ସାରଳା ହୋଇଥିଲେ 'ସାରଳାଚଣ୍ଡୀ' ଲେଖା ହୁଅନ୍ତା ନାହିଁ । ଏଥିରୁ ଅବଧାରଣୀୟ ଯେ କବିଙ୍କ ନାମଟି ଯେପରି 'ସାରଳାଚଣ୍ଡୀ' ହୋଇ ନପାରେ, ତାହା ସେହିପରି ସାରଳା ମଧ୍ୟ ନୁହେଁ । ଦେବୀଙ୍କ ଭକ୍ତ ହେବା କଥାଟି ସୂଚାଇବା ପାଇଁ ହିଁ ସେ ସାରଳାଦାସ ନାମ ସ୍ୱୀକାର କରିଛନ୍ତି । ଯେ ସାରଳା ସେ ହିଁ ସାରଳାଚଣ୍ଡୀ । ତେଣୁ କବି ସାରଳାଚଣ୍ଡୀ ଦାସ ମଧ୍ୟ । ତାହାଙ୍କର ପିତୃଦତ୍ତ ଶ୍ରଦ୍ଧାନାମ କ'ଣ ଥିଲା ତାହା ସେ ପ୍ରକାଶ କରିନାହାନ୍ତି । କିନ୍ତୁ ତାହା ସାରଳା ବା ସାରଳାଚଣ୍ଡୀ ହୋଇ ନପାରେ । ଓଡ଼ିଶାରେ କେହି ତାଙ୍କ ସନ୍ତାନଙ୍କ ନାମ ସାରଳା ରଖିବାର ଦୃଷ୍ଟାନ୍ତ ନାହିଁ ।

ଏ ଦେଶର ଚଳଣିରେ ଶିଶୁମାନଙ୍କର ନାମକରଣ ଜନ୍ମର ଅଳ୍ପକେତେ ଦିନ ପରେ ହୁଏ । ନାମକରଣ ହିନ୍ଦୁସମାଜର ଏକ ସଂସ୍କାର । ସୂତକ ଅଶୌଚ ସରିବା ପରେ ପରେ ଶୁଭ ଦିନରେ ଏହା କର୍ତ୍ତବ୍ୟ । ସାଧାରଣତଃ ପୁଅର ୨୧ ଦିନ ଓ ଝିଅର ୩୦ ଦିନ ଅଶୌଚ ସରିବା ପରେ ନାମକରଣ ଉତ୍ସବ ହୁଏ । ଜନ୍ମକାଳୀନ ନକ୍ଷତ୍ରର ପାଦ ସୂଚାଉଥିବା ଅକ୍ଷରକୁ ଆଦ୍ୟାକ୍ଷର କରି ନାକ୍ଷତ୍ରିକ ନାମ ଓ ସମାଜରେ ପରିଚିତ ହେବା ପାଇଁ ଏକ ଶ୍ରଦ୍ଧାନାମ ଦିଆହୁଏ । ଜୀବନର ମଧ୍ୟଭାଗରେ ବ୍ୟକ୍ତି ନୂତନ ବ୍ୟକ୍ତିତ୍ୱ ସ୍ୱୀକାର କଲେ ଅନେକ କ୍ଷେତ୍ରରେ ନୂତନ ନାମଟିଏ ମଧ୍ୟ ନେଇଥାଏ । ଝିଅଟିଏ ଯେତେବେଳେ ପିତୃକୁଳ ଛାଡ଼ି ବଧୂ ଭାବରେ ଶ୍ୱଶୁରାଳୟକୁ ଯାଏ ସେ ବେଳେବେଳେ ନୂଆ ନାଁଟିଏ ମଧ୍ୟ ଗ୍ରହଣ କରିଥାଏ । ବ୍ୟକ୍ତି ସାଂସାରିକ ଜୀବନ ଛାଡ଼ି ସଂନ୍ୟାସ ଗ୍ରହଣ କରିବାବେଳେ ନୂଆ ନାଁଟିଏ

ନେଇଥାଏ । ସେ ରାଜପୁତ୍ର ହେଉ କି ଅନ୍ୟ କେହି ହେଉ ରାଜସିଂହାସନରେ ଅଭିଷିକ୍ତ ହେଲାବେଳେ ନୂତନ ନାମଟିଏ ଗ୍ରହଣ କରିଥାଏ । ଉପନୟନ ବେଳେ ଦ୍ୱିଜର ନୂତନ ନାମକରଣ ମଧ୍ୟ ହୁଏ । ଏହି ପରଂପରାରେ ବ୍ୟକ୍ତିତ୍ୱ ବଦଳିଲେ ନାମ ବଦଳିବା ଅସ୍ୱାଭାବିକ ନୁହେଁ । ପାଶ୍ଚାତ୍ୟ ପରଂପରାର pen-name ପ୍ରଥା ସଙ୍ଗେ ଭାରତରେ କବିମାନେ ନୂତନ ନାମ ଗ୍ରହଣ କରିବା ପ୍ରଥାକୁ ତୁଳନା କରାଯାଇପାରେ । ସାରଳାଦାସଙ୍କର ନାମ ପୂର୍ବରୁ ହୁଏତ ସିଦ୍ଧେଶ୍ୱର ଥିଲା ଓ ସେହି ନାମରେ ସେ 'ବିଚିତ୍ର ରାମାୟଣ' ଲେଖିଥିଲେ । ବିଚିତ୍ର ରାମାୟଣର ପିତୃତ୍ୱ ଆଲୋଚନା ପ୍ରସଙ୍ଗରେ ଏ ବିଷୟରେ ବିଶଦ ଚର୍ଚ୍ଚା ପରେ କରାଯିବ । କିନ୍ତୁ ମହାଭାରତ ରଚନା ପୂର୍ବରୁ କବି ଏକ ଅଭିନବ ବ୍ୟକ୍ତିତ୍ୱକୁ ସ୍ୱୀକାର କଲେ (ଯେଉଁଥିରେ ଜଗନ୍ନାଥ ଚେତନା ଅନୁରୂପେ ବୈଷ୍ଣବ-ଶୈବ-ଶାକ୍ତ ମତବାଦର ସମନ୍ୱୟ ଘଟିଲା) ସେଥିପାଇଁ ତାଙ୍କର ନୂତନ ନାମଟିଏ ହେଲା 'ସାରଳାଦାସ'/'ସାରଳାଚଣ୍ଡୀଦାସ' ।

କବି ବାରଂବାର ଘୋଷଣା କରିଛନ୍ତି ଯେ ସେ ହେଉଛନ୍ତି ଦେବୀଙ୍କର ପୁତ୍ର । ଦୃଷ୍ଟାନ୍ତ ସ୍ୱରୂପ –

ଶ୍ରୀ ସାରୋଳାଚଣ୍ଡୀ ନାମେ ସେ ଅଟଇ ମହାଦେବୀ ।  
ତାହାଙ୍କର ପୁତ୍ର ମୁଁ ଯେ ସାରୋଳଦାସ କବି ।। (ଆଦି ୫)  
ଏ ସଂସାର ଜନଙ୍କୁ ଅଭୟ ଦିଅସି ସିଦ୍ଧ ସାରଳା ।।  
ମୁହିଁ ତୋର ପୁତ୍ର ଯେ ସାରେଳାଦାସ ବୋଲି । (ଆଦି ୫୨୭)

କବି ନାନା ଭାବରେ ଦୈବୀସଂପର୍କ ଦାବି କରିଛନ୍ତି । ମହାଭାରତରେ ସେ କହିଛନ୍ତି ଯେ ସେ ମୂଳରେ ଥିଲେ ଶିବଭୁବନ କୈଳାସର ପୂର୍ବ ଦ୍ୱାରର ଅନ୍ୟତର ଦ୍ୱାରପାଳ ନନ୍ଦୀ ଓ ସାମାନ୍ୟ ଦୋଷରୁ ବିନାୟକ କର୍ତ୍ତୃକ ଶାପଗ୍ରସ୍ତ ହୋଇ ନର-ଦେହ ଧାରଣ କରିଥିଲେ । ସେ ଆଉ ମଧ୍ୟ ଲେଖିଛନ୍ତି ଯେ ଦେବୀ ତାହାଙ୍କ ପ୍ରତି ପ୍ରସନ୍ନ ହୋଇ ମହାଭାରତ ଚରିତ୍ର ଡାକି ଦେବାରୁ ହିଁ ସେ ତାହା ଲେଖିପାରିଛନ୍ତି । କବିଙ୍କ ସମୟର ତଥା ତାଙ୍କ ପୂର୍ବ ସମୟର ରାଷ୍ଟ୍ର କି ସମାଜର ନେତୃତ୍ୱକାମୀମାନେ (ଯଥା– ରାଜା, ଧର୍ମପ୍ରଚାରକ) ଦୈବୀସମ୍ପର୍କ ଦାବିକରିବା ଏକ ଚିରାଚରିତ ପ୍ରଥା ଥିଲା । ସରଳବିଶ୍ୱାସୀ, ଧର୍ମଭୀରୁ, ଅଶିକ୍ଷିତ ସମାଜର ସ୍ୱୀକୃତି ଲାଭ ପାଇଁ ଦୈବୀସମ୍ପର୍କ ଦାବି ସହାୟକ ହେଉଥିଲା । କବି ନିଜକୁ ଶିବଙ୍କ ଦ୍ୱାରରକ୍ଷକ, ଦେବୀଙ୍କ ପୁତ୍ର ଆଦି ବୋଲି କରିବା ଦାବିର ପ୍ରୟୋଜନ ସେହି ଦୃଷ୍ଟିରୁ ବିଚାର କରାଯାଇପାରେ । ଆଉ ମଧ୍ୟ ବିଚାର୍ଯ୍ୟ ଯେ କବି ଦେବୀଙ୍କୁ ଆଦିମାତା ଜଗଜ୍ଜନନୀ ଭାବରେ ଗ୍ରହଣ କରିଥିବା ଯୋଗୁଁ ନିଜେ ଦେବୀଙ୍କ ପୁତ୍ର ବୋଲି କରିଥିବା ଦାବି ସେହି ଚେତନାର ଅନୁସାରୀ ମାତ୍ର । ପରେ ପଞ୍ଚମ ଅଧ୍ୟାୟରେ କବିଙ୍କର ଜାତିସ୍ମରଣ ଓ ଦୈବୀପ୍ରସାଦ ଲାଭ ପ୍ରସଙ୍ଗ ଅଧିକ ଆଲୋଚନା କରିବି ।

ଭକ୍ତିଭାବ ପାଞ୍ଚ ପ୍ରକାରର ବୋଲି ଗୃହୀତ ହୁଏ– ୧. ଶାନ୍ତ; ୨. ଦାସ୍ୟ; ୩. ସଖ୍ୟ; ୪. ବାତ୍ସଲ୍ୟ ଓ ୫. ମାଧୁର୍ଯ୍ୟ । ଉପାସକ ଉପାସ୍ୟଙ୍କୁ ନିଜର ପିତାମାତା ରୂପେ ଗ୍ରହଣ କରିବା ଭାବ 'ଦାସ୍ୟଭାବ'ର ଅନ୍ତର୍ଭୁକ୍ତ । ସମ୍ପତ୍ତିରେ ସନ୍ତାନସନ୍ତତିଙ୍କର ଅଧିକାର ସର୍ବଥା ସ୍ୱୀକୃତି ପାଏ । କବିତ୍ୱ-ଶକ୍ତିର ଉତ୍ସ ନିଶ୍ଚୟ ବାଗ୍‌ଦେବୀ ସରସ୍ୱତୀ । ତେଣୁ କବିତ୍ୱଶକ୍ତି ଲାଭ କରିଥିବା ବ୍ୟକ୍ତି ନିଜକୁ ବାଗ୍‌ଦେବୀଙ୍କ ସନ୍ତାନ ବୋଲି ଜ୍ଞାନ କରିବା ସ୍ୱାଭାବିକ । ରାଧାନାଥ ରାୟଙ୍କ ଭାଷାର 'ଭାଗ୍ୟବାନ ବାଣୀଙ୍କ କୁମର' ସବୁ କବିଙ୍କ ପ୍ରତି ଅଭିପ୍ରେତ । ଏହି ଚେତନାରେ ମଜ୍ଜିଯାଇ ସାରଳାଦାସ ନିଜକୁ ଦେବୀଙ୍କ ପୁତ୍ର ବୋଲି ଆତ୍ମପରିଚୟ ଦେବା ସଙ୍ଗେ ସଙ୍ଗେ ସ୍ୱୟଂ ଦେବୀଙ୍କର ଭୃତ୍ୟ, କୋୟର, ଚରଣସେବକ, ନିଜ ଦାସ ଅଟନ୍ତି ବୋଲି ମଧ କହିଛନ୍ତି (ଆଦି ୩୪୫, ୩୫୬, ମଧ ୯୩, ୧୦୩୫; ସ୍ୱର୍ଗାରୋହଣ ୯୫ ଇତ୍ୟାଦି) । ଭାବ ବିଚାରରୁ ଅପତ୍ୟତ୍ୱ ଓ ଦାସତ୍ୱ ମଧ୍ୟରେ ସାମ୍ୟ ରହିଛି । ସାରଳାଦାସ ହୋଇ ମଧ ସାରଳାପୁତ୍ର ହେବା ତେଣୁ ସ୍ୱାଭାବିକ ହେଉଛି ।

## ଦେବୀଙ୍କ ନାମ

କବିଙ୍କର ଆରାଧ୍ୟା ଦେବୀଙ୍କୁ ଆଜିକାଲି ସାରଳା (କ୍ୱଚିତ୍ ଶାରଳା) ନାମରେ ଅଭିହିତ କରାଯାଉଛି । ସଂସ୍କୃତ ସାରଦା (ସାର+ଦ+ଆ) ଓ ଶାରଦା (ଶରଦ୍+ଅ+ଆ) ଉଭୟ ଶବ୍ଦର ଅର୍ଥ ଦୁର୍ଗା ଓ ସରସ୍ୱତୀ । ସାରଳାଦାସ ଦେବୀଙ୍କୁ ଯୁଗପତ୍ ବିନ୍ଧ୍ୟବାସିନୀ ଦୁର୍ଗା ଓ ବାଗ୍‌ଦେବୀ ସରସ୍ୱତୀ ରୂପେ ଗ୍ରହଣ କରିଛନ୍ତି (ଦ୍ରୋଣ ୧୯) । ତାହାଙ୍କର ନାମାନ୍ତର ମଧରେ ସାରୋଳାଚଣ୍ଡୀ ଓ ନର୍ମଦା ସରସ୍ୱତୀ ରହିଛି । ଦେବୀଙ୍କର ନାମାନ୍ତର ସାରଦା ବୋଲି ମଧ କବି ଠାଏଁ ଠାଏଁ ଲେଖିଛନ୍ତି (ଆଦି ୧୦୨୬, ମଧ ୩୧୯) । ସାରଳାଦାସଙ୍କ ସମୟର ପରବର୍ତ୍ତୀ ଓଡ଼ିଆ କବିମାନେ ସାରଳା ଆଦି ନାମକୁ ସଂସ୍କୃତ ଶାରଦାର ପ୍ରାକୃତ ରୂପ ଭାବରେ ହିଁ ଗ୍ରହଣ କରି ତାଙ୍କୁ ବାଗ୍‌ଦେବୀ ବୋଲି କହିଛନ୍ତି (ଯଥା– ନୃସିଂହ ପୁରାଣ ପ୍ରଣେତା ପୀତାମ୍ବର ଦାସ) । ଏହି ସବୁ କାରଣରୁ ସାରଳା/ଶାରଳା ନାମ ସଂସ୍କୃତ ସାରଦା/ଶାରଦା ଶବ୍ଦରୁ ଉଦ୍ଭବ ବୋଲି ଧରି ନିଆଯାଉଛି । ବାସ୍ତବରେ କିନ୍ତୁ ମହାଭାରତର ଅତ୍ୟଳ୍ପ ସ୍ଥାନରେ ହିଁ ଦେବୀଙ୍କ ନାମ ସାରଳା ବୋଲି ଲେଖାଅଛି (ଆଦି ୩୪୫, ୫୨୭, ୧୦୨୬; ମଧ ୩୧୯; ୨ ବନ ୧୯୨ ଇତ୍ୟାଦି) । ଅଥଚ ପ୍ରାୟ ସର୍ବତ୍ର ଦେବୀଙ୍କର ନାମଟି ସାରୋଳା ଅଥବା ସାରୋଳଚଣ୍ଡୀ ବା ସାରୋଳାଚଣ୍ଡୀ ବୋଲି ଲେଖାଅଛି । ସେହିପରି କବିଙ୍କର ନାମ ମଧ ପ୍ରାୟ ସର୍ବତ୍ର ସାରୋଳାଦାସ ଅଥବା ସାରୋଳଦାସ । ଦେବୀଙ୍କର ସାରୋଳଚଣ୍ଡୀ ନାମ (ଆଦି ୫, ୮୨୫, ୯୪୮; ମଧ ୮୭୮ ଇତ୍ୟାଦି) ଓ କବିଙ୍କର ସାରୋଳଦାସ ନାମ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ସାରଦା ବା ଶାରଦାର ପ୍ରାନ୍ତ ଗୁରୁ ଆକାର ପ୍ରାକୃତରେ ଲଘୁ ଆକାରରେ ପରିଣତ ହେବା ସମ୍ଭାବନା ନାହିଁ । କବି କେତେକ ସ୍ଥାନରେ

ଜଣାଇଛନ୍ତି ଯେ ସାରୋଳ ବା ସାରୋଳା କବିଙ୍କର ଗ୍ରାମର ନାମ ଓ ତାହାର ଅଧିଷ୍ଠାତ୍ରୀ ଦେବୀ ଭାବରେ ସାରୋଳଚଣ୍ଡୀ ବା ସାରୋଳା ବା ସାରୋଳାଚଣ୍ଡୀ ଥିଲେ ।

ତହିଁର ସନ୍ନିଧ୍ୟେ ସାରୋଳ ନାମେ ଗ୍ରାମେ ।
ବିଜେ ମାହେଶ୍ୱରୀ ସାରୋଳଚଣ୍ଡୀ ନାମେ ।। (ଆଦି ୫)
ତହିଁର ସନ୍ନିଧ୍ୟେ ଯେ ସାରୋଳା ବୋଲି ଗ୍ରାମ
ବିଜୟେ ମାହେଶ୍ୱରୀ ସାରୋଳା ବୋଲି ନାମ ।। (ମଧ ୮୨୭)

ଗ୍ରାମଦେବତୀ ଗ୍ରାମର ନାମ ବହନ କରିବା ପ୍ରଥା ଅନେକଠାରେ ଚଳି ଆସୁଛି । କାକଟପୁରର ଦେବୀ କାକଟେଇ, ବିରଜ କ୍ଷେତ୍ରର ଦେବୀ ବିରଜା, ସମ୍ବଲପୁରର ଦେବୀ ସମଲାଇ ଇତ୍ୟାଦି, ଇତ୍ୟାଦି । ଏଥିରୁ ଅନୁମାନ କରିବାକୁ ହେଉଛି ଯେ ସାରୋଳ ବା ସାରୋଳା ଏକ ଗ୍ରାମର ନାମ ଥିଲା ଓ ତାହାର ଗ୍ରାମଦେବୀଙ୍କ ନାମ ତଦନୁସାରେ ଥିଲା ସାରୋଳା, ସାରୋଳଚଣ୍ଡୀ ଓ ସାରୋଳାଚଣ୍ଡୀ । ସଂସ୍କୃତ ସାରଦା ବା ଶାରଦା ସହିତ ଏହି ନାମର ସମ୍ପର୍କ ଥିବା ଜଣାଯାଉନାହିଁ । ଅନ୍ୟଥା ଗ୍ରାମର ନାମଟି ସାରୋଳ କି ସାରୋଳା ହୁଅନ୍ତା ନାହିଁ । ସାରଳାଦାସ ସ୍ୱୀୟ କବି ଚେତନାର ପ୍ରଚୋଦନାରେ ତାଙ୍କ ଗ୍ରାମଦେବୀଙ୍କୁ ବୈଷ୍ଣବ ବାଗ୍‌ଦେବୀ ସରସ୍ୱତୀଙ୍କ ସହିତ ଚିହ୍ନିତ କରିବା ଫଳରେ ସେ ସାରଦା ବା ଶାରଦା ହୋଇଗଲେ ।

## କବି ବୈଷ୍ଣବ

କବି ଆପଣା ନାମଟିକୁ ସାରେଳାଦାସ ବୋଲି ତ ସାଧାରଣତଃ ପ୍ରକାଶ କରିଛନ୍ତି, ଶତାଧିକ ସ୍ଥାନରେ ସ୍ୱୀୟ ପରିଚୟ ସାରୋଳଦାସ ବୋଲି ମଧ ଲେଖିଛନ୍ତି (କେବଳ ଆଦିପର୍ବର କତିପୟ ସ୍ଥାନ ହେଲା – ପୃ. ୪, ୫, ୮୬, ୪୩୮, ୫୦୬, ୬୪୯, ୬୫୭, ୬୯୩, ୮୦୮, ୮୨୫, ୮୭୫, ୯୩୧, ୯୪୮) । ଦେବୀ ସାରୋଳ ବା ସାରୋଳଚଣ୍ଡୀଙ୍କର ଦାସ ଭାବରେ ସେ ତାଙ୍କ ନାମଟିକୁ ସ୍ୱୀକାର କରିଥିବା କଥା ମଧ ବହୁ ସ୍ଥାନରେ ଜଣାଇଛନ୍ତି । କିନ୍ତୁ ସାରୋଳ ଦେବୀଙ୍କ ନାମ ନୁହେଁ, ତାହା ଗ୍ରାମର ନାମ (ଗ୍ରାମ ଓ ଦେବୀ ଉଭୟ 'ସାରୋଳା' ବୋଲି ଠାଏଁ ଠାଏଁ ଲେଖା ହୋଇଛି) । ତେଣୁ ସାରୋଳ ଦାସର ଅର୍ଥ ସାରୋଳ ଗ୍ରାମର 'ଦାସ' (ଅର୍ଥାତ୍ ଭକ୍ତ) ହେବା ମଧ ସମ୍ଭବ । ଭକ୍ତମାନେ ସ୍ୱଗ୍ରାମର ନାମରେ ଆଖ୍ୟାତ ହେଉଥିବା କଥା ସୁବିଦିତ; ଉଦାହରଣ – ପିପିଲି ଦାସ, ଯାଜପୁର ବନ୍ଧୁ, ବାଲିଗାଁ ଦାସ । ଦାସର ଅର୍ଥ ଦାସ୍ୟଭାବିକ ଭକ୍ତ । ମଧ ଯୁଗୀୟ ଭାରତର ପ୍ରତ୍ୟେକ ପ୍ରଦେଶରେ 'ଦାସ' ସଂଜ୍ଞକ ବହୁ ଭକ୍ତ (ତନ୍ମଧ୍ୟରୁ ଅନେକେ କବି) ଥିବା ଜଣାଅଛି । ଏମାନେ ସମସ୍ତେ ବୈଷ୍ଣବ । କନ୍ନଡ଼ ଭାଷାର ମଧ୍ୟଯୁଗର ଦାସ ସଂଜ୍ଞକ ବୈଷ୍ଣବ କବିମାନେ ସମୂହଭାବରେ

'ଦାସକୂଟ' ବୋଲାନ୍ତି । ତେଲୁଗୁ ସମାଜରେ 'ଦାସରି' ନାମକ ଶ୍ରୀବୈଷ୍ଣବ ସଂପ୍ରଦାୟର ଶୂଦ୍ର ଜାତି ଅଛି । ଦାସରିମାନେ ପୂର୍ବେ ବିଷ୍ଣୁଙ୍କ ଭଜନାଦି ଗାଇ ଗାଇ ଦ୍ୱାରେ ଦ୍ୱାରେ ଭିକ୍ଷା କରୁଥିଲେ । ଦକ୍ଷିଣ ଓଡ଼ିଶାର ସୁପ୍ରସିଦ୍ଧ 'ଦାସକାଠି' ନାଟ ମଧ୍ୟ ବୈଷ୍ଣବ ଭକ୍ତି ପ୍ରଚାର କରେ । ଓଡ଼ିଶାର ଦାସ ସଂଜ୍ଞକ ଶତ ଶତ ସଂଖ୍ୟକ ସାଧୁ ଓ କବି ସମସ୍ତେ ବୈଷ୍ଣବ । ଏହି ଦୃଷ୍ଟିରୁ ସାରଳା ଦାସ ବୈଷ୍ଣବ ନ ହୋଇ ଦାସ ବୋଲାଇବା ବିଶ୍ୱାସଯୋଗ୍ୟ ନୁହେଁ । ତେଣୁ ସେ ଶାକ୍ତ ଥିଲେ ବୋଲି ଯେଉଁ ମତ ସୁପ୍ରଚାରିତ ତାହାର ସତ୍ୟତା ମୃଗ୍ୟ ।

ସାରଳାଦାସ ତାହାଙ୍କ ଆରାଧ୍ୟା ଦେବୀ 'ପରମ ବଇଷ୍ଣବୀ' ବୋଲି ଅନେକ ସ୍ଥାନରେ ସ୍ପଷ୍ଟ ଲେଖିଛନ୍ତି (ଆଦି ୪) । ସେହି ଦେବୀ ପୁଣି ବାଗ୍‌ଦେବୀ ସରସ୍ୱତୀ ଯେକି କବିଙ୍କ ଭାଷାରେ 'ବିଷ୍ଣୁଙ୍କ ପାଟରାଣୀ' । କବି ମହାଭାରତକୁ ତ ସର୍ବାଂଶରେ ବିଷ୍ଣୁଙ୍କ ଚରିତ ରୂପେ ଗ୍ରହଣ କରିଛନ୍ତି, ଏପରିକି ତାହାକୁ ପ୍ରାୟ ସର୍ବତ୍ର 'ବିଷ୍ଣୁ ପୁରାଣ' ନାମରେ ଅଭିହିତ କରିଛନ୍ତି (ମଧ୍ୟ ୩୨୯, ୩୩୦, ୬୪୯, ୬୫୦, ୮୨୮; ସଭା ୨୧୪), ସେ ପରବର୍ତ୍ତୀ ସମୟରେ ଚଣ୍ଡୀପୁରାଣ ଲେଖିଲାବେଳେ ଚଣ୍ଡୀପୁରାଣକୁ ମଧ୍ୟ 'ଭାଗବତ ବିଷ୍ଣୁଚରିତ୍ର' ଓ ଶ୍ରୀ ବିଷ୍ଣୁପୁରାଣ' ଆଖ୍ୟା ଦେଇ ସ୍ୱୀୟ ବୈଷ୍ଣବତ୍ୱର ପ୍ରମାଣ ଦେଇଛନ୍ତି । ଏଣୁ ଅନୁମିତ ହେଉଛି ଯେ ସାରଳାଦାସଙ୍କ ମତରେ ତାଙ୍କ ଆରାଧ୍ୟାଦେବୀ ଶାକ୍ତ ନୁହନ୍ତି, ସେ ବୈଷ୍ଣବୀ, ବିଷ୍ଣୁଶକ୍ତି । ସେ ସ୍ୱୟଂ ନାରାୟଣୀ —

ସିଦ୍ଧ ସାଧବୀ ଗୋ ଜଙ୍ଖେରପୁର ମଣ୍ଡଣୀ ।
ଶ୍ରୀ ସାରୋଳା ଚଣ୍ଡୀ ଗୋ ପ୍ରସନ୍ନ ନାରାୟେଣୀ ।। (ବନ ୨୫)

ଲକ୍ଷ୍ମୀ ଓ ସରସ୍ୱତୀ ବିଷ୍ଣୁଙ୍କର ଦୁଇ ପତ୍ନୀ; ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରୀ ଏହି ବିଶ୍ୱାସ ଓଡ଼ିଶାରେ ସୁପ୍ରଚଳିତ ଅପିତୁ ଭାରତର ଅନ୍ୟାନ୍ୟ ପ୍ରଦେଶରେ ସରସ୍ୱତୀ ବ୍ରହ୍ମାଙ୍କ ପତ୍ନୀ ବୋଲି ସାଧାରଣତଃ ଗୃହୀତ ହୁଅନ୍ତି । ସାରଳାଦାସ ଓ ପରବର୍ତ୍ତୀ ଓଡ଼ିଆ କବିମାନେ ସରସ୍ୱତୀଙ୍କୁ ବିଷ୍ଣୁଙ୍କର ଅନ୍ୟତରା ପତ୍ନୀ ରୂପେ ଗ୍ରହଣ କରିଛନ୍ତି । ସାରଳାଦାସ ନିଜ ଗ୍ରାମର ଦେବୀ ସାରୋଳଚଣ୍ଡୀଙ୍କୁ ବାଗ୍‌ଦେବୀ ସରସ୍ୱତୀଙ୍କ ସହିତ ଚିହ୍ନଟ କରାଇ ନିଜେ ତାହାଙ୍କ ଠାରୁ ବରପ୍ରସାଦ ପାଇ କବି ହୋଇପାରିଛନ୍ତି ବୋଲି ପ୍ରକାଶ କରିବା ଦ୍ୱାରା ତାହାଙ୍କର ବୈଷ୍ଣବତ୍ୱ ହ୍ରାସ ପାଉନାହିଁ, ବରଂ ଗୁଣୀଭୂତ ହେଉଛି । ଗ୍ରାମଦେବୀଙ୍କୁ ସରସ୍ୱତୀ କରାଇ ଦେବା ବୈଷ୍ଣବସୁଲଭ ମନୋଭାବ ବୋଲି ବୋଧହୁଏ ।

ସାରଳା ଦାସଙ୍କ ସମୟର ଅନ୍ତତଃ ଅଢ଼େଇ ଶହ ବର୍ଷ ପୂର୍ବରୁ ଓଡ଼ିଶାରେ ଶ୍ରୀ ଜଗନ୍ନାଥ-କୈନ୍ଦ୍ରିକ ବୈଷ୍ଣବ ଧର୍ମ ଅନେକ ମାତ୍ରାରେ ଶୈବ ଓ ଶାକ୍ତଧର୍ମକୁ ଆତ୍ମସାତ୍ କରି ଗଢ଼ି ଉଠି ଥିଲାଣି । ବିଭିନ୍ନ ଧର୍ମମତ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ଥିଲା ଜଗନ୍ନାଥକୈନ୍ଦ୍ରିକ ବୈଷ୍ଣବଧର୍ମର ବିଶେଷତ୍ୱ । ଜଗନ୍ନାଥଙ୍କ ସାଙ୍ଗକୁ ରତ୍ନବେଦୀରେ

ବଳଭଦ୍ର ଓ ସୁଭଦ୍ରା ପୂଜା ପାଆନ୍ତି । ଜଗନ୍ନାଥ ବିଷ୍ଣୁସ୍ୱରୂପ, ବଳଭଦ୍ର ଶିବରୂପ ଓ ସୁଭଦ୍ରା ଶକ୍ତିରୂପିଣୀ । ଏହି ପ୍ରକାରେ ରତ୍ନବେଦୀରେ ଭାରତର ତିନି ପ୍ରମୁଖ ଧର୍ମମତ ବୈଷ୍ଣବ-ଶୈବ-ଶାକ୍ତର ସମନ୍ୱୟ ଓ ସହାବସ୍ଥାନ ରୂପାୟିତ ହୋଇଛି । ଏ ପ୍ରକାର ସମନ୍ୱୟରେ ଜଗନ୍ନାଥ-ବିଷ୍ଣୁଙ୍କ ପ୍ରାଧାନ୍ୟ ସର୍ବଥା ସ୍ୱୀକୃତ । ସାରଳାଦାସ ମଧ୍ୟ ବୈଷ୍ଣବ ମତକୁ ପ୍ରାଧାନ୍ୟ ଦେଲେ ହେଁ ସମନ୍ୱୟବାଦୀ ବିଚାରର ପୋଷକ ଥିଲେ । ସେ ଦେବୀଙ୍କଠାରୁ ବରଲାଭ କରିଥିବା ବିଷୟଟିକୁ ଏହି ଦୃଷ୍ଟିକୋଣରୁ ଦେଖିବା ଉଚିତ । କବିତ୍ୱ-ଶକ୍ତି-ଦାୟିନୀ ଶକ୍ତି ଯେ ବାଗ୍‌ଦେବୀ ସରସ୍ୱତୀ ହେବେ ଏଥିରେ କିଛି ବିଶେଷତ୍ୱ ନାହିଁ । ବିଶେଷତ୍ୱ ହେଉଛି, ସାରଳାଦାସ ନିଜ ଗ୍ରାମର ଦେବୀ 'ସାରୋ଼ଳଚଣ୍ଡୀ'ଙ୍କୁ ବାଗ୍‌ଦେବୀଙ୍କ ସହିତ ଚିହ୍ନଟ କରିବାରେ ଓ ଚଣ୍ଡୀଙ୍କୁ ବୈଷ୍ଣବୀ ବୋଲି କହିବାରେ । ଏଥିରେ ସାରଳାଦାସଙ୍କର ବୈଷ୍ଣବସୁଲଭ ମନୋଭାବ ହିଁ ପ୍ରକାଶ ପାଉଛି ।

ସାରଳା ଦାସ ଜାତିସ୍ମର ଭାବରେ ମହାଭାରତ ଓ ଚଣ୍ଡୀପୁରାଣରେ ନିଜର ପୂର୍ବ ଜନ୍ମର ଚରିତ ପ୍ରକାଶ କରିଛନ୍ତି । ସେ ମହାଭାରତରେ କହିଛନ୍ତି ଯେ ସେ ମୂଳରେ ଥିଲେ ଶିବଙ୍କ ଭୁବନ କୈଳାସର ପୂର୍ବଦ୍ୱାରର ଏକତର ରକ୍ଷକ ନନ୍ଦୀ ବା ନନ୍ଦୀକେଶ୍ୱର । (ଗୋଟିଏ ତାଳପତ୍ର ପୋଥିରେ ସାରଳାଦାସ ପଶ୍ଚିମଦ୍ୱାରର ଦ୍ୱାରପାଳ ଥିବା ବିଷୟ ଓ ତାଙ୍କୁ ଗୌରୀ ଶାପ ଦେବାର କାରଣ ଭିନ୍ନ ଭାବରେ ଲେଖାଅଛି— ଆଦି ୧୦୩୯)

କପିଳାସ କନ୍ଦର ସିଂହଦ୍ୱାରେ ମୁଁ ଦ୍ୱାରପାଳ ।
ଗିରିଜାର ଶାପେ ମୁଁ ଜନମିଲି ମହିଥଳ ।। (ମଧ୍ୟ ୮୨୭)
ମୁହିଁ ରୁଦ୍ରଗଣ ନନ୍ଦୀକେଶ୍ୱର କଳା ।
ଶୂଦ୍ରମୁନି ସାରୋଳାଦାସ ରୁଦ୍ରଗଣ ସଙ୍ଗେ ମେଳା ।। (ବିରାଟ ୯୬)

ପାର୍ବତୀ ନନ୍ଦୀଙ୍କ ପ୍ରତି ରୁଷ୍ଟ ହୋଇ ଶାପ ଦେବାରୁ କବି ମାନବ ଜନ୍ମ ଲାଭ କଲେ । ଗୋଟିଏ ବିବରଣ ଅନୁସାରେ ପାର୍ବତୀ ରୁଷ୍ଟ ହେବାର କାରଣ ଥିଲା ନନ୍ଦୀ ଆଗମଶାସ୍ତ୍ର ଅନୁସାରେ ଶିବପାର୍ବତୀଙ୍କ ଯୁଗଳ ମୂର୍ତ୍ତିର ଉପାସନା କରିଥିଲେ —

କୈଳାସ ଦ୍ୱାରପାଳ ନାମ ମୋର ନନ୍ଦୀ ।
ଶାସ୍ତ୍ରର ଆଗମେ ହରଗଉରାଙ୍କୁ ବନ୍ଦି ।। (ଶ୍ରୀ ଭାରତଦର୍ପଣ ୨୯୯)

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ପାଠରେ ମଧ୍ୟ ଏହାର ସୂଚନା ମିଳେ (ଆଶ୍ରମିକ ୪୫) । ସ୍ଥାନାନ୍ତରେ ଲେଖାଅଛି ଯେ ପାର୍ବତୀ ଶାପ ଦେଇ ନଥିଲେ, ଦେଇ ଥିଲେ ଗଣେଶ । ଶାପର କାରଣ ପାର୍ବତୀ ମହିଷାସୁରକୁ ବଧ କରିବାବେଳେ ଉଲଗ୍ନ ହୋଇଥିବା ବିଷୟ ନନ୍ଦୀ ପ୍ରକଟ କରିଥିଲେ (ସ୍ୱର୍ଗାରୋହଣ ୨୨) । ଶାକ୍ତ ଓ ଶୈବ ଆଗମ ଶାସ୍ତ୍ରରେ ସାଧନାର ଅଙ୍ଗ ଭାବରେ ନରନାରୀ ମୈଥୁନ ସ୍ୱୀକୃତ ହୁଏ ଓ ତାହାର ପ୍ରତୀକ ଶିବ-ପାର୍ବତୀ ଯୁଗନଦ୍ଧ ମୂର୍ତ୍ତି । ଏହାକୁ ବର୍ଣ୍ଣନା କରିବାରୁ କବି

ଶାପଗ୍ରସ୍ତ ବୋଲି ସ୍ୱୀକାର କରୁଥିବାରୁ ସଂକେତ ମିଳୁଛି ଯେ ସେ ବାମାଚାରୀ ଆଗମଶାସ୍ତ୍ରୀୟ ମତର ବିରୋଧୀ ଥିଲେ ।

କବି ମାନବ ଜନ୍ମ ଲାଭ କରି ଦେବୀଙ୍କ ଭକ୍ତ ହୋଇଛନ୍ତି ଓ ଦେବୀଙ୍କ କୃପାବଶତଃ ବିଷ୍ଣୁ ମହିମା ପ୍ରଖ୍ୟାତ କରି ଗ୍ରନ୍ଥ ରଚନା କରିଛନ୍ତି । ଏ ଦୃଷ୍ଟିରୁ ଦେଖିଲେ ମହାଭାରତର କବି ସାରଳାଦାସ ନିଜ ଭିତରେ ଶୈବ (ଶିବାନୁଚର ନନ୍ଦୀ), ଶାକ୍ତ (ଦେବୀବରଲବ୍ଧ) ଓ ବୈଷ୍ଣବ (ବୈଷ୍ଣବ କାବ୍ୟକାର) ତ୍ରିବିଧ ଚେତନାର ମିଳନ ଘଟାଇ ଜଗନ୍ନାଥ ଧର୍ମର ଶୈବ (ବଳଭଦ୍ର), ଶାକ୍ତ (ସୁଭଦ୍ରା), ବୈଷ୍ଣବ (ପୁରୁଷୋତ୍ତମ) ସମନ୍ୱୟାତ୍ମକ ମତକୁ ସଞ୍ଚିତ କରିଥିବା ସ୍ପଷ୍ଟ ହେଉଛି । ତେଣୁ କବି ସାରଳାଦାସ ଜଣେ ଶାକ୍ତ ଥିଲେ ବୋଲି ଆଲୋଚକମାନେ ଅବିଚାରିତ ଭାବରେ ଗ୍ରହଣ କରି ନେଉଥିବା ('ସାରଳା ଶାକ୍ତ ଥିଲେ'– ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ.୧୬୩) ମତର ସଂଶୋଧନ ଆବଶ୍ୟକ ।

କୌତୂହଳର ବିଷୟ, ସାରଳାଦାସ ମହାଭାରତ ରଚନା ପରେ ଚଣ୍ଡୀପୁରାଣ ଲେଖିବା ବେଳକୁ ନିଜର ଜାତିସ୍ମରଣର ବିବରଣକୁ ବଦଳାଇ ଦେଇଛନ୍ତି । ସେହି ପରିବର୍ତ୍ତନର ପ୍ରୟୋଜନ ଓ ତାତ୍ପର୍ଯ୍ୟ ବିଷୟର ଚର୍ଚ୍ଚା ପଞ୍ଚମ ଅଧ୍ୟାୟରେ ଜାତିସ୍ମରଣ ଓ ଦେବୀପ୍ରସାଦ ପ୍ରସଙ୍ଗରେ କରାଯିବ ।

## ଦେବୀଙ୍କ ଅବତାର

ଅବତାର ପରିକଳ୍ପନା ମୂଳତଃ ବୈଷ୍ଣବଧର୍ମ ସହିତ ଜଡ଼ିତ । ସାରଳାଦାସ ମହାଭାରତର ଭିନ୍ନ ଭିନ୍ନ ସ୍ଥାନରେ ସିଦ୍ଧ ସାରୋଳଚଣ୍ଡୀଙ୍କର ସୁଦୀର୍ଘ ପୌରାଣିକ ଇତିବୃତ୍ତ ବର୍ଣ୍ଣନା କରିଛନ୍ତି । ଏଠାରେ ଉଲ୍ଲେଖ କରିବା ଅନାବଶ୍ୟକ ଯେ ଏହି ଇତିବୃତ୍ତ କୌଣସି ପ୍ରାଚୀନ ଗ୍ରନ୍ଥର ବିବରଣ ଉପରେ ଆଧାରିତ ନୁହେଁ । ଏହା ସାରଳାଦାସଙ୍କର ଉର୍ବର କଳ୍ପନାକ୍ଷେତ୍ର ପ୍ରସୂତ ବର୍ଣ୍ଣନା ମାତ୍ର । ସେ ବିଷ୍ଣୁଙ୍କର ସୁବିଦିତ ଦଶ ଅବତାର ଢାଞ୍ଚାରେ ଦେବୀଙ୍କର ଦଶ ଅବତାର ଅବଧାରଣ କରିଛନ୍ତି । କବିଙ୍କ ବରଦାତ୍ରୀ ସିଦ୍ଧ ସାରୋଳା ହେଉଛନ୍ତି ଦେବୀଙ୍କର ଦଶମ (ଶେଷ) ଅବତାର । ଦଶଟିଯାକ ଅବତାରର ସଂକ୍ଷିପ୍ତ ପରିଚୟ ଦେବାକୁ ଯାଇ କବି ଲେଖିଛନ୍ତି –

ନମସ୍ତେ କାନ୍ତାନୀ ଗୋ ଅଭୟେ ପିଙ୍ଗଳାକ୍ଷୀ ।
ମାୟା ମୋହିନୀ ଗୋ ଚଞ୍ଚଳା କାମାକ୍ଷୀ ।।
ପ୍ରଥମ ଅବତାରେ ମାଗୋ କେତୁକା ମୂରତି ।
ଦ୍ୱିଜ ଅବତାରେ ଏକବଳା ପାର୍ବତୀ ।।
ତୃତୀୟ ଅବତାରେ ଦକ୍ଷ ଘରେ ଉମା ।
ଚତୁର୍ଥ ଅବତାରେ ପାର୍ବତୀ ରୁଦ୍ରବାମା ।।

ପଞ୍ଚମ ଅବତାରେ ହିମବନ୍ତର ଦୋହିତା ।
ରୁଦ୍ର ବରି ନାମ ବହିଲୁ ଗିରିଜା ଗୋ ମାତା ।।
ଷଷ୍ଠ ଅବତାରେ ଗୋ କୃପାଜଳ ଘରେ ।
ନର୍ମଦା ସରସ୍ୱତୀ ନାମ ବହିଲୁ ମର୍ତ୍ତ୍ୟପୁରେ ।।
ସପ୍ତମ ଅବତାରେ ଗୋ ପୁଷ୍କରର ଘରେ ।
ଗୋକୁଳେ ବଢ଼ିଲୁ ଗୋ ସାରଦା ଅବତାରେ ।।
ଅଷ୍ଟମ ଅବତାରେ ପର୍ଶୁରାମ ବଚନେ ।
ସର୍ବମଙ୍ଗଳା ଅବତାର ହୋଇଲୁ ମଧ୍ୟ ଭୁବନେ ।।
ନବମ ଅବତାରେ ଗୋ ପ୍ରସନ୍ନ ହିଙ୍ଗୁଳା ।
ବାଳୁତ ରୂପେ ଭଗ୍ନୀ ପ୍ରସନ୍ନ ମତିଭୋଳା ।।
ଦଶମ ଅବତାରେ ଅଜପତି କିରାତର ଘରେ ।
ସିଦ୍ଧ ସାରୋଳା ନାମ ବହିଲୁ ଗୋ ଯେ କଳିଯୁଗରେ । (୨ ସଭା ୧୧୩)

ମହାଭାରତର ଭିନ୍ନ ଭିନ୍ନ ସ୍ଥାନରେ କବି ଦେବୀଙ୍କ ଦଶ ଅବତାରର କିଛି କିଛି ଅଧିକ ପରିଚୟ ଦେଇଛନ୍ତି, ଯାହା ପାଠ କଲେ ଉଦ୍ଧୃତିରେ ଥିବା ଅଶୁଦ୍ଧିର ସଂଶୋଧନ ସମ୍ଭବ ହେଉଛି । କବିଙ୍କର ନବ ନବ ଇତିହ (Myth) ଉଦ୍ଭାବନ-ପଟୁ କଳ୍ପନାଶକ୍ତି ଦେବୀଙ୍କର ଦଶାବତାରର ବିବରଣ ନିମ୍ନଲିଖିତ ଭାବରେ ପ୍ରଦାନ କରିଛି —

### ୧. କେତୁକା

ସୃଷ୍ଟିର ପୂର୍ବେ ମହାପ୍ରଳୟ କାଳରେ ନାରାୟଣଙ୍କର ନେତ୍ରବାରିରୁ ପନ୍ଦର ଜଣ ବ୍ରହ୍ମା ଜନ୍ମିଲେ । ବ୍ରହ୍ମାମାନେ ସରସ୍ୱତୀଙ୍କ ରୂପଲାବଣ୍ୟ ଦେଖି କାମାସକ୍ତ ହେଲେ ଓ ରମଣ କରିବାକୁ ଉଦ୍ୟତ ହେଲେ । ସରସ୍ୱତୀ ବ୍ରହ୍ମାମାନଙ୍କ ପ୍ରତି ରୋଷାୟିତ କଟାକ୍ଷପାତ କରିବାରୁ ତହିଁରୁ ଏକ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଜନ୍ମିଲା । ସରସ୍ୱତୀ ଏହି କନ୍ୟାକୁ 'କେ ତୁ' (ତୁ କିଏ ?) ବୋଲି ପଚାରିଲେ । ତେଣୁ ସେହି କନ୍ୟାର ନାମ ହେଲା କେତୁକା । କେତୁକା ସରସ୍ୱତୀଙ୍କୁ ମାଗିଲା 'ମୋତେ ଆହାର ଦିଅ' । ସରସ୍ୱତୀ ବ୍ରହ୍ମାମାନଙ୍କୁ ଦେଖାଇ କହିଲେ 'ଏମାନଙ୍କୁ ଖାଆ' । କେତୁକା ବ୍ରହ୍ମାମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଧରି ଗୋଟିଏ ପରେ ଗୋଟିଏ ଖାଇ ଲାଗିଲା । ପ୍ରତି ହଜାରେ ବର୍ଷରେ ଗୋଟିଏ ଲେଖା ବ୍ରହ୍ମାଙ୍କୁ ଖାଇ ସେ ୧୪ ହଜାର ବର୍ଷରେ ୧୪ଟି ବ୍ରହ୍ମାଙ୍କୁ ଖାଇଗଲା । ଶେଷକୁ ରହିଲେ ଶୂଦ୍ରକ ନାମଧେୟ ବ୍ରହ୍ମା, ଯେକି ବ୍ରହ୍ମାମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ । କେତୁକା ଖାଇବା ପାଇଁ ଶୂଦ୍ରକକୁ ଧରିବାକୁ ଗୋଡ଼ାଉଥାଏ । ଶୂଦ୍ରକ ବ୍ରହ୍ମା ପ୍ରାଣ ବିକଳରେ ନାରାୟଣଙ୍କ ଶରଣାପନ୍ନ ହେଲେ । ନାରାୟଣ କେତୁକାକୁ କହିଲେ — 'ଏ ମୋର ଶରଣ ପଶିଛି, ବର୍ତ୍ତମାନ ଏହାକୁ ଖାଅ ନାହିଁ । ଦ୍ୱାପ୍ର ଯୁଗରେ ଖାଇବୁ ।' ଦ୍ୱାପର ଯୁଗରେ କେତୁକା ଦ୍ରୌପଦୀ ରୂପରେ

ଓ ଶୂଦ୍ରକ ବ୍ରହ୍ମା ଦୁଃଶାସନ ରୂପରେ ଜାତ ହୋଇଥିଲେ (ଆଦି ୯୧୮, ୨ ସଭା ୫୧୨, ବିରାଟ ୨୯୩ ଓ ଅନ୍ୟତ୍ର)। କେତୁକା ବିଷ୍ଣୁପତ୍ନୀ ସରସ୍ୱତୀଙ୍କ ଅଂଶୀ ହୋଇଥିବା ଓ ଉପାଖ୍ୟାନରେ ବିଷ୍ଣୁଙ୍କ ପ୍ରାଧାନ୍ୟ ସ୍ୱୀକୃତ ହୋଇଥିବା କଥା ଲକ୍ଷ୍ୟ କରାଯାଇପାରେ। ଏହା ମଧ୍ୟ ସାରଳାଦାସଙ୍କର ବୈଷ୍ଣବସୁଲଭ ମନୋଭାବର ନିଦର୍ଶନ। କେତୁକାଙ୍କ ଦାସୀ ଉଗ୍ରତାରା ଅନୁରୂପ ଭାବରେ ବିଭିନ୍ନ ଅବତାର ହୋଇ ଦେବୀଙ୍କର ବିଭିନ୍ନ ଅବତାରର ପରିଚାରିକା ହେବା କଳ୍ପନା ମଧ୍ୟ କବି କରିଛନ୍ତି। ଉଗ୍ରତାରା କାଉଁରୀମାଳତୀ ରୂପେ ଏକବଳା ପାର୍ବତୀଙ୍କର, ପ୍ରିୟଂବଦା ରୂପେ ଶଚୀ (ସତୀ)ଙ୍କର ଓ କେଶିନୀ ରୂପେ ଦ୍ରୌପଦୀଙ୍କ ଦାସୀ ହୋଇଥିଲେ (ଆଦି ୮୯୨)।

କେତୁକା, ଶୂଦ୍ରକ ବ୍ରହ୍ମା ଆଦି ଚରିତ୍ର ଓ ଦ୍ରୌପଦୀ-ଦୁଃଶାସନଙ୍କ ପୂର୍ବଜନ୍ମ ଚରିତ ସାରଳାଦାସଙ୍କର ନିଜସ୍ୱ କଳ୍ପନା-ପ୍ରସୂତ।

## ୨. ଏକବଳା ପାର୍ବତୀ

ଏକବଳା ପାର୍ବତୀ ଗୋମାତା କପିଳାଙ୍କ କନ୍ୟା। ସେ ବିବାହ କରିଥିଲେ ସୋମେକ ରୁଦ୍ରଙ୍କୁ। ଏକବଳା ପାର୍ବତୀଙ୍କର ପଞ୍ଚାବନ କୋଟି ରକ୍ତବର୍ଣ୍ଣ ପାଟଶାଢ଼ି ଥିଲା। ସୂର୍ଯ୍ୟ ତାହାଙ୍କ ପୁତ୍ର ଶନିଙ୍କ ବିବାହ ସୋମଦାସ ଗନ୍ଧର୍ବଙ୍କ କନ୍ୟା ଲୋହିତା ସହିତ କରିବାକୁ ପ୍ରସ୍ତାବ କଲେ (କର୍ଣ୍ଣପର୍ବ, ପୃ. ୧୦୯ରେ ସୋମଦାସ ଗନ୍ଧର୍ବ ସ୍ଥାନରେ ବିଦ୍ୟାଧର ବ୍ରାହ୍ମଣ ନାମ ଲେଖାଅଛି)। ସୋମଦାସ ସୂର୍ଯ୍ୟଙ୍କ ଅନୁରୋଧ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରିପାରିଲେ ନାହିଁ। ତେଣୁ ସେ ଏକ ଦୁଃସାଧ୍ୟ ସର୍ତ୍ତ ବାଢ଼ିଲେ ! "ମୋ ଝିଅ ଲୋହିତା ଶନିଙ୍କ ଦୃଷ୍ଟିକୁ ସହି ପାରିବ ନାହିଁ, ରକ୍ତବର୍ଣ୍ଣ ଦେଖିଲେ ଶନି ଶାନ୍ତ ହୁଅନ୍ତି। ତୁମେ ଯଦି ଲୋହିତା ପାଇଁ ପଞ୍ଚାବନ କୋଟି ରକ୍ତବର୍ଣ୍ଣ ପାଟଶାଢ଼ି ଯୋଗାଡ଼ କରିପାରିବ ତେବେ ଯାଇ ସେ ତାହା ପିନ୍ଧି ଶନିଙ୍କୁ ବିବାହ କରିବ। ସୂର୍ଯ୍ୟ ଅନୁସନ୍ଧାନ କରି ଜାଣିଲେ ଯେ ଏତେ ସଂଖ୍ୟକ ନାଲି ପାଟଶାଢ଼ି କେବଳ ଏକବଳା ପାର୍ବତୀଙ୍କ ପାଖରେ ମିଳିପାରିବ। ସେ ତାଙ୍କର ଆବଶ୍ୟକତା ଜଣାଇ ଏକବଳା ପାର୍ବତୀଙ୍କୁ ଶାଢ଼ି ମାଗିଲେ। ଏକବଳା କହିଲେ – "ମୁଁ ଏହାକୁ ସଞ୍ଚୟ କରି ରଖିଛି। ମୋର ଯେତେବେଳେ ଆବଶ୍ୟକ ହେବ ସେତେବେଳେ ତୁମେ ଏହାକୁ ଫେରାଇବ ବୋଲି ପ୍ରତିଜ୍ଞା କଲେ ହିଁ ମୁଁ ଶାଢ଼ି ଦେବି।" ଏହି ସର୍ତ୍ତକୁ ସ୍ୱୀକାର କରି ସୂର୍ଯ୍ୟ ଏକବଳାଙ୍କଠାରୁ ଶାଢ଼ି ନେଇ ଶନିଙ୍କ ବିବାହ ସଂପାଦନ କରିଥିଲେ (୨ ସଭା ୫୧୪)। ଏକବଳା ପାର୍ବତୀ ଦ୍ୱାପର ଯୁଗରେ ଦ୍ରୁପଦରାଜାଙ୍କ କନ୍ୟା ଦ୍ରୌପଦୀ ଭାବରେ ଜନ୍ମିଥିଲେ। କୁରୁସଭାରେ ଦୁଃଶାସନ ଦ୍ରୌପଦୀଙ୍କ ବସ୍ତ୍ରହରଣ କରି ବିବସ୍ତ୍ରା କରିବାକୁ ଗଲାବେଳେ ଦ୍ରୌପଦୀ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରିବାରୁ ସୂର୍ଯ୍ୟ ଉଧାର ନେଇଥିବା ପଞ୍ଚାବନ କୋଟି ନାଲି ଶାଢ଼ି ଦ୍ରୌପଦୀଙ୍କୁ ଫେରାଇଥିଲେ।

ଏକବଳା ପାର୍ବତୀ ଚରିତ୍ରଟି ମଧ୍ୟ ସାରଳାଦାସଙ୍କ ଉଦ୍ଭାବନ । ମହାଭାରତର ଚରିତ ସହିତ ଏକବଳା ଚରିତକୁ କବି ଚମତ୍କାର ଭାବରେ ସଂଯୁକ୍ତ କରିଛନ୍ତି । ଏକ ସମୟରେ ମହାଦେବ ସ୍ୱପତ୍ନୀଙ୍କ ଅନ୍ୱେଷଣରେ ନାନାବିଧ ରୂପ ଧରି ଚତୁର୍ଦ୍ଦିଗ ଘୂରି ବୁଲୁଥିଲେ । ଥରେ ସେ ପାଞ୍ଚୋଟି ଷଣ୍ଢ ରୂପ ଧରି ବୁଲୁଥାନ୍ତି । ଏକବଳାଙ୍କ ମାତା କପିଳା ଏହି ପାଞ୍ଚୋଟି ଷଣ୍ଢଙ୍କୁ ଦେଖି ତାଙ୍କ ପଛେ ପଛେ ବୁଲିଲେ । ଏହି ଦୃଶ୍ୟ ଏକବଳାଙ୍କ ପତି ସୋମେକ ରୁଦ୍ରଙ୍କ ନଜରରେ ପଡ଼ିଲା । ସୋମେକ ରୁଦ୍ର ଏକବଳାଙ୍କ ପାଖରେ ଅଭିଯୋଗ କରି କହିଲେ – ''ଦେଖ୍, ତୋ ମା' କପିଳା ଅସତୀଟାଏ । ଗୋଟିଏ ଷଣ୍ଢକୁ ସିନା 'ଶୃଙ୍ଗାର' ଦେବ, ଏତେ ଷଣ୍ଢଙ୍କୁ ଭଣ୍ଡୁଛି'' । ଏକବଳା ଏହା ଶୁଣି ମାତାଙ୍କ ପାଖକୁ ଯାଇ ସେ ଅସତୀ ବୋଲି କହି ଭର୍ତ୍ସନା କଲେ । କପିଳା ଏକବଳାଙ୍କ ଉପରେ ରାଗି ଯାଇ ତାଙ୍କୁ ଶାପ ଦେଇ କହିଥିଲେ – 'ମହାଦେବ ନିରଞ୍ଜନ ପୁରୁଷ, ସେ ମୋର ବଡ଼ଭାଇ । ତାହାଙ୍କର ପଞ୍ଚଆତ୍ମା ପଞ୍ଚଷଣ୍ଢ ହୋଇ ମୋ ପାଖରେ ରହିବାରୁ ତୁ ପ୍ରକୃତ କଥା ନ ବୁଝି ମୋତେ ଅସତୀ ବୋଲି କହିଲୁ, ତୋର ନିଜର ପାଞ୍ଚୋଟି ପତି ହୁଅନ୍ତୁ ।' ଏପରି ଶାପ ହେତୁରୁ ଏକବଳା ପାର୍ବତୀ ଦ୍ୱାପର ଯୁଗରେ ଦ୍ରୌପଦୀ ହୋଇ ଜନ୍ମିଲେ ଓ ପାଞ୍ଚଜଣଙ୍କୁ ବିବାହ କଲେ । ବଡ଼ ଭାଇଙ୍କୁ କପିଳାଙ୍କ ପତି ବୋଲି କହିଥିବାରୁ ଏକବଳା ପାର୍ବତୀଙ୍କ ପତି ସୋମେକ ରୁଦ୍ର ଦ୍ରୌପଦୀଙ୍କ ବଡ଼ ଭାଇ ଧୃଷ୍ଟଦ୍ୟୁମ୍ନ ରୂପରେ ଜାତ ହୋଇଥିଲେ (୨ ସଭା ୨୭୨) । ଅନ୍ୟତ୍ର ସାରଳାଦାସ ବସୁଦେବଙ୍କ ଦୁଇପତ୍ନୀ ରୋହିଣୀ ଓ ଦେବକୀ ଏକବଳା ପାର୍ବତୀଙ୍କର ଦୁଇକନ୍ୟା ବୋଲି ଚିହ୍ନାଇଛନ୍ତି (ମଧ ୨୭୯) ।

## ୩. ଉମା

ଉମା ଦକ୍ଷପ୍ରଜାପତିଙ୍କର ବହୁ କନ୍ୟା ମଧ୍ୟରୁ ଜଣେ । ସେ ମହାଦେବଙ୍କୁ ବିବାହ କରିଥିଲେ । ଦକ୍ଷଙ୍କ ଦ୍ୱାରା ଆୟୋଜିତ ବିରାଟ ଯଜ୍ଞରେ ମହାଦେବଙ୍କୁ ଅବଜ୍ଞା କରାଯିବାରୁ ଉମା ଅପମାନ ସହି ନପାରି ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେଲେ । ଏହି ଆଖ୍ୟାନ ସବୁ ପୁରାଣରେ ବର୍ଣ୍ଣିତ ହୋଇଛି । ଉମାଙ୍କର ଅର୍ଦ୍ଧଦଗ୍ଧ ପିଣ୍ଡକୁ କାନ୍ଧରେ ପକାଇ ମହାଦେବ କ୍ରୋଧାନ୍ୱିତ ହୋଇ ଚତୁର୍ଦ୍ଦିଗ ବୁଲୁଥିବା ବେଳେ ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ଉମାଙ୍କ ମୃତ ଦେହକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । ଉମାଙ୍କ ଦେହଖଣ୍ଡମାନ ଯେଉଁ ସ୍ଥାନରେ ପଡ଼ିଲା, ତାହା ଶକ୍ତିପୀଠ ରୂପେ ପ୍ରସିଦ୍ଧ ହେଲା । ମହାଭାରତର ଅନ୍ୟ କେତେ ସ୍ଥାନରେ (ଆଦି ୯୬୨, କର୍ଣ୍ଣ ୧୦୯ ଆଦି) ତୃତୀୟ ଅବତାରର ନାମ ଉମା ସ୍ଥାନରେ ଶଚୀ ଲେଖାଅଛି । ଇନ୍ଦ୍ରାଣୀ ଶଚୀ ଓ ଉମାଙ୍କ ନାମାନ୍ତର ସତୀ ମଧ୍ୟରେ ନାମର ଉଚ୍ଚାରଣଗତ ନୈକଟ୍ୟ ବୋଧହୁଏ ଏପରି ଦ୍ୱିବିଧ ମତର ହେତୁ । ସଂସ୍କୃତ ପୁରାଣ ମତରେ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେଇଥିବା ଦକ୍ଷକନ୍ୟାଙ୍କ ନାମ ସତୀ ଯେ ପରଜନ୍ମରେ ହିମବନ୍ତ-ନନ୍ଦିନୀ ଉମା ଭାବରେ ଜନ୍ମଲାଭ କରି ଶିବଙ୍କୁ ବିବାହ କରିଥିଲେ ।

## ୪. ଦ୍ରୌପଦୀ

ଉପରେ ଉଦ୍ଧୃତ ସଭାପର୍ବର ଅଂଶରେ 'ଚତୁର୍ଥ ଅବତାରେ ପାର୍ବତୀ ରୁଦ୍ରବାମା' ବୋଲି ମୁଦ୍ରିତ ହୋଇଛି, କିନ୍ତୁ ଏହା ଅଶୁଦ୍ଧ ପାଠ । ସଂପାଦନା ଠିକ୍ ଭାବରେ ହୋଇଥିଲେ ଏ ଅଶୁଦ୍ଧି ଧରାପଡ଼ିଥାନ୍ତା । ଚତୁର୍ଥ ଅବତାର ଦ୍ରୌପଦୀ ବୋଲି ଅନ୍ୟତ୍ର ବହୁ ସ୍ଥାନରେ କୁହାଯାଇଛି (ଆଦି ୮୯୨; ୨ ସଭା ୫୧୧, ୫୧୬; କର୍ଣ୍ଣ ୧୦୯ ଆଦି) ଓ କେତୁକା ଓ ଏକାବଳା ପାର୍ବତୀ ଅବତାରର ଚରିତ ଦ୍ରୌପଦୀଙ୍କୁ ଅବତାର ମଧ୍ୟରେ ଗଣନା ନକଲେ ନିରର୍ଥକ ହୋଇଯିବ । ପୁଣି, ଉଦ୍ଧୃତାଂଶରେ 'ହିମବନ୍ତର ଦୁହିତା' ପାର୍ବତୀ ପଞ୍ଚମ ଅବତାର ବୋଲି ପୁନରାୟ ଉଲ୍ଲିଖିତ । ତେଣୁ, ଚତୁର୍ଥ ଅବତାର 'ପାର୍ବତୀ ରୁଦ୍ରବାମା' ଅଶୁଦ୍ଧ ପାଠ । ଶୁଦ୍ଧ ପାଠ 'ଚତୁର୍ଥ ଅବତାରେ ଦ୍ରୌପଦୀ ପାଣ୍ଡବବାମା' ହେବା ସମୀଚୀନ । ଦ୍ରୌପଦୀ ଦେବୀଙ୍କ ଅବତାର ହେବା କଳ୍ପନା ସାରଳାଦାସଙ୍କ ନିଜସ୍ୱ ।

ଆଦି ଅବତାରେ ସେ କେତୁକା ମୂରତି ।
ଦ୍ୱିତୀୟ ଅବତାରେ ସେ ଏକବଳା ପାର୍ବତୀ ।।
ତୃତୀୟ ଅବତାରେ ସେ ଦକ୍ଷ ଘରେ ଜାତ ।
ଚତୁର୍ଥ ଅବତାରେ ଯେ ଦ୍ରୁପଦ ଦୁହିତ ।। (୨ ସଭା ୫୧୧)

## ୫. ପାର୍ବତୀ

ଏହି ହିମବନ୍ତପର୍ବତ ଦୁହିତା ଗୌରୀ ବା ପାର୍ବତୀ ମହାଦେବଙ୍କୁ ବିବାହ କରିଥିଲେ । ଏହାଙ୍କ ଚରିତ ପ୍ରାୟ ସବୁ ପୁରାଣରେ ସ୍ଥାନ ପାଇଛି । ଏହାଙ୍କ ପରିଚୟ ପ୍ରଦାନ ଅନାବଶ୍ୟକ ।

## ୬. ନର୍ମଦା ସରସ୍ୱତୀ

କେତୁକା ଓ ଏକବଳା ପାର୍ବତୀ ଚରିତ୍ର ପରି ନର୍ମଦା ସରସ୍ୱତୀ ଚରିତ୍ର ମଧ୍ୟ ସାରଳାଦାସଙ୍କ ଉଦ୍ଭଟ କଳ୍ପନାରୁ ଜାତ । ତାହାଙ୍କ ବର୍ଣ୍ଣନା ଅନୁସାରେ ନର୍ମଦା ସରସ୍ୱତୀ ବାଲଖିଲ୍ୟା ବଂଶୀୟ କୃପାଜଳ ଋଷିଙ୍କ କନ୍ୟା । କୃପାଜଳ ଋଷିଙ୍କ ଚରିତ କବି ମହାଭାରତରେ ଅନେକ ସ୍ଥାନରେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଛନ୍ତି । ସେ ଏହି ଋଷିଙ୍କ ବଂଶାବଳୀ ମଧ୍ୟ ଦେଇଛନ୍ତି (ବିରାଟ ୨୧୨) । କୃପାଜଳଙ୍କ ପିତା ଅରୁଣ, ପିତାମହ ବାରୁଣ ଓ ପ୍ରପିତାମହ ଅଜମୀଢ଼ ଋଷି । କୃପାଜଳଙ୍କ ପୁତ୍ର ବୈଶ୍ରମଣ, ପୌତ୍ର ଧ୍ରୁବର ଓ ପ୍ରପୌତ୍ର ଠୁଳ ଋଷି । କଣୟରୁଦ୍ର ରାଜାଙ୍କର ୧୦୮ ପୁଅ କୃପାଜଳ ଋଷିଙ୍କର ଗାଈକୁ ଚୋରାଇ ଘେନିଗଲେ । କୃପାଜଳ ଏ ବିଷୟ ଜାଣିବାରୁ ସେ ସେମାନଙ୍କୁ ଅଭିଶାପ ଦେଲେ ଯେ ଏପରି ହୀନକର୍ମ କରିଥିବାରୁ ସେମାନେ ସମସ୍ତେ ମେହେନ୍ତର ହେବେ (୨ ସଭା ୧୮୪) । ଏହି ମେହେନ୍ତରମାନେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଛେରାପହରା କରି

ଶାପମୁକ୍ତ ହୋଇଥିଲେ । ବିଶ୍ୱାବସୁ ଗନ୍ଧର୍ବଙ୍କ ଜନୈକ ପୁତ୍ର କୃପାଜଳ ଋଷିଙ୍କର ପାଳିତ ଗଣ୍ଡାକୁ ଶିକାର କରି ମାରିବାରୁ ଋଷି ତାହାକୁ ଶାପ ଦେଇଥିଲେ ଯେ ମହାଭାରତ ଯୁଦ୍ଧରେ ସେ କାମପାଳ ଭାବରେ ଯୁଦ୍ଧ କଲାବେଳେ ଭୀଷ୍ମ ତାହାର ଶିରଚ୍ଛେଦନ କରିବେ (ଭୀଷ୍ମ ୨୧୨) । କୃପାଜଳ ଋଷିଙ୍କ ବିଷୟକ ବିଭିନ୍ନ କଥା ସାରଳାଦାସ ଅନ୍ୟତ୍ର ମଧ୍ୟ ଉଲ୍ଲେଖ କରିଛନ୍ତି । କୃପାଜଳଙ୍କ କନ୍ୟା ନର୍ମଦା ସରସ୍ୱତୀ ବହୁ ଯୁଗ ଧରି ଅପ୍ରାପ୍ତରଜସ୍କା ବାଳିକା ରୂପରେ ରହିଥିଲେ । ଅନେକ ଯୁଗ ଗତ ହେବା ପରେ ମଧ୍ୟ ତାହାଙ୍କର ଯୌବନ ପ୍ରାପ୍ତି ନ ହେବାରୁ କୃପାଜଳ ପଚାରିଲେ – ''ଝିଅ ଲୋ, ତୁ ଚାରିଯୁଗ ଧରି ଆଠବର୍ଷର ବାଳିକା ଭଳି ରହିଲୁଣି, ଗୃହଯୋଗ୍ୟା ହେଉ ନାହୁଁ, ମୁଁ ତୋତେ କିପରି ବିବାହ କରାଇବି ?' ନର୍ମଦା ସରସ୍ୱତୀ ପିତାଙ୍କୁ ଜଣାଇଥିଲେ ଯେ ସେ ବାଳୁତ ଭାବରେ ବହୁ ଯୁଗ ରହିବେ, ବିବାହ କରିବେ ନାହିଁ (ଦ୍ରୋଣ ୧୮) । ଉଲ୍ଲେଖନୀୟ ଯେ ଦେବୀଙ୍କ ସୁବିଦିତ ଗୌରୀ ନାମର ଅର୍ଥ ଅମରକୋଶ ଓ ମେଦିନିକୋଶ ଅନୁସାରେ ଅପ୍ରାପ୍ତରଜସ୍କା କନ୍ୟା ଓ ସମ୍ବର୍ତ୍ତସ୍ମୃତି ଅନୁସାରେ ଅଷ୍ଟବର୍ଷୟା କନ୍ୟା ''ଗୌରୀତୁ ନଗ୍ନିକାଽନାଗତାର୍ତ୍ତବା'' (ଅମର); ''ଗୌରୀ ତ୍ୱସଞ୍ଜାତରଜଃ କନ୍ୟା'' (ମେଦିନି); ଅଷ୍ଟବର୍ଷା ଭବେତ୍ ଗୌରୀ (ସମ୍ବର୍ତ୍ତସ୍ମୃତି ୬୬) ।

**୭. ଏକାନଂଶା**

ସଭାପର୍ବର ଉଦ୍ଧୃତାଂଶରେ ଏହାଙ୍କ ନାମ ସାରଦା ବୋଲି ଲେଖାଅଛି । କିନ୍ତୁ କବି ଅନ୍ୟତ୍ର ଅନେକଠାରେ ଏହି ଅବତାରର ନାମ ଆନନ୍ଦନନ୍ଦିନୀ ରଖିଛନ୍ତି (ସଭା ୬୧, ବିରାଟ ୨୧୯) । ନନ୍ଦନନ୍ଦିନୀଙ୍କ ନାମ କବି ଠାଏଁ ରଖିଛନ୍ତି 'ବିଜୁଳି' (ଦ୍ରୋଣ ୩୬୬) । ବସୁଦେବ ନବଜାତ କୃଷ୍ଣଙ୍କୁ ଯଶୋଦାଙ୍କ କୋଳରେ ଥୋଇ ଯଶୋଦାଙ୍କ ସଦ୍ୟୋଜାତା ପୁତ୍ରୀକୁ ବଦଳ ନେଇଥିଲେ । ଏହି ଶିଶୁକନ୍ୟାଟିର ନାମ ଓଡ଼ିଆ ପୁରାଣମାନଙ୍କରେ 'ବିଜୁଳିକନ୍ୟା' ବୋଲି ଦତ୍ତ ଅଛି । ଏହା ସ୍ପଷ୍ଟତଃ ସାରଳାଦାସଙ୍କ ପ୍ରଭାବ । ସଂସ୍କୃତ ପୁରାଣର ବର୍ଣ୍ଣନା ଅନୁସାରେ ଏ ସ୍ୱୟଂ ଦୁର୍ଗା ଯେ କି କଂସ ତାଙ୍କୁ ଶିଳା ଉପରେ କଚାଡ଼ି ଦେବା ପରେ ବିନ୍ଧ୍ୟବାସିନୀ ହେଲେ । ବିନ୍ଧ୍ୟବାସିନୀ ପୀଠ ଆଧୁନିକ ମିର୍ଜାପୁର ନିକଟରେ । କିନ୍ତୁ ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ ଏହି କନ୍ୟା କୃଷ୍ଣଙ୍କ ବୋଲ ମାନି କନକାବତୀ ପାଟଣାକୁ ଯାଇ ରହିଥିଲେ । କନକାବତୀ ପାଟଣା ସାରଳାଦାସଙ୍କର ଗ୍ରାମର ନିକଟବର୍ତ୍ତୀ ଏକ ବଡ଼ ଗ୍ରାମ ଥିବା ଜଣାଯାଏ । ପୁରୀର ଶ୍ରୀମନ୍ଦିରର ସୁଭଦ୍ରା ପ୍ରକୃତରେ ଏହି ନନ୍ଦନନ୍ଦିନୀ କନ୍ୟା ଯେ କି ଭଦ୍ରା, ଏକାନଂଶା ଆଦି ନାମରେ ମଧ୍ୟ ସଂସ୍କୃତ ପୁରାଣରେ କଥିତ ହୁଅନ୍ତି । ସେ କିନ୍ତୁ ଅର୍ଜୁନପତ୍ନୀ ସୁଭଦ୍ରା ନୁହନ୍ତି । ଏକାନଂଶା ବା ବିଜୁଳିକନ୍ୟା ଦୁର୍ଗାଙ୍କ ରୂପ; ସାରଳାଦାସ ତାହାଙ୍କୁ ସାରୋଳଚଣ୍ଡୀଙ୍କର ସପ୍ତମ ଅବତାର କରିଛନ୍ତି । ଏକାନଂଶା ଦୁର୍ଗା ହେଲେ ହେଁ ବିଷ୍ଣୁଙ୍କ କାର୍ଯ୍ୟ ଉପଲକ୍ଷେ ଅବତୀର୍ଣ୍ଣ ହୋଇଥିଲେ । ଦୁର୍ଗା ସାରଦା ନାମରେ

ମଧ୍ୟ ପରିଚିତ । ସାରଳାଦାସ ''ଗୋକୁଳେ ବଢ଼ିଲୁ ଗୋ ସାରଦା ଅବତାରେ'' (୨ ସଭା ୧.୧୩) ଲେଖିଥିବାରୁ ସାରଦା ହିଁ ଏକାନଂଶା ବୋଲି ଜଣାଯାଉଛି । 'ବଢ଼ିଲୁ' ଶବ୍ଦର ଶୁଦ୍ଧ ପାଠ 'ଛାଡ଼ିଲୁ' ହେବା ସମ୍ଭବ ।

## ୮. ମଙ୍ଗଳା

ମଙ୍ଗଳା (ନାମାନ୍ତର ସର୍ବମଙ୍ଗଳା) ଶୁକ୍ରରାଜାଙ୍କ ଦୁହିତା । ସାରଳାଦାସ ଏହାଙ୍କୁ ନନ୍ଦନନ୍ଦିନୀଙ୍କ ପୂର୍ବବର୍ତ୍ତୀ ଅବତାର ଭାବରେ ସ୍ଥାନାନ୍ତରେ ବର୍ଣ୍ଣିଛନ୍ତି (ଦ୍ରୋଣ ୧୮) ଓ ତାହା ଅଧିକତର ଯୁକ୍ତିଯୁକ୍ତ ମନେହୁଏ । ମଙ୍ଗଳା ବାଳିକା ରୂପରେ ପରଶୁରାମଙ୍କ ସହିତ କ୍ରୀଡ଼ାରତ ଥିଲେ ଓ ପରଶୁରାମ ତାହାଙ୍କୁ ରକ୍ତରେ ସ୍ନାନ କରାଇ ସନ୍ତୁଷ୍ଟ କରାଇଥିଲେ –

ରୁଧିର ସ୍ନାହାନେ ଯେ ତ୍ରିପୁତି ନିମନ୍ତେ
ବାଳରଙ୍ଗେ କ୍ରୀଡ଼ା ଭାବ ପ୍ରଶୁରାମ ସଙ୍ଗତେ ।। (ଦ୍ରୋଣ ୧୯)

ସାରଳାଦାସଙ୍କ ନିବାସସ୍ଥାନ ସହିତ ପରଶୁରାମଙ୍କ ସମ୍ପର୍କ ବିଷୟ ସେ ଅନେକଠାରେ ସୂଚାଇଛନ୍ତି । ତାହାଙ୍କ ଗ୍ରାମ ନିକଟସ୍ଥ କନକାବତୀ ପାଟଣା ପରଶୁରାମଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା (ବିରାଟ ୭୦୯) । କନକାବତୀପାଟଣା ପାଖରେ ଚିତ୍ରୋତ୍ପଳା ନଦୀତଟରେ ପରଶୁରାମ-ଘାଟ ଥିଲା (ଆଦି ୫) । ସେହି ଚିତ୍ରୋତ୍ପଳାର ଉତ୍ତର କୂଳରେ– ସମ୍ଭବତଃ ପରଶୁରାମ-ଘାଟ ନିକଟରେ– ପରଶୁରାମଙ୍କ ଆଶ୍ରମ ଥିଲା (୨ ସଭା ୧୧୫) । ପରଶୁରାମ ମଙ୍ଗଳାଙ୍କୁ ରକ୍ତ ଦେଇ ସନ୍ତୁଷ୍ଟ କରିବା ଭଳି ନର୍ମଦା ସରସ୍ୱତୀଙ୍କୁ ମଧ୍ୟ ରୁଧିର ଦେଇ ତୃପ୍ତ କରାଇଥିଲେ (କର୍ଣ୍ଣ ୧୬୦) । ମଙ୍ଗଳାଙ୍କୁ ପରଶୁରାମ ଉପାସନା କରୁଥିଲେ ବୋଲି ମଧ୍ୟ କବି ବିଭିନ୍ନ ସ୍ଥାନରେ ଲେଖିଛନ୍ତି (ମଧ୍ୟ ୮୨୭; ଭୀଷ୍ମ ୫; ସ୍ୱର୍ଗାରୋହଣ ୯୬) ।

## ୯. ହିଙ୍ଗୁଳା

ହିଙ୍ଗୁଳାବର୍ଣ୍ଣା ହେବାରୁ ଦେବୀଙ୍କ ନାମ ହିଙ୍ଗୁଳା । ସେ ପୁଣି ଅଗ୍ନିମୟୀ 'ଜ୍ୱାଳାମାହେଶ୍ୱରୀ' । ଏ ମାନବ ଅବୟବୀ ପାଷାଣ ମୂର୍ତ୍ତି ରୂପରେ ଆରାଧିତା ହୁଅନ୍ତି । ରଣସ୍ତମ୍ଭ (ଆଧୁନିକ ରାଜସ୍ଥାନର ରନ୍ଥମ୍ଭୋର) ଗଡ଼ର ଖଡ଼୍‌ଗବଂଶୀ ରାଜାମାନେ ହିଙ୍ଗୁଳାଙ୍କ ସେବା କରୁଥିଲେ (ସଭା ୪୯୨) । ଅର୍ଜୁନ ରଣସ୍ତମ୍ଭଗଡ଼ରେ ହିଙ୍ଗୁଳାଙ୍କୁ ଆରାଧନା କରିଥିଲେ । ଏ ଅଗ୍ନିରୂପା, ତେଣୁ ଚିତାଗ୍ନିର ଦେବୀ । ଏ ମଧ୍ୟ ରନ୍ଧନର ଦେବୀ (ବନ ୨୮) । ତ୍ରେତା ଯୁଗରେ ଧନପାଳ ନାମକ ଜଣେ ସାଧବର ପୁତ୍ରବଧୂ ଥିଲେ ହିଙ୍ଗୁଳା (ସ୍ୱର୍ଗାରୋହଣ ୫୩) । ନର୍ମଦା ସରସ୍ୱତୀ, ଏକାନଂଶା ଓ ମଙ୍ଗଳାଙ୍କ ପରି ହିଙ୍ଗୁଳା ମଧ୍ୟ ବାଳୁତରୂପା ବୋଲି କବି ବର୍ଣ୍ଣିଛନ୍ତି ।

## ୧୦. ସିଦ୍ଧ ସାରୋଳଚଣ୍ଡୀ

ସାରୋଳ ଗ୍ରାମର ଦେବୀ ହେବାରୁ ସେ ସାରୋଳା ବା ସାରୋଳଚଣ୍ଡୀ । ରସୋଳ, ସୋରଳ, ତିର୍ତ୍ତୋଳ, ଚାନ୍ଦୋଳ, ହିନ୍ଦୋଳ, ମୁଦୁଗଳ ଆଦି ନାମ ପରି ସାରୋଳ ଗ୍ରାମର ନାମ । ଅଧିକାଂଶ ସ୍ଥାନରେ କବି ଦେବୀଙ୍କୁ ସିଦ୍ଧ ଆଖ୍ୟାଯୁକ୍ତ କରି ପ୍ରକାଶ କରିଛନ୍ତି – 'ସିଦ୍ଧ ସାରୋଳଚଣ୍ଡୀ ।' ଓଡ଼ିଶାର ବିଭିନ୍ନ ସ୍ଥାନରେ ସିଦ୍ଧ ଆଖ୍ୟାଯୁକ୍ତ ଦେବଦେବୀ ଉପାସିତ ହୁଅନ୍ତି – ସିଦ୍ଧ ମହାବୀର, ସିଦ୍ଧ ବଳଦେବ, ସିଦ୍ଧ ବିନାୟକ, ସିଦ୍ଧେଶ୍ୱର, ସିଦ୍ଧ ଭୈରବୀ ଇତ୍ୟାଦି । ସିଦ୍ଧ ଆଖ୍ୟାଟି ଏକେତ ପ୍ରସିଦ୍ଧ ଅର୍ଥରେ ନତୁବା ଅଣିମାଦି ଅଷ୍ଟସିଦ୍ଧିର ପ୍ରଦାତା ଭାବରେ ବ୍ୟବହୃତ ହୋଇଥାଇପାରେ । ଚାମୁଣ୍ଡା ତନ୍ତ୍ରରେ ଦଶମହାବିଦ୍ୟାଙ୍କୁ ସିଦ୍ଧଦେବୀ ବୋଲି ଆଖ୍ୟାତ କରାଯାଇଛି । ସାରଳାଦାସ ମଧ୍ୟ ତାଙ୍କ ବରଦାତ୍ରୀଙ୍କୁ କେବଳ ମାତ୍ର ସିଦ୍ଧଦେବୀ/ସିଦ୍ଧଚଣ୍ଡୀ ବୋଲି ଜଣାଇଛନ୍ତି –

ସେ ସିଦ୍ଧଦେବୀ ମୋତେ ପ୍ରସନ୍ନ ହୋଇଲା ।
ଅକଳନା ଶ୍ରୀ ମହାଭାରତ ମୋତେ ଆଗ୍ୟାଂ ଦିଲା ।। (ଆଦି ୩୪୪)
ସିଦ୍ଧଚଣ୍ଡୀ ଚରଣେ ଶରଣ ଶୂଦ୍ରମୁନି ସାରୋଳ ଦାସ ।। (ସ୍ୱର୍ଗାରୋହଣ ୮୫)

ଦେବୀଙ୍କ ଦଶମ ଓ ଶେଷ ଅବତାର ସିଦ୍ଧ ସାରୋଳଚଣ୍ଡୀ ଏହି କଳିଯୁଗର ଦେବୀ –

କଳିକାଳେ ବିକାଶିଲା ସାରୋଳାଚଣ୍ଡୀ ମୂର୍ତ୍ତି । (ମଧ୍ୟ ୩୯୯)
କଳିକାଳ ଧ୍ୱଂସନେ ମାଗୋ ସିଦ୍ଧ ସାରୋଳାଚଣ୍ଡୀ ମୂର୍ତ୍ତି । ମଧ୍ୟ ୮୨୮)
ଅଭୟେ କାନ୍ତାନୀ ଧ୍ୱଂସିଲା କଳି କାଳେ । (୨ ବନ ୩୩୬)
କଳିକାଳ ଧ୍ୱଂସିନୀ ଗୋ ଜଙ୍ଘେରପୁର ବାସୀ । (ଭୀଷ୍ମ ୫)

ଏଠାରେ ଜଣାଇଦେବା ସମୀଚୀନ ଯେ ଜଗତସିଂହପୁର ଝଙ୍କଡ଼ ପ୍ରଗଣାର ଦେବୀ 'ସିଂହ ସାରଳା' ନାମରେ କଥିତ ହୁଅନ୍ତି, ସେ 'ସିଦ୍ଧ ସାରଳା' ବୋଲାନ୍ତି ନାହିଁ। ସାରଳା ଦାସଙ୍କ ସିଦ୍ଧ ସାରୋଳା ପରମ ବୈଷ୍ଣବୀ (ବା କେବଳ ବୈଷ୍ଣବୀ) ଆଖ୍ୟା ବହନ କରନ୍ତି (ଆଦି ୫) । ଝଙ୍କଡ଼ର ସିଂହ ସାରଳା ମଧ୍ୟ ପରମ ବୈଷ୍ଣବୀ । ଝଙ୍କଡ଼ ସାରଳାଙ୍କ ପାଖରେ ଆଜିକାଲି ସିନା ଆମିଷ ପଶେ ନାହିଁ କି ବଳି ପଡ଼େ ନାହିଁ, ପୂର୍ବେ ତାଙ୍କୁ ବଳି ଦିଆଯାଉଥିଲା । ମହାଷ୍ଟମୀ ରାତିରେ ତାଙ୍କ ଆଗରେ ପଡୁଥିବା ମହିଷବଳି ଖ୍ରୀ-୧୯୪୭ରୁ ବନ୍ଦ ହୋଇଛି । ସାରଳାଦାସଙ୍କ ସିଦ୍ଧସାରୋଳା ମଧ୍ୟ ଆମୀଷାଶୀ, ରକ୍ତପାନଲୋଭୀ । ତେଣୁ ଦେବୀ ବୈଷ୍ଣବୀ ବୋଲାଇଲେ ଆମିଷଭୋଜୀ ହୁଅନ୍ତି ନାହିଁ ବୋଲି ଯେଉଁ ପ୍ରଚାର ଚାଲିଛି ତାହା ଅମୂଳକ ।

ପିତାମହର ଶାପେ ସେ ସାରୋଳାଚଣ୍ଡୀ ମୂର୍ତ୍ତି
ଆତ୍ମା ତୋଷିଲୁ ସେ ଯେ ଶୋଣିତେ ତ୍ରିପୁତି ।। (ମଧ୍ୟ ୩୧୯)

ରୁଧିର ଦ୍ରଶନେ ଯେ ସର୍ବଦା ମନ ରଞ୍ଜି ।। (ମଧ ୮୨୭)
ଯାବତ ତ୍ରିପୁତି ସେ ରୁଧିର ଦେଖିଲେ ।। (ଦ୍ରୋଣ ୧୯)
କୃପାଙ୍କଳ ନନ୍ଦିନୀ ନର୍ମଦା ସରସ୍ୱତୀ ।
ଯମଦଗ୍ନିର ନନ୍ଦନ ରୁଧିରେ କଲାକ ତ୍ରିପୁତି ।। (କର୍ଣ୍ଣ ୧୬୦)
ରୋଧିର ଦର୍ଶନେ ମାଗୋ ସର୍ବଦା କୁତୁହୋଳୀ ।। (ଅଶ୍ୱମେଧ ୧୧୯)

ସାରଳାଦାସଙ୍କ ସମ୍ପର୍କରେ ଜନଶ୍ରୁତି ହେଉଛି ଯେ ସେ ଝଙ୍କଡ଼ର ଅଧିବାସୀ ଥିଲେ ଓ ସେଠାର ସାରଳା ଠାକୁରାଣୀଙ୍କୁ ଆରାଧନା କରି ନିଜର ମୂଳନାମ 'ସିଦ୍ଧେଶ୍ୱର'କୁ ଛାଡ଼ି ସାରଳାଦାସ ନାମ ନେଇ ମହାଭାରତାଦି ରଚନା କରିଥିଲେ । ସାରଳାଦାସ ନିଜର ଗ୍ରାମ ଭାବରେ ଯେଉଁ ଜଙ୍ଘେରପୁର ଓ କନକାବତୀପାଟଣାର ନାମୋଲ୍ଲେଖ କରିଛନ୍ତି ତାହା ଆଧୁନିକ ଝଙ୍କଡ଼ ପ୍ରଗଣା ଓ ତନ୍ନିକଟ କନକପୁର ବୋଲି ଚିହ୍ନଟ କରାଯାଉଛି । ଝଙ୍କଡ଼ ସାରଳା ଠାକୁରାଣୀଙ୍କ ପୀଠର ଉତ୍ତର-ପଶ୍ଚିମକୁ କିଛି ଦୂରରେ ଅବସ୍ଥିତ 'ବଡ଼ସାରୋଳ' ନାମକ ଗ୍ରାମଟି ସାରଳାଦାସଙ୍କ ନାମାନୁସାରେ ବସିଛି ବୋଲି ଏକ ବିଶ୍ୱାସ ଜନ୍ମିଲାଣି (ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର 'ସାରଳାଦାସ' ପଠିତବ୍ୟ) । ସାରଳାଦାସ ଶୂଦ୍ରମୁନି ଆଖ୍ୟା ନେଇଥିବାରୁ ଲୋକେ ତାଙ୍କୁ 'ମୁନିଗୋସାଇଁ' ବୋଲୁଥିଲେ ଓ ବୁଢ଼ାନଦୀ କୂଳରେ ସେ ପ୍ରତିଷ୍ଠା କରିଥିବା ମଠ ଆଜିକାଲି 'ମୁନିଗୋସାଇଁ' ମଠ ବୋଲାଉଛି ବୋଲି ମଧ ବିଶ୍ୱାସ କରାଯାଉଛି । କିନ୍ତୁ ଏହି ସବୁ ବିଶ୍ୱାସ ସହିତ ସାରଳାଦାସଙ୍କ ରଚନାରୁ ମିଳୁଥିବା ତଥ୍ୟ ପ୍ରମାଣର ମେଳ ହେଉନାହିଁ । କନକପୁରର ସାରଳାପୀଠ ଆଧୁନିକ । ଅଷ୍ଟାଦଶ ଶତାବ୍ଦୀର ଶେଷଆଡ଼କୁ ସ୍ଥାନୀୟ ଜମିଦାର ଓ ଲୋକଙ୍କ ଦାନରେ ଏହାର ନିର୍ମାଣ ହୋଇଛି ।

ସିଦ୍ଧ ସାରୋଳା ଲୋକମୁଖରେ ସିଧ ସାରୋଳା, ସିହ ସାରଳା ହୋଇ ସିଂହ ସାରଳାରେ ପରିଣତ ହୋଇଛି ଓ ପରକାଳୀନ ବୈଷ୍ଣବୀଙ୍କ ଚାପରେ ସେ ଆମିଷ ଭୋଗ ଛାଡ଼ିଦେଇଛନ୍ତି ବୋଲି କୁହାଯାଇପାରେ । କିନ୍ତୁ ସିଦ୍ଧ ସାରୋଳା ଓ ସିଂହ ସାରଳା ମଧରେ ଅନ୍ୟାନ୍ୟ ବହୁ ପାର୍ଥକ୍ୟ ରହିଥିବାରୁ ଏହି ଦୁଇ ଦେବୀ ଭିନ୍ନ ବୋଲି ସିଦ୍ଧାନ୍ତ କରିବାକୁ ପଡୁଛି ।

ପ୍ରଥମେ ଦେଖାଯାଉ ସିଦ୍ଧ ସାରୋଳଚଣ୍ଡୀଙ୍କ ଇତିବୃତ୍ତ । ତାଙ୍କୁ ଅଜପତି ନାମକ ଜଣେ କିରାତ (ଶବର) ରାଜା ପୂଜା କରିଥିବା କଥା ସାରଳାଦାସ ଲେଖିଛନ୍ତି—

ଦଶମ ଅବତାରେ ଅଜପତି କିରାତର ଘରେ ।
ସିଦ୍ଧ ସାରୋଳା ନାମ ବହିଲୁ ଗୋ ଯେ କଳିଯୁଗରେ ।। (୨ ସଭା ୧୧୪)
କଂସ କଟାଡ଼ନ୍ତେ ଯେ ହୋଇଲି ଶୂନ୍ୟଗତି ।
କଳିଯୁଗେ ପାଳିଲା କିରାତ ଅଜପତି ।। (ଦ୍ରୋଣ ୧୯)

ଅନେକାନେକ ଦେବଦେବୀଙ୍କ ପୁନରାବୃତ୍ତ ବର୍ଣ୍ଣନାବେଳେ ସାରଳାଦାସ ସେହି ଦେବଦେବୀଙ୍କର ଆଦ୍ୟ ଉପାସକ ଜଣେ ଶବର ବୋଲି ଲେଖିଛନ୍ତି । ତାହାଙ୍କ କହିବା ଅନୁସାରେ ମହେନ୍ଦ୍ର ପର୍ବତର ଗୋକର୍ଣ୍ଣେଶ୍ୱର, ନୀଳାଚଳର ଜଗନ୍ନାଥ, କପିଳାସର ଶିଖରେଶ୍ୱର ଆଦି ଦେବତା ମୂଳରେ ଶବର-ଉପାସିତ ଥିଲେ । ଏତାଦୃଶ ବର୍ଣ୍ଣନାରେ କବିଙ୍କର ଐତିହାସିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଛି ଯେ ଏତଦ୍ଦେଶୀୟ ସଂସ୍କୃତି ଶବର (ଆଦିବାସୀ) ସଂସ୍କୃତି ଉପରେ ଆଧାରିତ । ଏହି ଦୃଷ୍ଟି ନେଇ ସେ ନିଜର ଗ୍ରାମଦେବୀଙ୍କୁ ମଧ୍ୟ ଶବରାରାଧିତ କରି ଉପସ୍ଥାପନ କରିଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ ଦେବୀଙ୍କ ଆଦ୍ୟ ଉପାସକ ଅଜପତି ମହାଭାରତର ଏକ ଚରିତ୍ର । ଅଜପତି କର୍ଣ୍ଣଙ୍କୁ ପ୍ରତ୍ୟହ ଶହେ ଭାର ସୁନା ଯୋଗାଉଥିଲେ (ଆଦି ୬୪୨) । ସେ ମଧ୍ୟ କୃଷ୍ଣଙ୍କ ଦ୍ୱାରା ରାଜସୂୟ ଯଜ୍ଞକୁ ନିମନ୍ତ୍ରିତ ହୋଇଥିଲେ (ସଭା ୧୦୬) ଓ ଯଜ୍ଞାର୍ଥ ବନ୍ୟ ଜୀବଙ୍କ ମାଂସ ଯୋଗାଉଥିଲେ (୨ ସଭା ୨୩୯) । ଅଜପତି ପିତା ଅଜର ଓ ପ୍ରପୌତ୍ର ଜାରା (ମୂଷଳୀ ୮୦) । ଅଜର ନୀଳାଚଳର ନୀଳମାଧବଙ୍କର ପ୍ରଥମ ଉପାସକ (ମୂଷଳୀ ୫୧) । ଜାରା ମଧ୍ୟ ମହାଭାରତର ବିଭିନ୍ନ ଘଟନା ସହିତ ଜଡ଼ିତ ଥିବା ଏକ ଚରିତ୍ର ଯେ କି କୃଷ୍ଣଙ୍କୁ ଶରାଘାତ କରିଥିଲେ (ମୂଷଳୀ ୩୫) । ଜାରାର ପୁତ୍ର ବସୁଶବର ଜଗନ୍ନାଥ ପ୍ରତିଷ୍ଠା ଆଖ୍ୟାନ ସହିତ ସଂପୃକ୍ତ (ମୂଷଳୀ ୭୫) । ଜାରାର ବାସସ୍ଥାନ ଗୋମୁଖୀ କେଶବଙ୍କ ନିକଟରେ ବୋଲି କବି ଜଣାଇଛନ୍ତି (ମୂଷଳୀ ୧୦୧) । ଗୋମୁଖୀକେଶବଙ୍କ ପୀଠ ପ୍ରାଚୀନଦୀର ସାଗରସଙ୍ଗମ ଅର୍ଥାତ୍ ଆଧୁନିକ ଜାହାନିଆ ପୀରଙ୍କ ଆସ୍ଥାନ ନିକଟରେ ଥିଲା । ଏହି ପୁରାବୃତ୍ତ ବିଚାରରୁ କବିଙ୍କ ନିର୍ଣ୍ଣୟ ପ୍ରକାରେ ଅଜପତିଙ୍କ ବାସସ୍ଥାନ ପ୍ରାଚୀମୁହାଣର ଆଖପାଖରେ ହେବା ଅନୁମାନ କରାଯାଇପାରେ । ଅଜପତିଙ୍କ ଦ୍ୱାରା ଉପାସିତ ସିଦ୍ଧ ସାରୋଳଚଣ୍ଡୀଙ୍କ ପୀଠର ସ୍ଥାନ ନିର୍ଣ୍ଣୟ ପାଇଁ ଜଗତସିଂହପୁର ଝଙ୍କଡ଼ ପ୍ରଗଣା ସଙ୍ଗତ ହୋଇନପାରେ ।

## ସିଦ୍ଧ ସାରୋଳଚଣ୍ଡୀଙ୍କ ରୂପ

ସିଦ୍ଧ ସାରୋଳଚଣ୍ଡୀ ପାଷାଣ ମୂର୍ତ୍ତି (ଆଦି ୫) । ଦେବୀଙ୍କ ବାହନ କିଛି ଥିଲା ପରି ଲାଗୁନାହିଁ । ବିଭିନ୍ନ ଦେବୀଙ୍କ ସହିତ ତାଙ୍କର ଅନନ୍ୟତା ଦେଖାଇବା ପାଇଁ ତାଙ୍କଠାରେ ବିଭିନ୍ନ ବାହନର ଅଧ୍ୟାସ କରାଯାଇଛି । ତାହାଙ୍କୁ ସରସ୍ୱତୀଙ୍କ ବର୍ଣ୍ଣନା ଅନୁରୂପେ 'ଶ୍ୱେତପଦ୍ମ ଆସନୀ' (ବିରାଟ ୭୭) ଓ 'ପଦ୍ମ ଆସନୀ' (ମୂଷଳୀ ୧୦୫) ବୋଲି କୁହାଯାଇଛି । ତାହାଙ୍କ ବାହନ ସିଂହ ବୋଲି କେତେକ ସ୍ଥାନରେ ଲେଖାଅଛି (ଆଦି ୫୨୭; ମଧ୍ୟ ୧୧୨୮; ୨ ସଭା ୮୪; ଭୀଷ୍ମ ୧୨୦.) । ସିଂହ ଦୁର୍ଗାଙ୍କ ବାହନ । ଠାଏଁ ତାଙ୍କ ବାହନ ବିଛା ବୋଲି ଲେଖାଅଛି (ବିରାଟ ୭୭) । ବିଛା ସର୍ବମଙ୍ଗଳାଙ୍କ ବାହନ

(ସର୍ବମଙ୍ଗଳା ବା ସିଦ୍ଧ ସାରୋଳାଙ୍କ ପୂର୍ବବର୍ତ୍ତୀ ଅବତାର) । ଆଉ କେତେକ ସ୍ଥାନରେ ସାରୋଳାଙ୍କ ବାହନ ମରୁଳ ବୋଲି ଲେଖାଅଛି (ଭୀଷ୍ମ ୩୪୭, ଦ୍ରୋଣ ୪) । ମରୁଳ ହଂସଜାତୀୟ ଏକ ଜଳଚର ପ୍ରାଣୀ । ହଂସ ସରସ୍ୱତୀଙ୍କ ବାହନ ।

ସାରୋଳଚଣ୍ଡୀଙ୍କ ପ୍ରତିମା ବୋଧହୁଏ କଳାମୁଗୁନି ପଥରର ଥିଲା । ତାହାଙ୍କର ବର୍ଣ୍ଣ 'ନୀଳେନ୍ଦୀ ପୁଷ୍ପ ପ୍ରାୟେକ' (ଉଦ୍‌ଯୋଗ ୨୮୭) । ନୀଳେନ୍ଦୀର ଅର୍ଥ ନୀଳେନ୍ଦୀବର ବା ନୀଳୋତ୍ପଳ । ତାହା କୃଷ୍ଣବର୍ଣ୍ଣ (୨ ସଭା ୧୧୫) ଓ 'ନବଶରଦରୁଚି' (ବନ ୨୫) ଅର୍ଥାତ୍ ନୂଆ ଜଳଦଶୋଭାଧାରୀ ବୋଲି ମଧ୍ୟ ଲେଖାଅଛି । ଦେବୀଙ୍କ ଭୁଜର ସଂଖ୍ୟା କି ଆୟୁଧର ନାମ ଲେଖା ହୋଇନାହିଁ । ବୋଧହୁଏ ଦେବୀ ବହୁଭୁଜା କି ଆୟୁଧହସ୍ତା ନଥିଲେ । କାରଣ ଦେବୀ ବାଳିକାରୂପା ବୋଲି କବି ପ୍ରାୟ ସବୁଠାରେ ଲେଖିଛନ୍ତି । ତନ୍ମଧ୍ୟରୁ ଅଳ୍ପକେତୋଟି ଉର୍ଦ୍ଧୃତ ନିମ୍ନରେ ଦିଆଯାଉଛି –

ଅଦ୍ୟାପି ଖେଳଇ ସେ ବାଳୁତ ରୂପ ଧରି ।। (ମଧ୍ୟ ୨୦୫)
ଝଙ୍କେରପୁର-ବାସିନୀ ପ୍ରତକ୍ଷେ ହିଙ୍ଗୁଳା ।
ବାଳୁତ କୁତୂହୋଳୀ ସର୍ବଦା ମତିଭୋଳା ।। (୨ ସଭା ୧୪)
ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ବ୍ରହ୍ମାର କୁଶସ୍ଥଳୀ
ଏ ଭୂମି ମଣ୍ଡଳ ମାଡ଼ି ଗୋ ବାଳୁତ ରୂପେ ଖେଳି ।। (୨ ସଭା ୧୧୪)
ତାହାକଇଂ ଭଗତ ମୁଂ ହୋଇଲଇଂ ଜନ୍ମେ ଜନ୍ମେ ।
ବାଳୁତ ରୂପେ ମୋତେ କହଇ ସକଳ ଧର୍ମେ ।। (୨ ବନ ୨୯୨)
ଝଙ୍କେରପୁର ବାସିନୀ ଶ୍ରୀ ଚଣ୍ଡୀସାରୋଳା ।।
ବାଳୁତ ରୂପେ ଯାହାର ଖେଡ଼ ମେରୁ ସ୍ଥଳେ ।। (୨ ବନ ୩୩୬)
ଶ୍ରୀ ସିଦ୍ଧ ସାରୋଳା ଗୋ ପ୍ରସନ୍ନ-ବଦନୀ
କଉତୁକେ ଖେଳଇ ଯେ ବାଳୁତ ରୂପ ଘେନି ।। (ବିରାଟ ୨୧୯)
ଯୋଗିନୀବଳ ଘେନିଣ ତହିଁ ବାଳୁତ ରୂପେଣ ଖେଳବାଳୀ ।। (ଭୀଷ୍ମ ୩୧୧)
କୁମାରୀ ରୂପେ ମାଗୋ ଖେଡୁ କୁତୂହୋଳେ ।। (କାଇଁଶିକା ୪୪)
ବାଳୁତ ରୂପ ମୁହିଂ ତାର ପ୍ରତକ୍ଷେ ଦେଖଇ ।
ସେ ଯାହା କହଇ ମୁଂ ତାହା ଲେଖଇ ।। (ସ୍ୱର୍ଗାରୋହଣ ୯୬)

ସାରୋଳାଚଣ୍ଡୀଙ୍କ ବାଳୁତ ରୂପ ସାରଳାଦାସ ପରିକଳ୍ପନା କରିଥିବା ଦେବୀଙ୍କ ପୂର୍ବ ଅବତାର ନର୍ମଦା ସରସ୍ୱତୀ, ଏକାନଂଶା, ମଙ୍ଗଳା ଓ ହିଙ୍ଗୁଳାଙ୍କ ରୂପ କଳ୍ପନାରେ ମଧ୍ୟ ସ୍ଥାନ ପାଇଛି ।

ବିଦ୍ୟମାନ ଝଙ୍କଡ଼ ପ୍ରଗଣାର ସିଂହ-ସାରଳା ଯେ ସାରଳାଦାସଙ୍କ ଢଙ୍କେରପୁରବାସିନୀ ସିଦ୍ଧ ସାରୋଳା ହୋଇ ନପାରନ୍ତି, ଏହା ବାଳୁତ ରୂପ ବର୍ଣ୍ଣନାରୁ ଅନୁମିତ ହୁଏ । ଝଙ୍କଡ଼ସାରଳା ମହିଷାସୁରମର୍ଦ୍ଦିନୀ ଅଷ୍ଟଭୁଜା ପାଷାଣ ମୂର୍ତ୍ତି । ମୂର୍ତ୍ତିର ଦକ୍ଷିଣ ଚାରି ଭୁଜ ବୀଣା, ପୁସ୍ତକ, ଖଡ୍‌ଗ ଓ ଶୂଳ ଧରିଛି ଓ ବାମ ଚାରି ଭୁଜ ଘଣ୍ଟା, ଧନୁ, ଢାଲ ଓ ମହିଷାସୁରର ଛିନ୍ନ ମସ୍ତକ ଧରିଛି । ତାହାଙ୍କର ବାହନ ସିଂହ ମୂର୍ତ୍ତିର ଡାହାଣ ପଟକୁ ଠିଆ ହୋଇଛି । ଏଥିରେ ସାରଳାଦାସ ବର୍ଣ୍ଣିଥିବା ବାଳୁତରୂପ ନାହିଁ । ଦେବଦେବୀଙ୍କୁ, ବିଶେଷତଃ ଦେବୀ ଓ କୃଷ୍ଣଙ୍କୁ, ବାଳକବାଳିକା ରୂପରେ ପୂଜା କରିବା ରୀତି ସମଗ୍ର ଭାରତରେ ଚଳିଆସୁଛି । କୁମାରୀପୂଜା ଦେବୀ ଉପାସନାର ଏକ ପ୍ରସିଦ୍ଧ ପଦ୍ଧତି । ଦକ୍ଷିଣ ଭାରତର କନ୍ୟାକୁମାରୀ ଅନୂଢ଼ା ବାଳିକା । ଗଞ୍ଜାମର ପ୍ରସିଦ୍ଧ ତାରାତାରିଣୀ ଦୁଇଜଣ ଛୋଟ ଝିଅ ଭାବରେ ପୂଜା ପାଉଛନ୍ତି । ସେହିପରି ବାଳକୁମାରୀ ଦେବୀ । ଦେବୀଙ୍କର ଏକ ନାମ କୁମାରୀ । ସାରଳାଦାସ ଦେବୀଙ୍କର ଦଶବିଧ ଅବତାରର ପରିକଳ୍ପନା କରିଥିଲେ ହେଁ ପୁରାଣ-ପ୍ରସିଦ୍ଧ ମହିଷାସୁରମର୍ଦ୍ଦିନୀଙ୍କୁ ତନ୍ମଧ୍ୟରେ ସ୍ଥାନ ଦେଇ ନଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର ଉପାସ୍ୟା ସିଦ୍ଧ ସାରୋଳଚଣ୍ଡୀଙ୍କ ରୂପ ଯଦି ଝଙ୍କଡ଼ର ସାରଳା ଠାକୁରାଣୀଙ୍କ ପରି ହୋଇଥାଆନ୍ତା ତେବେ ମହିଷାସୁରମର୍ଦ୍ଦିନୀ ଅବତାର ମଧ୍ୟରେ ପରିଗଣିତ ହୁଅନ୍ତେ ଓ ସେ ବାଳୁତରୂପଧାରିଣୀ ହୋଇପାରନ୍ତେ ନାହିଁ ।

ଏଥିରୁ ପ୍ରତିପାଦିତ ହେଉଛି ଯେ ଝଙ୍କଡ଼ର ସିଂହ-ସାରଳା ସାରଳାଦାସଙ୍କର ସିଦ୍ଧ ସାରୋଳାଚଣ୍ଡୀ ହେବା ବିଚାର ଅମୂଳକ । ଏହି କଥାଟି ଆହୁରି ନିଃସନ୍ଦେହ ହୋଇଯାଏ ସାରଳାଦାସ ତାଙ୍କ ବାସସ୍ଥାନରେ ଯେ ଭୌଗୋଳିକ ବିବରଣମାନ ଦେଇଛନ୍ତି ତାହାର ବିଶଦ ବିଚାର କଲେ । ତାହା ପରବର୍ତ୍ତୀ ଦ୍ୱିତୀୟ ଅଧ୍ୟାୟରେ କରାଯିବ ।

—

# ଦ୍ୱିତୀୟ ଅଧ୍ୟାୟ

## ସାରଳାଦାସଙ୍କ ବାସସ୍ଥାନ ନିରୂପଣ

ସାରଳାଦାସଙ୍କର ବାସସ୍ଥାନ ଜଗତସିଂହପୁର ଜିଲାର ତିର୍ତ୍ତୋଲ ଥାନା ଭୁକ୍ତ ଝଙ୍କଡ଼ ପ୍ରଗଣା ବୋଲି ଜନଶ୍ରୁତି ରହିଛି ଓ ତାହା ସତ୍ୟ ବୋଲି ସାଧାରଣତଃ ଗୃହୀତ ହୋଇ ଆସୁଛି । ନିଜେ ସାରାଳା ଦାସ ମହାଭାରତର ଅନେକ ସ୍ଥାନରେ ଓ ଚଣ୍ଡୀପୁରାଣ ମଧ୍ୟରେ ସିଦ୍ଧ ସାରୋଳଚଣ୍ଡୀଙ୍କ ପୀଠର ତଥା ନିଜ ବାସସ୍ଥାନର ଭୌଗୋଳିକ ଅବସ୍ଥିତିର ବିବରଣ ଦେଇଛନ୍ତି । ପ୍ରଦତ୍ତ ବିବରଣ ଜଗତସିଂହପୁରର ଝଙ୍କଡ଼ ପ୍ରଗଣାକୁ ଜମାରୁ ସୂଚାଉ ନାହିଁ । ସୂଚାଉଛି କୋଣାର୍କର ଅଦୂରବର୍ତ୍ତୀ ଏକ ଗ୍ରାମକୁ । ମହାଭାରତର ଆରମ୍ଭରେ ହିଁ କବି ଜଣାଇଛନ୍ତି—

ସେ ନୀଳସୁନ୍ଦର ଗିରି ଉତ୍ତର କଚ୍ଛାଡ଼େ ।
ସାରଭୂମି ଭୃଥଖଣ୍ଡ ପୂର୍ବ ଦିଗ ଈଶାନ୍ୟର ଆଡ଼େ ॥
**ଚନ୍ଦ୍ରଭାଗା** ନାମେ ଏକଇ ନଦୀ ଗୋଟି ।
ବୃଦ୍ଧମାତା ପାରୁଶେ ମଉଦଧିରେ ଯାଇ ଫୁଟି ॥
ସେ ନଦୀର ତୀରେ ପ୍ରଶୁରାମ ଘାଟଇ ।
କନକାବତୀ ନାମେ ପାଟଣା ପ୍ରକାଶଇ ॥
ତହିଁର ସନ୍ନିଧ୍ୟେ ସାରୋଳ ନାମେ ଗ୍ରାମେ ।
ବିଜେ ମାହେଶ୍ୱରୀ ସାରୋଳଚଣ୍ଡୀ ନାମେ ॥ (ଆଦି ୪-୫)

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ କବିଙ୍କ ବସତି ସାରୋଳ ଗ୍ରାମଟି କୌଣସି କନକାବତୀ ପାଟଣାର ନିକଟରେ ଥିଲା ଓ ସେହି କନକାବତୀପାଟଣା ଚନ୍ଦ୍ରଭାଗା ନାମକ ଏକ ନଦୀର କୂଳରେ ଅବସ୍ଥିତ ଥିଲା । ଏ ଚନ୍ଦ୍ରଭାଗା ଯେ କୋଣାର୍କ କ୍ଷେତ୍ରର ମୁଖ୍ୟ ତୀର୍ଥ ଚନ୍ଦ୍ରଭାଗା ଏ ବିଷୟରେ ସନ୍ଦେହ ନାହିଁ । କବି ସ୍ପଷ୍ଟ କରି ଲେଖିଛନ୍ତି —

ଜମ୍ବୋଦୀପ ବାରାନିଧି ପଶ୍ଚିମ ଭାଗ ଆଡ଼େ ।
ମନ୍ଦର ପର୍ବତ ନୀଳସୁନ୍ଦର କଳପବଟ ଉତ୍ତର କଚ୍ଛାଡ଼େ ॥
**ଚନ୍ଦ୍ରଭାଗା କୋଣାଅର୍କ ତୀର୍ଥ** ଯେ ବାୟବେ ।
ଚିତ୍ର ଉପ୍ଳା ଦକ୍ଷିଣବାହିନୀ କୋଣ ଲାଗେ ॥

ଭୂଅଖଣ୍ଡ ଓଡ଼ରାଷ୍ଟ୍ର ବ୍ରହ୍ମାର କୁଶସ୍ଥଳୀ ।
ଏ ଭୂମିମଣ୍ଡଳ ମାଡ଼ି ଗୋ ବାଳୁତ ରୂପେ ଖେଡ଼ି ॥

× × ×

ସେ ନଦୀର ଉତ୍ତର କୂଳେଣ ଆଶ୍ରମ ପ୍ରଶୁରାମ ।
ନିଜ ଭୁବନ ପାଟଣା ଗୋ କନକାବତୀ ନାମ ॥(୨ ସଭା ୧୧୪)

କବି ଏଠାରେ ଓ ଅନ୍ୟତ୍ର ଅନେକ ସ୍ଥାନରେ (ମଧ୍ୟ ୮୨୮; ବିରାଟ ୭୦୯) ଚନ୍ଦ୍ରଭାଗାକୁ କୋଣାର୍କ କ୍ଷେତ୍ରରେ ତୀର୍ଥ (ପୁଣ୍ୟଜଳ) ବୋଲି ଚିହ୍ନାଇଛନ୍ତି । କୋଣାର୍କର କ୍ଷେତ୍ରମାହାତ୍ମ୍ୟଗୁଡ଼ିକରେ ଚନ୍ଦ୍ରଭାଗା ଅର୍କତୀର୍ଥ ନାମରେ ଅଭିହିତ ହୋଇଛି । କବିଙ୍କ ଗ୍ରାମର ନିକଟବର୍ତ୍ତୀ ପେଣ୍ଠଗ୍ରାମ 'କନକାବତୀ ପାଟଣା' କୋଣାର୍କ କ୍ଷେତ୍ରସ୍ଥ ଚନ୍ଦ୍ରଭାଗାର ଉତ୍ତର-ପଶ୍ଚିମ ଦିଗରେ, ନଦୀର ଉତ୍ତର କୂଳରେ ଅବସ୍ଥିତ ଥିଲା । ଏପରି ସ୍ପଷ୍ଟ ଦିଗ-ନିର୍ଦ୍ଦେଶ ବିଚାରରୁ ଝଙ୍କଡ଼ ପ୍ରଗଣା କବିଙ୍କର ବାସସ୍ଥାନ ହେବା ସମ୍ଭାବନା ରହୁନାହିଁ । କାରଣ ଝଙ୍କଡ଼ କୋଣାର୍କର ନିକଟବର୍ତ୍ତୀ ତ ନୁହେଁ, କୋଣାର୍କର ଦ୍ରାଘିମାର ପୂର୍ବପଟକୁ ସିନା, ପଶ୍ଚିମପଟକୁ ନୁହେଁ । ଚନ୍ଦ୍ରଭାଗା ଅର୍କତୀର୍ଥର ଅବସ୍ଥିତି ବିଷୟରେ ସନ୍ଦେହ ନାହଁ, ତେଣୁ କବିଙ୍କ ବାସସ୍ଥାନର ସନ୍ଧାନ ସେହି ନିକଟରେ ନେବାକୁ ହେବ ।

କବି ତାଙ୍କ ସ୍ଥାନର ସୂଚନା ଦେବା ମଧ୍ୟରେ ଚିତ୍ରୋତ୍ପଳା, ଚନ୍ଦ୍ରଭାଗା ଓ ବୃଦ୍ଧାମାତା ନାମକ ତିନୋଟି ନଦୀ, ଓଡ଼ରାଷ୍ଟ୍ର, ଯାଜନଗର ଓ କୁଶସ୍ଥଳୀ ନାମକ ଦେଶ ଓ ପରଶୁରାମ ଘାଟ, ପରଶୁରାମ ଆଶ୍ରମ, ପରଶୁରାମ ପାଟଣା, କନକାବତୀ ପାଟଣା, ଝଙ୍କେରପୁର ଓ ସାରୋଳ ଆଦି ସ୍ଥାନର ନାମ ଲେଖିଛନ୍ତି । ଏଗୁଡ଼ିକର ଚିହ୍ନଟ ବିଶେଷ କଷ୍ଟକର ନୁହେଁ ।

## ୧. ଚିତ୍ରୋତ୍ପଳା

କବିଙ୍କ ଗ୍ରାମ ସାରୋଳର ଅଦୂରବର୍ତ୍ତୀ ଝଙ୍କେରପୁରର ଅବସ୍ଥିତି ଚିତ୍ରୋତ୍ପଳା ନଦୀ କୂଳରେ ବୋଲି କେତେକ ସ୍ଥାନରେ (ମଧ୍ୟ ୮୨୭) ଲେଖାଅଛି ତ ଆଉ କେଉଁଠି ତାହା ଚନ୍ଦ୍ରଭାଗା ନଦୀ କୂଳରେ ଥିବା କଥା ଲେଖାଅଛି (ଆଦି ୫) । ଆଉ ବି ବର୍ଣ୍ଣନା ରହିଛି ଯେ ଚନ୍ଦ୍ରଭାଗା ଚିତ୍ରୋତ୍ପଳାରୁ ବାହାରି ମହୋଦଧିରେ ପଡ଼ିଛି । ଏଥିରୁ ଅନୁମିତ ହେଉଛି ଯେ କୋଣାର୍କ ଆଖପାଖରେ ଚିତ୍ରୋତ୍ପଳା ନଦୀକୂଳରେ କବିଙ୍କ ବାସସ୍ଥାନ ଥିଲା ଓ ଚନ୍ଦ୍ରଭାଗା ନଦୀ– ଯାହା ଏକ କାଳ୍ପନିକ ନଦୀ ବୋଲି ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ– ସେହି ସ୍ଥାନର ଉପର ପଟୁ ଚିତ୍ରୋତ୍ପଳାରୁ କବିଙ୍କ ବାସସ୍ଥାନର ଅନ୍ୟ ଦିଗରେ ଅଦୃଶ୍ୟ ଭାବରେ ପ୍ରବାହିତ ହୋଇ ଆଧୁନିକ ଚନ୍ଦ୍ରଭାଗା ବୁଡ଼ ସ୍ଥାନରେ ସମୁଦ୍ରରେ ମିଶିଛି ବୋଲି ବିଶ୍ୱାସ କରାଯାଉଥିଲା । କବି ବର୍ଣ୍ଣନା କରିଥିବା ଚିତ୍ରୋତ୍ପଳା ନଦୀର ଅବସ୍ଥିତି ସମ୍ପର୍କରେ ସ୍ପଷ୍ଟୀକରଣ ଆବଶ୍ୟକ । ମହାନଦୀର ପୁରାଣ-ପ୍ରସିଦ୍ଧ ନାମ ଚିତ୍ରୋତ୍ପଳା ବହୁ ପ୍ରାଚୀନ ଲେଖରେ ବ୍ୟକ୍ତ ହୋଇଛି (ଖ୍ରୀ. ୧୨୨୯ର ନଗରୀ ତମ୍ବାପଟା ଦ୍ରଷ୍ଟବ୍ୟ) ।

ଅତୀତରେ ଚିତ୍ରୋତ୍ପଳାର ମୁଖ୍ୟସ୍ରୋତ ପୁରୀ ଜିଲ୍ଲା ଦେଇ ପ୍ରବାହିତ ହେଉଥିଲା । ଅନୁମିତ ହୁଏ, ଏହି ସ୍ରୋତ ନରାଜ ଉପରୁ ଚିତ୍ରୋତ୍ପଳାରୁ ବାହାରି ଦାରୁଠେଙ୍ଗ, ବାରଙ୍ଗ ମଧ୍ୟ ଦେଇ ନଖରା ଯାଏଁ ଆସି ସେଠାରୁ ଆଧୁନିକ କୁଆଖାଇ ଓ କୁଶଭଦ୍ରାର ଶଯ୍ୟାରେ ପ୍ରବାହିତ ହୋଇ ଗୋପର ଦକ୍ଷିଣସ୍ଥ ବେଦପୁର ଯାଏଁ ଆସୁଥିଲା । ସଂପ୍ରତି କୁଶଭଦ୍ରା ବେଦପୁରଠାରୁ ଦୁଇ ଧାର ହୋଇ ପଶ୍ଚିମ ଓ ଦକ୍ଷିଣ-ପଶ୍ଚିମ ଅଭିମୁଖୀ ହୋଇ ଧାନୁଆ ଓ ମୁଗେଇ ନଦୀର ସମ୍ମିଳିତ ଧାର ସହିତ ମିଶି ନିଆଖିଆ ନାମରେ ଅଭିହିତ ହୋଇ କୋଣାର୍କ ମନ୍ଦିରର ଦକ୍ଷିଣସ୍ଥ ରାମଚଣ୍ଡୀ ମନ୍ଦିର ପାଖରେ ସମୁଦ୍ରରେ ମିଶିଛି । ଅତୀତରେ କୁଶଭଦ୍ରା ବା ଚିତ୍ରୋତ୍ପଳା ବେଦପୁରଠାରୁ ପୂର୍ବ ଓ ଉତ୍ତରପୂର୍ବକୁ ଯାଇ ଆଧୁନିକ କାଦୁଆ ନଦୀର ଶଯ୍ୟା ଧରି ସମୁଦ୍ରରେ ମିଶୁଥିଲା । ଏହି ନଦୀକୂଳରେ ଚିତ୍ରା ଗ୍ରାମ, ଚିତ୍ରେଶ୍ୱର (ମହାଦେବ) ଓ ଚିତ୍ରେଶ୍ୱରୀ (ଠାକୁରାଣୀ) ତଥା ଉପ୍ପଳା ଗ୍ରାମ ଓ ଉତ୍ପଳେଶ୍ୱର (ମହାଦେବ) ଅଦ୍ୟାବଧି ପ୍ରାଚୀନ ଚିତ୍ରୋତ୍ପଳା ନଦୀର ନାମସଂକେତ ବହନ କରୁଛନ୍ତି । ସାରଳାଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଭୁବନେଶ୍ୱର ଚିତୋତ୍ପଳା ନଦୀର ଅନତିଦୂରବର୍ତ୍ତୀ ଥିଲା ।

ନବ ଲକ୍ଷ ଯୋଦ୍ଧା ଘେନି ସେ ମଲ୍ହାର ବନରେ ।
ବେଷ୍ଟ-ବିନୋଦେ ଭ୍ରମଇ ସେ ଚିତ୍ରୋତ୍ପଳା ନଦୀ ତୀରେ

× × ×

କ୍ରୀତିବାସ କ୍ଷେତ୍ର ଯେ ସୁବର୍ଣ୍ଣଚୂଡ଼ ଗିରି ।
ବିଜୟେ ପରମାନନ୍ଦ ଦେବ ତ୍ରିପୁରାରି ।। (୨ ସଭା ୫୧)
ଚିତ୍ରଉତ୍ପଳା ତୀରେ ଉତ୍ପଳେଶ୍ୱର ପୂଜି
ଅମରେଶ୍ୱର ଦ୍ରଶନେ ଅନେକ ତୋଷ ଭଜି ।।
ପ୍ରବେଶ ହେଲେ ଯାଇ ଯେକାମ୍ରର ତୀର୍ଥେ ।
ବିନ୍ଦୁସାଗରେ ସ୍ନାନ କରି ଦେଖିଲେ ବିଶ୍ୱନାଥେ ।। (ସ୍ୱର୍ଗାରୋହଣ ୩୪)

ପ୍ରାଚୀ ନଦୀ ଏହି ପ୍ରାଚୀନ ଚିତ୍ରୋତ୍ପଳାର ଏକ ଶାଖାନଦୀ ଥିଲା । ପ୍ରାଚୀ ନଦୀର ମାହାତ୍ମ୍ୟଗୁଡ଼ିକର ବର୍ଣ୍ଣନାରୁ ନିର୍ଣ୍ଣୟ କରାଯାଇପାରେ ଯେ ପୁରୀ ଜିଲ୍ଲା ମଧ୍ୟରେ ଚିତ୍ରୋତ୍ପଳା ପ୍ରବାହିତ ହେଉଥିଲା । ଚିତ୍ରୋତ୍ପଳାର ଧାର କୁଶଭଦ୍ରା ନଦୀର ଶଯ୍ୟା ଧରି କୋଣାର୍କ ପାଖରେ ସମୁଦ୍ରରେ ମିଶିଥିଲା । ବଳରାମ ଦାଶଙ୍କ 'ପ୍ରାଚୀ ମାହାତ୍ମ୍ୟ' (୧ମ ଅଧ୍ୟାୟ) ଅନୁସାରେ ଭଦ୍ରା (ଅର୍ଥାତ୍ କୁଶଭଦ୍ରା) ନଦୀ ହିଁ ଚିତ୍ରୋତ୍ପଳା –

''ସଂସାରେ ଖ୍ୟାତ ହେଲେ ପୁଣି । ଭଦ୍ରା ନାମରେ ସେ ପାବନୀ ।।
କେ ବୋଲେ ଚିତ୍ର ଯେ ଉତ୍ପଳା । ନାମ ବହିଲେ ସେ ଅବଳା ।।

କୋଣାର୍କ ନିକଟରେ ପଥରବୁହା ନଈ, ବୋଇତ କୁଦ ଆଦି ନାମ ବହନ କରୁଥିବା ଜାଗାମାନ ଅଦ୍ୟାପି ରହିଛି । କୋଣାର୍କ ମନ୍ଦିରରେ ବ୍ୟବହୃତ ଓଜନଦାର ପଥରମାନ ସୁଗଭୀରା ନଦୀ ବିନା ଅନ୍ୟଥା ସୁଦୂର ଗଡ଼ଜାତ ଅଞ୍ଚଳରୁ ଆଣିବା ସମ୍ଭବପର ହୁଅନ୍ତା ନାହିଁ । ସେହି ନଦୀ ମହାନଦୀ ବା ଚିତ୍ରୋତ୍ପଳାର ମୁଖ୍ୟ ଧାର ହେବା ଅନୁମେୟ । ଅଧୁନା ଚିତ୍ରୋତ୍ପଳାର ସଂକେତ, ଏପରିକି ସ୍ମୃତି ମଧ୍ୟ କୋଣାର୍କ ଅଞ୍ଚଳରୁ ଲୋପ ପାଇ ଯାଇଥିଲେ ହେଁ କବି ଅର୍କକ୍ଷେତ୍ର ସହିତ ସଂପୃକ୍ତ କରି ଚିତ୍ରୋତ୍ପଳାର ସ୍ଥିତିର ଚିତ୍ର ଦେଇଥିବାରୁ ପ୍ରାଚୀନ ଚିତ୍ରୋତ୍ପଳାର ଗତିପଥ ବିଷୟ ସ୍ପଷ୍ଟ ହୋଇଯାଉଛି ।

କୁହାଯାଇଛି, ମହାନଦୀର ପ୍ରାଚୀନ ନାମ ଚିତ୍ରୋତ୍ପଳା । ଏହାର ବାମପଟକୁ ଶିଶୁଆ ପାଖରୁ ବାହାରିଥିବା ଏକ ଶାଖାନଦୀର ଚିତ୍ରତଳା ନାମଟି ଚିତ୍ରୋତ୍ପଳାର ଅପଭ୍ରଂଶ । ଚିତ୍ରତଳା ସାଲେପୁର, ତେଣାକୁଡ଼ା, ପାଟକୁରା, ମାର୍ଶାଘାଇ ଦେଇ ପୁଣି ମହାନଦୀରେ ମିଶିଛି । ଏହି ଚିତ୍ରତଳା କି ଆଧୁନିକ ମହାନଦୀର କଟକଠାରୁ ପୂର୍ବାଭିମୁଖେ ପ୍ରବାହିତ ମୂଳସ୍ରୋତ ଯେ ସାରଳାଦାସଙ୍କ ବର୍ଣ୍ଣନାର ଚିତ୍ରୋତ୍ପଳା ନୁହେଁ ତାହା କୋଣାର୍କ ଓ ଚନ୍ଦ୍ରଭାଗାର ଉଲ୍ଲେଖରୁ ନିଃସନ୍ଦେହ ହୋଇଯାଉଛି । ତେଣୁ ଚିତୋତ୍ପଳା ତୀରସ୍ଥ ଜଙ୍ଖେରପୁର ଓ ତନ୍ନିକଟ ସାରୋଳ ଗ୍ରାମ ନିଶ୍ଚୟ କୋଣାର୍କର ଅଦୂରବର୍ତ୍ତୀ, ତାହା ଆଧୁନିକ ଝଙ୍କଡ଼ ହୋଇପାରିବନାହିଁ ।

## ୨. ଚନ୍ଦ୍ରଭାଗା

ସାରଳାଦାସ ନିଜ ବାସସ୍ଥାନ ନିକଟରେ ଚନ୍ଦ୍ରଭାଗା ନଦୀ ଥିବା କଥା ଅନେକ ସ୍ଥାନରେ ଲେଖିଛନ୍ତି (ଆଦି ୪; ୨ ସଭା ୧୧୪; ମଧ୍ୟ ୮୨୭; ବିରାଟ ୭୦୯; ଭୀଷ୍ମ ୩୧୧; ଦ୍ରୋଣ ୧୮୫; କର୍ଣ୍ଣ ୧୬୦; ସ୍ୱର୍ଗାରୋହଣ ୯୫) । ନଦୀଟି ଚିତ୍ରୋତ୍ପଳାରୁ ବାହାରି କବିଙ୍କ ବାସସ୍ଥାନ ନିକଟରେ ଐଶାନ୍ୟ କୋଣକୁ ପ୍ରବାହିତ ହେବା ବିଷୟ ଲେଖାଅଛି (ଭୀଷ୍ମ ୩୧୧; ଦ୍ରୋଣ ୧୮୫) । ଚନ୍ଦ୍ରଭାଗା ନଦୀର ସ୍ଥିତି ବର୍ତ୍ତମାନ ନାହିଁ, କେବଳ କୋଣାର୍କ ମନ୍ଦିରର ଦକ୍ଷିଣକୁ ସମୁଦ୍ର କୂଳରେ ଥିବା ଏକ ଜଳାଶୟ ଚନ୍ଦ୍ରଭାଗା ବୋଲାଏ । ଏହି ଜଳାଶୟ ହିଁ କ୍ଷେତ୍ରମାହାତ୍ମ୍ୟ କଥିତ ଅର୍କତୀର୍ଥ ଓ ମାଘ ତିଳସପ୍ତମୀର ବିଖ୍ୟାତ 'ଚନ୍ଦ୍ରଭାଗା ବୁଡ଼' ଏହି ଜଳାଶୟରେ ଅନୁଷ୍ଠିତ ହୁଏ । ଚନ୍ଦ୍ରଭାଗା ନଦୀର ବାସ୍ତବ ସ୍ଥିତି ସାରଳାଦାସଙ୍କ ସମୟରେ ମଧ୍ୟ ନଥିଲା । ସାରଳା ଦାସ 'କୋଣାଅର୍କ ତୀର୍ଥ' ଚନ୍ଦ୍ରଭାଗା ଗୁପ୍ତ ଥିବା କଥା ଅନେକଠାରେ ଜଣାଇଛନ୍ତି —

କଳି-ଗୋପ୍ୟାନ ତୀର୍ଥ ଚନ୍ଦ୍ରଭାଗା ବୋଲି ନଦୀ
ଇଶାନ୍ୟ ଦିଗେ ସେ ଚିତ୍ରୋତ୍ପଳା ଅଛି ଭେଦି ।। (୨ ସଭା ୧୧୪)
ଗୋପ୍ୟାନ ଭାଗୀରଥୀ ଚନ୍ଦ୍ରଭାଗା ନଦୀ
ଚିତ୍ରୋତ୍ପଳା ଡଂ ସେ ଇଶାନ୍ୟ ଭାଗେ ଭେଦି ।। (ଭୀଷ୍ମ ୩୧୧)

ଗୋଟିଏ ଅସ୍ତିତ୍ୱହୀନ ନଦୀକୁ ସାରଳା ଦାସ ତାଙ୍କ ବାସସ୍ଥାନର ସଙ୍କେତ ଭାବରେ ବ୍ୟବହାର କରିଥିବାର ରହସ୍ୟ ଭେଦ ଦୁରୂହ ନୁହେଁ । ବୈଦିକ ନଦୀ ସରସ୍ୱତୀର ଧାର ଶୁଷ୍କ ହେବା ପରେ ମଧ ତାହା ପୁଣ୍ୟତୀର୍ଥ ଭାବରେ ପୁରାଣରେ ପ୍ରସିଦ୍ଧି ଲାଭ କରି ଲାଗିଲା ଓ ସରସ୍ୱତୀ କଳିଯୁଗରେ ଅନ୍ତଃସଲିଳା ହୋଇ ରହିଛି ଓ ଠାଏଁ ଠାଏଁ ଖାଲୁଆ ଭୂମିରେ ଫୁଟି ବାହାରୁଛି ବୋଲି କୁହାଗଲା । ନିକଟରେ ଖ୍ରୀ. ୨୦୦୨ରେ ଭାରତ ସରକାର ସେଟାଲାଇଟ୍ ଫୋଟୋର ଅନୁଧ୍ୟାନ ଓ ଅନ୍ୟାନ୍ୟ ଐତିହାସିକ ପ୍ରମାଣ ବଳରେ ବୈଦିକ ସରସ୍ୱତୀ ନଦୀର ଗତିପଥର ନିର୍ଦ୍ଧାରଣ ପାଇଁ ଏକ ବିଶେଷଜ୍ଞ ଦଳ ନିଯୁକ୍ତ କରିଛନ୍ତି । ସରସ୍ୱତୀର ଆଦର୍ଶର ଅନୁସରଣରେ ଭାରତର ନାନା ସ୍ଥାନରେ ଗୁପ୍ତତୀର୍ଥମାନଙ୍କର ଉଦୟ ଘଟିଛି । ଚନ୍ଦ୍ରଭାଗା କଳିଯୁଗର ଗୁପ୍ତ ପୁଣ୍ୟନଦୀ (କଳିଗୋପ୍ୟାନ ତୀର୍ଥ) ଓ ଗୁପ୍ତଗଙ୍ଗା (ଗୋପ୍ୟାନ ଭାଗୀରଥୀ) ବୋଲାଇଛି ସେହି ପ୍ରକାର ଧୋରଣୀରେ ।

ମହାଭାରତ (ସଂସ୍କୃତ) ଓ ବିଭିନ୍ନ ପୁରାଣରେ ଯେଉଁ ଚନ୍ଦ୍ରଭାଗା ନଦୀର ଉଲ୍ଲେଖ ମିଳେ ତାହା ପଞ୍ଜାବର ଏକ ନଦୀ ବିଷୟକ । ଏହାର ବୈଦିକ ନାମ ଅସିକ୍ନି, ପୌରାଣିକ ନାମ ଚନ୍ଦ୍ରଭାଗା ଓ ଆଧୁନିକ ନାମ ଚେନାବ୍ । ଏହାର ତଟବର୍ତ୍ତୀ ମୂଳସ୍ଥାନ (ଆଧୁନିକ ନାମ ମୁଲ୍‌ତାନ୍) ଠାରେ ଏକ ବିଖ୍ୟାତ ସୂର୍ଯ୍ୟମନ୍ଦିର ଅବସ୍ଥିତ ଥିଲା । ଚୀନ ଦେଶାଗତ ପରିବ୍ରାଜକ ହୁଏନ୍‌ସାଂ (ଖ୍ରୀ. ୭ମ ଶତାବ୍ଦୀ) ତାଙ୍କର ଭାରତ ବିବରଣ ମଧ୍ୟରେ ସେହି ବିରାଟ ସୂର୍ଯ୍ୟମନ୍ଦିରର କଥା ଲେଖିଛନ୍ତି । ଘଜନୀର ହିନ୍ଦୁମନ୍ଦିର ଧ୍ୱଂସକାରୀ ମାମୁଦ୍ ଖ୍ରୀ.୧୦୧୦ରେ ମୁଲତାନ୍ ଉପରେ ଆକ୍ରମଣ କରି ତାହାକୁ ସ୍ୱରାଜ୍ୟଭୁକ୍ତ କରିବା ପରଠାରୁ ହିନ୍ଦୁଜନତାଙ୍କର ଧର୍ମକ୍ଷେତ୍ର ଭାବରେ ତାହାର ପ୍ରାଧାନ୍ୟ ହ୍ରାସ ପାଇଲା । ଭବିଷ୍ୟପୁରାଣ ଓ ସାମ୍ବପୁରାଣରେ ମୂଳସ୍ଥାନଠାରେ ସୂର୍ଯ୍ୟମନ୍ଦିର ପ୍ରତିଷ୍ଠା ବିଷୟକ ପୌରାଣିକ ଆଖ୍ୟାନ ବର୍ଣ୍ଣିତ ହୋଇଛି । କୃଷ୍ଣଙ୍କ ପୁଅ ସାମ୍ବ ସେଠାରେ ସୂର୍ଯ୍ୟଙ୍କୁ ଉପାସନା କରି ବ୍ୟାଧିମୁକ୍ତ ହେବାପରେ ଦେବାଳୟ ତୋଳିଥିବା କଥା ସେହି ଆଖ୍ୟାନରେ ରହିଛି । ତେଣୁ ମୁଲ୍‌ତାନ୍ ସାମ୍ବପୁର/ସାମ୍ବପୁରୀ ନାମରେ ମଧ୍ୟ ପରିଚିତ ଥିଲା । କୋଣାର୍କ ମନ୍ଦିର ତୋଳା ହେବା ପରେ କୋଣାର୍କକୁ ପୌରାଣିକ ଆଧାର ଯୋଗାଇବା ଆବଶ୍ୟକ ହୋଇଥିଲା । ଏହି ପରିସ୍ଥିତିରେ ମୁଲ୍‌ତାନ୍‌ର ପରିତ୍ୟକ୍ତ ସୂର୍ଯ୍ୟମନ୍ଦିରର କାହାଣୀଟିକୁ କୋଣାର୍କ ମନ୍ଦିରକୁ ସ୍ଥାନାନ୍ତରିତ କରାଯାଇଥିବା ଜଣାପଡୁଛି । ଫଳରେ କୋଣାର୍କ ମନ୍ଦିର ନିକଟରେ ଚନ୍ଦ୍ରଭାଗା ନାମକ ଏକ ନଦୀର ଆବଶ୍ୟକତା ଦେଖାଦେଲା । କୋଣାର୍କ ମନ୍ଦିର ନିର୍ମାଣ ବେଳେ ପଥର ବୋହି ଆଣିବା ପାଇଁ ଚିତ୍ରୋତ୍ପଳା ବା ମହାନଦୀର ଏକ ଶାଖା (କୁଶଭଦ୍ରା ଦେଇ) ଥିଲା । କୋଣାର୍କ ମନ୍ଦିର କଡ଼ ଦେଇ ଏବେ ବି ଧାରେ ଖାଲୁଆ ଭୂଇଁ ସମୁଦ୍ର କୂଳର ଚନ୍ଦ୍ରଭାଗା ବୁଢ଼ ସ୍ଥାନ ପର୍ଯ୍ୟନ୍ତ ଲମ୍ବିଛି । ଏହି ଗହୀର ଧାର ସେଠାରେ ଏକ ଜଳସ୍ରୋତ ଅତୀତରେ ଥିବା

କଥା ସୂଚାଉଛି । ମନ୍ଦିର ନିର୍ମାଣ ପରେ ସେହି ଜଳସ୍ରୋତର ପ୍ରୟୋଜନୀୟତା ରହିଲା ନାହିଁ । ବୋଧହୁଏ, କୋଣାର୍କ କ୍ଷେତ୍ରକୁ ବନ୍ୟାର ପ୍ରକୋପରୁ ବଞ୍ଚାଇବା ଲକ୍ଷ୍ୟରେ କୁଶଭଦ୍ରାର ଜଳକୁ ବେଦପୁରଠାରୁ ଦକ୍ଷିଣଦିଗକୁ ମୁହାଁଇ ଦିଆଗଲା ନିଆଖିଆ ନଦୀର ସ୍ରୋତ ଆଡ଼କୁ । ଏବେବି ତଳ ମୁଣ୍ଡରେ ନଦୀର ନାମ ନିଆଖିଆ, କୁଶଭଦ୍ରା ନୁହେଁ । ଫଳରେ କୋଣାର୍କ ତଡ଼ର ଚିତ୍ରୋତ୍ପଳାର ଜଳସ୍ରୋତ ଆଉ ରହିଲା ନାହିଁ । ପରେ ଯେତେବେଳେ ସାମ୍ବପୁରାଣର ଆଖ୍ୟାନକୁ ଏଠାରେ ରୋପଣ କରାଗଲା ଶୁଖିଲା ଜଳସ୍ରୋତର ଶଯ୍ୟାଟି ପୁରାଣ ବର୍ଣ୍ଣିତ ଚନ୍ଦ୍ରଭାଗା ନଦୀ ବୋଲି ଚିହ୍ନାଇ ଦିଆଗଲା । ଏହା ହେଲା ଚନ୍ଦ୍ରଭାଗା କଳିଯୁଗରେ ଗୁପ୍ତ ହେବା ରହସ୍ୟ ।

ମୁସଲମାନ ଶାସନ ବେଳେ ଉତ୍ତର ଭାରତର ପ୍ରସିଦ୍ଧ ତୀର୍ଥ କ୍ଷେତ୍ରଗୁଡ଼ିକର ମାହାତ୍ମ୍ୟକୁ ହିନ୍ଦୁଶାସିତ ରାଜ୍ୟ ମଧ୍ୟକୁ ସ୍ଥାନାନ୍ତରିତ କରାଯାଇଛି । ଆଧୁନିକ କଟକ ନିକଟରେ ପ୍ରସିଦ୍ଧ ବାରାଣସୀ (କାଶୀ)ର ବିଶ୍ୱନାଥ/ବିଶ୍ୱେଶ୍ୱରଙ୍କ ମନ୍ଦିର ପ୍ରତିଷ୍ଠା କରି ସେହି ସ୍ଥାନକୁ 'ଅଭିନବ ବାରାଣସୀ' ବୋଲି ନାମିତ କରାଯାଇଛି ଓ 'ଅଭିନବ ବାରାଣସୀ' ସଂଲଗ୍ନ ଚିତ୍ରୋତ୍ପଳା (ମହାନଦୀ)କୁ ଗଙ୍ଗାନଦୀର ମର୍ଯ୍ୟାଦା ଦିଆଯାଇଛି – "କଳୌ ଚିତ୍ରୋତ୍ପଳା ଗଙ୍ଗା ।" ଅନୁରୂପ ଲକ୍ଷ୍ୟ ନେଇ ପ୍ରାଚୀନଦୀକୁ ପୌରାଣିକ ସରସ୍ୱତୀ ନଦୀ ସହିତ ଚିହ୍ନିତ କରି ପୁରାଣ ବର୍ଣ୍ଣିତ ସରସ୍ୱତୀ ସହିତ ସଂପୃକ୍ତ ବାଡ଼ବାନଳ ଆଖ୍ୟାନକୁ ସ୍ଥାନାନ୍ତରିତ କରି 'ପ୍ରାଚୀମାହାତ୍ମ୍ୟ' ସୃଷ୍ଟି ମାଧ୍ୟମରେ "କଳୌ ପ୍ରାଚୀ ସରସ୍ୱତୀ" ବୋଲି କୁହାଯାଇଛି । ତୀର୍ଥରାଜ ପ୍ରୟାଗର ପ୍ରତିଷ୍ଠା ତୀର୍ଥରାଜ ପୁରୀକୁ ଦିଆଯାଇଛି । ମୁସଲମାନ ଶାସନର ବୈରତା ବେଳେ ଭାରତରେ ସନାତନ ଧର୍ମପାଳନ ପାଇଁ ଆବଶ୍ୟକ ପୁଣ୍ୟ କ୍ଷେତ୍ରଗୁଡ଼ିକ କିପରି ଦେଶାନ୍ତରୀ ହେଉଥିଲେ ତାହାର ସମୁଚିତ ଚର୍ଚ୍ଚା ଧର୍ମ ନିରପେକ୍ଷ ଭାରତର ଐତିହାସିକମାନେ କରିନାହାନ୍ତି, ବୋଧହୁଏ ସାଂପ୍ରଦାୟିକ ବିଦ୍ୱେଷକୁ ଖୋରାକ ଯୋଗାଇବା ଆଶଙ୍କାକରି । କୋଣାର୍କ ମନ୍ଦିର ନିକଟରେ ଚନ୍ଦ୍ରଭାଗା ନଦୀର ସ୍ଥିତି ଓ ତାହା ଗୁପ୍ତଗଙ୍ଗା (ଗୋପ୍ୟାନ ଭାଗୀରଥୀ) ହେବା ବିଶ୍ୱାସର ତାତ୍ପର୍ଯ୍ୟ ଏହି ଦୃଷ୍ଟିରୁ ଚିନ୍ତନୀୟ ।

ଚନ୍ଦ୍ରଭାଗା ଝଙ୍କଡ଼ ପ୍ରଗଣା ସହିତ ଅସଂପୃକ୍ତ, ସୂର୍ଯ୍ୟମନ୍ଦିର ସହିତ ତାହାର ସଂପର୍କ ଥିବାରୁ ତାହାର ସ୍ଥିତି କୋଣାର୍କ ନିକଟରେ ଥିବା କଳ୍ପନା ଜନ୍ମିଲା । ତେଣୁ ସାରଳାଦାସଙ୍କ ବାସସ୍ଥାନ 'ଚନ୍ଦ୍ରଭାଗା– କୋଣାଅର୍କତୀର୍ଥ'ର ଅଦୂରବର୍ତ୍ତୀ ବୋଲି ନିରୂପଣ କରିବାକୁ ହେଉଛି ।

## ୩. ବୁଧମାତା

ସାରଳାଦାସ ନିଜର ବାସସ୍ଥାନକୁ ଚିହ୍ନାଇବା ମଧ୍ୟରେ 'ବୃଦ୍ଧମାତା' ନାମଧେୟ ନଦୀକୁ ସଂକେତ କରୁଛନ୍ତି ।

ଯେ ସେ ଜମ୍ବୋଦୀପ ଭ୍ରଥଖଣ୍ଡ ମହୀ ଓଡ଼୍ରାଷ୍ଟ୍ରେ ।
ଭୁବନ ଯାଯାନଗ୍ରର ପୂର୍ବଦିଗ ମଉଦଧି ନିକଟେ ।।
ଶ୍ୱେତବରେହା ନୀଳସୁନ୍ଦର ଗିରି ମଧ ସ୍ଥାନେ ।
ମହାବାକ୍ୟ ଆଖ୍ୟାନେ ଚନ୍ଦ୍ରଭାଗା ଅର୍କତୀର୍ଥ ଈଶାନେ ।।
ପୁରରବା ସଞ୍ଚିତ ସେ ଝଂଖେରପୁର ଯାହା ବୋଲି ।
ଶ୍ରୀ ଗିରିଜାର ଆଗ୍ୟାଂୟେ ମୁହିଂ ତହିଂ ଜନମିଲି ।।
ଚିତ୍ରଉତ୍ପଳା ଭାଗୀ ଈଶାନ ମୂରତି ।
ବୃହଧ୍ୱଜ ମୁନି ତହିଂ ତପେଣ ବସିଛନ୍ତି ।।
ତାହାଙ୍କ ଜଟା ଭେଦି ବହଇ ନଦୀ ବୃଦ୍ଧମାତା ।
କନକାବତୀ ପାଟଣା ଯେ ପ୍ରଶୁରାମଙ୍କର ସଞ୍ଚିତା । (ବିରାଟ ୭୦୯)

ଚନ୍ଦ୍ରଭାଗା ଓ ବୃଦ୍ଧମାତା ନଦୀଦ୍ୱୟ ମହୋଦଧି ପାଖରେ ମିଶିଥିବା ବର୍ଣ୍ଣନା ରହିଛି–

ଚନ୍ଦ୍ରଭାଗା ନାମେ ଏକଇ ନଦୀ ଗୋଟି ।
ବୃଦ୍ଧମାତା ପାରୁଶେ ମଉଦଧିରେ ଯାଇ ଫୁଟି ।। (ଆଦି ୫)

ସାରଳାଦାସ ଅନ୍ୟତ୍ର (ମଧ ୨୦୫) ନଦୀର ନାମଟି ବୁଧମାତା ଥିବା ଜଣାଇଛନ୍ତି । ତାଙ୍କ ମହାଭାରତକୁ ଛାଡ଼ିଲେ ଅନ୍ୟ ସୂତ୍ରରୁ ବୃଦ୍ଧମାତା ବା ବୁଧମାତା ନାମକ କୌଣସି ନଦୀର ସ୍ଥିତିର ପ୍ରମାଣ ମିଳେ ନାହିଁ । ସାରଳା ଦାସ ମଧ କହିଛନ୍ତି ଯେ ନଦୀଟି ପ୍ରକଟ ଅବସ୍ଥାରେ ନଥିଲା, ଗୁପ୍ତ ଥିଲା– "ବହଇ ଗୋପ୍ୟାନେ ବୁଧମାତା ନାମେ ନଦୀ" (ମଧ ୨୦୫) । ଏଥିରୁ ସଂକେତ ମିଳୁଛି ଚନ୍ଦ୍ରଭାଗା ପରି ବୁଧମାତା ମଧ କଳ୍ପନାପ୍ରସୂତ । ତାହା ସାରଳାଦାସଙ୍କ ଉର୍ବର ମାନସ କ୍ଷେତ୍ରଜାତ କି ପରଂପରାଗତ ଲୋକପ୍ରବାଦର ଅଂଶ କହି ହେଉନାହିଁ । ତେବେ, ଚନ୍ଦ୍ରଭାଗାର 'ଚନ୍ଦ୍ର' ସହିତ 'ବୁଧମାତା'ର ବୁଧ ସଂପୃକ୍ତ ଥିବା ସମ୍ଭବ । ପୌରାଣିକ ଆଖ୍ୟାନ ଅନୁସାରେ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ଚନ୍ଦ୍ର ହରଣ କରିଥିଲେ । ଚନ୍ଦ୍ରଙ୍କ ବୀର୍ଯ୍ୟରେ ତାରାଙ୍କ ଗର୍ଭରୁ ଜାତ ହେଲେ ବୁଧ । ଏହି ବୁଧଙ୍କ ପୁତ୍ର ପୁରୁରବା ହେଉଛନ୍ତି ଚନ୍ଦ୍ରବଂଶର ଆଦିପୁରୁଷ । କୌରବ-ପାଣ୍ଡବାଦି ଚନ୍ଦ୍ରବଂଶର ଶାଖା, ଯାହାଙ୍କୁ ନେଇ ମହାଭାରତ ଚରିତ ହୋଇଛି । କବିଙ୍କ ଗ୍ରାମ ଝଂଖେରପୁର ସେହି ପୁରୁରବାଙ୍କ ଦ୍ୱାରା ନିର୍ମିତ ବୋଲି କହି କବି ମହାଭାରତ ସହିତ ନିଜ ଗ୍ରାମର ଇତିହକୁ ଯୋଡ଼ିଥିବା ସମ୍ଭବ । ବୃହଧ୍ୱଜ କିଏ ? ଠିକଣା କରି ହେଉନାହିଁ । ଏହା ମଧ ସାରଳାଦାସଙ୍କ କଳ୍ପନାର ଅଂଶ । ସେ ବୃହସ୍ପତି (ବୃହ୍+ପତି) ନାମରୁ ବୃହତ୍ ଧ୍ୱଜ ନାମଟିକୁ ଆଣିଥାଇ ପାରନ୍ତି । ଧ୍ୱଜର ଅର୍ଥ ପୁଂଚିହ୍ନ, ମେଢ୍ର । ଧ୍ୱଜ ପତିର ସଂକେତାତ୍ମକ । ମନେ ହେଉଛି, ଚନ୍ଦ୍ରଭାଗା, ବୁଧମାତା (ତାରା), ପୁରୁରବା ଓ ବୃହଧ୍ୱଜ (ବୃହସ୍ପତି) ଆଦିର କଳ୍ପନା ଭିତରେ ପ୍ରସିଦ୍ଧ ଆଖ୍ୟାନଟିର ପ୍ରତିଫଳନ ରହିଛି ।

ଝଙ୍କଡ଼ ପ୍ରଗଣାର କନକପୁର ପାଖର ଗୋଟିଏ ପୋଖରୀକୁ 'ବୁଢ଼ା ନଈ' ବୋଲି ଚିହ୍ନାଇ ତାହା ସାରଳାଦାସଙ୍କ ବର୍ଣ୍ଣିତ ବୃଦ୍ଧାମାତା ହେବା କଥା କହୁଛନ୍ତି । ସାରଳାଦାସଙ୍କୁ ଝଙ୍କଡ଼ ସାରଳାଙ୍କ ସହିତ ସଂପୃକ୍ତ କରାଇଦେବା ଫଳରେ ମହାଭାରତରେ ଉଲ୍ଲିଖିତ ସ୍ଥାନ-ସୂଚକଗୁଡ଼ିକୁ ସେଠାକୁ ଆମଦାନୀ କରିବା ଆବଶ୍ୟକ ହୋଇଥିବ, ଯାହା ଫଳରେ ଗୋଟିଏ ଗଡ଼ିଆର ନାମ 'ବୁଢ଼ାନଈ' ହୋଇଛି । କିନ୍ତୁ ବୃଦ୍ଧମାତାର ସ୍ଥାନ 'ମଉଦଧି ନିକଟେ' ଚନ୍ଦ୍ରଭାଗା ପାରୁଶେ ବୋଲି ସ୍ପଷ୍ଟ ଲେଖାଥିବାରୁ କନକପୁର ପାଖ ଗଡ଼ିଆ ବୃଦ୍ଧମାତା ହୋଇପାରିବ ନାହିଁ ।

ବିରାଟ ପର୍ବର ଉଦ୍ଧୃତିରେ ଶ୍ୱେତବରେହା ଓ ନୀଳସୁନ୍ଦରଗିରି କଥା ଲେଖାଅଛି । ସାରଳାଦାସଙ୍କ ନୀଳସୁନ୍ଦରଗିରି ହେଉଛି ଶ୍ରୀକ୍ଷେତ୍ର, ଏହା ନୀଳଗିରି (ଶ୍ରୀମନ୍ଦିର ଅଞ୍ଚଳ) ଓ ସୁନ୍ଦରଗିରି (ଗୁଣ୍ଡିଚାମଣ୍ଡପ ଅଞ୍ଚଳର)ର ସମଷ୍ଟି । ଶ୍ୱେତବରେହା କେନ୍ଦ୍ରାପଡ଼ା ଜିଲ୍ଲାର ସମୁଦ୍ର ତଟବର୍ତ୍ତୀ 'ସାତଭାୟା' ହୋଇପାରେ ବୋଲି ଡଃ ନବୀନକୁମାର ସାହୁ ଯେଉଁ ଚିହ୍ନଟ କରିଛନ୍ତି (ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଶା ଇତିହାସ, ଭାଗ-୧, ପୃ. ୧୫୩) ତାହା ଯଥାର୍ଥ ମନେହୁଏ । ପୁରୀ ଓ ସାତଭାୟା ଠିକ୍ ମହୋଦଧି କୂଳରେ । ଏହି ଦୁଇ ସ୍ଥାନର ମଧ୍ୟଗତ ('ମଧ୍ୟ ସ୍ଥାନେ') ସମୁଦ୍ର ନିକଟ ସ୍ଥାନ ଭାବରେ କୋଣାର୍କ ମନ୍ଦର ପାଖ ସ୍ଥାନକୁ ବାଛିବାକୁ ହେଉଛି । ଝଙ୍କଡ଼ ପ୍ରଗଣା ସମୁଦ୍ର ନିକଟ ସ୍ଥାନ ବୋଲି ସେଠାର କୌଣସି ଲୋକ କହିବା ସମୀଚୀନ ବୋଧ ହେଉନାହିଁ ।

## ୪. ଓଡ଼ରାଷ୍ଟ୍ର

ସାରଳାଦାସ ଓଡ଼ରାଷ୍ଟ୍ର ନାମ ଅଧିକତଃ ବ୍ୟବହାର କରିଛନ୍ତି, ସେ ଓଡ଼ିଶା ଓ ଉତ୍କଳ ନାମ ମଧ୍ୟ ବ୍ୟବହାର କରିଛନ୍ତି । ଅନେକ ଐତିହାସିକ ଉତ୍କଳ ଓ ଉଡ୍ର (ବା ଓଡ୍ର) ପୃଥକ୍ ପୃଥକ୍ ରାଜ୍ୟ ବୋଲି ଲେଖିଛନ୍ତି । ଏ ସିଦ୍ଧାନ୍ତ ଭ୍ରମାତ୍ମକ । ଏହା ଭାଗବତର ଗୋଟିଏ (୯/୨୩/୫) ଶ୍ଳୋକର ଅଶୁଦ୍ଧ ପାଠାନ୍ତର ଉପରେ ନିର୍ଭର କରିବାରୁ ଘଟିଛି । ବର୍ତ୍ତମାନର ଆଲୋଚନା ପାଇଁ ଐତିହାସିକମାନଙ୍କର ଭ୍ରାନ୍ତମତର ଖଣ୍ଡନ ଅପରିହାର୍ଯ୍ୟ ନୁହେଁ । 'ଝଙ୍କାର'ର ଜୁଲାଇ ୨୦୦୨ ସଂଖ୍ୟାରେ ପ୍ରକାଶିତ ମୋର 'ଓଡ୍ର ଓ ଉତ୍କଳ: ଭିନ୍ନ ନା ଅଭିନ୍ନ' ପ୍ରବନ୍ଧରେ ଭ୍ରାନ୍ତିର ଖଣ୍ଡନ ରହିଛି । ପ୍ରାକୃତରେ ଯାହା ଉଡ୍ର ବା ଓଡ୍ର ତାହା ହିଁ ସଂସ୍କୃତାୟିତ ରୂପରେ ଉତ୍କଳ । ସାରଳାଦାସ ରାଜ୍ୟଗୁଡ଼ିକ ଜନସମୁଦାୟଙ୍କ ନାମ ଗ୍ରହଣ କରୁଥିବା କଥା ଜାଣିଥିଲେ । ତେଣୁ ଓଡ଼ ଜାତିକୁ ଧରି ଓଡ଼ରାଷ୍ଟ୍ର ନାମଟିକୁ ଦେଇଛନ୍ତି । ଆଧୁନିକ ଓଡ଼ିଶା (ଓଡ଼ବିଶ୍ୟା ଶବ୍ଦଜ) ଓ ଓଡ଼ିଆ ସେହି ଓଡ଼ ନାମରୁ ଜନ୍ମିଛି ସତ୍ୟ କିନ୍ତୁ ସମଗ୍ର ଓଡ଼ିଶା ଓଡ଼ରାଷ୍ଟ୍ର ନୁହେଁ । ପୁରୀ, କେନ୍ଦ୍ରାପଡ଼ା ଓ ଯାଜପୁର ଜିଲାତ୍ରୟର ସମୁଦ୍ରକୂଳିଆ ଆଠଟି ଇଲାକାକୁ ସମ୍ମିଳିତଭାବରେ 'ଓଡ଼ରାଷ୍ଟ୍ର' କୁହାଯାଉଥିଲା । ଏହା ଥିଲା ସାରଳାଦାସଙ୍କ ଭାଷାରେ

"ଭୁବନ ଯାଯନଗ୍ରର ପୂର୍ବଦିଗ ମଉଦଧି ନିକଟେ ଶ୍ୱେତବରେହା ନୀଳସୁନ୍ଦରଗିରି ମଧ୍ୟ ସ୍ଥାନେ" (ବିରାଟ ୭୦୯)।

'ପ୍ରାଚୀନଦୀର ଐତିହାସିକ ବିଭବ' ପୁସ୍ତକରେ ଡାକ୍ତର ରାଧାଚରଣ ପଣ୍ଡା ଓଡ଼ିଶାର ପୂର୍ବ ଉପକୂଳର ଓଡ଼ରାଷ୍ଟ୍ରର ପରିଚୟ ଦେଇ ଲେଖିଛନ୍ତି (ପୃ. ୨୧୧) :—

"ଓଡ଼ିଶାର କୌଣସି ବହିଃଶତ୍ରୁଙ୍କୁ ନଦୀ ମୁହାଣ ଦେଇ ଦେଶ ମଧ୍ୟରେ ପ୍ରବେଶ କରାଇ ନ ଦେବା ନିମନ୍ତେ ଓଡ଼ିଶାର ସ୍ୱାଧୀନ ରାଜାମାନେ ଯେଉଁ କେତୋଟି ଖଣ୍ଡାଏତ ବା ସାମନ୍ତ ରାଜାମାନଙ୍କୁ ସମୁଦ୍ର ଉପକୂଳରେ ବସାଇଥିଲେ ତନ୍ମଧ୍ୟରୁ ଏ ମରିଚପୁର ରାଜବଂଶ ଗୋଟିଏ । ମରିଚପୁର ସଂଗେ ଆଉ ସାତୋଟି ସାମନ୍ତ ରାଜା ପୁରୀ ଓ କଟକ ଜିଲାର ନଦୀ ମୁହାଣ ନିକଟରେ ନିଯୁକ୍ତ ଥିଲେ । ଏହି ଆଠଗୋଟି ରାଜ୍ୟକୁ ଓଡ଼ରାଷ୍ଟ୍ର କୁହାଯାଉଥିଲା ।" ଡାକ୍ତର ପଣ୍ଡା ଆଠୋଟି ରାଜ୍ୟର ନାମ ଜଣାଇଛନ୍ତି – ୧. ଗୋଲରା, ୨. ମରିଚପୁର, ୩. ହରିଶପୁର, ୪. ବିଷୁନପୁର; ୫. କୁଜଙ୍ଗ; ୬. ପାରାଦେଇପୁର, ୭. ଆଳି ଓ ୮ କନିକା, ଏହି ଆଠଗୋଟି ରାଜ୍ୟକୁ ଓଡ଼ରାଷ୍ଟ୍ର କୁହାଯାଉଥିଲା । ଏହି ରାଜ୍ୟଗୁଡ଼ିକ ସମୁଦ୍ରକୂଳିଆ । ଗୋଲରାଗଡ଼ ପ୍ରାଚୀନଦୀର ଦକ୍ଷିଣ ତଟରେ ମୁହାଁଣ ପାଖରେ । ମରିଚପୁର ଦେବୀ ନଦୀର ମୁହାଣଠାରେ । ହରିଶପୁର ମରିଚପୁରର ଉତ୍ତର-ପୂର୍ବକୁ ପଟୁଆନଦୀର ମୁହାଁଣ ପାଖରେ । ତାହାର ଆହୁରି ଉତ୍ତର ପୂର୍ବକୁ ସମଦ୍ର କୂଳେ କୂଳେ ବିଷୁନପୁର, କୁଜଙ୍ଗ, ପାରାଦୀପ, ଆଳି (ରାଜନଗର) ଓ କନିକା । ସାତଭାୟା କନିକା ରାଜ୍ୟରେ ସମୁଦ୍ର କୂଳରେ ଅବସ୍ଥିତ । ତେଣୁ ସାରଳାଦାସଙ୍କ ଓଡ଼ରାଷ୍ଟ୍ର ସମଗ୍ର ଓଡ଼ିଶାକୁ ବୁଝାଉ ନାହିଁ, ବୁଝାଉଛି ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ଯାହା ପୁରୀରୁ ସାତଭାୟା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଜଗତସିଂହପୁରର ଝଙ୍କଡ଼ ପ୍ରଗଣା ସମୁଦ୍ରକୂଳବର୍ତ୍ତୀ ଅଞ୍ଚଳ ନୁହେଁ, ତେଣୁ ତାହା ଓଡ଼ରାଷ୍ଟ୍ରର ଅନ୍ତର୍ଗତ ହୋଇନପାରେ ।

**୫. ଯାଯନଗର**

ଆଧୁନିକ ଯାଜପୁର ନାମଟି ପ୍ରାଚୀନ ଯଯାତିନଗର/ଯଯାତିପୁରର ରୂପାନ୍ତର । ଭୌମକର ରାଜାମାନଙ୍କ ରାଜ୍ୟର ନାମ ଥିଲା ଉତ୍କଳ ବା ଓଡ୍ର । କୋଶଳର ସୋମବଂଶୀ ରାଜା ୨ୟ ଯଯାତି (ବା ଚଣ୍ଡୀହର) ଉତ୍କଳକୁ କୋଶଳ ସହିତ ମିଶାଇଦେବା ପରେ ରାଜଧାନୀକୁ ଉତ୍କଳକୁ ଘୁଞ୍ଚାଇ ଆଣି ତାହାର ନାମ ଅଭିନବ ଯଯାତିନଗର ରଖିଲେ । ପୂର୍ବରୁ କୋଶଳର ରାଜଧାନୀ ଥିଲା ମହାନଦୀ କୂଳସ୍ଥ ଯଯାତିନଗରୀ ଅଭିନବ ଯଯାତିନଗର ପ୍ରତିଷ୍ଠା ଖ୍ରୀ. ଏକାଦଶ ଶତାବ୍ଦୀର ଦ୍ୱିତୀୟ ପାଦର ଘଟନା । ଏହାର ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସୋମବଂଶୀ ରାଜାମାନେ କୋଶଳ ଉପରେ ତାଙ୍କର କର୍ତ୍ତୃତ୍ୱ ହରାଇ ବସିଲେ ଓ ତତ୍‌ସହ ଯଯାତିନଗରର ପ୍ରାଧାନ୍ୟ ଲୋପ ପାଇଗଲା । କୋଶଳ ହରାଇବା ପରେ ସୋମବଂଶୀ ରାଜାମାନେ ଅଭିନବ ଯଯାତିନଗରକୁ ଯଯାତିନଗର

ଆଖ୍ୟା ଦେଇ ତୋଷଳୀ (ଉତ୍ତର ତୋଷଳୀ ଓ ଦକ୍ଷିଣ ତୋଷଳୀ) ଶାସନ କଲେ। ତୋଷଳୀର ଉତ୍ତର ଭାଗ ମୁଖ୍ୟତଃ ପ୍ରାଚୀନ ଉତ୍କଳ ବା ଓଡ୍ର ରାଜ୍ୟକୁ ନେଇ ଓ ଦକ୍ଷିଣ ଭାଗ ପ୍ରାଚୀନ ଶୈଳୋଦ୍ଭବଙ୍କ କୋଙ୍ଗୋଦ ରାଜ୍ୟକୁ ନେଇ ଗଠିତ ହୋଇଥିଲା। ଦ୍ୱାଦଶ ଶତାବ୍ଦୀର ପ୍ରଥମ ପାଦରେ ଚୋଡ଼ଗଙ୍ଗଦେବ ତାଙ୍କର ପୈତୃକ କଳିଙ୍ଗ ରାଜ୍ୟ ସହିତ ତୋଷଳୀକୁ ସ୍ୱସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ। ପରେ ଗଙ୍ଗସାମ୍ରାଜ୍ୟର ରାଜଧାନୀ ଅଭିନବ ବାରାଣସୀ କଟକକୁ (ଅର୍ଥାତ୍ ଆଧୁନିକ କଟକକୁ) ସ୍ଥାନାନ୍ତରିତ ହୋଇଥିଲା। ତଥାପି ପ୍ରାଚୀନ ଉତ୍କଳ/ଓଡ୍ରନାମ ତଥା କଳିଙ୍ଗ ନାମ ଲୋକରେ ଚଳି ଲାଗିଲା। କାରଣ, ଗଙ୍ଗରାଜାମାନେ ଏହି ଦୁଇ ରାଜ୍ୟାଂଶ ପାଇଁ ପୃଥକ୍ ପୃଥକ୍ ମନ୍ତ୍ରି ପରିଷଦ୍ ସମେତ ଶାସନକଳକୁ ଚାଲୁ ରଖିଥିଲେ। ଫଳରେ ବିବାହ, ବ୍ରତ ଆଦିର କର୍ମକର୍ମାଣିରେ ଉଚ୍ଚାରଣ କରାଯାଉଥିବା ଦେଶକାଳବାକ୍ୟ– ସାରଳାଦାସ ତାହାକୁ ମହାବାକ୍ୟ (ବିରାଟ ୭୦୯) କହିଥିବା ସମ୍ଭବ– ମଧ୍ୟରେ ଭୌଗୋଳିକ ସ୍ଥାନ-ନିର୍ଦ୍ଦେଶ ପାଇଁ ପ୍ରାଚୀନ ଉତ୍କଳ/ଓଡ୍ର ନାମ (ତଥା କଳିଙ୍ଗ ନାମ) ଚଳୁଥିଲା।

ରାଜଧାନୀର ନାମରେ ରାଜ୍ୟର ନାମକରଣ ଏକ ପ୍ରକାର ସର୍ବତ୍ର ପ୍ରଚଳିତ ପ୍ରଥା ଥିଲା। ଏ କଥା ପ୍ରମାଣିତ ହୋଇସାରିଛି ଯେ ମୁସଲମାନ ଐତିହାସିକମାନେ ଯଯାତି ନଗର (ଆଧୁନିକ ଯାଜପୁର) ରାଜଧାନୀ ଥିବା ରାଜ୍ୟକୁ 'ଯାଯନଗର' ବୋଲି ଅଭିହିତ କରିଛନ୍ତି। ଯାଯନଗର ଯଯାତିନଗର ନାମରୁ ଜାତ। ପରେ ଯାଯନଗର ଯାଜପୁର ବୋଲାଇଲା, ନଗର ଅର୍ଥାତ୍ ରାଜଧାନୀ ଅନ୍ୟଠିକି ଘୁଞ୍ଚିଯିବା ପରେ 'ନଗର' ପୁର ହୋଇଥିବା ସମ୍ଭବ। ସାରଳାଦାସ ଯାହାକୁ 'ଭୁବନ ଯାଯନଗ୍ର' କହିଛନ୍ତି ତାହା ବହୁ ମୁସଲମାନ ଐତିହାସିକଙ୍କ 'ଯାଯନଗର', ଅର୍ଥାତ୍ ଉତ୍କଳ ଓ କୋଙ୍ଗୋଦ ମିଳିତ ଅଞ୍ଚଳ। ଏହି ଯାଯନଗ୍ରର ପୂର୍ବ ଦିଗରେ ମହୋଦଧିର ତଟରେ ଥିବା ରାଜ୍ୟ ଓଡ଼ରାଷ୍ଟ୍ର ବୋଲାଉଥିବା ବିଷୟ ପୂର୍ବରୁ ଆଲୋଚିତ ହୋଇଛି। ସେହି ଓଡ଼ରାଷ୍ଟ୍ର ଅନ୍ତର୍ଗତ ଅଞ୍ଚଳରେ ସାରଳାଦାସଙ୍କ ବାସସ୍ଥାନ।

**୬. କୁଶସ୍ଥଳୀ**

ମହାଭାରତର ଆରମ୍ଭରେ ସାରଳାଦାସ ଆରାଧ୍ୟା ସାରୋଳଚଣ୍ଡୀଙ୍କ ସ୍ଥାନ ସୂଚାଇବାକୁ ଯାଇ 'କୁଶସ୍ଥଳୀ ଭୂମି ଦ୍ୱାରିକା' କଥା କହିଛନ୍ତି ଓ ତାହାର ବିସ୍ତାର ଚିତ୍ରୋତ୍ପଳା ନଦୀର ଦକ୍ଷିଣତଟର ଉତ୍ପଳେଶ୍ୱରଙ୍କଠାରୁ ଶ୍ରୀକ୍ଷେତ୍ରର ଯମେଶ୍ୱରଙ୍କ ପର୍ଯ୍ୟନ୍ତ ବୋଲି ଜଣାଇଛନ୍ତି।

ଜମ୍ବୁଦ୍ୱୀପ ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ମଣ୍ଡଳରେ।
ଉତ୍ପଳେଶ୍ୱର ଲିଙ୍ଗ ଚିତ୍ରଉତ୍ପଳା ଦକ୍ଷିଣ କୂଳରେ।

ଜୟନ୍ତାର ନିଜ ଭୂମି ଯାଜନଗ୍ର ନିକଟେ ଦକ୍ଷିଣ ବାଣରାସି ।
**କୁଶସ୍ଥଳୀ** ଭୂମି ଦ୍ୱାରିକା ଯେ କ୍ଷେତ୍ର ପୁଣ୍ୟବାସୀ ।।
ଶ୍ରୀ ଯମେଶ୍ୱର ମହାଲିଙ୍ଗ ମଉଦଧିର ଉତ୍ତର ତଟେ ।
ନୀଳସୁନ୍ଦର ପର୍ବତ ନୀଳ କନ୍ଦବଟେ ।। (ଆଦି ୪)

ଚିତ୍ରୋତ୍ପଳାର କୂଳରେ ଅନେକଠାରେ ଉତ୍ପଳେଶ୍ୱର ଲିଙ୍ଗ ଥିବା କଥା ଜଣାଅଛି । ଦକ୍ଷିଣ ବାଣରାସି, ବୋଧହୁଏ, ଲିଙ୍ଗରାଜ କ୍ଷେତ୍ରକୁ ସୂଚାଉଛି । କୁଶସ୍ଥଳୀ ଓ ଦ୍ୱାରିକା ପଶ୍ଚିମ ଭାରତର ସୌରାଷ୍ଟ୍ର ସ୍ଥିତ ଅନ୍ୟତମ ପ୍ରସିଦ୍ଧ ଧାମର ନାମ ଭାବରେ ସୁବିଦିତ । କିନ୍ତୁ ସାରଳାଦାସ ନୀଳସୁନ୍ଦର ପର୍ବତ ହିଁ କୁଶସ୍ଥଳୀ-ଦ୍ୱାରିକା ବୋଲି କହିଛନ୍ତି (୨ ସଭା ୧୧୧) । ପୁରୀର ନୀଳଗିରି ବା ଶ୍ରୀମନ୍ଦିରକୁ ସେ ଠାଏଁ ଦକ୍ଷିଣ ଦ୍ୱାରିକା ବୋଲି ମଧ ଅଭିହିତ କରିଛନ୍ତି (ଭୀଷ୍ମ ୨୩୬) । ଅନ୍ୟତ୍ର ତାହା ଦ୍ୱାରକା ବୋଲି ଜଣାଇଛନ୍ତି – 'ସେ ନୀଳପର୍ବତଟି ଦ୍ୱାରକା ହୋଇଲା' (ମୂଷଳୀ ୯୦) । ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ କୃଷ୍ଣଙ୍କ ପିଣ୍ଡ ଦାରୁରୂପରେ ନୀଳାଚଳରେ ଦଶହଜାର ବର୍ଷ ପାଇଁ କଳିଯୁଗରେ ପୂଜା ପାଇବ । ତତ୍ପୂର୍ବେ କୃଷ୍ଣଙ୍କ ଧାମ ଥିଲା ଦ୍ୱାରିକା, ଦ୍ୱାରିକା ସମୁଦ୍ରରେ ବୁଡ଼ିଯିବା ପରେ କୃଷ୍ଣଙ୍କ ଧାମହେଲା ନୀଳାଚଳ । ତେଣୁ ତାଙ୍କ ପରିବେଷିତ ଇତିହ (Myth) ଅନୁସାରେ ଦ୍ୱାପର ଯୁଗରେ ଦ୍ୱାରିକା ଥିଲା କୁଶସ୍ଥଳୀ, କିନ୍ତୁ କଳିଯୁଗରେ ନୀଳାଚଳ କୃଷ୍ଣଙ୍କ ପିଣ୍ଡର ଆସ୍ଥାନ ହେବାରୁ ତାହା ଦ୍ୱାରିକା-କୁଶସ୍ଥଳୀ ହୋଇ ପଡ଼ିଲା । ସାରଳାଦାସ-ପୋଷିତ ଏହି ମତ ଅନୁସାରେ ପୁରୀର ତୀର୍ଥସେବୀ ବ୍ରାହ୍ମଣମାନେ ସଂକଳ୍ପ ବେଳେ ପୁରୀ-ଦ୍ୱାରିକାକୁ ଗୋଟିଏ ତୀର୍ଥ ବୋଲି କହି ନିମ୍ନ ଶ୍ଳୋକଟିକୁ ବୋଲିଥାନ୍ତି –

ଅଯୋଧ୍ୟା ମଥୁରା ମାୟା କାଶୀ କାଞ୍ଚୀରବନ୍ତିକା ।
ପୁରୀ ଦ୍ୱାରାବତୀ ଚୈବ ସପ୍ତୈତା ମୋକ୍ଷଦାୟିକାଃ ।

ପୁରୀର ତୀର୍ଥସେବୀଙ୍କ ମତରେ ସାତୋଟି ମୋକ୍ଷଦ କ୍ଷେତ୍ର ମଧ୍ୟରୁ ଗୋଟିଏ କ୍ଷେତ୍ର ହେଉଛି ପୁରୀ-ଦ୍ୱାରାବତୀ, କଳିଯୁଗରେ ପୁରୀ, ତତ୍ପୂର୍ବେ ଦ୍ୱାରିକା ।

ସ୍କନ୍ଦପୁରାଣର ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ (୧୨/୨)ରେ ପୁରୀ ନିକଟବର୍ତ୍ତୀ ଚନ୍ଦନପୁର ପାଖ କପୋତେଶ୍ୱର ଅଞ୍ଚଳ ପୂର୍ବକାଳରେ ଜନଶୂନ୍ୟ କୁଶସ୍ଥଳୀ ଥିଲା ବୋଲି ଲେଖାଅଛି ।

## ୭. ପରଶୁରାମ ପାଟଣା ଓ କନକାବତୀ ପାଟଣା

କଳି ଯୁଗରେ ଅଦୃଶ୍ୟ ହୋଇଥିବା ଚନ୍ଦ୍ରଭାଗା ନଦୀର ଉତ୍ତର କୂଳରେ ପରଶୁରାମ ଆଶ୍ରମ ନିକଟରେ କନକାବତୀ ପାଟଣା ଯେଉଁଠାରେ ସାରଳାଦାସଙ୍କ ଘର–

କଳି ଗୋପ୍ୟାନ ତୀର୍ଥ ଚନ୍ଦ୍ରଭାଗା ବୋଲି ନଦୀ ।
ଈଶାନ୍ୟ ଦିଗେ ସେ ଚିତ୍ରୋତ୍ପଳା ଅଛି ଭେଦି ।।

ସେ ନଦୀର ଉତ୍ତର କୂଳେଣ ଆଶ୍ରମ ପ୍ରଶୁରାମ ।
ନିଜ ଭୁବନ ପାଟଣା ଗୋ କନକାବତୀ ନାମ ।। (୨ ସଭା ୧୧୪)

ଆଦି ପର୍ବରେ ପରଶୁରାମ ଆଶ୍ରମ ସ୍ଥାନରେ ପରଶୁରାମ ଘାଟ କଥା ରହିଛି –

ଚନ୍ଦ୍ରଭାଗା ନାମେ ଯେକଇ ନଦୀ ଗୋଟି ।
ବୃଦ୍ଧମାତାଙ୍କ ପାରୁଶେ ମଉଦଧିରେ ଯାଇ ଫୁଟି ।।
ସେ ନଦୀର ତୀରେ ପ୍ରଶୁରାମ ଘାଟଇ ।
କନକାବତୀ ନାମେ ପାଟଣା ପ୍ରକାଶଇ ।। (ଆଦି ୫)

ଏହି କନକାବତୀ ପାଟଣା ପରଶୁରାମଙ୍କ ଦ୍ୱାରା ପ୍ରତିଷ୍ଠିତ –

କନକାବତୀ ପାଟଣା ଯେ ପ୍ରଶୁରାମଙ୍କର ସଞ୍ଚିତା ।। (ବିରାଟ ୭୦୯)
କନକାବତୀ ପାଟଣା ଯାହା ସ୍ରିଜିଲେ ପ୍ରଶୁରାମ । (ମଧ ୮୨୭)

କନକାବତୀ ପାଟଣାର ଅନ୍ୟନାମ ପରଶୁରାମପାଟଣା

ପର୍ଶୁରାମପାଟଣା କଟକ ଯେ କନକାବତୀ ନଗ୍ର ବିଦ୍ୟମାନେ ।
(ଭୀଷ୍ମ ୩୧୧)
ପ୍ରଶୁରାମଙ୍କ ପାଟଣା କନକାବତୀ ନଗ୍ରୀ ଭାଷି । (ଦ୍ରୋଣ ୧୮୫)

କନକାବତୀ ନଗରର ନାମ ଠାଏଁ ଠାଏଁ କଣୟାବତୀ ନଗର ବୋଲି ମଧ ଲେଖାଅଛି । ପ୍ରାକୃତ 'କଣୟ' ଶବ୍ଦ ସଂସ୍କୃତ କନକର ଅପଭ୍ରଂଶ । ଏହି ନଗରର ଅବସ୍ଥିତି ମହୋଦଧିର ଉତ୍ତର ତଟରେ ବୋଲି ସ୍ପଷ୍ଟ ଲେଖା ଅଛି –

ଠାବ କଣୟାବତୀ ନଗ୍ର ଚନ୍ଦ୍ରଭାଗା ନଦୀ କୂଳେ ।।
ମହୋଦଧି ଉତ୍ତର ତଟେ ପ୍ରଶୁରାମଙ୍କ ପାଟଣା । (ସ୍ୱର୍ଗରୋହଣ ୯୫)

ଝଙ୍କଡ଼ ପ୍ରଗଣାରେ ଥିବା କନକପୁର ଗାଁ ସାରଳାଦାସଙ୍କ କନକାବତୀ ବୋଲି କୁହାଯାଉଛି । କିନ୍ତୁ ସାରଳାଦାସ ତାଙ୍କ ବାସସ୍ଥାନଟି ଚନ୍ଦ୍ରଭାଗା ନଦୀ କୂଳରେ ଓ ମହୋଦଧିର ଉତ୍ତରତଟରେ ବୋଲି ଜଣାଇଥିବାରୁ ସେହି କନକପୁର କନକାବତୀ ପାଟଣା ହେବା ସମ୍ଭବ ନୁହେଁ । କନକାବତୀ ପାଟଣାର ଅବସ୍ଥିତି କୋଣାର୍କ ମନ୍ଦିର ନିକଟରେ ଥିବା ନିଃସନ୍ଦେହ ହୋଇପଡୁଛି ।

## ୮. ଜଙ୍ଘେରପୁର, ସାରୋଳ

ସାରଳାଦାସ ନିଜର ଓ ତାଙ୍କର ଆରାଧ୍ୟା ଦେବୀଙ୍କର ସ୍ଥାନ ଜଙ୍ଘେରପୁର ବୋଲି ପ୍ରାୟ ସବୁଠାରେ ଜଣାଇଛନ୍ତି । ଦେବୀଙ୍କୁ ସେ 'ଜଙ୍ଘେରପୁରବାସୀ' ବୋଲି ଅଭିହିତ କରିଛନ୍ତି (ଆଦି ୫, ୩୪୪, ୬୪୮; ମଧ ୨୨୭, ୩୮୦, ୫୬୭, ୬୪୯, ୧୧୨୮; ୨ ସଭା ୧୪; ୧ ବନ ୨୫; ୨ ବନ ୧୯୨, ୩୩୬; ଭୀଷ୍ମ ୫; ଦ୍ରୋଣ ୪, ୧୯; କାଇଁଶିକା ୪୪) । ଅନେକଠାରେ ଜଙ୍ଘେରପୁର ସ୍ଥାନରେ ଝଙ୍କେରପୁର, ଝଙ୍କଡ଼ପୁର,

ଯକ୍ଷେରପୁର, ଝଙ୍ଖେରପୁର ଆଦି ଶବ୍ଦରୂପ ମିଳେ । କବି ଦେବୀଙ୍କ ଅଧିଷ୍ଠାନ ସାରୋଳ ଗ୍ରାମରେ ବୋଲି ମଧ୍ୟ ଲେଖିଛନ୍ତି (ମଧ୍ୟ ୮୨୭) । ସାରୋଳ ପରି ଜଙ୍ଖେରପୁର ମଧ୍ୟ ଗୋଟିଏ ଗାଁ – ''ଜଙ୍ଖେରପୁର ବୋଲିଣ ସେ ଗ୍ରାମର ନାମ'' (ମଧ୍ୟ ୮୨୭) । ଅପିତୁ କନକାବତୀ ଏକ ପାଟଣା । ପାଟଣା ହାଟବଜାର ଥିବା ପେଣ୍ଠ ଜନପଦକୁ ବୁଝାଏ । ବୋଧହୁଏ, ସାରଳାଦାସ ସ୍ଥାନୀୟ ଜନଶ୍ରୁତି ଅନୁସାରେ ଲେଖିଛନ୍ତି ଯେ ଜଙ୍ଖେରପୁରର ପ୍ରତିଷ୍ଠାତା ପୁରୁରୁବା – 'ପୁରରବା ସଞ୍ଚିତ ସେ ଝଙ୍ଖେରପୁର ଯାହା ବୋଲି' (ବିରାଟ ୭୦୯) । କିନ୍ତୁ କନକାବତୀ ପାଟଣାର ପ୍ରତିଷ୍ଠାତା ପରଶୁରାମ ବୋଲି ବର୍ଣ୍ଣିତ । ସେହି ପରଶୁରାମ ପୁଣି ଦେବୀ ସାରୋଳାଙ୍କ ଉପାସକ (ମଧ୍ୟ ୫୬୭, ୮୨୭; ଭୀଷ୍ମ ୫; ଦ୍ରୋଣ ୧୯; କର୍ଣ୍ଣ ୧୬୦; ସ୍ୱର୍ଗାରୋହଣ ୯୫) । କନକାବତୀ ଅଷ୍ଟଯୋଗିନୀ ମଧ୍ୟରୁ ଏକତମା ବୋଲି ଭୂତଡ଼ାମ୍ବର ତନ୍ତ୍ରରେ କୁହାଯାଇଛି । ସେଥିରେ ତାଙ୍କର ଧ୍ୟାନ ମନ୍ତ୍ର ରହିଛି –

ପ୍ରଚଣ୍ଡ ବଦନାଂ ଦେବୀଂ ପକ୍ୱବିମ୍ବାଧରାଂ ପ୍ରିୟାମ୍
ରକ୍ତାମ୍ବରଧରାଂ ବାଳାଂ ସର୍ବକାମ ପ୍ରଦାୟକାମ୍ ।।

ଏହିସବୁ ବର୍ଣ୍ଣନାରୁ ସନ୍ଦେହ ରହୁନାହିଁ ଯେ ଦେବୀ ସାରୋଳଚଣ୍ଡୀଙ୍କ ଆସ୍ଥାନ କନକାବତୀପାଟଣା ନୁହେଁ । ତାହା ଜଂଖେରପୁର ବା ସାରୋଳ । ଜଂଖେରପୁର ଓ ସାରୋଳ ଏକା ଗ୍ରାମର ନାମ । ଗ୍ରାମଟି କନକାବତୀ ପାଟଣାର ଅଦୂରବର୍ତ୍ତୀ ।

ସାରଳାଦାସଙ୍କ ଗ୍ରାମଟି କୋଣାର୍କ ମନ୍ଦିରଠାରୁ ଦୂରବର୍ତ୍ତୀ ହୋଇନପାରେ । ଅନ୍ୟଥା ସେ ତାଙ୍କ ଗ୍ରାମର ଅବସ୍ଥିତି ସୂଚାଇବା ପାଇଁ କୋଣାର୍କ ମନ୍ଦିରକୁ ସୂଚକ ରୂପେ ଜଣାଉ ନଥାନ୍ତେ । ତେଣୁ ଝଙ୍କଡ଼ ପ୍ରଗଣା, କନକପୁର ଆଦି ସ୍ଥାନ ଯୁକ୍ତିଯୁକ୍ତ ସିଦ୍ଧାନ୍ତର ଭୌଗୋଳିକ ସୀମା ବହିର୍ଭୂତ । ଆଂଚଳିକ ପ୍ରବାଦ/ଲୋକବିଶ୍ୱାସ ଅପେକ୍ଷା ଖୋଦ୍ ସାରଳାଦାସଙ୍କ ବକ୍ତବ୍ୟର ବିଶ୍ୱସନୀୟତା ଖୁବ୍ ଅଧିକ । ଆଧୁନିକ ଝଂଙ୍କଡ଼ ସାରଳାଦାସଙ୍କ ଝଂକେରପୁର ହୋଇନପାରେ କାରଣ ଝଂକଡ଼ ନାମରେ କୌଣସି ଗ୍ରାମ ହିଁ ନାହିଁ । ପୁଣି ଝଙ୍କଡ଼ ପ୍ରଗଣାର ସାରଳା ଅଛନ୍ତି କନକପୁରରେ ଓ ସାରଳାଦାସଙ୍କ ବେଳର କନକାବତୀପାଟଣାରେ ସାରୋଳଚଣ୍ଡୀଙ୍କ ଆସ୍ଥାନ ନଥିଲା ।

ଗୋପରୁ କୋଣାର୍କ ମନ୍ଦିରକୁ ଯିବା ରାସ୍ତାକଡ଼ରେ ସାରଡ଼ା ଗାଁ ରହିଛି । ରେକର୍ଡ଼ ପତ୍ରରେ ଏହାର ନାମ Sarora, ସାରଳାଦାସଙ୍କ ସାରୋଳ ନାମର ଧ୍ୱନିସାମ୍ୟ ଦର୍ଶାଉଛି । ସ୍ଥାନୀୟ ଲୋକମୁଖରେ ଏହା 'ସାରେଡ଼ା' । ସାରଡ଼ାରୁ କୋଣାର୍କ ମନ୍ଦିର ଖୁବ୍ ବେଶି ହେଲେ ଦୁଇ କୋଶ ବାଟ । କୋଣାର୍କ ମନ୍ଦିରର ଉତ୍ତର ପଶ୍ଚିମକୁ ସାରଡ଼ା ଯେତିକି ଦୂରରେ ଦକ୍ଷିଣ ପୂର୍ବକୁ ସମୁଦ୍ରକୂଳର ଚନ୍ଦ୍ରଭାଗା (ବୁଢ଼ ପୋଖରୀ) ପ୍ରାୟ ସେତିକି ଦୂରରେ । ସାରଡ଼ା ଓ କୋଣାର୍କ ମନ୍ଦିର ମଝିରେ 'କୁନଙ୍ଗ' ଗ୍ରାମ ରହିଛି । ପୋଲିସ ଥାନାର

ତାଲିକାରେ ସାରଡ଼ା ଗ୍ରାମର କ୍ରମିକ ସଂଖ୍ୟା ୧୫୬ ଓ କୁନଙ୍ଗର ୧୬୦ । କୁନଙ୍ଗ ଗ୍ରାମଟି କୋଣାର୍କ ମନ୍ଦିରର ଉତ୍ତରକୁ ମାତ୍ର ଏକ କୋଶ ଦୂରରେ ଅବସ୍ଥିତ । କୁନଙ୍ଗ କନକାବତୀର ଓ ସାରଡ଼ା ସାରୋଳର ଆଧୁନିକ ଉଚ୍ଚାରଣ ହେବା ସମ୍ଭବ । ଆଧୁନିକ ସାରଡ଼ା, ସାରେଡ଼ାରେ ମଙ୍ଗଳେଶ୍ୱର ମହାଦେବଙ୍କ ମନ୍ଦିର ଅଛି, ରାମଚଣ୍ଡୀ ଠାକୁରାଣୀଙ୍କ ପୀଠ ଅଛି । କିନ୍ତୁ ସାରୋଳାଚଣ୍ଡୀଙ୍କ ପୀଠ ନାହିଁ । ଏହି ଗାଁର ଅଧିକାଂଶ ଲୋକ ଶୂଦ୍ର, ସଂପ୍ରତି ଖଣ୍ଡାୟତ । ଅଳ୍ପ କେତେ ବ୍ରାହ୍ମଣ, କଣ୍ଡରା, ଭୋଇ, ଧୋବା, ହାଡ଼ି ଘର ମଧ୍ୟ ରହିଛି । ଏହି ଗାଁରେ ସାରଳାଦାସ ଥିବା ନେଇ କୌଣସି ଜନଶ୍ରୁତି ନାହିଁ । ଜନଶ୍ରୁତି ଇତିହାସକୁ ସଂଚିତ କରି ରଖିଥିବା ଦୃଷ୍ଟାନ୍ତ ବିରଳ, ଅପିତୁ ଐତିହାସିକ ସତ୍ୟତା ବର୍ଜିତ କଥା ଜନଶ୍ରୁତି ରୂପରେ ଦେଖାଦେବା ଦୃଷ୍ଟାନ୍ତ ସୁପ୍ରଚୁର ।




କୁନଙ୍ଗର ଅନ୍ତ୍ୟାକ୍ଷର ଙ୍ଗ ଦେଶ ଅର୍ଥବୋଧକ । ଙ୍ଗ ଅକ୍ଷର ଦେଶ ବା ଅଞ୍ଚଳ ଅର୍ଥରେ ବ୍ୟବହୃତ ହୁଏ ବହୁଳ ଭାବରେ, ଯଥା— ୧. ତାପଙ୍ଗ, ବାରଙ୍ଗ, କୁଜଙ୍ଗ, ପରଙ୍ଗ ଆଦି ଓ ୨. ଅଙ୍ଗ, ବଙ୍ଗ, କଳିଙ୍ଗ ଆଦି ।

ଜଙ୍ଖେରପୁର ନାମର ଧ୍ୱନିସାମ୍ୟ ଥାଇ ଝଙ୍କଡ଼ ପ୍ରଗଣା, ତାହା ମଧ୍ୟରେ କନକାବତୀ ପାଟଣାର ଧ୍ୱନି ସଂପର୍କ ଥାଇ କନକପୁର ଓ ସେଠାରେ ସିଦ୍ଧ ସାରୋଳାଙ୍କ ନାମ ଅନୁରୂପେ ସିଂହ ସାରଳା ନାମ ସମ୍ଭବ ହେଲା କିପରି ? ଏପରି ପ୍ରଶ୍ନ ମନରେ ଉଠିବା ସ୍ୱାଭାବିକ । ନାମସାମ୍ୟ ଥିବା ଗ୍ରାମ ଅନେକଠାରେ ମିଳିଥାଏ, ଏପରିକି ଏକା ନାମର ଗ୍ରାମ ଅନେକ । ଉଦାହରଣ ସ୍ୱରୂପ, କୋଣାର୍କ ମନ୍ଦିରର ମାତ୍ର ତିନି କୋଶ ଉତ୍ତରକୁ ଗୋପ-କାକଟପୁର ରାସ୍ତାକଡ଼ରେ ଅଛି କୋନ୍ତିଗ୍ରାମ ଓ କ୍ରୋନ୍ତିଗ୍ରାମର ଅନତିଦୂରରେ ଯଖରପୁର । କ୍ରୋନ୍ତି ଗ୍ରାମ କନକାବତୀ (ପାଟଣା)ର ଓ ଯଖରପୁର ଜଙ୍ଖେରପୁରର ରୂପାନ୍ତର ବୋଲି କୁହାଯାଇପାରନ୍ତା । କିନ୍ତୁ, ଚନ୍ଦ୍ରଭାଗାକୁ କବି ସୂଚକ ରୂପେ ବ୍ୟବହାର କରିଥିବାରୁ

କୋଣାର୍କ ମନ୍ଦିରର ନିକଟତର କୁନଙ୍ଗ ଓ ସାରଡ଼ାକୁ ଚିହ୍ନଟ କରିବା ଅଧିକ ଯୁକ୍ତିସଙ୍ଗତ । କହିବା ବାହୁଲ୍ୟ କ୍ରୋନ୍ତିଗ୍ରାମ ଓ ଯଖରପୁର ତୁଳନାରେ ଜଗତସିଂହପୁର ଜିଲାର ଝଙ୍କଡ଼ ପ୍ରଗଣା ଓ କନକପୁର କୋଣାର୍କ ମନ୍ଦିରଠାରୁ ଖୁବ୍ ଦୂରବର୍ତ୍ତୀ, ମହୋଦଧିଠାରୁ ମଧ୍ୟ ।

ଝଙ୍କଡ଼ର ସିଂହ ସାରଳା ମୂଳରେ ସେଠାରେ ନଥିଲେ ବୋଲି ସ୍ଥାନୀୟ ଲୋକେ କହନ୍ତି । ସାରଳା ଠାକୁରାଣୀ ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଝଙ୍କଡ଼ ପ୍ରଗଣାରେ ଅଧିଷ୍ଠିତ ହେବା ପୂର୍ବେ ଅନ୍ୟତ୍ର ଥିଲେ । ସେହି ସ୍ଥାନଟି 'ବିଲସାରଳା' ପୀଠ ରୂପେ ନାମିତ ହେଉଛି ଯେଉଁଠାରେ ଲଣ୍ଡାଦେଉଳ ମଧ୍ୟରେ 'ବୁଢ଼ାଗଣେଶ' ହିଁ ପୂଜା ପାଉଛନ୍ତି । ହୋଇପାରେ, କୋଣାର୍କ ମନ୍ଦିରର ପତନ ପରେ ସେହି ଅଞ୍ଚଳର ବହୁଲୋକ ସ୍ଥାନାନ୍ତର ହୋଇଛନ୍ତି ଓ ସେମାନଙ୍କ ମଧ୍ୟରୁ କେହି ସାରୋଳାଙ୍କୁ ମହିଷାସୁରମର୍ଦ୍ଦିନୀ ରୂପ ଦେଇ ସାରଳା ନାମରେ ଅଧିଷ୍ଠିତ କରାଇଛି ଝଙ୍କଡ଼ ପ୍ରଗଣାରେ । ଆଉ ମଧ୍ୟ ବୋଧହୁଏ, ଝଙ୍କଡ଼ ପ୍ରଗଣାର ସିଂହ ସାରଳାଙ୍କ ଭକ୍ତ ଜନୈକ ସିଦ୍ଧେଶ୍ୱର ପ୍ରାଚୀନ ସାରଳାଦାସଙ୍କ ଖ୍ୟାତିକୁ ଧରି ନିଜ ଲେଖାକୁ ପ୍ରଚାରିତ କରାଇ ନେବା ଲକ୍ଷ୍ୟ ନେଇ 'ସାରଳାଦାସ' ଭଣତି ଯୋଡ଼ି 'ବିଲଙ୍କା ରାମାୟଣ' ଲେଖିଥିଲେ । ଏହି ପରକାଳୀନ ସାରଳାଦାସଙ୍କ ବାସସ୍ଥାନକୁ ଜନଶ୍ରୁତି ପ୍ରାଚୀନ ସାରଳାଦାସଙ୍କ ବାସସ୍ଥାନ ବୋଲି ଚିହ୍ନାଇବା ସମ୍ଭବ ମନେହେଉଛି । ବିଚିତ୍ର ରାମାୟଣର ପ୍ରଣେତା ସିଦ୍ଧେଶ୍ୱର ଦାସ ପରେ ସାରଳାଦାସ ବୋଲାଇ ମହାଭାରତ ଓ ଚଣ୍ଡୀପୁରାଣ ଲେଖିଥିବା ସିଦ୍ଧାନ୍ତ କରିବା ଅବସରରେ ବିଲଙ୍କା ରାମାୟଣ ରଚୟିତା ସିଦ୍ଧେଶ୍ୱର ଦାସ ଯେ ଜଣେ ପରକାଳୀନ କବି ତାହା ଦେଖାଇ ଦିଆଯିବ ।

### ୯. କବିଙ୍କ ବାସସ୍ଥାନ କଟକ କି ?

ସାରଳାଦାସ କୋଣାର୍କକ୍ଷେତ୍ରର ଅଦୂରବର୍ତ୍ତୀ ଜଙ୍ଖେରପୁର ଗ୍ରାମର ବାସିନ୍ଦା ହୋଇଥିବା ବିଷୟ ନିଜେ କବି ଯୋଗାଇଥିବା ବିଭିନ୍ନ ତଥ୍ୟର ଆଲୋଚନା ଦ୍ୱାରା ପ୍ରତିପାଦିତ ହେଲା । ପ୍ରତିପାଦନର ଆଧାର ମୋଟାମୋଟି ଦ୍ୱିବିଧ :—

୧. କବି ତାଙ୍କର ଉପାସ୍ୟାଦେବୀ ସିଦ୍ଧ ସାରୋଳଚଣ୍ଡୀଙ୍କର ଅଧିଷ୍ଠାନ ଚନ୍ଦ୍ରଭାଗା ଅର୍କତୀର୍ଥର ସନ୍ନିକଟ ଥିବା ସୂଚନା ମହାଭାରତ ଓ ଚଣ୍ଡୀପୁରାଣରେ ନାନା ସ୍ଥାନରେ ଦେଇଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ ଏହି ଦେବୀଙ୍କର ଆଦ୍ୟ ପୂଜକ ଶବର ଅଜପତି । ଅଜପତି ଅର୍କତୀର୍ଥ ନିକଟ ଅଞ୍ଚଳର ବାସିନ୍ଦା ଥିବା କଥା କବି ଲେଖିଛନ୍ତି । ଆଉ ମଧ୍ୟ କବି, ସେହି ଦେବୀଙ୍କର ପ୍ରତିମାର ରୂପ ବର୍ଣ୍ଣନା ଦେଇଛନ୍ତି ଯାହା ଜଗତସିଂହପୁର ଜିଲ୍ଲା ଝଙ୍କଡ଼ପ୍ରଗଣାର ସିଂହ ସାରଳା ଠାକୁରାଣୀଙ୍କ ରୂପ ସହିତ ମିଶୁନାହିଁ ।

୨. କବି ତାଙ୍କ ବାସସ୍ଥାନର ଭୌଗୋଳିକ ବିବରଣ ସହିତ ସମୀପବର୍ତ୍ତୀ ବହୁ ଜନବସତି, ତୀର୍ଥ, ନଦୀ, ସମୁଦ୍ର ଆଦିର ନାମୋଲ୍ଲେଖ ସହିତ ଦିଗନିର୍ଦ୍ଦେଶ

ମଧ୍ୟ କରିଛନ୍ତି । ଏହି ସବୁ ସ୍ଥାନାଦି କୋଣାର୍କ-କ୍ଷେତ୍ର ଅଞ୍ଚଳରେ ଥିବା ହିଁ ଚିହ୍ନଟ କରି ହେଉଛି ।

କବିଙ୍କର ବାସସ୍ଥାନ ନିରୂପଣ ବିଷୟରେ ଏଗୁଡ଼ିକ ନିର୍ଭରଯୋଗ୍ୟ ମୌଳିକ ପ୍ରମାଣ । ଏସବୁ ସ୍ୱୟଂ କବିଙ୍କ ବକ୍ତବ୍ୟ ତେଣୁ ନିର୍ଣ୍ଣାୟକ । କୌଣସି ଲୋକବିଶ୍ୱାସ, ଜନଶ୍ରୁତି ବା କିଂବଦନ୍ତୀ ଉପରେ ଏହା ଆଧାରିତ ନୁହେଁ । ଏ କଥା ଯୁକ୍ତିମୂଳକ ଗବେଷଣା ଦ୍ୱାରା ସ୍ଥିର କରାଯାଇପାରୁଛି ଯେ କବି ସାରଳାଦାସ ନାମ ସ୍ୱୀକାର କରିବା ପୂର୍ବରୁ ସିଦ୍ଧେଶ୍ୱର ଦାସ ବୋଲାଉଥିଲେ ଓ ସେହି ନାମର ଭଣତି ଦେଇ ବିଚିତ୍ର ରାମାୟଣ ରଚନା କରିଥିଲେ । 'ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ' ଶୀର୍ଷକ ଅଷ୍ଟମ ଅଧ୍ୟାୟରେ ତାହା ନିର୍ଣ୍ଣିତ ହୋଇଛି ।

ଆନ୍ଧ୍ରପ୍ରଦେଶର ପ୍ରସିଦ୍ଧ ପୁଣ୍ୟଗିରି ସୀମାଚଳମ୍‌ର ନୃସିଂହ ମନ୍ଦିର ଗାତ୍ରରେ (ଅଳିନ୍ଦର ୩୬ତମ ଘରାରେ) ଉତ୍କୀର୍ଣ୍ଣ ହୋଇଥିବା ଏକ ତେଲୁଗୁ ଅଭିଲେଖରେ ଜନୈକ କଟକ ନିବାସୀ ସିଦ୍ଧେଶ୍ୱର ଦାସଙ୍କ ନାମ ମିଳେ । ଏହି ଅଭିଲେଖୋକ୍ତ ସିଦ୍ଧେଶ୍ୱର ଦାସ ବିଚିତ୍ର ରାମାୟଣର ରଚୟିତା ସିଦ୍ଧେଶ୍ୱର ଦାସ (ତେଣୁ ସାରଳାଦାସ) କି ନୁହନ୍ତି ଏହି ପ୍ରଶ୍ନର ବିଚାର ଆବଶ୍ୟକ । ଅଭିଲେଖଟିର ପ୍ରାସଙ୍ଗିକ ଅଂଶ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ସଂକଳିତ ଓଡ଼ିଶାର ଅଭିଲେଖାବଳୀରୁ ଉଦ୍ଧାର କରାଯାଉଛି –

(Inscriptions of Orissa, 1976, Vol.V, Part III, Page 1006 ଦ୍ରଷ୍ଟବ୍ୟ)

''ସ୍ୱସ୍ତି ଶ୍ରୀ ଶକ ବରୁଂଗଂବୁଲୁ ୧୩୪୬ ଗୁନେଂଟି ମାଘ ସୁକ୍ଳ ୧୩ ଦସି ଗୁରୁବାରାନନୁ ବାରାଣସିକଟକାନ କବି ସିଗୁଜୀୟନ କୋଡୁକୁ ବୁଢ଼ାଲେଂକା ସିଦେସ୍ୱର ଦାସୁ ଜାୟନ ତନକୁନୁ ଅଭୀଷ୍ଟାର୍ତ୍ତ ସିଦିଗାନୁ ଶ୍ରୀ ନରସିହ୍ମ ନାତୁନିକିନି ନିତ୍ୟମୁନୁ ଉବୟ ଦୁପାଲାନୁ ଅଲପଟମୁ କୋଲୁବୁ ଓକଟି ପେଟେନୁ ××× ।''

ଏହାର ଅର୍ଥ – ଶକାବ୍ଦ ୧୩୪୬ର ମାଘ ଶୁକ୍ଳ ତ୍ରୟୋଦଶୀ ଗୁରୁବାର ଦିନ ବାରାଣସୀ-କଟକର 'କବି ସିଗୁ ଜୀୟନଙ୍କର ପୁତ୍ର ବୁଢ଼ାଲେଙ୍କା ସିଦ୍ଧେଶ୍ୱର ଦାସ୍ ଜୀୟନଙ୍କର' ଅଭୀଷ୍ଟାର୍ଥ ସିଦ୍ଧି ପାଇଁ ଶ୍ରୀ ନରସିଂହନାଥଙ୍କର ନିତ୍ୟ ଉଭୟ ଧୂପରେ ଗୋଟିଏ ଆଲଟ ଖଞ୍ଜା ହେଲା ।

ଅଭିଲେଖଟିର ତାରିଖ ଖ୍ରୀ. ୧୪୨୫ର ଫେବ୍ରୁଆରୀ ପହିଲା । ସେ ସମୟର ଓଡ଼ିଶାର ରାଜଧାନୀ ବାରାଣସୀ-କଟକ ବୋଲାଉଥିଲା, ତାହାହିଁ ଆଧୁନିକ କଟକ । ଏଥିରେ ଉଲ୍ଲିଖିତ ସିଦ୍ଧେଶ୍ୱର ଦାସ ବିଚିତ୍ର ରାମାୟଣର ପ୍ରଣେତା ସିଦ୍ଧେଶ୍ୱର ଦାସ ବୋଲି ଅକ୍ଷୟ କୁମାର ସାହୁ 'ସାରଳା ଦାସଙ୍କ ଜୀବନ ଚରିତ : ବାରାଣସୀ କଟକ ଓ ସାରଳା ଦାସ' ଶୀର୍ଷକ ପ୍ରବନ୍ଧ (ଝଙ୍କାର, ୧୯୯୩ ମାର୍ଚ୍ଚ) ମଧ୍ୟରେ ମତବ୍ୟକ୍ତ କରିଛନ୍ତି ।

ଅଭିଲେଖଟିର ପାଠୋଦ୍ଧାର ସନ୍ଦେହମୁକ୍ତ ନୁହେଁ । ଏହା ଦକ୍ଷିଣ ଭାରତୀୟ ଅଭିଲେଖାବଳୀ ଗ୍ରନ୍ଥରେ ତେଲୁଗୁ ଲିପିରେ ପ୍ରଥମେ ପ୍ରକାଶ ପାଇଥିଲା । ଅଦ୍ୟାବଧି

ଏହା ସଂପାଦିତ ହୋଇଥିବା ଜଣାଯାଏ ନାହିଁ । ଏଥିରେ ଥିବା ଜୀୟନ ଶବ୍ଦକୁ ପରମାନନ୍ଦ ଆଚାର୍ଯ୍ୟ 'ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ', ୧୯୭୨, ୨ୟ ଭାଗ, ପୃ. ୨୪୨ରେ 'ଜେନା' ବୋଲି ପ୍ରକାଶ କରିଥିଲେ । ଶ୍ରୀ ରାଜଗୁରୁ ତେଲୁଗୁ 'ବୀୟନ' ପାଠକୁ ଅପରିବର୍ତ୍ତିତ ରଖିଛନ୍ତି । ସମସାମୟିକ ଅଭିଲେଖଗୁଡ଼ିକରେ ଜେନା ଓ ଜୀୟନ ଉଭୟ ସାଂଜ୍ଞା ମିଳେ । ସେଥିରୁ ଓଡ଼ିଶାରୁ ପ୍ରାପ୍ତ ଅଭିଲେଖଗୁଡ଼ିକରେ 'ଜେନା' ସାଂଜ୍ଞା ହିଁ ମିଳେ, ଜୀୟନ ଜମାରୁ ମିଳେ ନାହିଁ । କିନ୍ତୁ ଆନ୍ଧ୍ର ପ୍ରଦେଶର ଅଭିଲେଖଗୁଡ଼ିକରେ 'ଜୀୟନ' ସାଂଜ୍ଞା ଭାବରେ କେବଳ ଓଡ଼ିଆଭାଷୀଙ୍କ ମଧ୍ୟରେ 'ଜେନା' ରହିଛି, କାହାରି ସାଂଜ୍ଞା ଜୀୟନ ନୁହେଁ । ଜେନା ସାଂଜ୍ଞା ଖଣ୍ଡାୟତ, ଦଳୁଆ ଆଦି କେତେକ ସାମରିକ ଜାତି ମଧ୍ୟରେ ତ ରହିଛି, କେତେକ ତଫସିଲଭୁକ୍ତ ଜାତି ମଧ୍ୟରେ ମଧ୍ୟ ରହିଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଓ ଅଦ୍ୟାବଧି ରାଜକୁଳରେ ରାଜପୁତ୍ର ଅର୍ଥରେ ଜେନା ଓ ଜେନାମଣି ସାଂଜ୍ଞାର ବହୁଳ ପ୍ରୟୋଗ ରହିଛି । ତେଲୁଗୁ ଭାଷାରେ ଚେନ୍ନା ର ଅର୍ଥ କନିଷ୍ଠ । ଚୋଡ଼ଗଙ୍ଗ ଦେବଙ୍କ ପୁତ୍ର କାମାର୍ଣ୍ଣବ ଯୁବରାଜ ଥିବାବେଳେ ଜୀୟନ ପଦ ଗ୍ରହଣ କରୁଥିଲେ । ଏହା କନିଷ୍ଠ ରାଜା ·ଅର୍ଥରେ ହୋଇପାରେ । ଚୈତନ୍ୟ ଚରିତାମୃତରେ ପ୍ରତାପରୁଦ୍ର ଦେବଙ୍କ ପୁତ୍ରଙ୍କୁ 'ଜାନା' କୁହାଯାଇଛି, ସେ ଜ୍ୟେଷ୍ଠପୁତ୍ର ନଥିଲେ ହେଁ । ଦାର୍ଢ୍ୟତାଭକ୍ତିରେ ରାମଦାସ ରାଜପୁତ୍ର ଅର୍ଥରେ 'ଜେନା'ର ପ୍ରୟୋଗ କରିଛନ୍ତି – 'ଆମ୍ଭେ, ଗୋପାଳପୁଅ ସିନା । ବ୍ରଜରାଜଙ୍କ ସ୍ଥାନ ଜେନା ।'' ଗୋପୀନାଥ ନନ୍ଦ ଓଡ଼ିଆ 'ଜେମା' ଶବ୍ଦ ଜେନାର ସ୍ତ୍ରୀଲିଙ୍ଗବାଚକ ବୋଲି ନିର୍ଣ୍ଣୟ ଦେଇଛନ୍ତି (ଶବ୍ଦତତ୍ତ୍ୱବୋଧ ଅଭିଧାନ) । ପୁଣି କୁହାଯାଉଛି ଯେ ରାଉତ ଶବ୍ଦ ପରି ଜେନା ଶବ୍ଦ ମଧ୍ୟ ଦ୍ରାବିଡ଼ ଭାଷାରୁ ଓଡ଼ିଆକୁ ଆସିଛି । ଯେଉଁ ସବୁ ଶବ୍ଦ ଆଞ୍ଚଳିକ ଭାଷାରେ ଥିଲେ ହେଁ ତାହାର ମୂଳ ସଂସ୍କୃତ/ବୈଦିକରେ ମିଳୁ ନାହିଁ ତାହାକୁ ଦ୍ରାବିଡ଼-ମୂଳ ବୋଲି ଧରିନେବା ଆଧୁନିକ ଭାଷାବିଜ୍ଞାନୀଙ୍କ ଏକ ଫେସନ୍ ହୋଇଯାଇଛି । ତେଲୁଗୁ ଅଞ୍ଚଳର ଜୀୟନ (ବା ତାହାର ରୂପାନ୍ତର ଜୀୟ୍ୟ ଓ ଜୀୟ୍ୟନ) ଓଡ଼ିଆ ଅଞ୍ଚଳର ଜେନାର ମୂଳ କି ଜେନା ଜୀୟନର ମୂଳ ନିର୍ଦ୍ଦିଷ୍ଟ କରି ହେଉ ନାହିଁ । ଉଲ୍ଲେଖନୀୟ ଯେ ଦକ୍ଷିଣ ଭାରତରେ 'ଜିୟର' ଶବ୍ଦ 'ଦେବ' ଅର୍ଥରେ ଚଳୁଥିଲା, ଏବେ ବି ଚଳୁଛି । ସାରଳା ଦାସ ସୀମାଚଳମ୍‌ର ଠାକୁରଙ୍କୁ ଜିଅର ବୋଲି ଅଭିହିତ କରିଛନ୍ତି, ପୁରୀର ଜିଅରସ୍ୱାମୀ ମଠର ନାମଟି ସେହି ସୂତ୍ରରୁ ଆସିଛି । ଅଭିଲେଖରେ ନୃସିଂହନାଥଙ୍କୁ ଜୀୟ୍ୟ ଓ ଜୀଅର ବୋଲି ଅଭିହିତ କରାଯାଛି । ଆଉ ମଧ୍ୟ ଅଭିଲେଖ ପ୍ରମାଣ ରହିଛି ଯେ ଜୀୟନ କୁଳସାଂଜ୍ଞାଧାରୀଙ୍କର ରାଜାମାନଙ୍କ ସହିତ ବିବାହ ସମ୍ପର୍କ ରହୁଥିଲା । ଗଜପତି ଚତୁର୍ଥ ନରସିଂହ (ଖ୍ରୀ. ୧୩୭୮-୧୪୧୪) ଦେବଙ୍କର ପାର୍ବତୀ ଦେବୀ ନାମକ ଜଣେ ରାଣୀ ଥିଲେ ବିଷ୍ଣୁ ଜୀୟନଙ୍କର 'କନ୍ୟା । ଏହି ସବୁ କଥାରୁ ଅନୁମିତ ହେଉଛି ଯେ ତେଲୁଗୁ ଜୀୟନ ଓ ତାହାର ଓଡ଼ିଆ ରୂପ ଜେନା ମୂଳରେ କ୍ଷତ୍ରିୟଙ୍କ ସାଂଜ୍ଞା ଥିଲା, ଯାହା କ୍ଷତ୍ରିୟମାନଙ୍କ ମଧ୍ୟରେ ସୁପ୍ରଚଳିତ ଦେବ ସାଂଜ୍ଞାରୁ ଜାତ ହୋଇଥାଇପାରେ । ପରେ

ସାମରିକ ଜାତିମାନେ ତାହାକୁ ସମ୍ମାନବୋଧକ ସାଂଜ୍ଞା ଭାବରେ ଗ୍ରହଣ କରିଥିବା ସମ୍ଭବ । ତାହା କୃଷିଜୀବୀ ସାରଳାଦାସଙ୍କର କୁଳସାଂଜ୍ଞା ହେବା ସମ୍ଭାବନା ନାହିଁ ।

ଅଭିଲେଖର ସିଗୁ ଶବ୍ଦଟି ସିଂହ ଶବ୍ଦର ଭ୍ରମାତ୍ମକ ରୂପ । ସିଂହ ''ସିଂଗ'' ହୋଇ ଥାଇପାରେ ସିଗ । ସିଗର ପ୍ରାନ୍ତ ଅକାର ତେଲୁଗୁ ପ୍ରଭାବରେ ଉକାର ହେବା ଅନୁମାନ କରାଯାଇପାରେ । ଏହି ଧାରାରେ ଉଦ୍ଧୃତିର ସିଦ୍ଧେଶ୍ୱରଙ୍କ ଦାସ ସାଂଜ୍ଞା ଦାସୁରେ ପରିଣତ ହୋଇଯାଇଛି । ତେଲୁଗୁରେ ସ/ଶ ଓ ଚ ମଧ୍ୟରେ ବେଳେବେଳେ ଅଦଳବଦଳ ଘଟେ । ତେଣୁ ବହୁ ଗଙ୍ଗରାଜାଙ୍କ ଅଭିଲେଖରେ ଚିଗୁ ନାୟକ, ଚିଗୁ ପଢ଼ିରାୟ, ଚିଗୁ ସାହସ ମଲ୍ଲ, ଚିଗୁ ସେନାପତି ଆଦି ନାମ ମିଳେ । କିନ୍ତୁ, କୌଣସି ଅଭିଲେଖରେ କେହି ସିଗୁ ନାମଧାରୀ ଅନ୍ୟ କେହି ନାହାନ୍ତି, କେବଳ ଜଣେ ତିତ୍ତିରିସିଗୁ ଅଛନ୍ତି । ଅଭିଲେଖର ପାଠୋଦ୍ଧାରରେ ଭ୍ରମ ଥାଇପାରେ । ଅନ୍ୟଥା ସିଦ୍ଧେଶ୍ୱର ଦାସ ଜେନାଙ୍କ ପିତାଙ୍କ ନାମ କବିସିଂହ ଜେନା ଥିବା ଅନୁମିତ ହୋଇପାରେ । ତେବେ ତାଙ୍କର ଶ୍ରଦ୍ଧା ନାମ ସିଂହ ଓ ସେ କବି, ଏପରି ଅର୍ଥ କରାଯାଇପାରେ ।

ଶ୍ରୀଯୁକ୍ତ ସାହୁ କବି ଶବ୍ଦଟି ପିତାଙ୍କୁ ଲକ୍ଷ୍ୟ ନ କରି ପୁତ୍ରଙ୍କ ପାଇଁ ଅଭିପ୍ରେତ ବୋଲି କହିଛନ୍ତି । ଶବ୍ଦଟି ସିଗୁର ଅବ୍ୟବହିତ ପୂର୍ବରେ ଥିବାରୁ ଦୂରବର୍ତ୍ତୀ ସିଦ୍ଧେଶ୍ୱର ଦାସଙ୍କୁ ବୁଝାଇବା ବିଚାର ଅସଙ୍ଗତ । ଗଙ୍ଗରାଜତ୍ୱ ବେଳର ଶତାଧିକ ଅଭିଲେଖରେ ଅମୁକର ପୁଅ ସମୁକ ବୋଲି ସୂଚାଇବା ଦେଖାଯାଏ । କୌଣସିଠାରେ ଅମୁକ ପୂର୍ବରୁ ବସିବା ଶବ୍ଦ ବାପାକୁ ନବୁଝାଇ ପୁଅକୁ ବୁଝାଇବା ଦେଖାଯାଉନାହିଁ ।

ଶ୍ରୀ ସାହୁ ଆଉ ମଧ୍ୟ କହିଛନ୍ତି ସିଦ୍ଧେଶ୍ୱର ଦାସଙ୍କର ଦାସ ସାଂଜ୍ଞାଟି ସେ କବି ଥିବା କଥାର ସୂଚକ । ଏହା ସତ୍ୟ ଯେ ସେ ସମୟର ବୈଷ୍ଣବ କବିମାନେ ଭକ୍ତିବାଦର ଦାସ୍ୟଭାବକୁ ସ୍ୱୀକାର କରି ଦାସ ବୋଲାଉଥିଲେ । କିନ୍ତ ଦାସ ଆଖ୍ୟା ଶୂଦ୍ରମାନଙ୍କର କୁଳସାଂଜ୍ଞା ମଧ୍ୟ ଥିଲା, ଯେପରିକି ବ୍ରାହ୍ମଣଙ୍କର ଶର୍ମା, କ୍ଷତ୍ରିୟଙ୍କର ବର୍ମା । ବିଷ୍ଣୁ ପୁରାଣରେ ଲେଖାଅଛି— 'ଗୁପ୍ତ ଦାସାତ୍ମକଂ ନାମଂ ପ୍ରଶସ୍ତଂ ବୈଶ୍ୟଶୂଦ୍ରୟୋ'' (୩/୧୦/୯) । ଯମ ସ୍ମୃତିରେ ମଧ୍ୟ କୁହାଯାଇଛି— ''ଦାସଃ ଶୂଦ୍ରସ୍ୟ'' । ଫଳରେ ଦାସ ଆଖ୍ୟା ବହୁ ଜାତିର କୁଳସାଂଜ୍ଞା ଥିଲା, ତାହା କେବଳ ବୈଷ୍ଣବ କବିତ୍ୱର ସୂଚକ ନୁହେଁ । ଆଉ ମଧ୍ୟ ବୈଷ୍ଣବମାନେ କବି ନହେଲେ ମଧ୍ୟ ଦାସ ବୋଲାଉଥିଲେ । କିନ୍ତୁ, ଗୋଟିଏ କଥା ନିଃସନ୍ଦେହ; ଯେଉଁମାନେ ବୈଷ୍ଣବ ହୋଇ ଦାସ ହେଉଥିଲେ ସେମାନେ ତାଙ୍କର କୁଳସାଂଜ୍ଞାକୁ ତ୍ୟାଗ କରୁଥିଲେ । ଅଭିଲେଖର ସିଦ୍ଧେଶ୍ୱର ଦାସ କୌଳିକ ଜୀୟନ ସାଂଜ୍ଞାକୁ ଛାଡ଼ିନଥିବା ଯୋଗୁଁ ସ୍ପଷ୍ଟ ସୂଚନା ମିଳୁଛି ଯେ ସେ ବୈଷ୍ଣବ କବି ହେବାରୁ ଦାସ ବୋଲାଇ ନାହାନ୍ତି । ମୋର ଅନୁମାନ ଦାସ ତାଙ୍କର ଉପନାମ ନୁହେଁ, ତାହା ତାଙ୍କ ନାମର ଅଂଶ । ଗଙ୍ଗ ଅଭିଲେଖାବଳୀରେ ଶିବଦାସ ନାୟକ, ଋଷିଦାସ ନାୟକ, ରକ୍ଦାସ ନାୟୁଡୁ,

ନାରଣଦାସ ଜୀୟନ, ରାମଦାସ ଜୀୟନ, ସଚିଦାସ ଜୀୟନ, ବିଷ୍ଣୁଦାସ ଉପାଧ୍ୟାୟ (କଳିଙ୍ଗ ବ୍ୟାପାରୀ), ଶିବଦାସ ପଶାଇତି, ଶିବଦାସ ସେନାପତି, ମାଧୀଦାସ ପ୍ରତିହସ୍ତନାୟକ, ଚନ୍ଦ୍ରଦାସ କନ୍ଦର୍ପଜୀୟନ ଆଦି ବହୁ ଲୋକଙ୍କ ନାମ ଲେଖାଅଛି । ସେହି ଧାରାରେ ସିଦ୍ଧେଶ୍ୱର ଦାସ ନାମ ଓ ଜୀୟନ/ଜେନା ତାଙ୍କ କୁଳସାଂଜ୍ଞା ବୋଲି ମନେହୁଏ । ମହାଦେବଙ୍କର ପ୍ରସିଦ୍ଧ ନାମ ସିଦ୍ଧେଶ୍ୱର ହୋଇଥିବା ଯୋଗୁଁ ସିଦ୍ଧେଶ୍ୱର ଓ ସିଦ୍ଧେଶ୍ୱରଦାସ ନାମଧାରୀ ବହୁଲୋକ ରହିଥିବା ସ୍ୱାଭାବିକ କଥା । କୌତୂହଳର ବିଷୟ ସୀମାଚଳାମ୍‌ର ଆଲୋଚ୍ୟ ଅଭିଲେଖର ୩୦ ବର୍ଷ ପୂର୍ବବର୍ତ୍ତୀ ପୁରୀର ଶଙ୍କରାନନ୍ଦ ମଠ ତାମ୍ରଲେଖରେ ଜଣେ ପାତ୍ର ପଦବୀଧାରୀ ''ସିଦ୍ଧେଶ୍ୱର ଜେନା'ଙ୍କ ନାମ ସ୍ଥାନ ପାଇଛି । ଏହି ସବୁ ବିଚାରରୁ କଟକର କବିସିଂହ ଜେନାଙ୍କ ପୁଅ ସିଦ୍ଧେଶ୍ୱର ଦାସ ଜେନା ବିଚିତ୍ର ରାମାୟଣର କବି ସିଦ୍ଧେଶ୍ୱର ଦାସ ହେବାର ଅନୁମାନ ଅସଙ୍ଗତ ।

ଅଭିଲେଖର ସମୟ ଦୃଷ୍ଟିରୁ ବିଚାର କଲେ ମଧ ବୁଢ଼ାଲେଙ୍କା ସିଦ୍ଧେଶ୍ୱର ଦାସ ଜୀୟନ ବିଚିତ୍ର ରାମାୟଣକାର ହୋଇନଥିବା ଜଣାଯାଉଛି । ମହାଭାରତ ରଚନା ଆରମ୍ଭ କରିବା ବେଳକୁ ସାରଳାଦାସ ଅଳ୍ପ ବୟସ୍କ ଯୁବକ ଥିବା ବିଷୟ ସେ ନିଜେ ପ୍ରାରମ୍ଭିକ ପର୍ବଗୁଡ଼ିକରେ ଜଣାଇଛନ୍ତି । 'ସାରଳାଦାସଙ୍କ ବୟସର ଛାପ' ଶୀର୍ଷକ ଅଧ୍ୟାୟରେ ଏହା ଦେଖାଇ ଦିଆଯିବ । ମହାଭାରତ ଲେଖା ଆରମ୍ଭ ହେବା ବେଳକୁ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ଚଳୁଥିଲା, ଅର୍ଥାତ୍ ଖ୍ରୀ. ୧୪୩୫ ପରେ ହିଁ ମହାଭାରତ ଲେଖା ଆରମ୍ଭ ହୋଇଛି । ମହାଭାରତ ଲେଖା ଆରମ୍ଭ କରିବା ପୂର୍ବେ ସେ ଥିଲେ ସିଦ୍ଧେଶ୍ୱର ଦାସ । ତେଣୁ ବିଚିତ୍ର ରାମାୟଣ ପ୍ରଣେତା ସିଦ୍ଧେଶ୍ୱର ଦାସ ନିଶ୍ଚୟ ଜଣେ ଅଳ୍ପ ବୟସର ଯୁବକ । କିନ୍ତୁ, ଖ୍ରୀ. ୧୪୨୫ର ଆଲୋଚ୍ୟ ଅଭିଲେଖର ସିଦ୍ଧେଶ୍ୱର ଦାସ ଥିଲେ 'ବୁଢ଼ାଲେଙ୍କା' ପଦବୀଧାରୀ । ଲେଙ୍କା ପଦବୀଟି ଗଙ୍ଗରାଜତ୍ୱରେ ଶାସନ ବ୍ୟବସ୍ଥାର ଏକ ଅଙ୍ଗ ଥିଲା । ଲେଙ୍କା ପଦବୀ ପରି ଶାସନର ସେହି ବିଭାଗରେ ବାଳଲେଙ୍କା, ପାଟଲେଙ୍କା ଓ ବୁଢ଼ାଲେଙ୍କା ପଦବୀମାନ ମଧ ଥିଲା । ବୁଢ଼ାଲେଙ୍କା ଏମାନଙ୍କ ମଧରେ ବୟୋଜ୍ୟେଷ୍ଠ ଓ ବରିଷ୍ଠ ଅଧିକାରୀ ନିଶ୍ଚୟ । ଯେଉଁ ବ୍ୟକ୍ତି ଲେଙ୍କା ଭାବରେ ସର୍ବୋଚ୍ଚ ସ୍ତରକୁ ଉଠିଲେଣି ସେ ପରିଣତ ବୟସର ଲୋକହିଁ ହେବେ । ଖ୍ରୀ. ୧୪୨୫ (ଅଭିଲେଖର ସମୟ) ବେଳକୁ ଯେ ବୁଢ଼ାଲେଙ୍କା ହୋଇ ସାରିଥିଲେଣି ସେ ଖ୍ରୀ. ୧୪୩୫ ପରେ (ମହାଭାରତ ଲେଖା ଆରମ୍ଭ କରିବା ପୂର୍ବରୁ) ଯୁବକ ହୋଇ ନ ପାରନ୍ତି । ତେଣୁ ଆଲୋଚ୍ୟ ସୀମାଚଳମ୍ ଅଭିଲେଖର କଟକ ନିବାସୀ କବିସିଂହ ଜେନାଙ୍କ ପୁତ୍ର ବୁଢ଼ାଲେଙ୍କା ସିଦ୍ଧେଶ୍ୱର ଦାସ ଜେନା ଓ ବିଚିତ୍ର ରାମାୟଣ ରଚୟିତା ସିଦ୍ଧେଶ୍ୱରଦାସ ଭିନ୍ନ ଭିନ୍ନ ବ୍ୟକ୍ତି, କଦାପି ଏକା ବ୍ୟକ୍ତି ହୋଇ ନପାରନ୍ତି ।

—

# ତୃତୀୟ ଅଧ୍ୟାୟ

## ସାରଳାଦାସଙ୍କ ସମୟ

ସାରଳାଦାସ ମହାଭାରତର ଆରମ୍ଭରେ ଜଗନ୍ନାଥଙ୍କୁ ବନ୍ଦନା କରିବା ମଧ୍ୟରେ ଜଣାଇଛନ୍ତି ଯେ ଚାରି ଲକ୍ଷ ବତିଶ ହଜାର ବର୍ଷ ବ୍ୟାପୀ କଳିଯୁଗର ପ୍ରଭାବକୁ ପ୍ରତିହତ କରି ବଳରାମ, ଜଗନ୍ନାଥ (କୃଷ୍ଣ) ଓ ସୁଭଦ୍ରା (ବ୍ରହ୍ମା) କୋଟି କୋଟି (ଲୋକଙ୍କ) ପୂଜା ଭୋଗ ପାଇ ବିରାଜିତ ଅଛନ୍ତି ନୀଳସୁନ୍ଦରଗିରି (ଶ୍ରୀକ୍ଷେତ୍ର)ଠାରେ ଓ ମହାରାଜା ଶ୍ରୀ କପିଳେଶ୍ୱର ପ୍ରଣତ ହୋଇ ତାହାଙ୍କର ଖଟଣି ସେବା କରୁଛନ୍ତି –

ଶ୍ରୀ ଯମେଶ୍ୱର ମହାଲିଙ୍ଗ ମଉଦଧିର ଉତ୍ତର ତଟେ ।<br>
ନୀଳସୁନ୍ଦର ପର୍ବତ ନୀଳ କଳ୍ପବଟେ ॥<br>
ବିଜୟେ ରାମ କୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମା ।<br>
ଚାରି ଶତ ବତିଶ ସହସ୍ର ବରଷକୁ ଯୋଗଲୟେ ମହାତମା ॥<br>
କଳିକାଳ ଧ୍ୱଂସିଣ ଭୋଗେଣ କୋଟି ପୂଜା ।<br>
ପ୍ରଳମ୍ୱିତେ ଖଟଇ ଶ୍ରୀ କପିଳେଶ୍ୱର ମହାରାଜା ॥ (ଆଦି ୪)

ଆର୍ତ୍ତବଲ୍ଲଭ ମହାନ୍ତି ପାଇଥିବା ସବୁଗୁଡ଼ିକ ତାଳପତ୍ର ପୋଥିରେ ଏହି ପାଠ ଥିବା ଜଣାଯାଉଛି । ମୁଁ ଏହି ଅଂଶ ନଥିବା କେତୋଟି ତାଳପତ୍ର ପୋଥି ଦେଖିଛି । ଅନ୍ୟାନ୍ୟ ପର୍ବରେ ଜଗନ୍ନାଥ କେବଳ ଦଶହଜାର ବର୍ଷ ରହିବା ବର୍ଣ୍ଣନା ସାରଳାଦାସ ଦେଇଛନ୍ତି । ବୋଧହୁଏ କବି ଏ ଅଂଶଟିର ପରିବର୍ତ୍ତନ କରିବାରୁ ଭିନ୍ନ ପାଠର ସୃଷ୍ଟି ହୋଇଛି । ତେବେ, ଏହି ଅଂଶକୁ ଛାଡ଼ିଲେ ମଧ୍ୟ ଯେ ସାରଳାଦାସଙ୍କ ସମୟ ପଞ୍ଚଦଶ ଶତାବ୍ଦୀ ବୋଲି ନିର୍ଣ୍ଣୟ କରାଯାଇ ପାରିବ, ତାହା ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ।

### କପିଳେଶ୍ୱର ମହାରାଜା

ମହାରାଜା କପିଳେଶ୍ୱରଙ୍କୁ ଚିହ୍ନଟ କରିବା ସୁସାଧ୍ୟ । ସେ ପୁରୀର ଜଗନ୍ନାଥଙ୍କୁ ସେବା କରିବା ବର୍ଣ୍ଣନା ସୂଚାଉଛି ଯେ ସେ ଓଡ଼ିଶାର ସୂର୍ଯ୍ୟବଂଶୀ ରାଜତ୍ୱର ପ୍ରତିଷ୍ଠାତା କପିଳେନ୍ଦ୍ର ଓରଫ୍ କପିଳେଶ୍ୱର ଦେବ, ଯାହାଙ୍କର ରାଜତ୍ୱ କାଳ ଖ୍ରୀ. ୧୪୩୫ରୁ ଅନ୍ଦାଜ ୧୪୬୭ ଯାଏଁ ପରିବ୍ୟାପ୍ତ ଥିଲା । ଗଙ୍ଗବଂଶୀୟ ମହାରାଜା ତୃତୀୟ ଅନଙ୍ଗଭୀମ ଦେବ (ଖ୍ରୀ. ୧୨୧୧-୧୨୩୮) ଓଡ଼ିଶା ରାଜ୍ୟକୁ ଜଗନ୍ନାଥଙ୍କୁ ଉତ୍ସର୍ଗ କରି ଦେଇ ନିଜକୁ ଜଗନ୍ନାଥଙ୍କ ଆଦ୍ୟ ସେବକ କରାଇ ଜଗନ୍ନାଥଙ୍କ ତରଫେ ରାଜ୍ୟ ଶାସନ

କଲେ । ଏହି ପ୍ରଥାକୁ ଓଡ଼ିଶାର ପରବର୍ତ୍ତୀ ରାଜାମାନେ ଚାଲୁ ରଖିଲେ । ଅଦ୍ୟାବଧି ପୁରୀରାଜାମାନେ ଏହି ପରଂପରାକୁ ଧରି ଜଗନ୍ନାଥଙ୍କ ଆଦ୍ୟସେବକ । ଐତିହାସିକମାନେ, ମାଦଳାପାଞ୍ଜୀ ଲେଖକଙ୍କଠାରୁ ଆରମ୍ଭ କରି କପିଳେନ୍ଦ୍ର ଦେବ ନାମକୁ ସୁପ୍ରଚାରିତ କରାଇଥିଲେ ହେଁ ଅଧିକାଂଶ ଅଭିଲେଖରେ ସେ କପିଳେଶ୍ୱର ବୋଲାଇଛନ୍ତି । ତାଙ୍କର ରାଜତ୍ୱର ପ୍ରଥମ ଅଭିଲେଖ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରର ବାମପଟ କାନ୍ଥରେ ଖୋଦିତ ହୋଇଛି, ଯେଉଁଠି ସେ ହେଉଛନ୍ତି 'ବୀର ଶ୍ରୀ ପ୍ରତାପ କପିଳେଶ୍ୱର ଦେବ ମହାରାଜା' । ସେ ଖ୍ରୀ. ୧୪୫୯ରେ ଏକ ଅଭିଲେଖରେ ଜଣାଇଛନ୍ତି ଯେ ଓଡ଼ିଶା ରାଜ୍ୟ ଜଗନ୍ନାଥଙ୍କ ଅନୁଗ୍ରହରୁ ମିଳେ : ''ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରୁ'' । ଏହିଁ କାରଣରୁ ସାରଳାଦାସ ଲେଖିଥିବା 'ଖଟଇ'ର ଅର୍ଥ ଜଗନ୍ନାଥଙ୍କ ସେବକ ଭାବରେ ରାଜ୍ୟ ଶାସନ କରୁଛନ୍ତି ବୋଲି ବୁଝାପଡୁଛି ।

ସୂର୍ଯ୍ୟବଂଶର ପ୍ରତିଷ୍ଠାତା କପିଳେଶ୍ୱର/କପିଳେନ୍ଦ୍ର ଦେବଙ୍କୁ ଛାଡ଼ିଲେ ଅନ୍ୟ କେହି କପିଳ ନାମଧେୟ ରାଜା ଜଗନ୍ନାଥଙ୍କ ସେବକ ଥିବା କଥା ଇତିହାସ ସ୍ୱୀକାର କରେ ନାହିଁ । ତେଣୁ ମହାଭାରତର ରଚନା ଖ୍ରୀ. ୧୪୩୫ ରୁ ୧୪୬୭ ମଧ୍ୟରେ ଆରମ୍ଭ ହୋଇଥିଲା ବୋଲି ସ୍ଥିର କରାଯାଇପାରେ ।

ସାରଳାଦାସ ମହାଭାରତ ଲେଖିବା ପୂର୍ବରୁ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ଲେଖିଥିଲେ ଓ ମହାଭାରତ ଲେଖି ସାରି ଚଣ୍ଡୀପୁରାଣ ଲେଖିଥିଲେ । ସାରଳାଦାସଙ୍କ ବୟସର ଛାପ ଅଧ୍ୟାୟରେ ଦେଖାଇଦିଆଯିବ ଯେ ମହାଭାରତ ଲେଖା ଆରମ୍ଭ କରିବାବେଳକୁ ସେ ଯୁବକ କିନ୍ତୁ ସାରିବାବେଳକୁ ପରିଣତ ବୟସ୍କ । ମହାଭାରତର ଆରମ୍ଭ ଓ ଶେଷ ମଧ୍ୟରେ ସମୟର ବ୍ୟବଧାନ ତିରିଶ ବର୍ଷ ଖଣ୍ଡେ ହୋଇପାରେ । ତେଣୁ କବି ମହାଭାରତ ସାରିବା ଓ ଚଣ୍ଡୀପୁରାଣ ଲେଖିବା ବେଳକୁ ପୁରୁଷୋତ୍ତମ ଦେବ (ଖ୍ରୀ. ୧୪୬୮-୧୪୯୭) ରାଜତ୍ୱ କରୁଥିବା ସମ୍ଭବ ।

ସାରଳାଦାସ ସ୍ୱର୍ଗାରୋହଣ ପର୍ବର ଆରମ୍ଭରେ କଳିଯୁଗର ଚଳଣିର ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ସହିତ କପିଳେନ୍ଦ୍ରଦେବଙ୍କ ରାଜତ୍ୱ ଓ ପୁରୁଷୋତ୍ତମ ଦେବଙ୍କ ସିଂହାସନ ଅଧିକାର ବେଳର କତିପୟ ଘଟନାର ସାମ୍ୟ ଥିବା ଦେଖାଯାଉଛି । କଳିଯୁଗର ବିବରଣର କିୟଦଂଶ –

ଆଚାର ତେଜି ବ୍ରାହ୍ମଣେ ହୋଇବେ ଅନାଚାରୀ ।
ରାଜସେବା କରିବେ ଯେ ଦଣ୍ଡପାଟ ଆବୋରି ।।୯୮।।
କୃଷି କର୍ମେଣ ଯେ ଦଳିବାକ ମହୀ ।
ଶହସ୍ର ଧରି ଶିର ଛେଦିବାକ ସେହି ।।୯୯।।

× × ×

ସ୍ୱାମୀକି ସେବକେ ଯେ ମାରିବାକ ବେଳେ ।
ଚଉର୍ଯ୍ୟ କର୍ମେ ବ୍ରତୀ ହୋଇବେ ବିକଳେ ॥୧୧୧॥
ମିଛ ହୁଁ ସତ ଜନେ ନ କହିବା ବାଣୀ ।
ଓଛ ଲୋକେ ସିଂଘାସନେ ବସିବେ ପାତ୍ରମନ୍ତ୍ରୀ ଜାଣି ॥୧୧୨॥

× × ×

ଆପଣାର ଭୂମି ଯେ କରିବେ ପରିତେଜ୍ୟା ॥
ପର ସୀମା ହରି ମରିବାକ ରାଜା ॥୧୧୫॥

× × ×

ରାଜାକଇ ମାରିତେ ପାଞ୍ଚ କରିବେ ଅମାନାତ୍ୟ ।
ସୁଜନେ ଅନ୍ୟାଚାର ଯେ କରିବେ ନିୟତ ॥୧୨୧॥

(ସ୍ୱର୍ଗରୋହଣ ୯-୧୧)

ବ୍ରାହ୍ମଣମାନେ କୌଳିକ ଆଚାର ଛାଡ଼ି ରାଜସେବା କରି ଦଣ୍ଡପାଟର ଶାସକ ହେବା ବର୍ଣ୍ଣନା (୯୮ ପଦ) ସହିତ କପିଳେନ୍ଦ୍ରଙ୍କ ଅମଳରେ ଗୋପୀନାଥ ମହାପାତ୍ରାଦି ବ୍ରାହ୍ମଣ ମହାମନ୍ତ୍ରୀ ଆଦି ଉଚ୍ଚପଦ ପାଇ ରାଜ୍ୟ-ଶାସନ କରୁଥିବା କଥାର ମେଳ ଦେଖି ହୁଏ । ସାରଳାଦାସ କୃଷକମାନେ ଚାଷ (ଦଳିବାକ ମହୀ) ଛାଡ଼ି ସଶସ୍ତ୍ର ସୈନିକ ହୋଇ ନରହତ୍ୟାରେ ପ୍ରବୃତ୍ତ ହେବା କାର୍ଯ୍ୟର ସମାଲୋଚନା କରିଛନ୍ତି (୯୯ ପଦ)। କୃଷକମାନେ ଖାଦ୍ୟଶସ୍ୟର ଉତ୍ପାଦନ ଛାଡ଼ି ଯୁଦ୍ଧରତ ରହିଲେ ଦେଶ ଅନ୍ନକଷ୍ଟ ଭୋଗିବା ଅନିବାର୍ଯ୍ୟ । ମାଦଳାପାଞ୍ଜୀ ଅନୁସାରେ କପିଳେନ୍ଦ୍ର ଦେବ ନିରନ୍ତର ଯୁଦ୍ଧରେ ପ୍ରବୃତ୍ତ ରହୁଥିଲେ– ''ସର୍ବଦା କଟକାଇ ସେ ରାଜା କରନ୍ତି ।'' ରାଜା ଯୁଦ୍ଧଖୋର ହେଲେ ସୈନ୍ୟ ବାହିନୀକୁ ବଢ଼ାଇବାକୁ ପଡ଼େ । ଫଳରେ ଖଣ୍ଡାୟତ, ପାଇକ ଆଦି ସାମରିକ ଜାତି ବାହାରେ ଚଷା ଜାତିଙ୍କୁ ମଧ ସୈନିକ ଭାବରେ ନିୟୋଜିତ କରିବାକୁ ହୁଏ । ପରିଣାମ ହୁଏ ଖାଦ୍ୟଶସ୍ୟ ଉତ୍ପାଦନ ହ୍ରାସ । ପୁଣି, ସେହି ଯୁଗରେ ସୈନିକମାନେ ଦରମା ପାଉ ନଥିଲେ । ଚାଷ କରି କୁଟୁମ୍ବ ପୋଷଣ ପାଇଁ ନିଷ୍କର ଜମି ପାଉଥିଲେ, ଯାହା ସେମାନେ ଯୁଦ୍ଧରତ ରହିବା ଅବସ୍ଥାରେ ଭଲ ଭାବରେ ଚାଷ ହୋଇପାରୁ ନଥିଲା । ସାରଳାଦାସ ଯୁଦ୍ଧଖୋରି ନୀତିର ବିରୋଧୀ ଥିଲେ । ବାସ୍ତବରେ କପିଳେନ୍ଦ୍ର ଦେବ ନିରନ୍ତର ଯୁଦ୍ଧପ୍ରବୃତ୍ତ ରହିବା ହେତୁରୁ ତାଙ୍କ ରାଜତ୍ୱ ମଧରେ ଘନଘନ ଦୁର୍ଭିକ୍ଷ ପଡ଼ିଥିବା କଥା ସେହି ମାଦଳାପାଞ୍ଜୀ କହେ– ''ଅ ୧୧ଙ୍କେ ରାଇଜେ ମହରଗ କରି ଧାନ ଭରଣ କା ୧୦୫ ହାଣ ହୋଇଲା । ସେ ମହରଗରେ ବହୁତ ଲୋକ ମଲେ । × × × ଅ ୨୭ଙ୍କେ ରାଇଜେ ଅପାଳକ କଲା, ଧାନ ଭରଣ କା ୧୦୦ହାଣ ହୋଇଲା । × × × ଅ୩୩ଙ୍କେ ଯେ ବତାଶି ପୁଣ କଲା ଅନେକ ଲୋକ ସେ ମହରଗରେ ମଲେ ॥'' (ପ୍ରାଚୀ ସମିତି ପ୍ରକାଶିତ ୧ମ ପାଞ୍ଜି)।

ସୈନିକ ଭାବରେ କୃଷକମାନଙ୍କୁ ଖଟାଇବା ନୀତି ଘନଘନ ଦୁର୍ଭିକ୍ଷ ଘଟିବାର କାରଣ ବୋଲି ସାରଳାଦାସ ମନେ କରୁଥିବା ଅନୁମେୟ । ପ୍ରଭୁଙ୍କୁ ସେବକମାନେ ମାରିବା କଥା (୧୧୧ ପଦ) କପିଳେନ୍ଦ୍ର ଦେବଙ୍କ ରାଜ୍ୟାଧିକାର ବେଳର କଥା । କପିଳେନ୍ଦ୍ର ଥିଲେ ଓଛ ଅର୍ଥାତ୍ ଭକ୍ଷ ବା ବଳବାନ୍ ବ୍ୟକ୍ତି । ସେ ଗଙ୍ଗବଂଶୀୟ ରାଜା ଚତୁର୍ଥ ଭାନୁଦେବ (ଖ୍ରୀ. ୧୪୧୪-୩୫)ଙ୍କ ଉଚ୍ଚ ରାଜକର୍ମଚାରୀ ଥାଇ ପ୍ରଭୁଙ୍କୁ ହଟାଇ ପାତ୍ରମନ୍ତ୍ରୀ ଆଦିଙ୍କ ସମର୍ଥନରେ ରାଜ୍ୟ ମାଡ଼ିବସିଥିଲେ (୧୧୨ ପଦ) । ସେ ଭାନୁଦେବଙ୍କ ହତ୍ୟା କରିଥିବା କଥାର ସମର୍ଥନ ଇତିହାସରେ ନାହିଁ, କିନ୍ତୁ ହତ୍ୟା ଅନୁମିତ ହୋଇପାରେ (୧୧୧ ପଦ) । ଏଠାରେ ସାରଳାଦାସ ରାଜଦ୍ରୋହୀମାନେ ଚୌର୍ଯ୍ୟ କରୁଥିବା କଥା ସୂଚାଇଛନ୍ତି । ଏହି କଥାର ସୂଚନା ଦ୍ୱିତୀୟ ମାଦଳାପାଞ୍ଜିରେ କପିଳେନ୍ଦ୍ରଦେବଙ୍କ ବିବରଣ ମଧ୍ୟରେ ରହିଛି– ''ବନମାଳି ଦାସ ପୁଅ କାଶିଦାସ ପୂର୍ବେ ଚୋରିବିଦ୍ୟାରେ ରାଜାଙ୍କ ସଙ୍ଗ ଥିଲେ । ଏ ରାଜା ତାଙ୍କୁ ନ ପଚାରିଲେ ବୋଲି ନଅରେ ସିନ୍ଧି କଲା । ବହୁତ ପଦାର୍ଥ ନେଲା ।'' ନିଜ ରାଜ୍ୟକୁ ଅବହେଳା କରି ପରରାଜ୍ୟକୁ ହରିବା ରାଜନୀତି ସାରଳାଦାସଙ୍କ ପସନ୍ଦକୁ ଆସୁ ନଥିବା କଥା ଜଣାପଡୁଛି (୧୧୫ ପଦ) । ମହାଭାରତର ବହୁ ସ୍ଥାନରେ ସାରଳା ଦାସ ପରରାଜ୍ୟ ଆକ୍ରମଣର ନିନ୍ଦା କରିଛନ୍ତି । ଅର୍ଜୁନ ସ୍ୱୀୟ ଆଚରଣର ଉତ୍କର୍ଷ ଦର୍ଶାଇବା ମଧ୍ୟରେ କହିଛନ୍ତି– ''ପରସୀମା ଭୂମି ମୁଁ ନ ହରଇ ବଳେ'' (୨ ବନ ୫୩୨), ପୁଣି ''ପରଭୂମି ନ ହରଇ ପରକାର୍ଯ୍ୟେ ଶତ୍ରୁକୁ ନ ମାରଇ'' (୨ ବନ ୫୭୭) । କପିଳେନ୍ଦ୍ର ଦେବଙ୍କ ଦାକ୍ଷିଣାତ୍ୟରେ ଯୁଦ୍ଧଖୋର ରାଷ୍ଟ୍ରନୀତି 'ପରକାର୍ଯ୍ୟେ' ଶତ୍ରୁକୁ ମାରିବା ପାଇଁ ଉଦ୍ଦିଷ୍ଟ ଥିଲା । ନିଜାମୁଦ୍ଦିନ୍, ଫେରିସ୍ତା ଆଦି ମୁସଲମାନ ଐତିହାସିକମାନେ କପିଳେନ୍ଦ୍ରଦେବ ନିଜ ରାଜ୍ୟ ଛାଡ଼ି ଦାକ୍ଷିଣାତ୍ୟରେ ପରରାଜ୍ୟ ବାହାମନି ଉପରେ ଆକ୍ରମଣ କରୁଥିବା ବେଳେ ବଙ୍ଗଳାର ସୁଲତାନ୍ ଓଡ଼ିଶା ଆକ୍ରମଣ କରି ଓଡ଼ିଶାକୁ ଉଜାଡ଼ିଥିବା ବିଷୟର ବର୍ଣ୍ଣନା ଦେଇଛନ୍ତି । ମାଦଳାପାଞ୍ଜି ଅନୁସାରେ କପିଳେନ୍ଦ୍ରଦେବ ଦେହତ୍ୟାଗ କଲେ କୃଷ୍ଣାନଦୀ ତୀରରେ । କୃଷ୍ଣା ନଦୀ ତୀର ପରରାଜ୍ୟର ଅନ୍ତର୍ଗତ । ଗୋଦାବରୀ ନଦୀ ଥିଲା ଓଡ଼ିଶାର ଦକ୍ଷିଣ ସୀମା । ତାହାର ଦକ୍ଷିଣକୁ ସୁଦୂର କାବେରୀ ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଭୂଖଣ୍ଡକୁ କପିଳେନ୍ଦ୍ର ଦେବ ଜୟ କରି 'ନବକୋଟୀ-କର୍ଣ୍ଣାଟ-କଳବରଗେଶ୍ୱର' ବୋଲାଇଲେ । କପିଳେନ୍ଦ୍ର ଦେବ ପରରାଜ୍ୟ ଜିଣି ପରରାଜ୍ୟରେ ମରିଥିବା କଥା ୧୧୫ ପଦରେ ସୂଚିତ ହୋଇଛି – ''ପରସୀମା ହରି ମରିବାକ ରାଜା'' ।

କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଶେଷ ଭାଗରେ ରାଜ୍ୟର ସୈନ୍ୟ ଓ ସାମନ୍ତରାଜା ମାନେ ତାଙ୍କର ବିରୋଧୀ ହୋଇ ମେଳିଆ ହୋଇଥିବା କଥାର ପ୍ରମାଣ ତାଙ୍କର ଖ୍ରୀ. ୧୪୬୪ରେ ଖୋଦିତ ଶ୍ରୀମନ୍ଦିର ଅଭିଲେଖରୁ ମିଳୁଛି । ଏହି ଅଭିଲେଖରେ କପିଳେନ୍ଦ୍ର ଦେବ (ଯେ କି ଜଗନ୍ନାଥଙ୍କ ତରଫେ ରାଜ୍ୟ ଶାସନ କରୁଥିବା କଥା କହୁଥିଲେ)

ଜଗନ୍ନାଥଙ୍କୁ ଗୁହାରି ଜଣାଇଛନ୍ତି – "ଭୋ ଜଗନ୍ନାଥ, ତୋହ ସେବକ ଏମନ୍ତ ଜଣାଉଅଛି । ରାଇଜଯାକେ ଏ ସାଆନ୍ତମାନଙ୍କୁ ମୁଇଁ ପାଇକ ରାଉତକୁ କରି ××× ବାଳକାଳୁ ପୋଷି ଆଣିଲି । ଏମାନେ ମୋତେ ସବୁ ହେଁ ଛାଡ଼ିଲେ । ଏମାନଙ୍କୁ ମୁଇ ଯେ ଯାହା ଅନୁରୂପେ ବିହିବି ନିଯୋଗିବି । ଭୋ-ଜଗନ୍ନାଥ, ଏ କଥା ମୋହର ଦୋଷ ଅଦୋଷ ବିଚାର ।" ସବୁ ଅନୁଗତ ସାମନ୍ତ ରାଜାଙ୍କୁ ମାରିବା ପାଇଁ ବିଚାର (ପାଞ୍ଚ) କରିବା କଥା ୧୨୧ ପଦରେ ଲେଖାଅଛି ।

କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠପୁତ୍ର କୁମାର ହମ୍ଵୀରଙ୍କ ସିଂହାସନ ପାଇଁ ଦାବି ଥିବା ସତ୍ତ୍ୱେ କନିଷ୍ଠ ପୁରୁଷୋତ୍ତମ ଦେବ ଅମାତ୍ୟବର୍ଗଙ୍କୁ ଧରି ସିଂହାସନ ମାଡ଼ି ବସିଥିଲେ । ବିଶ୍ୱାସ କରିବା ପାଇଁ କାରଣ ରହିଛି ଯେ ପରୁଷୋତ୍ତମଙ୍କ ମାତା ଥିଲେ କପିଳେନ୍ଦ୍ରଙ୍କର ଭୋଗିନୀ ବା ଫୁଲବିବାହୀ; ସେ ବିବାହିତା ରାଣୀ ନ ଥିଲେ । ଏହାକୁ ମଧ ସାରଳାଦାସ "ଓଛ ଲୋକେ ସିଂହାସନେ ବସିବେ ପାତ୍ରମନ୍ତ୍ରୀ ଜାଣି" (୧୧୨) ପଦ ମଧରେ ବ୍ୟକ୍ତ କରିଛନ୍ତି । କପିଳେନ୍ଦ୍ରଙ୍କ ପରି ପୁରୁଷୋତ୍ତମ ମଧ ଓଛ ଅର୍ଥାତ୍ ଭକ୍ଷ ବା ବଳବାନ୍ ଓ ପାତ୍ରମନ୍ତ୍ରୀଙ୍କ ସମର୍ଥନ ପାଇ ବଳପୂର୍ବକ ଗାଦି ମାଡ଼ି ବସିଥିଲେ । ଏହି ସବୁ ସାମଞ୍ଜସ୍ୟରୁ ଅନୁମିତ ହୁଏ –

(୧) ମହାଭାରତ ଲେଖା ସରିବା ବେଳକୁ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ଆରମ୍ଭ ହୋଇ ସାରିଥିଲାଣି । ଆରମ୍ଭ ଓ ଶେଷ ମଧର ସମୟ ବ୍ୟବଧାନ ୩୦ ବର୍ଷ ବୋଲି ଧରିବାକୁ ହେଉଛି କାରଣ ଆରମ୍ଭ ବେଳକୁ କବି ତାଙ୍କ ବୟସ ଅଳପ ବୋଲି ଜଣାଇଛନ୍ତି ଓ ଶେଷ ବେଳକୁ ସେ ବୃଦ୍ଧ ହୋଇଥିବା ଲେଖିଛନ୍ତି । କପିଳେଶ୍ୱର ଦେବ ଖ୍ରୀ. ୧୪୫୦ ପର୍ଯ୍ୟନ୍ତ କୌଣସି ଅଭିଲେଖରେ ଗଜପତି ଉପାଧି ବ୍ୟବହାର କରିନାହାନ୍ତି । ତେଣୁ ମହାଭାରତ ରଚନାର ଆରମ୍ଭ ଖ୍ରୀ. ୧୪୪୦ ପାଖାପାଖି ଓ ଶେଷ ଖ୍ରୀ. ୧୪୭୦ ପାଖାପାଖି ବୋଲି ଅନୁମାନ କରାଯାଇପାରେ । ମହାଭାରତ ପୂର୍ବରୁ ସେ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ଲେଖିଥିଲେ । ତେଣୁ ମହାଭାରତ ଲେଖା ଆରମ୍ଭ କରିବା ବେଳକୁ ତାଙ୍କୁ ତିରିଶ ବର୍ଷ ବୟସ ହୋଇଥିଲା ଓ ତାଙ୍କ ଜନ୍ମକାଳ ଅନ୍ଦାଜ ଖ୍ରୀ ୧୪୧୦ ପାଖାପାଖି ହୋଇପାରେ । ଏ ସବୁ ସମୟ ନିର୍ଦ୍ଧାରଣ ସ୍ଥୂଳ ନିଶ୍ଚୟ ।

(୨) ସାରଳାଦାସ କପିଳେନ୍ଦ୍ର ଦେବଙ୍କ ବଳପୂର୍ବକ ରାଜ୍ୟାଧିକାର ଓ ଯୁଦ୍ଧଖୋର ରାଜନୀତିକୁ ଓ ପୁରୁଷୋତ୍ତମଙ୍କ ବଳପୂର୍ବକ ସିଂହାସନ ଦଖଲକୁ ନିନ୍ଦା କରୁଥିଲେ । ବିଶେଷତଃ ବ୍ରାହ୍ମଣମାନେ ବର୍ଣ୍ଣଧର୍ମ ଛାଡ଼ି ଓ ଚାଷୀକୁଳ କୃଷିକର୍ମ ଛାଡ଼ି ସଶସ୍ତ୍ର ସୈନିକ ଓ ରାଜକର୍ମଚାରୀ ହେବା କଥାକୁ ସେ କଳିଯୁଗର ଦୁରାଚାର ବୋଲି ବିଚାର କରୁଥିଲେ ।

## କପିଳ ନିରସିଂହ

ସାରଳା ଦାସଙ୍କ ସମୟ ସମ୍ପର୍କରେ ଭିନ୍ନ ଭିନ୍ନ ମତ ଯେ ନାହିଁ ତାହା ନୁହେଁ, କିନ୍ତୁ କେହି ଆଲୋଚକ ଆଦିପର୍ବ ଆରମ୍ଭର ''ପ୍ରଳୟିତେ ଖଟି ଶ୍ରୀ କପିଳେଶ୍ୱର ମହାରାଜା'' ବା ଅନୁରୂପ ମର୍ମର ପାଠାନ୍ତରକୁ ପ୍ରକ୍ଷିପ୍ତ ବୋଲି କହିନାହାନ୍ତି । ଦକ୍ଷିଣ ଓଡ଼ିଶାରେ ମିଳୁଥିବା କେତେକ ତାଳପତ୍ର ପୋଥିରେ କପିଳେଶ୍ୱର ଦେବ ବା ଅନ୍ୟ କୌଣସି ରାଜାଙ୍କ ନାମୋଲ୍ଲେଖ ନାହିଁ । ତେବେ ଦକ୍ଷିଣ ଓଡ଼ିଶାରୁ ମିଳିବା ପାଠ ଯେ ମୌଳିକ ନୁହେଁ ତାହା ପରେ ଦେଖାଇ ଦିଆଯିବ । 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ' (୧୯୩୨)ର ମୁଖବନ୍ଧରେ ଆର୍ତ୍ତବଲ୍ଲଭ ମହାନ୍ତି ସାରଳା ଦାସଙ୍କ ସମୟ ଖ୍ରୀ. ପଞ୍ଚଦଶ ଶତାବ୍ଦୀ ବୋଲି ମତ ଦେଇଥିଲେ । ସେଥିରେ ସେ କଳସା ଚଉତିଶାର କବି ବତ୍ସାଦାସଙ୍କ ସମୟ ନିର୍ଦ୍ଧାରଣ କରି ଲେଖିଥିଲେ– ''କଳସା ଚଉତିଶା ସାରଳା ଦାସଙ୍କ ବେଳକୁ ଲୋକପ୍ରିୟ ହୋଇସାରିଥିଲା ଓ ଏପରି ଖ୍ୟାତି ଅର୍ଜନ କରିବାକୁ ଅତି କମ୍ ଶହେ ବର୍ଷ ନିଶ୍ଚୟ ଲାଗିଥିବ । ତେଣୁ ଆମ୍ଭେମାନେ ନିର୍ବିବାଦରେ ବତ୍ସାଦାସଙ୍କୁ ଚତୁର୍ଦ୍ଦଶ ଶତାବ୍ଦୀରେ ସ୍ଥାନିତ କରିପାରିବା'' (ଅନୁବାଦ) ।

ପରବର୍ତ୍ତୀ ସମୟରେ ସାରଳା ସ୍ମରଣିକାରେ ପ୍ରକାଶିତ 'ସାରଳାଦାସ' ପ୍ରବନ୍ଧରେ ଶ୍ରୀଯୁକ୍ତ ମହାନ୍ତି ତାଙ୍କ ମତ ବଦଳାଇ ସାରଳାଦାସ ଚତୁର୍ଦ୍ଦଶ ଶତାବ୍ଦୀର ବୋଲି ଲେଖିଲେ (ସାରଳା - ସ୍ମରଣିକାର ନୂତନ ମୁଦ୍ରଣ ୧୯୪ରେ ପ୍ରକାଶିତ)–

''ପ୍ରାକୃତ ତୁଲ୍ୟ ଲୋକଙ୍କର ନାମ– ଯୁଯେଷ୍ଠି, କୋଏନ୍ତା ଏବଂ ଅନ୍ୟାନ୍ୟ ଶବ୍ଦ ତୁକୁ, ମୁକୁ, କିସବୋ ପ୍ରଭୃତି ଶବ୍ଦ ଯାହା ସାରଳାଦାସଙ୍କ ମହାଭାରତରେ ଦେଖୁ ତାହା ବଳରାମ ଦାସଙ୍କ ରାମାୟଣରେ ଦେଖିବାକୁ ପାଉନା । ଯେଉଁମାନେ ସାରଳାଦାସଙ୍କୁ କପିଳେନ୍ଦ୍ରଦେବଙ୍କ ସମସାମୟିକ ବୋଲି କହନ୍ତି ସେମାନଙ୍କର ବୁଝିବା ଉଚିତ ଯେ ବଳରାମଦାସ ପୁରୁଷୋତ୍ତମ ଦେବଙ୍କ ଅନ୍ତିମ କାଳରେ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ପ୍ରାକ୍‌କାଳରେ ରାମାୟଣ ଲେଖା ଶେଷ କରିଥିଲେ । ତହୁଁ ସାରଳାଦାସ ଓ ବଳରାମଦାସଙ୍କ ସମୟର ବ୍ୟବଧାନ ୪୦/୫୦ ବର୍ଷ ଭିତରେ ପଡୁଅଛି । ୪୦/୫୦ ବର୍ଷ ମଧ୍ୟରେ ଭାଷାର ଏପରି ପାର୍ଥକ୍ୟ ଲକ୍ଷିତ ହେବା ଅସମ୍ଭବ । ଭାଷା ବଳରାମ ଦାସଙ୍କ କାଳରେ ଏକରକମ ସାହିତ୍ୟକ ଛଟା ତଥା ସଂସ୍କୃତ ମୂର୍ଚ୍ଛିତଭାବ ପ୍ରାୟ ହୋଇଥିଲା । ଆମ୍ଭମାନଙ୍କ ମତରେ ଆଭ୍ୟନ୍ତରୀଣ ପ୍ରମାଣ ବଳରୁ ସାରଳାଦାସ ଓ ବଳରାମ ଦାସଙ୍କ ମଧ୍ୟରେ ସମୟର ବ୍ୟବଧାନ ପ୍ରାୟ ଏକଶତ ବର୍ଷରୁ ଊର୍ଦ୍ଧ୍ୱ । ସାରଳାଦାସ କପିଳ ନରସିଂହଦେବଙ୍କ ସମସାମୟିକ । କପିଳ ନରସିଂହଦେବ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମରେ ରାଜତ୍ୱ କରୁଥିଲେ ଏବଂ ଦୁର୍ଯ୍ୟୋଧନ ସ୍ୱୟଂମ୍ବର କାଳ ସାରଳାଦାସ ଯାହା ନିର୍ଦ୍ଦେଶ କରିଅଛନ୍ତି ତାହା କପିଳ ନରସିଂହ ଦେବଙ୍କ ଅଭିଷେକ

କାଳ ସହ ସମାନ ଘଟୁଅଛି ଏବଂ ସେ ନିଜ ଗ୍ରନ୍ଥରେ ନରସିଂହ ଦେବଙ୍କୁ ଲକ୍ଷ୍ୟ କରି କପିଳେଶ୍ୱର ଦେବ ବୋଲି କହିଅଛନ୍ତି ।''

ଭାଷାର, ବିଶେଷତଃ ଶବ୍ଦ କତିପୟର, ରୂପରୁ ଲେଖକଙ୍କ ସମୟ ନିରୂପଣକରିବା ବେଳେ କେତୋଟି ବିଷୟ ପ୍ରତି ଦୃଷ୍ଟିଦେବାକୁ ହେବ । ପ୍ରଥମ କଥା ଦୁଇଜଣ ସମକାଳୀନ ଲୋକଙ୍କ ଭାଷା ସମାନ ହୋଇନପାରେ । ସାରଳାଦାସ କୃଷକ ଓ ନଗରଠାରୁ ଦୂରର ପଲ୍ଲୀ ଅଞ୍ଚଳର ଲୋକ ହୋଇଥିବାରୁ ତାଙ୍କର ଭାଷା ଗାଉଁଲି, ତେଣୁ ଅପେକ୍ଷାକୃତ ଅମାର୍ଜିତ ହେବା ସ୍ୱାଭାବିକ । ପକ୍ଷାନ୍ତରେ ବଳରାମ ଦାସ ମହାମନ୍ତ୍ରୀଙ୍କ ପୁତ୍ର ହୋଇଥିବାରୁ ନଗରବାସୀ ଶିଷ୍ଟ ଗୋଷ୍ଠୀର ଲୋକ, ତାଙ୍କର ଭାଷା ଯଦି ମାର୍ଜିତ ହେଲା ତାହା ଅପ୍ରତ୍ୟାଶିତ ହେବା କଥାନୁହେଁ । ଉଦାହରଣ ରୂପେ ଜ୍ୟେଷ୍ଠ ଫକୀରମୋହନ/ରାଧାନାଥ ଓ କନିଷ୍ଠ ଭୀମଭୋଇଙ୍କ ଭାଷାକୁ ତୁଳନା କରାଯାଇପାରେ । ପୁଣି, ସ୍ୱୀକୃତ ଅର୍ଦ୍ଧଶତାବ୍ଦୀର ବ୍ୟବଧାନର ପ୍ରଭାବ ନିଶ୍ଚୟ ରହିବ । ଉଲ୍ଲେଖନୀୟ ଯେ ଶ୍ରୀଯୁକ୍ତ ମହାନ୍ତି ବାଛି ବାଛି ବାଢ଼ିଥିବା ଯୁଯେଷ୍ଟି ଓ କୋଏନ୍ତା ଶବ୍ଦ ଦ୍ୱୟ ବଳରାମ ଦାସଙ୍କ ପରବର୍ତ୍ତୀ ସମୟର କବିମାନେ ମଧ୍ୟ ବ୍ୟବହାର କରିଛନ୍ତି ଓ ଗାଉଁଲି ଅଶିକ୍ଷିତ ଲୋକେ ଏବେ ବି କରୁଛନ୍ତି । 'କିସବୋ' ଶବ୍ଦଟିକୁ ସାରଳାଦାସ ଅଣଓଡ଼ିଆ ଲୋକଙ୍କ ତୁଣ୍ଡରୁ ଅଶୁଦ୍ଧ ଉଚ୍ଚାରଣ ଭାବରେ ଲେଖିଛନ୍ତି, ତେଣୁ ତାହାର ବିଚାର ମୂଲ୍ୟହୀନ । ଅଣଓଡ଼ିଆ ପରିବେଶ ସୃଷ୍ଟିପାଇଁ ଓଡ଼ିଆ ଭାଷାକୁ ବିକୃତ କରିବାର ସାହିତ୍ୟିକ ଆବଶ୍ୟକତା ସବୁଯୁଗରେ ରହିଛି । ତୁକୁ, ମୁକୁ ଶବ୍ଦ ଓଡ଼ିଆ ଭାଷାର ଗଠନ-ପ୍ରକୃତି-ସମ୍ମତ ହୋଇନଥିଲେ ହେଁ ଅଶିକ୍ଷିତ ଗାଉଁଲି ଲୋକଙ୍କ ତୁଣ୍ଡରେ ବ୍ୟବହୃତ ହେଉଥାଇପାରେ । ମୁଁ ପଢ଼ିଥିବା ତାଳପତ୍ର ପୋଥି ଆକାରର ବଳରାମ ଦାସଙ୍କ ଜଗମୋହନ ରାମାୟଣରେ ତୁକୁ, ମୁକୁ ଆଦି ଶବ୍ଦ ରହିଛି(ଛତ୍ରପୁରନିକଟ ବଡ଼କୁଶସ୍ଥଳୀ ଗ୍ରାମର ପୂର୍ବତନ ବିଧାନସଭା ସଦସ୍ୟ ବିଶ୍ୱନାଥ ସାହୁଙ୍କ ଘର ପୋଥି) । 'ପ୍ରାଚୀନଗଦ୍ୟ ପଦ୍ୟାଦର୍ଶ' ସଂକଳନର ଅବ୍ୟବହିତପରେ ୧୯୩୨ ରେ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦ୍ଦେବ ଇଂରାଜୀ ବୈତରଣୀ ପତ୍ରିକାରେ ଏକ ପ୍ରବନ୍ଧ ଲେଖି ସାରଳାଦାସ କପିଳ ନରସିଂହଙ୍କ ରାଜତ୍ୱ ସମୟରେ ଅର୍ଥାତ୍ ଖ୍ରୀ. ୧୩୦୫ରୁ ୧୩୦୮ ମଧ୍ୟରେ ମହାଭାରତ ଲେଖା ଆରମ୍ଭ କରିଥିବା ମତପ୍ରକାଶ କରିଥିଲେ ଓ ଶ୍ରୀ ମହାନ୍ତି ତାଙ୍କର 'ନିର୍ବିବାଦ' ମତକୁ ଅକ୍ଳେଶରେ ପରିତ୍ୟାଗ କରି ଶ୍ରୀ ଜଗଦ୍ଦେବଙ୍କୁ ସମର୍ଥନ ଦେଇଥିଲେ । ଏହି କପିଳ ନରସିଂହଙ୍କ ଅସ୍ତିତ୍ୱ ଇତିହାସରେ ସ୍ୱୀକୃତ ହୋଇନାହିଁ ଓ ଦୁର୍ଯୋଧନଙ୍କ ସ୍ୱୟଂମ୍ବର ସମୟ ପ୍ରକୃତରେ କପିଳ ନରସିଂହଙ୍କ ଅଭିଷେକର କାଳ ବୋଲି ଯାହା କୁହାଯାଉଛି ତାହାର କୌଣସି ସଙ୍ଗତ ଅର୍ଥନାହିଁ, ରହିନପାରେ ।

## କପିଳ ସିଂହ

ସାରଳାଦାସଙ୍କର ସମୟ ସମ୍ପର୍କରେ 'ଝଙ୍କାର' ସାହିତ୍ୟପତ୍ରରେ ୧୯୫୬ରେ ନୂତନ ମତ ଉପସ୍ଥାପନ କଲେ ଗୋପୀନାଥ ମହାନ୍ତି । ତାଙ୍କ ମତ ହେଲା ସାରଳାଦାସ ଚର୍ଯ୍ୟାଗୀତଗୁଡ଼ିକର ରଚନାର ଅଳ୍ପକାଳପରେ ଅର୍ଥାତ୍ ଖ୍ରୀ. ନବମରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଆବିର୍ଭୂତ ହୋଇଥିଲେ । ଏପରି ମତପୋଷଣର ସମର୍ଥନରେ ସେ ବାଢ଼ିଥିବା ଯୁକ୍ତିଗୁଡ଼ିକୁ ମୋଟାମୋଟି ତିନୋଟି ବର୍ଗରେ ବିଭକ୍ତ କରାଯାଇପାରେ । ସେ ଦର୍ଶାଇଲେ ଯେ ଓଡ଼ିଶାର ଗୌରବ ପ୍ରତିଷ୍ଠା ବିଷୟରେ ସଦାତତ୍ପର ସାରଳାଦାସଙ୍କ କୃତିରେ ଓଡ଼ିଶାର ପ୍ରମୁଖ ତୀର୍ଥକ୍ଷେତ୍ର ଓ ଦେବଦେବୀମାନଙ୍କର ମାହାତ୍ମ୍ୟର ବର୍ଣ୍ଣନାଥିଲେ ହେଁ ତତ୍ରତ୍ୟ ଅତୁଳନୀୟ ଭାସ୍କର୍ଯ୍ୟକଳାମଣ୍ଡିତ ଦେବାଳୟ କୀର୍ତ୍ତିଗୁଡ଼ିକର ବର୍ଣ୍ଣନା କୁତ୍ରାପି ନାହିଁ । ଶ୍ରୀ ମହାନ୍ତିଙ୍କ ମତରେ ଦେବାଳୟଗୁଡ଼ିକ ତୋଳାହେବାପୂର୍ବେ ସାରଳାଦାସ ଜନ୍ମଗ୍ରହଣ କରିଥିବାରୁ ହିଁ ଏହା ସମ୍ଭବ ହୋଇଛି । ଆଉ ମଧ୍ୟ, ସାରଳାଦାସଙ୍କ ଲେଖାରେ ଏକାଦଶ ଶତାବ୍ଦୀର ପରବର୍ତ୍ତୀ ଐତିହାସିକ ପୁରୁଷ(ଯଥା– ସାଧୁସନ୍ଥ, ରାଜା ଆଦି) ସ୍ଥାନ ପାଇନାହାନ୍ତି, ଯଦିଚ ତତ୍ପୂର୍ବ ଯୁଗର ଗୋରକ୍ଷନାଥ ଆଦି ବ୍ୟକ୍ତି ମର୍ଯ୍ୟାଦାପୂର୍ଣ୍ଣ ଉଲ୍ଲେଖ ପାଇଛନ୍ତି । ଦ୍ୱିତୀୟତଃ, ଶ୍ରୀ ମହାନ୍ତି ଆଦି ପର୍ବରେ ନାମିତ କପିଳେଶ୍ୱର ମହାରାଜା ପ୍ରସିଦ୍ଧ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ନହୋଇ ଅନ୍ୟ କୌଣସି କପିଳ ନାମଧେୟ ଅପ୍ରସିଦ୍ଧ ରାଜା ହୋଇପାରନ୍ତି ବୋଲି କହିଛନ୍ତି ଓ ମାଧବ ମାହାତ୍ମ୍ୟ ନାମକ ଏକ ଅପ୍ରକାଶିତ ସଂସ୍କୃତ ପୋଥିରେ ବର୍ଣ୍ଣିତ କପିଳସିଂହ ନାମଧେୟ ରାଜାଙ୍କୁ କବି ଲକ୍ଷ୍ୟ କରିଥାଇ ପାରନ୍ତି ବୋଲି ମତ ଦେଇଛନ୍ତି । ତୃତୀୟତଃ ଶ୍ରୀ ମହାନ୍ତିଙ୍କ ମତାନୁସାରେ ସାରଳାଦାସଙ୍କ ଭାଷା ସୁପ୍ରାଚୀନ ଓ ତାହା ଚର୍ଯ୍ୟାଗୀତିର ଭାଷାର ନିକଟତର ହୋଇଥିବାରୁ ତାଙ୍କୁ ପଞ୍ଚଦଶ ଶତାବ୍ଦୀର କବି ବୋଲି କହିବା ସମୀଚୀନ ନୁହେଁ ।

ଗୋପୀନାଥ ମହାନ୍ତିଙ୍କର ଏପ୍ରକାର ମତର ମୂଳୋତ୍ପାଟନ ଲକ୍ଷ୍ୟରେ ସାରଳାଦାସଙ୍କ ମହାଭାରତରେ ଖ୍ରୀ.୧୧ଶ ଶତାବ୍ଦୀର ପରବର୍ତ୍ତୀ ଘଟନା, ସ୍ଥାନ ଓ ବ୍ୟକ୍ତିଙ୍କ ସନ୍ଧାନ ନେବାପାଇଁ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମହୋଦ୍ୟମ କରିଥିଲେ । ଡଃ ପାଣିଗ୍ରାହୀଙ୍କ ସାରଳା-ମହାଭାରତର ଅଂଶ ବିଶେଷର ଅନ୍ୱେଷୀ ବ୍ୟାଖ୍ୟା ସହିତ ଶ୍ରୀ ମହାନ୍ତିଙ୍କ ମତର ପ୍ରତିବାଦଗର୍ଭକ ପ୍ରବନ୍ଧଗୁଡ଼ିକ ପରବର୍ତ୍ତୀ ସମୟରେ "ସାରଳା ସାହିତ୍ୟର ଐତିହାସିକ ଚିତ୍ର" (୧୯୭୬) ନାମକ ପୁସ୍ତକରେ ପ୍ରକାଶ ପାଇଛି । ଡଃ ପାଣିଗ୍ରାହୀଙ୍କ ଦ୍ୱାରା ଅନୁସୃତ ବ୍ୟାଖ୍ୟା ପଦ୍ଧତିର ନାନାବିଧ ଦୁର୍ବଳତା ରହିଛି । ପୁଣି, ସେ ଅନ୍ୱେଷଣା ପାଇଁ ଗ୍ରହଣ କରିଥିବା ଉପାଦାନ (ସାରଳା-ମହାଭାରତର ରାଧାରମଣ ପ୍ରେସ୍‌ଦ୍ୱାରା ମୁଦ୍ରିତ ପାଠ) ସାଧାରଣ ଭାବରେ ମୂଳାନୁସାରୀ ହୋଇନଥିବାରୁ ତାଙ୍କର ଗହନ ଗବେଷଣାର ଅନେକାଂଶ ପଣ୍ଡହୋଇଛି ଓ ଅବଶିଷ୍ଟର ନିର୍ଣ୍ଣୟ ସଂଦିଗ୍ଧସ୍ତରରେ ହିଁ ରହିଛି । ଏଠାରେ

ମୋର ଆଲୋଚ୍ୟ ସାରଳାଦାସଙ୍କ କାଳ ତେଣୁ ଡଃ ପାଣିଗ୍ରାହୀଙ୍କ ଅନୁସୃତ ପଦ୍ଧତିର ଦୋଷଦୁର୍ବଳତା ବର୍ତ୍ତମାନର ଗୌଣବିଷୟ ମାତ୍ର ।

କୌଣସି ରଚନାର ସ୍ପଷ୍ଟ ଅର୍ଥଟି ତାହାର ଅସଲ ଅର୍ଥ ନୁହେଁ, ଅସଲ ଅର୍ଥକୁ ରଚୟିତା ଶାବ୍ଦିକ କୌଶଳ ସହକାରେ ଲୁଚାଇ ରଖିଥାନ୍ତି ଯାହାକୁ ପାଣ୍ଡିତ୍ୟଦ୍ୱାରା ଖୋଳି କଢ଼ାଯାଇପାରେ, ଏପରି ଧାରଣା ଭାରତରେ ସଂସ୍କୃତସାହିତ୍ୟର ପରଂପରାକୁ ଧରି ଚିରପୋଷିତ । ଓଡ଼ିଆରେ ପ୍ରାଚୀନ 'କେଶବ କୋଇଲି ଅର୍ଥ' (ନାମାନ୍ତର ଅର୍ଥ କୋଇଲି), ବ୍ରହ୍ମାଣ୍ଡ ଭୂଗୋଳ ଆଦିରୁ ଆରମ୍ଭ କରି ଏ ଯୁଗର 'ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର'ରେ ଏପରି ଅର୍ଥାନୁସନ୍ଧାନ ରୀତି ଅନୁସୃତହୋଇଛି । ଆଧୁନିକ କବିତାର ଅବୋଧ୍ୟତାକୁ ଦୂରକରିବା ଲକ୍ଷ୍ୟରେ କେତେକ ଆଧୁନିକ ଆଲୋଚକ ଏହି ରୀତିକୁ ଅନୁସରଣ କରୁଛନ୍ତି । ଏହି ରୀତି ବାଟ ଦେଖାଯାଏ ଯେତିକି ବାଟବଣା କରାଏ ତତୋଽଧିକ । ଡଃ ପାଣିଗ୍ରାହୀଙ୍କ ଐତିହାସିକ ଚିତ୍ରର ଅନୁସନ୍ଧାନ ଏହି ସରଣିରେ ମାଡ଼ି ଚାଲିଛି । ସାରଳାଦାସଙ୍କ ଗୋଟିଏ ଉପାଖ୍ୟାନକୁ ସେ ବ୍ୟାଖ୍ୟା କରି ଐତିହାସିକ ଘଟନା ବିଶେଷ ସହିତ ତାହାର ସାମ୍ୟ ଦର୍ଶାଇଛନ୍ତି କିନ୍ତୁ ଅନୁରୂପ ପଦ୍ଧତିରେ ଅନ୍ୟ ଜଣେ ଲୋକ ତାହାକୁ ଭିନ୍ନ ପ୍ରକାରେ ମଧ୍ୟ ବୁଝାଇପାରେ । ଡଃ ପାଣିଗ୍ରାହୀ ତାଙ୍କ ପୁସ୍ତକରେ ପ୍ରଥମରୁ ଆଶା ପୋଷଣ କରିଥିଲେ ଯେ ''ଏ ସଂବନ୍ଧରେ ଅନ୍ତତଃ ତିରିଶଟି ପ୍ରବନ୍ଧ ଲେଖିଲେ ସାରଳା ସାହିତ୍ୟର ମହତ୍ତ୍ୱ କେତେକ ପରିମାଣରେ ପରିସ୍ଫୁଟ ହେବ'' (ପୃ.୫୭), କିନ୍ତୁ ମାତ୍ର ୧୨/୧୩ଟି ପ୍ରବନ୍ଧ ଲେଖିବାପରେ ସେ ତାଙ୍କ ଅନୁସନ୍ଧାନ ତ୍ୟାଗ କରିଥିଲେ । ସେ ପ୍ରଥମ ତିନୋଟି ପ୍ରବନ୍ଧ ପ୍ରକାଶ କରିବାପରେ ଗୋପୀନାଥ ମହାନ୍ତି ଡଃ ପାଣିଗ୍ରାହୀଙ୍କ ବିଚାରର କେତେକ ଭ୍ରାନ୍ତି ଦର୍ଶାଇ ତାଙ୍କ ସିଦ୍ଧାନ୍ତକୁ ଖଣ୍ଡନ କରିବାରୁ ସେ ତାଙ୍କ ପଞ୍ଚମ ପ୍ରବନ୍ଧରେ ସ୍ୱୀକାର କରିଥିଲେ— ''ଜ୍ଞାନର ସୀମାବଦ୍ଧତା ହେତୁରୁ ହେଉ ବା ଭ୍ରମ ହେତୁରୁ ହେଉ ପ୍ରଥମ ପ୍ରବନ୍ଧଗୁଡ଼ିକରେ ଯେଉଁ ତ୍ରୁଟିବିଚ୍ୟୁତି ରହିଛି, ତାହା ମୋ ଦ୍ୱାରା ହିଁ ଆପେ ଆପେ ସ୍ୱୀକୃତ ଓ ପରିବର୍ତ୍ତିତ ହୋଇଥାନ୍ତା'' (ପୃ.୫୭) । କୌଣସି ଅସମାପ୍ତ ଲେଖାକୁ ସାମଗ୍ରିକ ଭାବରେ ଶେଷ ନିଷ୍ପତ୍ତିରେ ଉପନୀତ ହେବା ପୂର୍ବରୁ ମାସିକ ସାହିତ୍ୟ ପତ୍ରରେ ଖଣ୍ଡେ ଖଣ୍ଡେ ପ୍ରକାଶିତ କରାଇ ତାହାକୁ ଭବିଷ୍ୟତରେ ନିଜେ ହିଁ ପରିବର୍ତ୍ତନ କରିବେ ବୋଲି ଘୋଷଣା କରିବା ଦ୍ୱାରା ସେ ତାଙ୍କ ଜୀବଦ୍ଦଶାରେ ତାଙ୍କ ମତର ଚର୍ଚ୍ଚାକୁ ସୁଯୋଗ ଦେବାକୁ ଅନିଚ୍ଛୁକ ଥିବା କଥା ପ୍ରକାଶ ପାଉଛି । ଏ ପ୍ରକାର ମନୋବୃତ୍ତି ପାଠକର ଅବବୋଧ ପ୍ରତି ଘୋର ଅବଜ୍ଞାସୂଚକ । ଦେଖାଯାଉଛି, ପ୍ରବନ୍ଧଗୁଡ଼ିକୁ ସେ ଯେତେବେଳେ ପୁସ୍ତକ ଆକାରରେ ପ୍ରକାଶ କରାଇଲେ ସେତେବେଳେ ମଧ୍ୟ ''ପ୍ରଥମ ପ୍ରବନ୍ଧଗୁଡ଼ିକରେ ଯେଉଁ ତ୍ରୁଟିବିଚ୍ୟୁତି ରହିଛି'' ତାହା ତାଙ୍କଦ୍ୱାରା ହିଁ ''ଆପେ ଆପେ ସ୍ୱୀକୃତ ଓ ପରିବର୍ତ୍ତିତ''

ହୋଇପାରିଲାନାହିଁ । ସେ ପାଠକଙ୍କୁ ଭୁଆଁ ବୁଲାଇଛନ୍ତି ମାତ୍ର । ଶ୍ରୀ ମହାନ୍ତି ଚେତାଇ ଦେବାପରେ ମଧ୍ୟ ସେ ଚେତି ନାହାନ୍ତି ।

ଡଃ ପାଣିଗ୍ରାହୀଙ୍କ ଅନ୍ୱେଷଣର ଅନ୍ୟଏକ ଦୁର୍ବଳତା ସେ ଗ୍ରହଣ କରିଥିବା ଉପାଦାନ । ସେ ରାଧାରମଣ ପ୍ରେସ୍ ଦ୍ୱାରା ଖ୍ରୀ:୧୯୬୨ରେ ମୁଦ୍ରିତ ଚଉଦ ଅକ୍ଷରୀ ସାରଳା-ମହାଭାରତ ଉପରେ ପୂର୍ଣ୍ଣମାତ୍ରାରେ ନିର୍ଭରଶୀଳ ହୋଇଛନ୍ତି, ଯଦିବା ସେ ନିଜେ ଜାଣୁଛନ୍ତି ଯେ ‘‘ତାହା କେତେକାଂଶରେ ବିକୃତ ଉପାଦାନ’’ (ପୃ.୫୮) ଓ ‘‘ପ୍ରକାଶକ ଏଠାରେ ଦାଣ୍ଡିବୃତ୍ତକୁ ଚଉଦ ଅକ୍ଷରୀ ବୃତ୍ତରେ ପରିଣତ କରିବାକୁଯାଇ ‘ସଂଶୋଧନ’ ଅସ୍ତ୍ରରେ ଅର୍ଥର ବେକକୁ କାଟି ପକାଇଛନ୍ତି’’ (ପୃ.୪) । ସେ ପୁଣି ମାନିଛନ୍ତି– ‘‘ସାରଳା ମହାଭାରତ ଛାପା ବହିରେ ଯେ ବହୁଭାବରେ ଖଣ୍ଡିତ ଓ ବିକୃତ ହୋଇଛି, ଏ କଥା ମୁଁ’’ ନିଜେ ପ୍ରଥମ ପ୍ରବନ୍ଧରେ ଆଲୋଚନା କରିଛି’’ (ପୃ.୫୭) । ଅଥଚ, ସାରଳାଦାସ ଯେଉଁ ନାମଗୁଡ଼ିକ ଲେଖିଛନ୍ତି ତାହାକୁ ପରିବର୍ତ୍ତିତ କଲେ ହିଁ ଐତିହାସିକ ଘଟନା ବା ସ୍ଥାନ ଅର୍ଥ ବାହାରୁଥିବା କଥା ଦେଖାଇ ଡଃ ପାଣିଗ୍ରାହୀ ବୁଝାଇଛନ୍ତି– ‘‘ଛନ୍ଦ ରକ୍ଷାକରିବାପାଇଁ ତାଙ୍କୁ (ଅର୍ଥାତ୍ ସାରଳାଦାସଙ୍କୁ) କେତେକ ନାମକୁ ସଂକ୍ଷିପ୍ତ ବା ବର୍ଦ୍ଧିତ କରିବାକୁ ପଡ଼ିଛି’’ (ପୃ.୧୧୯), କବି ଦାଣ୍ଡିଶୈଳୀରେ ମହାଭାରତ ଲେଖିଥିବା କଥା ଡଃ ପାଣିଗ୍ରାହୀ ଜାଣିଥିବା ସତ୍ତ୍ୱେ, ନିଜେ ନାମଗୁଡ଼ିକୁ ମୋଡ଼ାମୋଡ଼ି ବିକୃତ କରୁଥିବା କାର୍ଯ୍ୟର ଦୋଷ କଟାଇବାପାଇଁ ‘ଛନ୍ଦ’ କଥା ଉଠାଉଥିବାରୁ ସନ୍ଦେହ କରିବାକୁ ହେଉଛି ଯେ ସେ ଚଉଦଅକ୍ଷରୀ ପାଠକୁ ମୌଳିକ ପାଠ ବୋଲି ବେଳବେଳେ ଧରିନେଉଛନ୍ତି । ଏ ପ୍ରସଙ୍ଗରେ ଅଧିକ ଆଲୋଚନା ଆବଶ୍ୟକ ବୋଲି ମନେକରୁନାହିଁ, କାରଣ ତଦ୍ୱାରା ଏ ପୁସ୍ତକର ଆଲୋଚ୍ୟ ବିଷୟ ସାରଳାଦାସ ନହୋଇ ଡଃ ପାଣିଗ୍ରାହୀ ହୋଇପଡ଼ିବେ ।

ସାରଳାଦାସଙ୍କ ଲେଖାରେ ଓଡ଼ିଶାର ଦେବାଳୟଗୁଡ଼ିକର ବର୍ଣ୍ଣନାର ଅଭାବର ହେତୁ ଡଃ ପାଣିଗ୍ରାହୀ ଦର୍ଶାଇଛନ୍ତି– ‘‘ଆଧୁନିକ ଓ ପ୍ରାଚୀନ ଦୃଷ୍ଟିଭଙ୍ଗୀ ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ଆଜିକାଲି ଶିକ୍ଷିତମାନେ କୌଣସି ଦେବାଳୟକୁ ଗଲେ ମନ୍ଦିରକୁ ହିଁ ପ୍ରାଧାନ୍ୟ ଦିଅନ୍ତି ଓ ମନ୍ଦିରରେ କାରୁକଳା ଇତ୍ୟାଦି ବିଷୟରେ ପ୍ରବନ୍ଧ ଲେଖନ୍ତି; କିନ୍ତୁ ପ୍ରାଚୀନକାଳର ମନୀଷୀମାନେ ଦେବତାଙ୍କୁ ହିଁ ପ୍ରାଧାନ୍ୟ ଦେଉଥିଲେ ଓ ତାଙ୍କରି ମାହାତ୍ମ୍ୟ ପ୍ରକାଶପାଇଁ କବିତା ଇତ୍ୟାଦି ଲେଖୁଥିଲେ । ବର୍ଣ୍ଣନାଚତୁର ସାରଳାଦାସ ଉତ୍କଳର ପ୍ରଧାନ ପ୍ରଧାନ ଦେବଦେବୀଙ୍କ ମାହାତ୍ମ୍ୟ ବର୍ଣ୍ଣନାକରିବାକୁ ଆଦୌ ଭୁଲିନାହାନ୍ତି, ମାତ୍ର କୌଣସି ଦେଉଳ ସମ୍ବନ୍ଧରେ ପଦେ ସୁଦ୍ଧା କହିନାହାନ୍ତି । ଏଥିରୁ ପ୍ରମାଣିତ ହେଉନାହିଁ ଯେ ତାଙ୍କ ସମୟର ଓଡ଼ିଶାରେ ଗୋଟିଏ ସୁଦ୍ଧା ମନ୍ଦିର ନଥିଲା’’ (ପୃ.୨), ଏହା ଯଥାର୍ଥ । ‘ପ୍ରାଚୀନକାଳର ମନୀଷୀମାନେ’ ମନ୍ଦିର ଓ ଭାସ୍କର୍ଯ୍ୟ ବିଷୟରେ ଉଦାସୀନ ରହିବା ଅବଶ୍ୟ ଜାତୀୟ ଗୌରବ ପ୍ରତି ଗୁଣରାଗ ନୁହେଁ । ସାରଳାଦାସ ସମୟ ଓଡ଼ିଶାରେ କଳା ଓ ଭାସ୍କର୍ଯ୍ୟର

ଅବକ୍ଷୟରେ ଯୁଗ । କଳା ଓ ଭାସ୍କର୍ଯ୍ୟ ପ୍ରତି, କୋଣାର୍କ ମନ୍ଦିର ନିର୍ମାଣଠାରୁ ରାଜକୀୟ ପୃଷ୍ଠପୋଷକତା ନରହିବା, କାରିଗରି ଉତ୍କର୍ଷ ହରାଇବା ଓ ସାଧାରଣ ଜନତା ସେଥିପ୍ରତି ବିମୁଖ ହେବା—ଏ ସବୁ କଥା ହାତ ଧରାଧରି ହୋଇ ଗତି କରନ୍ତି । କବି ସେହି ପରିବେଶର ଗୋଟିଏ ଅଂଶ ମାତ୍ର । ଏ କଥା ଡଃ ପାଣିଗ୍ରାହୀ ବିଚାରକୁ ନେଇନାହାନ୍ତି । ସେ କିନ୍ତୁ ଦର୍ଶାଇଛନ୍ତି ଯେ ପ୍ରାଚୀନ ବିବରଣରେ ଯାହା ଲେଖାଅଛି ତାହା ପ୍ରମାଣ, ମାତ୍ର ଯାହା ଲେଖାନାହିଁ ତାହା ନଥିଲା ବୋଲି କହିଦେବନାହିଁ । ଯୁକ୍ତିଶାସ୍ତ୍ରର ଏହା ସର୍ବମାନ୍ୟ ନୀତି । ଉଲ୍ଲେଖ ବିଦ୍ୟମାନତାର ପ୍ରମାଣ କିନ୍ତୁ ଅନୁଲ୍ଲେଖ ଅବିଦ୍ୟମାନତାକୁ ସିଦ୍ଧ କରେନାହିଁ । ଦେବାଳୟମାନଙ୍କର ବର୍ଣ୍ଣନା ଯେ ଏକା ସାରଳାଦାସ କରିନାହାନ୍ତି ତାହା ନୁହେଁ; ବଳରାମ ଦାସ, ଜଗନ୍ନାଥ ଦାସ ଆଦି ମଧ୍ୟ ତାହା କରିନାହାନ୍ତି । ସେହି କାରଣରୁ ବଳରାମ ଦାସ ଆଦିଙ୍କୁ ଖ୍ରୀ ଦଶମ ଶତାବ୍ଦୀର କବି ବୋଲି ତ କୁହାଯାଇପାରିବନାହିଁ ।

ଗଙ୍ଗବଂଶୀୟ ରାଜା ତୃତୀୟ ଅନଙ୍ଗଭୀମ ଦେବ (୧୨୧୧-୧୨୩୮ ଖ୍ରୀ) ଓଡ଼ିଶା ରାଜ୍ୟକୁ ଜଗନ୍ନାଥଙ୍କୁ ଉତ୍ସର୍ଗ କରି ନିଜକୁ ଜଗନ୍ନାଥଙ୍କ ଆଦ୍ୟ ସେବକ କରାଇବା ଘଟନା ଇତିହାସ-ପ୍ରସିଦ୍ଧ । ସାରଳାଦାସ ମହାଭାରତର ଆରମ୍ଭରେ କପିଳେଶ୍ୱର ଦେବ ଜଗନ୍ନାଥଙ୍କ ଖଟଣିରେ ଥିବା ଜଣାଇଥିବାରୁ ସେ ତୃତୀୟ ଅନଙ୍ଗଭୀମଙ୍କ ପରବର୍ତ୍ତୀ ଓଡ଼ିଶାର ରାଜା ବୋଲି ମାନିବାକୁ ହେଉଛି । ତେଣୁ ସେ ନିଶ୍ଚୟ ବିଖ୍ୟାତ କପିଳେଶ୍ୱର/ କପିଳେନ୍ଦ୍ର ଦେବ ଯେ ଖ୍ରୀ. ୧୪୩୫ରୁ ପ୍ରାୟ ୧୪୬୭ ଯାଏଁ ରାଜତ୍ୱ କରୁଥିଲେ । କୌଣସି ଅଖ୍ୟାତ ଓ ଇତିହାସରେ ଅଜ୍ଞାତ କପିଳେଶ୍ୱର କି କପିଳ ସିଂହ ଜଗନ୍ନାଥଙ୍କ ସେବାରେ ଥିବା ସମ୍ଭାବନା ଜମାରୁ ନାହିଁ ।

ଗୋପୀନାଥ ମହାନ୍ତିଙ୍କର ତୃତୀୟ ଯୁକ୍ତି— ସାରଳାଦାସଙ୍କ ଭାଷାର ରୂପ ଚର୍ଯ୍ୟାଗୀତର ଭାଷାଠାରୁ ବିଶେଷ ଭିନ୍ନ ନହେବା କାରଣରୁ ତାଙ୍କୁ ଚର୍ଯ୍ୟାଗୀତ-ରଚୟିତାମାନଙ୍କର ବିଶେଷ ପରବର୍ତ୍ତୀ ବୋଲି ନିର୍ଦ୍ଧାରଣ କରିବା ସମୀଚୀନ ହେବନାହିଁ । ଚର୍ଯ୍ୟାଗୀତର ଭାଷା ଯେ ଗୋଟିଏ କୃତ୍ରିମ ଭାଷା, ଲୌକିକ ନୁହେଁ, ତାହା ଯଥାସ୍ଥାନରେ ଆଲୋଚନା କରିବି । ସାରଳାଦାସଙ୍କ ଭାଷା ଚର୍ଯ୍ୟାଗୀତର କିପରି ଅନୁରୂପ ତାହା ଭାଷାର ବ୍ୟାକରଣ, କ୍ରିୟାରୂପ, ବିଭକ୍ତିପ୍ରତ୍ୟୟକୁ ତୁଳନାକରି କହିଲେ ସିଦ୍ଧାନ୍ତର କିଛି ମୂଲ୍ୟ ଥାଆନ୍ତା । କେବଳ ବାଛି ବାଛି କେତୋଟି ଶବ୍ଦକୁ ଧରି ଭାଷାର ସମାନତା ସିଦ୍ଧାନ୍ତ ଠିକ୍ ନୁହେଁ । ଓଡ଼ିଶା ସାହିତ୍ୟର ଆଦିପର୍ବରେ ସୁରେନ୍ଦ୍ର ମହାନ୍ତି ସାରଳାଦାସ ଖ୍ରୀ. ପଞ୍ଚଦଶ ଶତାବ୍ଦୀର କବି ବୋଲି ସ୍ୱୀକାର କରିଥିବା ସତ୍ତ୍ୱେ ସାରଳାଦାସଙ୍କର ଲେଖାରେ ବହୁ ପ୍ରାଚୀନ ଶବ୍ଦ ଥିବା ଦର୍ଶାଇଛନ୍ତି । ସୁରେନ୍ଦ୍ରବାବୁ (ସ୍ୱୀକୃତି ନଜଣାଇ ପ୍ରାୟଶଃ ଶ୍ରୀ ଭାରତଦର୍ପଣରେ ଗୋପୀନାଥ ନନ୍ଦ ଦେଇଥିବା ତାଲିକାକୁ ଉତାରି) ପ୍ରାଚୀନ ଶବ୍ଦର ଏକ୍ ତାଲିକା ଦେଇ ଯେଉଁ ୫୯ଟି ଶବ୍ଦ ଲେଖିଛନ୍ତି ତହିଁର ତିନୋଟି

ଶବ୍ଦର ପାଠୋଦ୍ଧାର ବୋଧହୁଏ ଭୁଲ୍ (ଯଥା– କାକୁଆଳୀ, ବାରାସ, କଲତି), ଅବଶିଷ୍ଟ ଶବ୍ଦଗୁଡ଼ିକ ସାରଳାଦାସଙ୍କ ପରବର୍ତ୍ତୀ ସମୟର ଓଡ଼ିଆ ସାହିତ୍ୟରେ ନିତାନ୍ତ ବିରଳ ନୁହେଁ । ଏପରିକି ତାଲିକାଭୁକ୍ତ ଉଦଣ୍ଡ, ବିଖଣ୍ଡ, ନିରାଧାର, ନିକ, ତିଆରିବା, କଟାଳ, ଗୁଳଘୁଆ, ଉପରୋଧ, ନିର୍ଜିତ, ବାଗେ ଆଦିର ବ୍ୟବହାର ଆଧୁନିକ ଯୁଗରେ ମଧ୍ୟ ଅଛି । ସୁରେନ୍ଦ୍ରବାବୁ ସାରଳାଦାସଙ୍କ ଭାଷାରେ ଥିବା କେରୁଆଳ ଶବ୍ଦ ବିଷୟରେ ଯେଉଁ ଆଲୋଚନା କରିଛନ୍ତି ତାହାକୁ ଦୃଷ୍ଟାନ୍ତ ରୂପେ ଉପସ୍ଥାପନ କରାଯାଇପାରେ । ସେ ଲେଖିଛନ୍ତି– "କେରୁଆଳ ଶବ୍ଦଟି ଅଧୁନା ଓଡ଼ିଆ ଭାଷା ଓ ସାହିତ୍ୟରୁ ପ୍ରାୟ ବିଲୁପ୍ତ ହୋଇଅଛି । ଏହାର ଅର୍ଥ ଆଉଳା । ବଙ୍ଗଳା, ଅସମିୟା ବା ହିନ୍ଦୀ ଭାଷା ଓ ସାହିତ୍ୟରେ ଏହି ଶବ୍ଦ ପରିଲକ୍ଷିତ ହୁଏନାହିଁ । ମାତ୍ର ଚର୍ଯ୍ୟାପଦାବଳୀରେ ଏହି ଶବ୍ଦଟିର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ" (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ.୨୭୯) ।

ଶବ୍ଦଟି ଦେଶଜ, ଚର୍ଯ୍ୟାଗୀତର କୃତ୍ରିମ ଭାଷାରେ ଅଛି, ସାରଳାଦାସଙ୍କ ଲେଖାରେ ଅଛି ଓ ପରବର୍ତ୍ତୀ ସମୟର ଲେଖାରେ ମଧ୍ୟ ଅଛି । 'ପ୍ରାୟ ବିଲୁପ୍ତ' ହୋଇନାହିଁ । ସୁରେନ୍ଦ୍ର ବାବୁ ସାମାନ୍ୟ ଶ୍ରମ ସ୍ୱୀକାର କରିଥିଲେ ଜାଣିଥାନ୍ତେ ଯେ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ଏହି ଶବ୍ଦଟିର ପ୍ରୟୋଗର ଉଦ୍ଧୃତି ଗୋପୀନାଥ ନନ୍ଦେ ଦେଇଛନ୍ତି କୃଷ୍ଣଦାସଙ୍କ ନାମରତ୍ନଗୀତାରୁ । ଏହାର ଅର୍ଥ ନାବର ମଙ୍ଗାଧରା କାଠ; ଆଉଳା ନୁହେଁ । ଏପରି ପ୍ରାକୃତ କି ଦେଶଜ ବିଶେଷ୍ୟ/ବିଶେଷଣ ଶବ୍ଦକୁ ଧରି ଭାଷାର ପ୍ରାଚୀନତା ନିରୂପଣ କରାଯାଇପାରିବନାହିଁ । ସୁରେନ୍ଦ୍ର ମହାନ୍ତି ଓ ଗୋପୀନାଥ ମହାନ୍ତି ତାହା କରିଛନ୍ତି ।

ଗୋପୀନାଥ ମହାନ୍ତି ପ୍ରାକୃତ 'ଣିଅ' (ସଂସ୍କୃତ ନିଜ) ଶବ୍ଦ ସାରଳାଦାସ ବ୍ୟବହାର କରିଥିବା କଥା କହି ତାଙ୍କ ପାଖରେ ଥିବା ତାଳପତ୍ର ପୋଥି ମହାଭାରତରୁ ଉଦ୍ଧୃତି ଦେଇଥିଲେ । ମୁଁ ଅନେକ ତାଳପତ୍ର ପୋଥିର ମହାଭାରତ ପଢ଼ିଥିଲି । କୌଣସି ପୋଥିରେ 'ଣିଅ'କୁ ଭେଟି ନଥିବାରୁ, ଏପରିକି ପ୍ରାକୃତ ରୀତିର ଣକାରାଦ୍ୟ ଗୋଟିଏ ବି ଶବ୍ଦ ସେଥିରେ ଦେଖିନଥିବାରୁ ସନ୍ଦେହ ଜନ୍ମିଲା । ମୁଁ ଶ୍ରୀ ମହାନ୍ତିଙ୍କ ଘରକୁଯାଇ ପୋଥିର ଉଦ୍ଧୃତ ଅଂଶଟିକୁ ଦେଖିବାକୁ ଚାହିଲି । ଦେଖିଲି, ପାଠୋଦ୍ଧାର ଭୁଲ୍ ହୋଇଛି । ପୋଥିରେ 'ଣି' ପରେ ଅନୁସ୍ୱାର ଚିହ୍ନ ରହିଛି । ଗାଇବାବେଳେ ଅନୁନାସିକ ନାଦ ଶ୍ରୁତିରୋଚକ ହେବ ବୋଲି ଅନେକ ଶବ୍ଦର ପ୍ରାନ୍ତ ବର୍ଣ୍ଣରେ, ବିଶେଷତଃ ଅନୁନାସିକ ବର୍ଣ୍ଣରେ, ଅନାବଶ୍ୟକ ଅନୁସ୍ୱାରର ଯୋଗ ତାଳପତ୍ର ପୋଥିରେ ବହୁଳ ଭାବରେ ଥାଏ । ଶ୍ରୀ ମହାନ୍ତିଙ୍କ ପୋଥିରେ ଣି ପରବର୍ତ୍ତୀ ଅନୁସ୍ୱାର ପରେ ଦୁଇଟି ଛେଦଗାର (ପଦାନ୍ତ ସୂଚକ) ପଡ଼ିଛି । ଅନୁସ୍ୱାର ଛେଦ ଦୁଇଟିକୁ 'ଅ' ବୋଲି ପଢ଼ିବାରୁ 'ଣିଅ' ପାଠ ଆସିଛି । ପ୍ରକୃତରେ 'ଣିଅ' ଶବ୍ଦ ପୋଥିରେ ନାହିଁ । ଏହା ସେତେବେଳେ ମୁଁ ଶ୍ରୀ ମହାନ୍ତିଙ୍କୁ ଦେଖାଇଥିଲି ମଧ୍ୟ ।

ଯେକୌଣସି ଭାଷାର ସ୍ୱକୀୟତା ତାହାର କ୍ରିୟାରୂପରେ, ବିଭକ୍ତି-ପ୍ରତ୍ୟୟରେ, ସର୍ବନାମରେ ଓ ବାକ୍ୟବିନ୍ୟାସରେ ମୃଗ୍ୟ । ବିଶେଷ୍ୟ କି ବିଶେଷଣ ଶବ୍ଦ ଯଦି ବୈଦେଶିକ ହୋଇଥାଏ ତେବେ ତାହାର ଭାଷା ମଧ୍ୟକୁ ଅନୁପ୍ରବେଶର ସମୟ ଅନୁମାନ କରାଯାଇପାରେ । କିନ୍ତୁ, ପ୍ରାକୃତ ଶବ୍ଦ କ୍ଷେତ୍ରରେ ସେପରି ଅନୁମାନ ଅକାରଣ । ଶ୍ରୀ ମହାନ୍ତି ଚର୍ଯ୍ୟାଗୀତର କ୍ରିୟାରୂପ, ବିଭକ୍ତି-ପ୍ରତ୍ୟୟ ଆଦିକୁ ବିଚାରକରି ତାହାର ଭାଷାର ରୂପ ସହିତ ସାରଳାଦାସଙ୍କ ଭାଷାର ରୂପକୁ ତୁଳନା କରିଥିଲେ ପାର୍ଥକ୍ୟ ଧରାପଡ଼ିଥାନ୍ତା, ଏହି ବିଷୟରେ ଗୋପୀନାଥ ନନ୍ଦଙ୍କ ମତ ସୁବିଚାରିତ– "ସେହି ସମୟରେ ଓଡ଼ିଆ ଭାଷାରେ ପ୍ରାକୃତ ସତ୍ତା ସମଧିକଥିବାରୁ ଏହାର ଆଦିମ ଗ୍ରନ୍ଥ ଏହି ମହାଭାରତରେ ବହୁ ସ୍ଥଳରେ ସଂସ୍କୃତ ଭାଷା ଅପେକ୍ଷା ପ୍ରାକୃତର ରୀତିମତେ ଶାବ୍ଦବିଭକ୍ତି, କ୍ରିୟା ପ୍ରଭୃତିର ପ୍ରୟୋଗମାନ ନିହିତ କରାଯାଇଅଛି । ××× ଏହି ମହାଭାରତରେ ଯେଉଁ ଯେଉଁ ବିଭକ୍ତି ପ୍ରତ୍ୟୟାଦିର ପ୍ରୟୋଗ ନିହିତ କରାଯାଇଅଛି, ଅଥଚ ସେଥିମଧ୍ୟରୁ ଆଧୁନିକ ଭାଷା ବା ସାହିତ୍ୟରେ ଯାହା ଯାହା ପ୍ରଚଳିତ ନୁହେଁ, ସେସବୁ ତତ୍‌ପରବର୍ତ୍ତୀ ଶ୍ରୀ ବଳରାମ ଦାସ ପ୍ରଭୃତି କବିମାନେ ମଧ୍ୟ ପୂର୍ବ ପ୍ରଦର୍ଶିତ ପନ୍ଥାନୁକରଣରେ ବ୍ୟବହାର କରିଅଛନ୍ତି । ଶ୍ରୀମାନ୍ ସାରଳାଦାସଙ୍କ ପ୍ରଚାରିତ ଓଡ଼ିଆ ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଶ୍ରୀମଦ୍ ଭାଗବତ ରଚୟିତା ଶ୍ରୀ ଜଗନ୍ନାଥ ଦାସଙ୍କ ସମୟ ପର୍ଯ୍ୟନ୍ତ ପ୍ରାୟଶଃ ଅକ୍ଷୁଣ୍ଣ ଥିଲା ।" (ଶ୍ରୀ ଭାରତ ଦର୍ପଣ, ପୃ.୨.୨୩)

ସାରଳାଦାସଙ୍କ ଲେଖାରେ ବୈଦେଶିକ ଶବ୍ଦ ବିରଳ । ତେବେ, କୌଣସି କୌଣସି ପୋଥିରେ କ୍ୱଚିତ୍ ବୈଦେଶିକ ଶବ୍ଦ ମିଳୁଛି । କିନ୍ତୁ ସେହି ପଦଟି ଅନ୍ୟ ପୋଥିରେ ଦେଖାଯାଉନାହିଁ । ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ପାଠରେ ଠାଏଁ ଯାବନିକ ବଜାର ଶବ୍ଦ ଅଛି–

"ବଜାରୁ କେଉଟୁଣୀ ତା ଶବରପଲ୍ଲୀକି ନିଅଇ" (ଆଶ୍ରମିକ ୧୦) ମୁଁ ପଢ଼ିଥିବା ତାଳପତ୍ର ପୋଥିରେ ବଜାର ଶବ୍ଦ ନାହିଁ । ସେଠାରେ ରାଜାଜ୍ଞା ଅର୍ଥରେ 'ଫରମାଣ' ଶବ୍ଦ ରହିଛି, ଯାହା ଶ୍ରୀ ମହାନ୍ତିଙ୍କ ଦ୍ୱାରା ସଂପାଦିତ ପାଠରେ ନାହିଁ । ତେଣୁ ଅନୁମତି ହେଉଛି ସାରଳାଦାସଙ୍କ ମୂଳଲେଖାରେ ବୈଦେଶିକ ଶବ୍ଦ ନଥିଲା । ପାଠନଷ୍ଟ ହେବା ପୋଥିରୁ ଲେଖନକାର ଉତାରିବାବେଳେ ପୂର୍ବାପର ପ୍ରସଙ୍ଗ ଦେଖି ପାଠୋଦ୍ଧାର କରିବାବେଳେ ନୂଆ ଶବ୍ଦଟିଏ ଯୋଖିଦେଇଥିବା ଅନୁମାନ କରାଯାଇପାରେ । କିନ୍ତୁ, ସାରଳାଦାସ ଶାସକ ଅର୍ଥରେ ଶାହି ଶବ୍ଦ ଠାଏଁ ଠାଏଁ ବ୍ୟବହାର କରିଛନ୍ତି–

ଛାୟାର ବଲ୍ଲଭ ନାଥ ସପତଅଶ୍ୱ ଶାହି (ସଭା, ୨୫୨)
ବିଜେ କଲେ ନୃପତି ବଇଲୋଚନ ଶାହି (ସଭା, ୩୬୮)

ଶବ୍ଦଟି ଫାର୍ଶି ଶାହ୍ ଶବ୍ଦଜ କିନ୍ତୁ ତାହା ମୂଳତଃ ବୈଦିକ/ସଂସ୍କୃତ ଶାସ୍ ଧାତୁରୁ ଜନ୍ମି ଥାଇପାରେ (ସକାରର ହକାରରେ ପରିଣତି ସାହଜିକ) । ଶବ୍ଦର ମୂଳ ଉତ୍ସ ଯାହା ବା

ହେଉ ତାହା ଫାର୍ଶି ବାଟଦେଇ ଓଡ଼ିଆକୁ ଆସିଥିବା ନିଃସନ୍ଦେହ । ଭାରତରେ ମୁସଲମାନ ଶାସନ ଚଳିବାପରେ ଗୋଟେ ଅଧେ ବୈଦେଶିକ ଶବ୍ଦ ଓଡ଼ିଆ ବାଙ୍ମୟ ମଧ୍ୟକୁ ଆସିଥିବା ଅସମ୍ଭବ ନୁହେଁ, ଯଥା– କାକତ (କାଗଜ) ।

ସାରଳାଦାସ ସଭାପର୍ବରେ ନକୁଳ ଦକ୍ଷିଣର ରାଜାମାନଙ୍କୁ ଯଜ୍ଞକୁ ନିମନ୍ତ୍ରଣ କରିବାକୁ ଯିବାର ବର୍ଣ୍ଣନା ଦେଇଛନ୍ତି । ସେଠାରେ କୃଷ୍ଣାବେଣୀ (କୃଷ୍ଣା) ନଦୀ ଓ ଶ୍ରୀଗିରି (ଶ୍ରୀଶୈଳମ୍) ନିକଟରେ ବିଜୟନଗ୍ର ରାଜ୍ୟ ଥିବା କଥା ସାରଳାଦାସ ଜଣାଇଛନ୍ତି । ବିଜୟନଗର ରାଜ୍ୟର ଅସ୍ତିତ୍ୱ ଯେ ଖ୍ରୀ. ୧୩୩୬ ପୂର୍ବରୁ ନଥିଲା ଏ ବିଷୟରେ ସନ୍ଦେହ ନାହିଁ । ସାରଳାଦାସ ତାଙ୍କ ସମୟରେ ଥିବା ବିଜୟନଗର ରାଜ୍ୟକୁ ଏକ ସୁପ୍ରାଚୀନ ରାଜ୍ୟ (ତେଣୁ ମହାଭାରତ କଥାବସ୍ତୁ ସହିତ ସଂପୃକ୍ତ) ବୋଲି କହୁଥିବାରୁ ବିଜୟନଗରର ରାଜ୍ୟର ପ୍ରତିଷ୍ଠାର ଦୀର୍ଘ କାଳପରେ ସେ ମହାଭାରତ ଲେଖୁଥିବା ଜଣାପଡୁଛି । ଅତଏବ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ସାରଳାଦାସ ଥିବା ସମ୍ଭାବନା ନାହିଁ ।

**ପ୍ରାଚୀନତର ଭାଷାର ନମୁନା**

ସାରଳାଦାସଙ୍କ ପୂର୍ବରୁ କେତୋଟି ଲେଖା ସହିତ ସାରଳାଦାସଙ୍କ ଲେଖାକୁ ତୁଳନାକରି ଦେଖିଲେ ତାଙ୍କର ମୋଟାମୋଟି ସମୟ ଅନୁମାନ କରିହେବ । ପ୍ରଥମେ ଗୋଟିଏ ଚର୍ଯ୍ୟାଗୀତକୁ ଓ ପରେ କେତୋଟି ଅଭିଲେଖକୁ ଦିଆଯାଉଛି । ଏହି ପୁସ୍ତକରେ ନାନା ସ୍ଥାନରେ ସାରଳାଦାସଙ୍କ ଲେଖାର ଉଦ୍ଧୃତି ରହିଥିବାରୁ ତାହା ଏଠାରେ ତୁଳନା ପାଇଁ ଦେବା ଅନାବଶ୍ୟକ ।

## ୧. ଚର୍ଯ୍ୟାଗୀତ

ଏଠାରେ ଚର୍ଯ୍ୟାଚୟର ପ୍ରଥମ ଗୀତଟିକୁ ଦିଆଯାଉଛି । ଏହାର ରଚୟିତା ଲୁଇପା ବିକ୍ରମଶୀଳା ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ପଣ୍ଡିତ ଦୀପଙ୍କର ଶ୍ରୀଜ୍ଞାନଙ୍କ ସହିତ ମିଶି 'ଅଭିସମୟ ବିଭଙ୍ଗ' ଗ୍ରନ୍ଥ ଲେଖିଥିବା କୁହାଯାଏ । ଦୀପଙ୍କରଙ୍କର ଜନ୍ମ ଖ୍ରୀ. ୯୮୨ ଓ ମୃତ୍ୟୁ ଓ ୧୦୫୪ ବୋଲି ପ୍ରମାଣିତ ହୋଇଥିବାରୁ ଲୁଇପାଙ୍କର ସମୟ ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି ନିରୂପଣ କରାଯାଇପାରେ । ଲୁଇପା ଓଡ଼ିଶାର ଜଣେ ସାମନ୍ତରାଜାଙ୍କର ଲିପିକାର ଥିବା ବିଷୟ ଲାମା ତାରାନାଥଙ୍କର ବିବରଣରୁ ମିଳେ । ତାଙ୍କର ଗୀତଟି ହେଲା–

କାଆ ତରୁବର ପଞ୍ଚ ବି ଡାଳ ।
ଚଞ୍ଚଳ ଚିଏ ପଇଠା କାଳ ।।
ଦିଢ଼ କରିଅ ମହାସୁହ ପରିମାଣ ।
ଲୁଇ ଭଣଇ ଗୁରୁ ପୁଛିଅ ଜାଣ ।।

ସଅଳ ସମାହିଅ କାହି କରିଅଇ ।
ସୁଖ ଦୁଖେତେଁ ନିଚିତ ମରିଅଇ ।।
ଏଡ଼ି ଏଉ ଛାନ୍ଦକ ବାନ୍ଧି କରଣକ ପାଟେର ଆସ ।
ସୁନ ପାଖ ଭିତି ଲେହୁରେ ପାଶ ।
ଭଣଇ ଲୁଇ ଆମ୍‌ହେ ଝାଣେ ଦିଠାଁ ।
ଧମଣ ଚମଣ ବେଣି ପିଣ୍ଡି ବଇଠା ।

ଏଥିରେ ଥିବା କବିଙ୍କ ନାମ ଓ ୬ଟି ତତ୍‌ସମ ଶବ୍ଦକୁ ଛାଡ଼ିଲେ ଅବଶିଷ୍ଟ ୪୦ଟି ଶବ୍ଦ ମଧ୍ୟରୁ ୨୨ଟିର ରୂପ (ଯଥା— ବି,ଚିଏ, ପଇଠା, କରିଅ, ପୁଚ୍ଛିଅ, କରିଅଇ, ମରିଅଇ, ସଅଳ, ସମାହିଅ, ଦୁଖେତେ, ଛନ୍ଦକ, ବାନ୍ଧି, କରଣକ, ପାଟେର, ପାଖ, ଭିତି, ଲେହୁ, ଝାଣେ, ଦିଠାଁ, ବେଣି, ପିଣ୍ଡି, ବଇଠା ) ସାରଳାଦାସଙ୍କ ଲେଖାରେ ମିଳେ ନାହିଁ । ପାଠକମାନେ ତଥାକଥିତ ଭାଷା-ବିଶେଷଜ୍ଞମାନଙ୍କ ଓଡ଼ିଆ ଜାତୀୟତା ପ୍ରଣୋଦିତ ମତକୁ ଅନ୍ଧଭାବରେ ଗ୍ରହଣ ନକରି ନିଜେ ଭାଷାକୁ ତୁଳନା କରି ସିଦ୍ଧାନ୍ତରେ ପହଞ୍ଚିବା ଉଚିତ । ସାରଳାଦାସଙ୍କ ଭାଷା ବୁଝିବାରେ କୌଣସି ଅସୁବିଧା ନଥିବା କଥା ଓଡ଼ିଶାର ଗାଁଗଣ୍ଡାରେ ମହାଭାରତ ପଢ଼ାରୁ ଜାଣିହେବ, ଅଥଚ ଚର୍ଯ୍ୟାଗୀତର ଅର୍ଥ ପ୍ରାୟଶଃ ଅବୋଧ୍ୟ । ଏହି ଅବୋଧ୍ୟତା ପ୍ରାଚୀନ କାଳରେ ମଧ୍ୟ ଅନୁଭୂତ ହେଉଥିଲା । ଅନ୍ୟଥା ଗୋଟିଏ ସଂସ୍କୃତେତର ଭାଷାର ରଚନାର ଟୀକା ସଂସ୍କୃତ ଭାଷାରେ ରଚନାକାଳର ପରେ ପରେ ପ୍ରସ୍ତୁତ କରିବାର ପ୍ରୟୋଜନ ହିଁ ନଥାନ୍ତା । ଏହି ଟୀକାକୁ ଆଶ୍ରୟ କରି ହିଁ ଚର୍ଯ୍ୟାଗୀତଗୁଡ଼ିକର ଅର୍ଥର ଇଲାକା ମଧ୍ୟକୁ ପ୍ରବେଶ କରିବା ସମ୍ଭବ ହୋଇଛି । ଚର୍ଯ୍ୟାଗୀତର ଭାଷା ସାରଳାଦାସଙ୍କ ନିକଟତର ବୋଲି ବ୍ୟକ୍ତ କରାଯାଉଥିବା ସୁବିଚାରିତ ନୁହେଁ । ଅବଶ୍ୟ ଚର୍ଯ୍ୟାଗୀତର ଭାଷା ସେହି ସମୟରେ ପ୍ରଚଳିତ କୌଣସି ଅଞ୍ଚଳ ବିଶେଷର ଲୋକମୁଖର ଭାଷା ନ ହୋଇ ତାହାର ପୂର୍ବଜ ସଂସ୍କୃତ ଭାଷା ଓ ପରବର୍ତ୍ତୀ ବ୍ରଜବୋଲି ପରି ଏକ ଧର୍ମ-ସଂପ୍ରଦାୟର ଗୂଢ଼ ମତବାଦର ପ୍ରକାଶାର୍ଥ ଏକ ବାରମିଶା କୃତ୍ରିମ ଭାଷା ହିଁ ହୋଇପାରେ । ଚର୍ଯ୍ୟାଗୀତର ଭାଷା ଯେ ଜମାରୁ ଓଡ଼ିଆ ଭାଷାର ପୂର୍ବଜ ନଥିଲା ସେ କଥା ପରେ ଦର୍ଶାଯିବ । ଚର୍ଯ୍ୟାଗୀତର ଭାଷା ସଙ୍ଗେ ସାରଳାଦାସଙ୍କ ଭାଷାକୁ ତୁଳନା କରିବା ନିରର୍ଥକ । ଏହି ଅବସ୍ଥାରେ ସୁନିର୍ଦ୍ଦିଷ୍ଟ ଭାବରେ ରଚନାକାଳ ଜାଣି ହେଉଥିବା ଓଡ଼ିଆ ଅଭିଲେଖର ଭାଷାର ରୂପବିଚାର ପ୍ରାସଙ୍ଗିକ ।

## ୨. ଉରଜମ୍ ଶିଳାଲେଖ

ଗଞ୍ଜାମ ଜିଲାର ଦକ୍ଷିଣସ୍ଥ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଳମ୍ ଜିଲାର ଉରୁଜମ୍ ଗ୍ରାମରୁ ପ୍ରାପ୍ତ ଶିଳାଲେଖରେ ଓଡ଼ିଆ ଭାଷାର ପ୍ରାଚୀନତମ ପ୍ରୟୋଗର ସଂକେତ ମିଳେ ।

ଶିଳାଲେଖଟିର ସମୟ ଖ୍ରୀ. ୧୦୫୧ର ଅକ୍ଟୋବର ୧୨ ତାରିଖ । ଲେଖଟି ହେଲା—

> "ସ୍ୱସ୍ତି ସମରମୁଖାନେକରିପୁଦର୍ପମର୍ଦନ ଭୁଜବଳ ପରାକ୍ରମ ଗଙ୍ଗାନ୍ୱୟା-
> ବଲମ୍ବନସ୍ତସ୍ୟ ଶ୍ରୀମଦନନ୍ତ ବର୍ମ ଦେବ ବିଜୟ ରାଜ୍ୟ ସମ୍ବସର ୧୬ ତୁଳା
> ମାସ ଶୁକ୍ଲପକ୍ଷ ଦିନ ପଞ୍ଚମୀ ସଣୀବାରେଂ ୟୁରୁଙ୍କାମୈଳତା ଦୟ
> କରିଲା ପଟସ୍ଥିତି ପୋଲାଖିସ ୟୁରୁଙ୍ଗମସ ଙ୍ଗଣି ଗଉ ପୋଲାଖିସ
> ତିନ୍ନି ଭାଗ ୟୁରୁଙ୍ଗମସ ଓକ୍‌କୁ ଭାଗ ହୋନ୍ତ ମାଣିଚଙ୍କୁ ବୋଝ୍ୟ
> ଥିଲା ୟୁରୁଙ୍ଗମୈତଙ୍କ ଗଉଂ ପୋଲାଖିଂଲାଣ ଙ୍ଗ୍ୟଉବନ୍ତେ ନ
> ଲଭୈ ଉଦୁଛିଲୈଂ କାଳୈ ରାଇକେ ଙ୍ଗ୍ୟାଂଣ ସହସ୍ର ସୁବର୍ଣ୍ଣ
> ଦଣ୍ଡ ପଦ୍ୟୋଙ୍ଗ୍ୟ ଧିଲା ଆନତି ସାବୁରାୟି ଚଉଂ ସମ୍ମୁଖେଂ
> ସରସ୍ୱତୀବଲ୍ଲଭ ସିଳା ଲେଖିତଂ ଶକାବ୍ଦ ୯୭୩ ।"

ଲେଖର କାଳଜ୍ଞାପକ ଅଂଶ (ସ୍ୱସ୍ତିଠାରୁ ପଞ୍ଚମୀ ଯାଏଁ) ସଂସ୍କୃତ ତୁଲ୍ୟ, ତେଣୁ ସୁବୋଧ୍ୟ, ପରବର୍ତ୍ତୀ ପ୍ରାକୃତ ଅଂଶ ପ୍ରାୟଶଃ ଅବୋଧ୍ୟ । ଏହାର ଓଡ଼ିଆ ଶବ୍ଦ ଭାବରେ ସଣୀବାରେଂ (ଶନିବାରଇ), କରିଲା, ଥିଲା, ନ, ଲଭୈ (ଲଭଇ) ଧିଲା (ଦିଲା=ଦେଲା), କରିଲା, ଥିଲା ନ, ଲଭୈ (ଲଭଇ), ଧିଲା (ଦିଲା=ଦେଲା), ଲେଖିତଂ (ଲିଖିତ)କୁ ଗଣନା କରାଯାଇପାରେ । ଷଷ୍ଠୀ ବିଭକ୍ତି ସୂଚକ ଓଡ଼ିଆ 'ର' ପ୍ରତ୍ୟୟ ସ୍ଥାନରେ ସଂସ୍କୃତ 'ସ୍ୟ'ରୁ ଜାତ 'ସ' (ପୋଲାଖିସ, ୟୁରୁଙ୍ଗମସ୍) ଏଠି ରହିଛି । ତ୍ରିଣି ଶବ୍ଦଟି ଓଡ଼ିଆରେ ତିନି ହୋଇଛି, ଏଠାରେ ତାହାର ରୂପ 'ତିନ୍ନି' । ଏକ ଶବ୍ଦଟି ତେଲୁଗୁ ପ୍ରଭାବରେ ଓକ୍‌କୁ ହୋଇଛି । ଏହି ଲେଖର ଭାଷା ପରିପକ୍ୱ ନୁହେଁ କି ଏକରୂପ ନୁହେଁ । ପକ୍ଷାନ୍ତରେ ସାରଳା ଦାସଙ୍କ ଭାଷା ପାକଳ ଓ ସୁଷମ । ଏହି ସମୟାଙ୍କିତ ଅଭିଲେଖର ସମସାମୟିକ ବୋଲି ସାରଳା ଦାସଙ୍କ କାଳ ନିର୍ଦ୍ଧାରଣ କରିବା ସମୀଚୀନ ନୁହେଁ ।

## ୩. ଭୁବନେଶ୍ୱର ଶିଳାଲେଖ

ଉରୁଙ୍ଗମ୍ ଶିଳାଲେଖର ପ୍ରାୟ ଅଢ଼େଇ ଶହ ବର୍ଷ ପରବର୍ତ୍ତୀ ଭାଷାର ନମୁନା ଭୁବନେଶ୍ୱର ଶିଳାଲେଖରେ ମିଳେ । ଖ୍ରୀ. ୧୨୯୫ର ଅକ୍ଟୋବର ୨ ତାରିଖରେ ଖୋଦିତ ଏହି ଲେଖଟି ଓଡ଼ିଆ ଓ ତାମିଲ ଦୁଇ ଭାଷାରେ ଲିଖିତ । ଓଡ଼ିଆ ଲେଖଟି—

> "ସିଦ୍ଧଂ । ସ୍ୱସ୍ତ ଶ୍ରୀ ବୀରନରନାରସି(ଂଘ) ଦେବତା ପ୍ରବଧମାନେ ବୀଜେରାଜେ
> ସମ୍ୱତ ୨୨ ଶ୍ରାହି କାତ୍ରିକ କୃ (ଷ୍ଟ) ରବୀବାରେ । ଶ୍ରୀ କୀତ୍ତିବାସ କ୍ଷେତ୍ରଂ ସିଧେସ୍ୱର
> ମଠର ବଡ଼ ନରସୀଙ୍ଘ ଦେବଙ୍କର ଆଶକାମାର୍ଥ ପୂର୍ବ୍ଵକେ ବାଘମରା ବାରବାଟୀ

ଭୂମି ଏକାଦଶ ରୁଦ୍ର ଭିକ୍ଷା ଦେବା ଭୂମୀ ସମଂଧେ ତପରାଜ ମାହାମୁନି ଦୁଗ୍‌ଗାଭଟ ଆଚାଯଙ୍କେ ବଂଧା କଲା ଏ ମାଢ଼ ଶତ ଦେଢ଼ ୧୫୦ ଉଦ୍ରେସ୍ୱର ନାଏକଙ୍କର ତହୁ ଘେତଲା ଏ ମାଢ଼ ଦସ ଧାନ୍ୟ ପୈଟୀ ତ୍ରିସେକ ତପରାଜ ମହିମୁନୀ ଏ ଦୁଇ ଧାନ୍ୟ ସୂନା ଦୁଗ୍‌ଗାଭଟେ ଉଦ୍ରେସର ନାୟକକୈ ଦେଇ ଅଙ୍କ କଲା ଏକଉତି ଏ ଧାନ ସୂନା ମୂଳ କଳନ୍ତର କରନ୍ତେ ମାଢ଼ ଶତେକ ଅସୀ ୧୮୦ । ତପରାଜ ମୁନୀ ସିବ ପ୍ରାପ୍ତେ ତପ ଚକ୍ରବର୍ତା ଥାନପତି ହୋଇଲା । ଏ ତପ ଚକ୍ରବତୀଙ୍କର ଦୁଗ୍‌ଗା ଭଟ୍ଟ ଆଚାଯଙ୍କର ରାସୀ । ଦୁଗ୍‌ଗାଭଟ ଆଚାର୍ଯେ ସୁଣୀ ଏକ ରାସୀ ବୋଲି ମୈତ୍ର ପକ୍ଷ ହୋଇଲା । ଏ ବାଘମରା ଭୂମୀ ବାରବାଟୀ ଫଳଭୋଗ୍ୟ ଅସୀଆ ସତକେ କିଲକୈ ଚପ ଚକ୍ରବତୀକୀ ହାଥରଇ ଦୁଗ୍‌ଗାଭଟ ଆଚାଯେ ପାଣି ଧିଲ୍ଲା । ଏ ଶ୍ରୀ ବୀର ନର- ନାରସିଂଘ ଦେବଙ୍କର ଆଶ୍ୟକାମାର୍ଥେ ଏକାଦଶ ରୁଦ୍ର ଭିକ୍ଷା କରାଇବା । ଏ ଭିକ୍ଷା ଚୋଡ଼ଦେସ ପାଣ୍ଡୀଦେସ କାଞ୍ଚୀଦେସ ଏ ତୀନୀ ଦେସେ ଜମୀଲା ହୋଇ ମଠାମଠେ ଭୀକ୍ଷା କରି ଆଗ (ର) ବନ୍ତ ହୋଇଲା । ତପସାଙ୍କ ଭିକ୍ଷା ଯେତେ କାଳ ଚନ୍ଦ୍ର ସୁର୍ଯ୍ୟ ବ୍ରତ (ଇ) ଏତେକ କାଳଙ୍କ (ଅ) ବସ ବ୍ରତିବାକ ।''

ଅଭିଲେଖଟିର ଖୋଦକ ଅନଭ୍ୟସ୍ତ ହୋଇଥିବାରୁ ଗୋଟିଏ ଗୋଟିଏ ଶବ୍ଦର ବନାନ ଭିନ୍ନ ଭିନ୍ନ ରୂପରେ ଲେଖାଯାଇଛି; ଯଥା— ଶତେକ ଅସୀ=ଅସୀଆ ସତ; ଆଶକାମାର୍ଥ=ଆଶ୍ୟକାମାର୍ଥେ; ଉଦ୍ରେସ୍ୱର=ଉଦ୍ରେସର; ଆଚାର୍ଯେ= ଆଚାଯେ; ଚକ୍ରବର୍ତା=ଚକ୍ରବତୀ; ଭଟ= ଭଟ୍ଟ ଇତ୍ୟାଦି । ପୁଣି, ଅକ୍ଷର ଖୋଦାଇବା ବେଳେ କେତେକ ଅକ୍ଷରକୁ ଭୁଲିଯାଇଛି (ତାହା ଚନ୍ଦ୍ରବନ୍ଧନୀ ମଧ୍ୟରେ ଦର୍ଶାଯାଇଛି । ଚକ୍ରବର୍ତୀଙ୍କ ଅର୍ଥରେ 'ଚକ୍ରବର୍ତୀକୀ ଶବ୍ଦ ଲେଖାଅଛି । ଓଡ଼ିଆରେ ଷଷ୍ଠୀ ବିଭକ୍ତିର ସୂଚକ ଭାବରେ 'କୀ'ର ବ୍ୟବହାର ଅନିୟମିତ । ତେବେ, ଏହି ଅଭିଲେଖର ଭାଷାର ଅବସ୍ଥା ନିଶ୍ଚୟ ଅଧିକ ପରିପକ୍ୱ । କିନ୍ତୁ, ସାହିତ୍ୟ ସୃଷ୍ଟି ପାଇଁ ପ୍ରାଞ୍ଜଳ ଭାବରେ ଭାବ ପ୍ରକାଶ କରିବାର ସାମର୍ଥ୍ୟ ଏ ଭାଷା ତଥାପି ଅର୍ଜନ କରିନାହିଁ । ଅଭିଲେଖଟିକୁ ପଢ଼ି ଅର୍ଥ ବୁଝିବା ଆୟାସସାଧ୍ୟ । ସାରଳାଦାସଙ୍କୁ ଏହି ଶିଳାଲେଖର ପୂର୍ବ ସମୟରେ ଅବସ୍ଥାପିତ କରାଯାଇ ନପାରେ ।

କେହି କେହି ଆଲୋଚକ, ନିର୍ଣ୍ଣାୟକ ପ୍ରମାଣ ନଥିଲେ ହେଁ, ମାଦଳାପାଞ୍ଜି ଓ ରୁଦ୍ର ସୁଧାନିଧି ସାରଳାଦାସଙ୍କ ପୂର୍ବର ରଚନା ବୋଲି କହିଥାନ୍ତି । ମାଦଳାପାଞ୍ଜିରେ ଦତ୍ତ ବିବରଣ ଷୋଡ଼ଶ ଶତାବ୍ଦୀର ପୂର୍ବର ଘଟଣାବଳୀ ସଂପର୍କରେ ଭ୍ରମପ୍ରମାଦରେ ପୂର୍ଣ୍ଣ ଓ ତାହାର ଭାଷାରେ ଥିବା ଯାବନିକ ଶବ୍ଦାବଳୀ ସୂଚାଉଛି ଯେ ଓଡ଼ିଶାର ଶାସନ ମୋଗଲଙ୍କ କରଗତ ହେବା ପରେ ତାହାର ସୃଷ୍ଟି ହୋଇଛି । ଖୋରଧା ରାଜା ରାମଚନ୍ଦ୍ର ଦେବଙ୍କ

ଦ୍ୱାରା ଖ୍ରୀ-ଷୋଡ଼ଶ ଶତାବ୍ଦୀର ଶେଷ ଆଡ଼କୁ ଜଗନ୍ନାଥାଦି ମୂର୍ତ୍ତିଙ୍କ ପୁନଃପ୍ରତିଷ୍ଠା ସହିତ ମାଦଳାପାଞ୍ଜି ଲେଖାର ସୂତ୍ରପାତ ହେଲା । ସେହିପରି ରୁଦ୍ରସୁଧାନିଧିର ଭାଷା ତ ଅର୍ବାଚୀନ, ତାହାର ଶୈଳୀ ମଧ୍ୟ ଓଡ଼ିଆରେ ଛନ୍ଦ ଚଉତିଶାର ପ୍ରବର୍ତ୍ତନର ପରବର୍ତ୍ତୀ ସମୟର । ସାରଳାଦାସଙ୍କ 'ଦାଣ୍ଡୀ' ଶୈଳୀ ତାହା ତୁଳନାରେ ପ୍ରାଚୀନତର ।

ସାରଳା-ମହାଭାରତରେ ଅନେକ ଆଭ୍ୟନ୍ତରୀଣ ପ୍ରମାଣ ରହିଛି ଯାହା ବଳରେ ସାରଳାଦାସ ଖ୍ରୀ. ପଞ୍ଚଦଶ ଶତାବ୍ଦୀର ପୂର୍ବର ନଥିବା ଜଣାପଡ଼େ । ମହାଭାରତ ଯୁଦ୍ଧରେ "ଚୋଡ଼ଗଙ୍ଗ ରାଜା ତାର ଓଡ଼ିଶା ରାଜଧାନୀ" ଦୁର୍ଯ୍ୟୋଧନଙ୍କୁ ସାହାଯ୍ୟ କରିଥିବା କଥା କବି ଲେଖିଛନ୍ତି (ଉଦ୍‌ଯୋଗ ୨୮୨) । କବି ଶତଶତ ସ୍ଥାନରେ 'ଜଗନ୍ନାଥ-ସୁଭଦ୍ରା-ବଳଭଦ୍ର' ତ୍ରିମୂର୍ତ୍ତିଙ୍କୁ ସ୍ତୁତି କରିଛନ୍ତି । ତୃତୀୟ ଅନଙ୍ଗଭୀମଦେବଙ୍କ ଖ୍ରୀ. ୧୨୩୭ର ଶ୍ରୀମନ୍ଦିରସ୍ଥ ପାତାଳେଶ୍ୱର ଅଭିଲେଖରେ ହଳୀ (ବଳଭଦ୍ର), ଚକ୍ରୀ (ଜଗନ୍ନାଥ) ଓ ସୁଭଦ୍ରା ଏକତ୍ର ସ୍ତୁତ ହୋଇଛନ୍ତି । ପୂର୍ବରୁ ତ୍ରିମୂର୍ତ୍ତି ରତ୍ନବେଦୀରେ ପୂଜା ପାଉଥିବା ପ୍ରମାଣ ନାହିଁ । କୋଣାର୍କ କ୍ଷେତ୍ରର ପ୍ରସିଦ୍ଧି ଯୁଗ ଯୁଗ ଧରି ରହିଥିବା କଥା କବି ମହାଭାରତର ବହୁସ୍ଥାନରେ ଲେଖିଛନ୍ତି (ଦ୍ରୋଣ ୩୨୭) । ସେଠାରେ ପୂଜିତ ମୂର୍ତ୍ତିର ବର୍ଣ୍ଣନା ସେ ଦେଇଛନ୍ତି । କବିଙ୍କ ସମୟକୁ ମୁଲତାନ୍‌ର ସୂର୍ଯ୍ୟମନ୍ଦିରର ପୌରାଣିକ ସାମ୍ବ ଉପାଖ୍ୟାନ କୋଣାର୍କକ୍ଷେତ୍ରକୁ ଆମଦାନି ହୋଇସାରିଲାଣି (ଶାନ୍ତି ୩୦) । ତେଣୁ କୋଣାର୍କ ମନ୍ଦିର ନିର୍ମାଣ (ଅନ୍ଦାଜ ଖ୍ରୀ. ୧୨୬୦) ପୂର୍ବରୁ ସାରଳାଦାସ ମହାଭାରତ ଲେଖିବା ସମ୍ଭାବନା ନାହିଁ । ଦାକ୍ଷିଣାତ୍ୟର ବିଜୟନଗର ରାଜ୍ୟର ପ୍ରତିଷ୍ଠା ହୋଇଥିଲା ଖ୍ରୀ. ୧୩୩୬ରେ । ସାରଳାଦାସ ବହୁ ସ୍ଥାନରେ ବିଜୟନଗର ରାଜ୍ୟର ନାମୋଲ୍ଲେଖ କରିଛନ୍ତି (ଆଦି ୭୮୭) ଓ ତାହା ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ମହାଭାରତ ସମୟରେ ଥିବା କଥା ଲେଖିଛନ୍ତି—

'ଶ୍ରୀରାମଚନ୍ଦ୍ର ବିଜେ କଲେ ଯେଉଣ ହିଂ ଥାନେ ।
ବିଜୟନଗ୍ର ସ୍ଥାନ ସେ ହୋଇଲା ବିଦ୍ୟମାନେ ।।' (ବନ ୪୨୯)

ଏସବୁ ତଥ୍ୟ ପ୍ରମାଣ ଦୃଷ୍ଟେ କବିଙ୍କ ସମୟ ଖ୍ରୀ ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ହୋଇ ନ ପାରେ ଓ ମହାଭାରତର ଆରମ୍ଭରେ ଉଲ୍ଲିଖିତ କପିଳେଶ୍ୱର ମହାରାଜା ସୂର୍ଯ୍ୟବଂଶର ପ୍ରତିଷ୍ଠାତା ବୋଲି ନିଃସନ୍ଦେହ ଭାବରେ କହି ହେଉଛି ।

—

# ଚତୁର୍ଥ ଅଧ୍ୟାୟ

## ସାରଳାଦାସ ଯଥାର୍ଥରେ ଆଦିକବି

ସାରଳାଦାସ ତାଙ୍କ ମହାଭାରତ ଓ ଚଣ୍ଡୀପୁରାଣରେ ନିଜକୁ 'ଶୂଦ୍ରମୁନି' ବୋଲି ଆତ୍ମପରିଚୟ ଦେଇଛନ୍ତି । ଏହି ଆଖ୍ୟାର ପୃଥକ୍ ଭାବରେ ଆଲୋଚନା କରିବି । ଆଧୁନିକ ଯୁଗର ଆଲୋଚକମାନେ ତାଙ୍କୁ 'ଆଦିକବି' ଆଖ୍ୟାରେ ଅଭିହିତ କରି ଆସୁଛନ୍ତି । ଓଡ଼ିଆ ଭାଷାରେ ସାରଳାଦାସଙ୍କ ପୂର୍ବରୁ କୌଣସି କବି ନଥିଲେ ହିଁ ତାଙ୍କ 'ଆଦିକବି' କହିବା ଯଥାର୍ଥ ହେବ । ଏ ବିଷୟଟି ବର୍ତ୍ତମାନ ବିଚାର୍ଯ୍ୟ ।

ଦାର୍ଶନିକ ଦୃଷ୍ଟିରେ ସବୁ ଭାବ ବା ଭୂତ ଅନ୍ୟ କିଛିର ପରିଣାମ ନତୁବା ବିବର୍ତ୍ତ– Nothing can come out of nothing. ତେଣୁ ଅପୂର୍ବ ଆରମ୍ଭର ଅସ୍ତିତ୍ୱ ରହି ନପାରେ । ଆରମ୍ଭର ଅନ୍ୱେଷଣ ବିଶେଷ ଫଳପ୍ରଦ ପ୍ରୟାସ ନ ହେଲେ ସୁଦ୍ଧା ସର୍ବଥା ସୁଖକର । ଗୋଟିଏ ମରୁଭୂମି ହେଉ କି ନଦୀ ହେଉ କି ଜଙ୍ଗଲ ହେଉ ତାହା ଠିକ୍ କେଉଁଠାରୁ ଆରମ୍ଭ ହୋଇଛି ଟିପ ମାରି ଚିହ୍ନାଇ ହେବ ନାହିଁ । ସମତଳ ଭୂମିରୁ ପର୍ବତ ଚଢ଼ିବାକୁ ଯାଉଥିବା ଲୋକ ଜାଣିପାରିବ ନାହଁ ସେ ଠିକ୍ କେଉଁ ପହଣ୍ଡରେ ପର୍ବତର ଆରୋହଣ ଆରମ୍ଭ କରିଛି । ସବୁ କଥା ଏହିପରି । ଆରମ୍ଭ ଅନିଶ୍ଚିତ । ବୋଧହୁଏ ଏହି ତତ୍ତ୍ୱକଥାଟିକୁ ବତାଇବାକୁ ବ୍ରହ୍ମଜ୍ଞାନୀମାନେ କହୁଥିଲେ ଯେ ସୃଷ୍ଟିର ଆରମ୍ଭରେ ସବୁ କଥା ଠୁଳରୂପ ହୋଇ ଅନ୍ଧକାରମୟ ଥିଲା । ଭକ୍ତମାନଙ୍କ ବିଚାରରେ ଭଗବାନଙ୍କ ଛଡ଼ା ଆଉ କିଛି ପରମକାରଣ ବା ଅନାଦି ନାହିଁ । ଏହା ନଭୋମଣ୍ଡଳର black hole ? ଓଡ଼ିଆ ତଥା ଯେକୌଣସି ଭାଷାର ସାହିତ୍ୟର ଆରମ୍ଭ ମଧ୍ୟ ଅନ୍ଧକାର ଗର୍ଭଗତ, ଅନିର୍ଦ୍ଦିଷ୍ଟ । ତାହାର ପ୍ରାଥମିକ ଅବସ୍ଥାର ବୋଲି ଜଣାପଡୁଥିବା ରଚନା ପୂର୍ବରୁ ଆଉ କିଛି ରଚିତ ହୋଇନଥିବ ବୋଲି ଭାବିବା ଅବିମୃଷ୍ୟକାରିତା । ଅଦ୍ୟାବଧି ତାହା ଲୋକଲୋଚନକୁ ଆସିନାହିଁ, ଏତିକି ହିଁ କୁହାଯାଇପାରେ । ମୋର ବିଚାରରେ ଆବିଷ୍କୃତ ଓଡ଼ିଆ ସାହିତ୍ୟ କୃତିଗୁଡ଼ିକ ମଧ୍ୟରୁ କୌଣସିଟି ଖ୍ରୀ. ପଞ୍ଚଦଶ ଶତାବ୍ଦୀ ପୂର୍ବର, ଅର୍ଥାତ୍ ସାରଳାଦାସଙ୍କ ପୂର୍ବର ନୁହେଁ । ତେଣୁ 'ଆଦିକବି' ଆଖ୍ୟା ସାରଳାଦାସଙ୍କୁ ଦିଆଯିବା ଯଥାର୍ଥ ଓ ସମୀଚୀନ ।

'ଆଦିକବି' ଆଖ୍ୟାଟି ମୂଳତଃ ରାମାୟଣକାର ବାଲ୍ମୀକିଙ୍କର । ରାମାୟଣ ସଂସ୍କୃତ ସାହିତ୍ୟର ଆଦିକାବ୍ୟ ହୋଇଥିବା ଦାବି ସେହି ରାମାୟଣରେ ରହିଛି । ଆଧୁନିକ ଯୁଗର ଗବେଷକମାନେ ନିର୍ଦ୍ଧାରଣ କଲେଣି ଯେ ରାମାୟଣ (ଓ ମହାଭାରତ ମଧ୍ୟ) କୌଣସି

ବ୍ୟକ୍ତିବିଶେଷର କୃତି ନୁହେଁ ଓ ରାମାୟଣର ମୂଳରୂପ, ଯାହା ଆଦିକାଣ୍ଡର ଅଧିକାଂଶ ଓ ଉତ୍ତରକାଣ୍ଡ ବ୍ୟତିରିକ୍ତ ହୋଇ କ୍ଷୁଦ୍ରାକାର ଥିଲା, ସୃଷ୍ଟି ହେବା ପୂର୍ବେ ମହାଭାରତ ରଚନାର କ୍ଷୁଦ୍ରାକାର ମୂଳରୂପ ସୃଷ୍ଟି ହୋଇ ସାରିଥିଲା । ତେଣୁ ବାଲ୍ମୀକି ଜଣେ ପୌରାଣିକ ଚରିତ୍ର । କିନ୍ତୁ ସାରଳାଦାସ ଜଣେ ଐତିହାସିକ ପୁରୁଷ ହୋଇଥିବାରୁ 'ଆଦିକବି' ଆଖ୍ୟାର ଭାଜନ ।

## ଚର୍ଯ୍ୟାଗୀତର ଭାଷା ଓଡ଼ିଆ ନୁହେଁ

ଓଡ଼ିଆ ସାହିତ୍ୟର ଆଲୋଚକମାନେ ଆନୁମାନିକ ଖ୍ରୀ. ୮ମରୁ ୧୧ଶ ଶତାବ୍ଦୀ ମଧ୍ୟରେ ରଚିତ ଚର୍ଯ୍ୟାଗୀତଗୁଡ଼ିକ ଓଡ଼ିଆ ସାହିତ୍ୟର ଆଦିମ ନିଦର୍ଶନ ବୋଲି ମତ ଦେଉଛନ୍ତି । ହିନ୍ଦୀ, ମୈଥିଳୀ, ବଙ୍ଗଳା ଓ ଅସମିଆ ଭାଷାର ଆଲୋଚକମାନେ ମଧ୍ୟ ଏହିଗୁଡ଼ିକ ସ୍ୱସ୍ୱ ଭାଷାର ଆଦିମ ରୂପ ବୋଲି ଦାବି କରି ଆସୁଛନ୍ତି । ଏ ସବୁ ଦାବି ଭିତରେ ଆଞ୍ଚଳିକ ଭାବପ୍ରବଣତା ହିଁ ଜୋର୍‌ଦାର୍ । ମୁଁ ପୂର୍ବ ଅଧ୍ୟାୟରେ ନମୁନା ଭାବରେ ପ୍ରଥମ ଚର୍ଯ୍ୟାଗୀତଟିକୁ ଦେଇ ତାହାର ଭାଷାର କୃତ୍ରିମତା ସଂପର୍କରେ କିଛି କହିସାରିଛି । ମୋର ନିବେଦନ ମୁଁ ଏହା କହୁଛି ଓ ଅନ୍ୟମାନେ ଅନ୍ୟଥା କହୁଛନ୍ତି ବୋଲି ପାଠକମାନେ କଥାଟିର ଫଏସଲା କରିଦିଅନ୍ତୁ ନାହିଁ । ନିଜେ ଚର୍ଯ୍ୟାଗୀତ ପଢ଼ି ତାହା ଓଡ଼ିଆ ହୋଇପାରେ କି ନା ନିଷ୍ପତ୍ତି ନିଜେ ନିଅନ୍ତୁ । ଏ ବ୍ୟାପାରରେ ବହୁମତର ମୂଲ୍ୟ ନାହିଁ । ଯେପର୍ଯ୍ୟନ୍ତ ପାଠକ ବ୍ୟକ୍ତିଗତ ମତ ଗଠନ କରିପାରୁନାହିଁ, ସେ ନିଦା ପାଠକ ନୁହେଁ । ଗୌତମ ବୁଦ୍ଧଙ୍କ ବଚନ– ''ପରୀକ୍ଷ ଭିକ୍ଷବୋ ଗ୍ରାହ୍ୟ ମଦ୍‌ବଚୋ ନ ତୁ ଗୌରବାତ୍'' । ହେ ଭିକ୍ଷୁ, ମୋତେ ଗୌରବ ଦେଇ ମୋ କଥା ଗ୍ରହଣ କରିଯାଅ ନାହିଁ, ନିଜେ ପରୀକ୍ଷା କରି ତାକୁ ଠିକ୍ ବୋଲି ଭାବିଲେ ଗ୍ରହଣ କର । ଚର୍ଯ୍ୟାଗୀତଗୁଡ଼ିକର ଭାଷା କାହିଁକି କୌଣସି ଅଞ୍ଚଳର ଲୋକପ୍ରଚଳିତ ନୁହେଁ ବୋଲି ମୋର ହୃଦ୍‌ବୋଧ ହେଲା ତାହା ନିମ୍ନରେ ଜଣାଇ ଦେଉଛି–

(୧) ଚର୍ଯ୍ୟାଗୀତଗୁଡ଼ିକର ପ୍ରଣେତା ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରୁ ଅନେକେ ନିଶ୍ଚୟ ଉତ୍କଳ ଭୂଖଣ୍ଡର ଲୋକ ଥିଲେ । କିନ୍ତୁ, ଭାରତରେ ବିଶେଷତଃ ପୂର୍ବଭାରତର, ଅନ୍ୟାନ୍ୟ ଅଞ୍ଚଳର ଅଧିବାସୀ ସିଦ୍ଧାଚାର୍ଯ୍ୟମାନେ ମଧ୍ୟ ତନ୍ମଧ୍ୟରେ ଥିଲେ । ଲାମା ତାରାନାଥଙ୍କ ପ୍ରଣୀତ ସପ୍ତ ଅଧ୍ୟାୟ ବିଶିଷ୍ଟ ରତ୍ନାକର ଗ୍ରନ୍ଥରେ ଏହି ସିଦ୍ଧାଚାର୍ଯ୍ୟ ଗୋଷ୍ଠୀର ବିବରଣ ଗୁରୁ-ଶିଷ୍ୟ ପରଂପରା କ୍ରମରେ ଲେଖାଅଛି । ଏହାର ଇଂରାଜୀ ରୂପ ଡଃ ଭୂପେନ୍ଦ୍ରନାଥ ଦତ୍ତ Mystic Tales of Lama Taranath ନାମରେ ପ୍ରକାଶିତ କରାଇଛନ୍ତି । ଏଥିରୁ ତଥା ଅନ୍ୟାନ୍ୟ ସୂତ୍ରରୁ ପ୍ରମାଣ ମିଳୁଛି ଯେ ସବୁ ସିଦ୍ଧାଚାର୍ଯ୍ୟ କେବଳ ଉତ୍କଳର ନୁହନ୍ତି ।

(୨) ଚର୍ଯ୍ୟାଗୀତଗୁଡ଼ିକର ଭାଷା ଲୋକ-ପ୍ରଚଳିତ ଭାଷା ହୋଇଥିଲେ ସେ ସବୁ ରଚିତ ହୋଇସାରିବା ପରେ ପରେ ସେଗୁଡ଼ିକର ସଂସ୍କୃତ ଭାଷାରେ ଟୀକା ଟିପ୍ପଣୀ ପ୍ରଣୟନର ପ୍ରୟୋଜନ ହିଁ ନଥାନ୍ତା । ସଂସ୍କୃତ ଟୀକା ସୂଚାଉଛି ଯେ ପରବର୍ତ୍ତୀ ଯୁଗର

ବ୍ରଜବୋଲି ପରି ଚର୍ଯ୍ୟାଗୀତଗୁଡ଼ିକର ଭାଷା ସିଦ୍ଧାଚାର୍ଯ୍ୟ ଗୋଷ୍ଠୀମଧ୍ୟରେ ବ୍ୟବହୃତ ହେବା ପାଇଁ ଉଦ୍ଦିଷ୍ଟ ଏକ ସାଂପ୍ରଦାୟିକ ଭାଷା ଥିଲା ।

(୩) ଚର୍ଯ୍ୟାଗୀତଗୁଡ଼ିକର ଭାଷାକୁ ସନ୍ଧାଭାଷା କୁହାଯାଉଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ସନ୍ଧାର ଗୋଟିଏ ଅର୍ଥ ଯୋଡ଼ାଯୋଡ଼ି, ତେଣୁ ତାହା କୌଣସି ନିର୍ଦ୍ଦିଷ୍ଟ ଭାଷା ହୋଇ ନ ପାରେ । ସନ୍ଧାଭାଷାର ଅନ୍ୟତର ଅର୍ଥ ଅଭିପ୍ରେତାର୍ଥକୁ ଘୋଡ଼ାଇ ରଖୁଥିବା ସଂକେତାତ୍ମକ ଭାଷା । ପ୍ରତ୍ୟେକ ଚର୍ଯ୍ୟାଗୀତର ସଂସ୍କୃତ ଟୀକାଟିପ୍ପଣୀ ପଢ଼ିଲେ ସନ୍ଧାଭାଷାର ଏହି ଲକ୍ଷଣଟି ଧରାପଡ଼ିବ । ତାହା ପ୍ରାକୃତ କି ଅପଭ୍ରଂଶ କି ପୈଶାଚୀ ହୋଇଥିଲେ । ସନ୍ଧାଭାଷା ଆଖ୍ୟା ବହନ କରନ୍ତା ନାହିଁ ।

(୪) ସନ୍ଧାଭାଷା କୌଣସି ନିର୍ଦ୍ଦିଷ୍ଟ ଆଂଚଳିକ ଭାଷା ହୋଇନଥିବା ସନ୍ଦେହ ସମସାମୟିକ ଅଭିଲେଖଗୁଡ଼ିକ ଦ୍ୱାରା ପରୋକ୍ଷରେ ଦୃଢ଼ୀଭୂତ ହେଉଛି । ତାମ୍ର ଓ ପ୍ରସ୍ତରରେ ଖୋଦିତ ଅଭିଲେଖଗୁଡ଼ିକରେ ପାଲି-ପ୍ରାକୃତର, ସଂସ୍କୃତର ଓ ଓଡ଼ିଆ ସମେତ ଆଧୁନିକ ଆଞ୍ଚଳିକ ଭାଷାଗୁଡ଼ିକର ପୂର୍ବରୂପ ପ୍ରାକୃତ/ଅପଭ୍ରଂଶ ଭାଷାର ବ୍ୟବହାର ଚଳୁଥିଲା । ଚର୍ଯ୍ୟାଗୀତର ଭାଷା କୌଣସି ଅଭିଲେଖରେ ସ୍ଥାନ ପାଇ ନଥିବା ଯୋଗୁଁ ତାହା ଲୋକପ୍ରଚଳିତ ଭାଷା ହୋଇନପାରେ ।

(୫) ସଂସ୍କୃତ ଭାଷାର ନାଟକରେ ନାରୀ ଓ ଇତରଜନଙ୍କ ମୁଖରେ ପ୍ରାକୃତ/ ଅପଭ୍ରଂଶ ଭାଷାର ବ୍ୟବହାର କମ୍ ନଥିଲା । ଅପିତୁ ଚର୍ଯ୍ୟାଗୀତର ଭାଷା କୌଣସି ନାଟକରେ ସ୍ଥାନ ପାଇନାହିଁ । ତାହା ଲୋକମୁଖର ଭାଷା ହୋଇନଥିବାରୁ ହିଁ ଅଭିଲେଖ ଓ ନାଟକ ମଧ୍ୟକୁ ପଶିନଥିଲା, ସିଦ୍ଧାଚାର୍ଯ୍ୟ ଗୋଷ୍ଠୀରେ ସୀମାବଦ୍ଧ ହୋଇ ରହିଥିଲା ।

(୬) ଚର୍ଯ୍ୟାଗୀତଗୁଡ଼ିକର ଭାଷାର ପ୍ରକୃତି ନେଇ ନାନା ମୁନି ନାନା ମତ । ଏହି ଭାଷାର ବ୍ୟାକରଣ ନିୟମ ଅନିର୍ଦ୍ଦିଷ୍ଟ ଓ ଅନେକ ସ୍ଥଳେ ଗୋଳମାଳିଆ । କ୍ରିୟାର କାଳରୂପ, କାରକବିଭକ୍ତି, ସର୍ବନାମ ଆଦିରେ ସମରୂପତା ନାହିଁ, ଠାଏଁ ଏକପ୍ରକାର ତ ଅନ୍ୟତ୍ର ଅନ୍ୟଥା । ତେଣୁ ତାହା କେଉଁ ପ୍ରାକୃତ କି ଅପଭ୍ରଂଶ ନିର୍ଣ୍ଣିତ ହୋଇପାରିନାହିଁ । ଏହା ଏକ ବାରମିଶା କୃତ୍ରିମ ଭାଷା ହୋଇଥିବାରୁ ଏଥିରେ କେଉଁଠାରେ ଓଡ଼ିଆ ଭାଷାର ଲକ୍ଷଣ ମିଳୁଛି ତ କେଉଁଠାରେ ହିନ୍ଦୀ, ବଙ୍ଗାଳୀ ଆଦି ଭାଷାର । ଏ ସବୁ ଭାଷା ଆର୍ଯ୍ୟଗୋଷ୍ଠୀର ହୋଇଥିବାରୁ ଚର୍ଯ୍ୟାଗୀତର ଭାଷାରେ ବିଭିନ୍ନ ଭାଷାର ଲକ୍ଷଣ ଦେଖି ହେଉଛି । ଛଅ ଅନ୍ଧଙ୍କ ହାତୀ ଦେଖା ନ୍ୟାୟରେ ପଣ୍ଡିତମାନେ ଗୋଟିଏ ନିର୍ଦ୍ଦିଷ୍ଟ ଭାଷା ପକ୍ଷରେ ମତ ଦିଅନ୍ତି କିନ୍ତୁ ଅନ୍ୟ ଆଞ୍ଚଳିକ ପଣ୍ଡିତଙ୍କ ନିର୍ଣ୍ଣୟକୁ ଯୁକ୍ତିମୂଳକ ଭାବରେ ଖଣ୍ଡନ କରନ୍ତିନାହିଁ ।

(୭) ଚର୍ଯ୍ୟାଗୀତର ଭାଷା ଲୋକ-ପ୍ରଚଳିତ ଭାଷା ହୋଇଥିଲେ ଚର୍ଯ୍ୟାଗୀତକୁ ଛାଡ଼ି ସେହି ଭାଷାରେ ରଚିତ ଅନ୍ୟ କିଛି କୃତି ମିଳିବା କଥା । କିନ୍ତୁ, ଗୋଟିଏ ନିର୍ଦ୍ଦିଷ୍ଟ

ସଂପ୍ରଦାୟର ଭାବକୁ ଛାଡ଼ି ଅନ୍ୟ କୌଣସି ଭାବ-ବିଷୟକ କୃତି ସେହି ଭାଷାରେ ଅଦ୍ୟାବଧି ମିଳି ନାହିଁ । ସେହି ସଂପ୍ରଦାୟର ବିଲୟ ସହିତ ସେହି ଭାଷାର ବ୍ୟବହାରର ବିଲୟ ଘଟିଛି । ତେଣୁ ଅନୁମାନ କରିବାକୁ ହେଉଛି ତାହା ସିଦ୍ଧାଚାର୍ଯ୍ୟ ଗୋଷ୍ଠୀରେ ଆବଦ୍ଧ ଏକ ସାଂପ୍ରଦାୟିକ ଭାଷା ଥିଲା, ଲୋକମୁଖର ଆଂଚଳିକ ଭାଷା ନଥିଲା ।

(୮) ସବୁଠାରୁ ବଡ଼ କଥା ହେଲା, ଚର୍ଯ୍ୟାଗୀତର ଭାଷାର କାଳାନୁକ୍ରମିକ ବିକାଶ ଫଳରେ ଓଡ଼ିଆ (ଅଥବା ହିନ୍ଦୀ, ମୈଥିଳୀ, ବଙ୍ଗଳା କି ଅସମିଆ) ଭାଷା ଉଦ୍ଭବ ହେବା ସିଦ୍ଧ ହେଉ ନାହିଁ । ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟିର କ୍ରମ ପଞ୍ଚଦଶ ଶତାବ୍ଦୀରୁ ବର୍ତ୍ତମାନ କାଳ ପର୍ଯ୍ୟନ୍ତ ଅଖଣ୍ଡିତ ରହିଛି । ପଞ୍ଚଦଶ ଶତାବ୍ଦୀର ରଚନାଗୁଡ଼ିକର ଭାଷା ଓ ପରବର୍ତ୍ତୀ ସମୟର ରଚନାର ଭାଷା ମଧ୍ୟରେ ଆକୃତି ଓ ପ୍ରକୃତିଗତ ଅବିଚ୍ଛିନ୍ନତା ରହି ଆସିଛି । ଭାଷାର ତଥା ସାହିତ୍ୟ-ସୃଷ୍ଟିର ଅଖଣ୍ଡକ୍ରମର ଅଭାବ ଯୋଗୁଁ ଓଡ଼ିଆ ସାହିତ୍ୟର ଅତୀତ ଚର୍ଚ୍ଚା ପ୍ରସଙ୍ଗରେ ଚର୍ଯ୍ୟାଗୀତଗୁଡ଼ିକ ବିଚାର୍ଯ୍ୟ ନୁହନ୍ତି ।

**ସାରଳାଦାସଙ୍କ ପୂର୍ବରୁ ଗ୍ରନ୍ଥ ମିଳିନାହିଁ**

ସାରଳାଦାସଙ୍କ ରଚନା ତ୍ରୟ (ବିଚିତ୍ର ରାମାୟଣ, ମହାଭାରତ ଓ ଚଣ୍ଡୀପୁରାଣ) ମୋଟାମୋଟି ଭାବରେ ଖ୍ରୀ. ୧୪୪୦ ଓ ୧୪୮୦ ମଧ୍ୟର ସୃଷ୍ଟି । ଏହି ସମୟସୀମା ମଧ୍ୟରେ କପିଳେନ୍ଦ୍ରଦେବଙ୍କ ନାମାଙ୍କିତ 'ପରଶୁରାମ ବିଜୟମ୍' ନାମକ ସଂସ୍କୃତ ବ୍ୟାୟୋଗ ନାଟକ ମଧ୍ୟରେ ଗୋଟିଏ ଓଡ଼ିଆ ଗୀତର ସଂଯୋଗ ହୋଇଛି । ଗୀତଟି କ୍ଷୁଦ୍ର ହୋଇଥିବାରୁ ସାହିତ୍ୟିକ କୃତି ଭାବରେ ତାହାର ବିଶେଷ ପ୍ରାଧାନ୍ୟ ନାହିଁ । କତିପୟ ଆଲୋଚକ ସାରଳାଦାସଙ୍କର ସମୟ ପୂର୍ବରୁ ଅନ୍ୟ କେତେକ ଗ୍ରନ୍ଥ ରଚିତ ହୋଇଥିଲା ବୋଲି ମତବ୍ୟକ୍ତ କରିଛନ୍ତି କିନ୍ତୁ ତାହା କିପରି ପ୍ରମାଣ ସମର୍ଥିତ ନୁହେଁ ତାହାର ସୂଚନା ସଂକ୍ଷେପରେ ନିମ୍ନରେ ଦେଉଛି ।*

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଖ୍ରୀ. ୧୯୩୬ରେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ'ର ଇଂରାଜୀରେ ଲିଖିତ ମୁଖବନ୍ଧରେ ମତ ଦେଇଥିଲେ ଯେ

---

* ପ୍ରୋଫେସର ବିଜୟ ଚନ୍ଦ୍ର ମଜୁମ୍‌ଦାର ତାଙ୍କର Typical Selections from Oriya Literature ଗ୍ରନ୍ଥର ପ୍ରଥମ ଖଣ୍ଡର ମୁଖବନ୍ଧରେ ସାରଳାଦାସଙ୍କ ପ୍ରସଙ୍ଗରେ ଲେଖିଛନ୍ତି– "x x x this Oriya poet acquired celebrity in Bengal and his Mahabharata was introduced in Bengali translation not later than the early part of the 15th century" । ପ୍ରୋଫେସର ମଜୁମ୍‌ଦାର ବଙ୍ଗଳା ଅନୁବାଦର କାଳନିରୂପଣ ସପକ୍ଷରେ କୌଣସି ପ୍ରମାଣ ଦେଇନାହାନ୍ତି । ଏହା ଭ୍ରମାତ୍ମକ ଅନୁମାନ ମାତ୍ର ।

'କଳସା ଚଉତିଶା' ନାମକ ବତ୍ସାଦାସଙ୍କ ରଚନାଟି ସାରଳାଦାସର ଅନ୍ତତଃ ଶହେ ବର୍ଷ ପୂର୍ବରୁ ଲେଖାଯାଇଥିଲା । ସେତେବେଳେ ସେ ମତ ପୋଷଣ କରୁଥିଲେ ଯେ ସାରଳାଦାସଙ୍କ ସମୟ ଖ୍ରୀ. ପଞ୍ଚଦଶ ଶତାବ୍ଦୀ ଥିଲା । ତେଣୁ ବତ୍ସା ଦାସଙ୍କ ସମୟ ଖ୍ରୀ. ୧୪ ଶ ଶତାବ୍ଦୀ ବୋଲି ସେ ନିର୍ଦ୍ଧାରଣ କରିଥିଲେ । ପରେ ଖ୍ରୀ. ୧୯୫୪ରେ ପ୍ରକାଶିତ 'ସାରଳା ସ୍ମରଣିକା'ଷର ସେ ତାଙ୍କ ମତ ବଦଳାଇ ସାରଳାଦାସ ଖ୍ରୀ. ୧୪ଶ ଶତାବ୍ଦୀର ପ୍ରଥମରେ ରାଜତ୍ୱ କରୁଥିବା କୌଣସି କପିଳ ନରସିଂହଦେବଙ୍କ ସମୟର ବୋଲି ମତ ପ୍ରକାଶ କରିଥିବା ବିଷୟ ପୂର୍ବ ଅଧ୍ୟାୟରେ ଉଲ୍ଲେଖ କରିଛି । 'କଳସା ଚଉତିଶା'ଟି ସାରଳାଦାସଙ୍କର ଶହେ ବର୍ଷ ପୂର୍ବର ବୋଲି କହିବା ପାଇଁ ତାଙ୍କର ଏକମାତ୍ର ଯୁକ୍ତି ହେଉଚି, ସାରଳାଦାସ ସାମ୍ବବିବାହର ବର୍ଣ୍ଣନା ମଧ୍ୟରେ 'କଳସା' ପଢ଼ାଯିବା କଥା ଲେଖିଛନ୍ତି ଓ ସେହି କଳସା ତାଙ୍କ ମତରେ 'କଳସା ଚଉତିଶା' । ମୁଁ ଏହି ବିଷୟର ସବିଶେଷ ଆଲୋଚନା କରି (ସାହିତ୍ୟ ପତ୍ର 'ଦିଗନ୍ତ'ର ଖ୍ରୀ. ୧୯୬୮ ଜାନୁଆରି ସଂଖ୍ୟାସ୍ଥ ମୋର 'ସାରଳାଦାସଙ୍କ କଳସା' ପ୍ରବନ୍ଧରେ) ଦର୍ଶାଇଛି ଯେ ସାରଳାଦାସ ଓ ଅନ୍ୟମାନେ ମଙ୍ଗଳଗୀତ ଅର୍ଥରେ କଳସା ଶବ୍ଦ ଥରେ ନୁହେଁ ବହୁବାର ବ୍ୟବହାର କରିଛନ୍ତି । କଳସା ଶବ୍ଦ କୌଣସି ଓଡ଼ିଆ ରଚନା ବିଶେଷ ଅର୍ଥରେ ବ୍ରବହୃତ ହୋଇ ନାହିଁ । ବତ୍ସାଦାସ ଭଣିତିଯୁକ୍ତ 'କଳସା ଚଉତିଶା' ଓ ତାହାର ପାଠାନ୍ତର ବଂଶୀଦାସ ଭଣିତିଯୁକ୍ତ 'ଗଉରା କଳସା' (ମୋ ଦ୍ୱାରା ଖ୍ରୀ. ୧୯୭୧ରେ ସଂପାଦିତ 'ଚଉତିଶା ବିଚିତ୍ରା'ରେ ପ୍ରକାଶିତ) ଖ୍ରୀ. ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ପୂର୍ବର ରଚନା ନୁହେଁ (ମୋର 'ଅତୀତର ବର୍ଣ୍ଣବୋଧ' ପୁସ୍ତକର ଦ୍ୱିତୀୟ ଅଧ୍ୟାୟରେ ଏ ବିଷୟର ବିଶଦ ଚର୍ଚ୍ଚା ରହିଛି । ପୁସ୍ତକଟି ଖ୍ରୀ.ଅ. ୨୦୦୨ରେ 'ଆର୍ଯ୍ୟ ପ୍ରକାଶନ' ଦ୍ୱାରା ପ୍ରକାଶିତ) ।

ଡକ୍ଟର ବଂଶୀଧର ମହାନ୍ତି 'ଶିଶୁ ବେଦ' ନାମ ରଖି ପ୍ରକାଶିତ କରାଇଥିବା ଏକ କ୍ଷୁଦ୍ର ରଚନା ଖ୍ରୀ.ପଞ୍ଚଦଶ ଶତାବ୍ଦୀ ପୂର୍ବର ସୃଷ୍ଟି ବୋଲି ତାଙ୍କର ପିଏଚ୍.ଡି. ସନ୍ଦର୍ଭ 'ଓଡ଼ିଶାର ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ' ପୁସ୍ତକରେ ମତ ଦେଇଛନ୍ତି । ଶିଶୁ ବେଦର ରଚନାକାଳ ବିଷୟରେ ଡଃ ମହାନ୍ତି ଏହି ସନ୍ଦର୍ଭରେ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ମତ ଦେଇଛନ୍ତି । ମୁଖବନ୍ଧରେ ସେ ଲେଖିଛନ୍ତି– ''ଶିଶୁବେଦକୁ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା (ଖ୍ରୀ. ୧୩ଶ ଶତାବ୍ଦୀ) ବୋଲି ଗ୍ରହଣ କରାଯାଇଛି । ସନ୍ଦର୍ଭ ମଧ୍ୟରେ ସେ ଏହାକୁ ଖ୍ରୀ. ୧୦ମ ଶତାବ୍ଦୀର ପୂର୍ବବର୍ତ୍ତୀ କରି ପକାଇଛନ୍ତି– ''ମତ୍ସ୍ୟେନ୍ଦ୍ରନାଥଙ୍କ ମୁଖରେ ଶିଶୁବେଦର ପ୍ରସଙ୍ଗରୁ ମନେହୁଏ ଯେ ତାହା ମତ୍ସ୍ୟେନ୍ଦ୍ରନାଥଙ୍କ ପୂର୍ବର ବା ସମକାଳୀନ । ମତ୍ସ୍ୟେନ୍ଦ୍ରନାଥଙ୍କ ସମୟ ଆଲୋଚକମାନଙ୍କ ମତରେ ଖ୍ରୀ. ୬ଷ୍ଠ ଶତକଠାରୁ ୧୦ମ ଶତକ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇଅଛି'' (ପୃ. ୨୧୨) । ପୃଥିବୀର ଅନ୍ୟତମ ଆଶ୍ଚର୍ଯ୍ୟ ସୃଷ୍ଟି କରି ଡଃ ମହାନ୍ତି ଏହାର ପରପୃଷ୍ଠାରେ ନିଜର ନିର୍ଦ୍ଧାରଣକୁ ସନ୍ଦେହାତ୍ମକ କରି ଲେଖିଛନ୍ତି–

''ଗୋରଖନାଥଙ୍କ ସମୟକୁ ଯଦି ଖ୍ରୀ. ଦ୍ୱାଦଶ ଶତକ ଧରାଯାଏ, ଏହି ଶିଶୁବେଦର ରଚନାକୁ ନିଃସନ୍ଦେହରେ ଖ୍ରୀ. ୧୪ଶ ଶତାବ୍ଦୀର ବୋଲି ଧରାଯିବ'' (ପୃ.୨୧୩)। ଏପରି ସନ୍ଦର୍ଭକୁ ମାନ୍ୟତା ଦେଇ ନିଃସନ୍ଦେହରେ ଉତ୍କଳ ବିଶ୍ୱବିଦ୍ୟାଳୟ ବିଶ୍ୱକୁ ସନ୍ଦେହରେ ପକାଇଲା ! ମୁଁ ସାହିତ୍ୟ ପତ୍ର 'ଜୀବନରଙ୍ଗ'ର ୧୯୭୦ ସେପ୍ଟେମ୍ବର ସଂଖ୍ୟାରେ 'ଶିଶୁବେଦ ବିଚାର' ଶୀର୍ଷକ ପ୍ରବନ୍ଧରେ ଏ ପ୍ରସଙ୍ଗରେ ବିଶଦ ଆଲୋଚନା କରି ଦେଖାଇ ଦେଇଛି ଯେ 'ଶିଶୁବେଦ'ର ଅର୍ଥ କୌଣସି ରଚନା ବିଶେଷ ନୁହେଁ ଓ ସେ ଶିଶୁବେଦ ନାମରେ ପ୍ରକାଶ କରିଥିବା ରଚନାଟି ମୂଳତଃ ଓଡ଼ିଆ ଭାଷାର ନୁହେଁ । ଉତ୍ତର ଭାରତୀୟ ଭାଷାରେ ରଚିତ ଏକ ଗୋରଖପନ୍ଥୀ ରଚନାକୁ ଖ୍ରୀ. ସପ୍ତଦଶ ଶତାବ୍ଦୀରେ ଓଡ଼ିଆ ରୂପ ଦେବା ଲାଗି ମୂଳଭାଷା ବୁଝିବାକୁ ଅକ୍ଷମ ଦୁଇ ଜଣ ଓଡ଼ିଆ ଲୋକ ପ୍ରଚେଷ୍ଟା କରିବାରୁ ଏହି ତଥାକଥିତ ଶିଶୁବେଦର ଭ୍ରମାତ୍ମକ ଦୁଇ ଗୋଟି ରୂପାନ୍ତର ଜନ୍ମ ନେଲା (ମୋର 'ଅତୀତର ବର୍ଣ୍ଣବୋଧ' ପୁସ୍ତକର ପ୍ରଥମ ଅଧ୍ୟାୟରେ ଏ ସଂକ୍ରାନ୍ତ ବିଶଦ ଆଲୋଚନା ପଠିତବ୍ୟ) ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ଅର୍ଥ କୋଇଲି' ନାମଧେୟ ରଚନାର ପ୍ରଣେତା ଭାଗବତକାର ଜଗନ୍ନାଥ ଦାସ ବୋଲି ଧରି ନେଇ 'କେଶବ କୋଇଲି'ର ରଚନାକାଳ ଖ୍ରୀ. ପଞ୍ଚଦଶ ଶତାବ୍ଦୀର ଓ ତାହାର ରଚୟିତା ମାର୍କଣ୍ଡ ଦାସ ମହାଭାରତକାର ସାରଳାଦାସଙ୍କ ସମସାମୟିକ ବୋଲି ନିର୍ଦ୍ଧାରଣ କରିଥିଲେ । ମୁଁ ଆସନ୍ତା କାଲି ସାହିତ୍ୟପତ୍ରର ଖ୍ରୀ. ୧୯୬୦ ମେ ମାସ ସଂଖ୍ୟାରେ ସ୍ଥାନିତ 'ଅର୍ଥ କୋଇଲି ବିଚାର' ଶୀର୍ଷକ ପ୍ରବନ୍ଧରେ ଓ ଝଙ୍କାର ସାହିତ୍ୟପତ୍ରର ଖ୍ରୀ. ୧୯୮୫ର ଜୁନ୍ ସଂଖ୍ୟାରେ ପ୍ରକାଶିତ 'ଅନେକ ଜଗନ୍ନାଥ ଦାସ' ଶୀର୍ଷକ ପ୍ରବନ୍ଧରେ ପୁଂଖାନୁପୁଂଖ ଆଲୋଚନା ପୂର୍ବକ ଦର୍ଶାଇଛି ଯେ ଅର୍ଥ କୋଇଲିର ରଚୟିତା ଖ୍ରୀ. ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦର କୌଣସି ଜଗନ୍ନାଥ ଦାସ ନୁହନ୍ତି । ସେ ବହୁ ପରକାଳୀନ ବ୍ୟକ୍ତି, ତେଣୁ 'କେଶବ କୋଇଲି'କୁ ଖ୍ରୀ. ପଞ୍ଚଦଶ ଶତାବ୍ଦୀରେ ରଚିତ ବୋଲି କହିବା ପାଇଁ କୌଣସି ଯୁକ୍ତି ନାହିଁ । (ମୋର 'ଅତୀତର ବର୍ଣ୍ଣବୋଧ' ପୁସ୍ତକର ତୃତୀୟ ଅଧ୍ୟାୟରେ ଏ ସଂପର୍କରେ ସବିଶେଷ ଆଲୋଚନା ପ୍ରକାଶ ପାଇଛି) ।

'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ'ରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ନାରାୟଣ ଅବଧୂତଙ୍କ ଦ୍ୱାରା ପ୍ରଣୀତ 'ରୁଦ୍ରସୁଧାନିଧି'ର ଆଦ୍ୟାଂଶକୁ ଲୋକଲୋଚନକୁ ଆଣିବା ଅବସରରେ ତାହାର ରଚନା କାଳ ସଂପର୍କରେ ଦ୍ୱୈଧ ମତ ପ୍ରକାଶ କରିଥିଲେ– ''ରଚନାଟି ପଦ୍ୟନୁହେଁ କି ଗଦ୍ୟ ନୁହେଁ, ମାତ୍ର ପଦ୍ୟଗଦ୍ୟର ସୁନ୍ଦର ମିଶ୍ରଣ । ବୋଧହୁଏ ଏହା ଲେଖା ହେବା ବେଳକୁ ଦାଣ୍ଡିବୃତ୍ତର ଉଦ୍ଭବ ହୋଇନଥିଲା । ଏହି ବିବେଚନା ଗୃହୀତ ହେଲେ ତାହାଙ୍କୁ ନିରାପଦରେ ଖ୍ରୀ. ୧୩ଶ ବା ୧୪ଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ । କିନ୍ତୁ

ଅନ୍ୟ ନିଶ୍ଚୟାତ୍ମକ ପ୍ରମାଣ ଅଭାବରୁ ମୁଁ ସମୟ ନିର୍ଦ୍ଧାରଣ କରିପାରୁନାହିଁ ଓ ତାହାର ଭାଷା, ପଦସଂଯୋଜନା, ସଂରଚନା ଓ ଶବ୍ଦ ବ୍ୟବହାର ବିଚାରରୁ ମୁଁ ତାଙ୍କୁ ଖ୍ରୀ ୧୬ଶ ଶତାବ୍ଦୀ ପୂର୍ବରେ ଥୋଉଛି'' (ଅନୁବାଦ) । ପରେ ଡଃ କରୁଣାକର କରଙ୍କ ଦ୍ୱାରା ସଂପାଦିତ ହୋଇ ଖ୍ରୀ. ୧୯୬୫ରେ 'ରୁଦ୍ର ସୁଧାନିଧି' ପ୍ରକାଶ ପାଇଲା । ଡଃ କର ରୁଦ୍ର ସୁଧାନିଧିର ଭାଷାର ରୂପ ଆଲୋଚନା କରି ତାହା ସାରଳା ଦାସଙ୍କ ପରେ କିନ୍ତୁ ବଳରାମ ଦାସଙ୍କ ପୂର୍ବରୁ ରଚିତ ବୋଲି ନିର୍ଣ୍ଣୟ କରିଛନ୍ତି । ଏହି ଅସଂପୂର୍ଣ୍ଣ ଗ୍ରନ୍ଥଟିର ଅନେକାନେକ ରଚନା ବୈଚିତ୍ର୍ୟ ପାଠକକୁ ବିସ୍ମୟାଭିଭୂତ କରିପାରେ । ଦୁଃଖର କଥା ତାହାର ସଂପାଦନାରେ ବହୁ ଦୁର୍ବଳତା ରହିଯାଇଛି । କିନ୍ତୁ ଗ୍ରନ୍ଥର ରଚନାକାଳ ଏତେ ପ୍ରାଚୀନ ନୁହେଁ । ଏଥିରେ ମୁସଲମାନ ସାଧୁ 'ଦରବେଶଙ୍କ' କଥା ଅଛି ଓ 'ମୋଗଲ' ରାଜ୍ୟର ଉଲ୍ଲେଖ ଅଛି । ମୋଗଲ ଶବ୍ଦ ଖ୍ରୀ. ୧୬ଶ ଶତାବ୍ଦୀ ପୂର୍ବରୁ ନ ଥିଲା, ତେଣୁ ରୁଦ୍ର ସୁଧାନିଧି ଖ୍ରୀ. ୧୬ ଶତାବ୍ଦୀର ପରବର୍ତ୍ତୀ ହିଁ ହୋଇପାରେ । ରୁଦ୍ର ସୁଧାନିଧିରେ 'ଯୋଗ ରତ୍ନାକର' ନାମକ ଏକ ଗ୍ରନ୍ଥ ବିଷୟ ଲେଖାଅଛି । ସଂସ୍କୃତରେ କୌଣସି ଅଜ୍ଞାତ ଲେଖକଙ୍କର ଯୋଗ ରତ୍ନାକର ନାମଧେୟ ଏକ ଗ୍ରନ୍ଥ ମିଳେ ଓ ତାହାର ସମୟ ଖ୍ରୀ. ୧୮ଶ ଶତାବ୍ଦୀ ବୋଲି କେତେକ ଆଲୋଚକ ମତ ଦେଇଛନ୍ତି । କିନ୍ତୁ ରୁଦ୍ର ସୁଧାନିଧିର ଭାଷାର ରୂପ ବିଚାରରୁ ତାହାକୁ ଖ୍ରୀ. ୧୭ଶ ଶତାବ୍ଦୀର ପରବର୍ତ୍ତୀ ବୋଲି କହି ହେଉନାହିଁ । ବୋଧହୁଏ ରୁଦ୍ର ସୁଧାନିଧିକାର ଯେଉଁ ଯୋଗ ରତ୍ନାକର କଥା ଲେଖିଛନ୍ତି ତାହା ଆଧୁନିକ ଆଲୋଚକଙ୍କ ଦୃଷ୍ଟିରେ ପଡ଼ିଥିବା ଯୋଗ ରତ୍ନାକର ଅପେକ୍ଷା ପ୍ରାଚୀନତର ।

ପୂର୍ବାଲୋଚିତ ଗ୍ରନ୍ଥଗୁଡ଼ିକର ପ୍ରାଚୀନତା ଦାବି ଯୁକ୍ତିସମ୍ମତ ନୁହେଁ । କିନ୍ତୁ, ଅଧ୍ୟାପକମାନେ ଭ୍ରାନ୍ତମତର ଜନକ ହୋଇଥିବାରୁ ଭ୍ରାନ୍ତମତର ପ୍ରାଦୁର୍ଭାବ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟରୁ ଦୂରୀଭୂତ ହେଉନାହିଁ । କୌଣସି ଉପଲବ୍ଧ ଓଡ଼ିଆ ରଚନା ଖ୍ରୀ. ପଞ୍ଚଦଶ ଶତାବ୍ଦୀର ବା ତାହାର ପୂର୍ବର ହେବା ଜଣା ପଡୁନଥିବାରୁ ସେହି ଶତାବ୍ଦୀ ହିଁ ଓଡ଼ିଆ ସାହିତ୍ୟର ଉନ୍ମେଷ କାଳ ଓ ସିଦ୍ଧେଶ୍ୱର ଦାସ ଭଣିତିଯୁକ୍ତ ବିଚିତ୍ର ରାମାୟଣ ଓ ସାରଳା ଦାସ ଭଣିତିଯୁକ୍ତ 'ମହାଭାରତ' ଓ 'ଚଣ୍ଡୀପୁରାଣ' ଓଡ଼ିଆ ସାହିତ୍ୟର ଆଦି ସୃଷ୍ଟି । ତେଣୁ ସାରଳା ଦାସ ଯଥାର୍ଥରେ ଓଡ଼ିଆ ସାହିତ୍ୟର 'ଆଦିକବି' ।

ଦକ୍ଷିଣ ଓଡ଼ିଶା ଗଞ୍ଜାମ ଜିଲାରେ ପ୍ରଚାରିତ ସାରଳା ଦାସଙ୍କ ମହାଭାରତ ତାଳପତ୍ର ପୋଥିର ଆରମ୍ଭରେ ସାରଳା ଦାସଙ୍କ କବିତ୍ୱ ପ୍ରାପ୍ତି ନେଇ ଏକ ଅଜବ ଆଖ୍ୟାନ ସ୍ଥାନ ପାଇଛି । ଦୁଃଖର କଥା, ସାରଳା ମହାଭାରତର ସଂପାଦନା ବେଳେ ଗଞ୍ଜାମରୁ ପୋଥି ସଂଗ୍ରହ କରାଗଲା ନାହିଁ । ସାରଳା ଦାସଙ୍କ ସାହିତ୍ୟକୁ ସାଇତିବାରେ ଗଞ୍ଜାମର ଭୂମିକା ଗୁରୁତ୍ୱପୂର୍ଣ୍ଣ, ଅନ୍ୟଥା ତାଙ୍କର ବିଚିତ୍ର ରାମାୟଣ ଗଞ୍ଜାମରୁ ହିଁ ଆବିଷ୍କୃତ ହୋଇନଥାନ୍ତା ।

ସାରଳାଦାସଙ୍କ ଆଦିକବି ଆଖ୍ୟାର ସମର୍ଥନ ଗଞ୍ଜାମରୁ ପ୍ରାପ୍ତ ପୋଥିରେ ରହିଛି, ଯଦ୍ୟପି ତାହା ପ୍ରକ୍ଷିପ୍ତ ।

## ସାରଳାଦାସଙ୍କ କବିତ୍ୱପ୍ରାପ୍ତି ଆଖ୍ୟାନ

ଖ୍ରୀ. ୧୯୦୩ର ଜୁଲାଇ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଶ୍ୟାମସୁନ୍ଦର ରାଜଗୁରୁ 'ଶୂଦ୍ରମୁନି ଶାରଳାଦାସ' ଶୀର୍ଷକ ପ୍ରବନ୍ଧରେ ଦକ୍ଷିଣ ଓଡ଼ିଶାରେ ମିଳୁଥିବା କେତେକ ମହାଭାରତ ପୋଥିର ଆରମ୍ଭରେ ପ୍ରଦତ୍ତ ତାଙ୍କର କବିତ୍ୱ ପ୍ରାପ୍ତି ଆଖ୍ୟାନର ଉଦ୍ଧୃତି ଦେଇଛନ୍ତି । ମୁଁ ମଧ ଗଞ୍ଜାମର ଦୁଇଟି ତାଳପତ୍ର ପୋଥିରେ ଏହି ଅଂଶ ଥିବା ପାଠ କରିଅଛି । ଶ୍ରୀ ରାଜଗୁରୁ ''ଏଥିର ଭାଷା ଦେଖିଲେ ଶାରଳାଦାସଙ୍କର ବୋଲି ବୋଧହୁଏ ନାହିଁ'' ବୋଲି ମତ ଦେଇଛନ୍ତି । ତାହା ଯଥାର୍ଥ । କିନ୍ତୁ ମହାଭାରତର ଆରମ୍ଭ ଅଂଶକୁ ହଟାଇ ତା' ସ୍ଥାନରେ ଏହାକୁ ଲେଖାଯିବା ରହସ୍ୟ ଅନୁଦ୍‌ଘାଟିତ ରହିଛି । ଶ୍ରୀ ରାଜଗୁରୁ କହିଛନ୍ତି– ''ଶାରଳାଦାସ ଲେଖିଥାନ୍ତୁ ବା ଅନ୍ୟ କେହି ମିଶାଇଥାନ୍ତୁ, ଏହା ଦ୍ୱାରା ଶାରଳାଦାସଙ୍କ 'ଛନ୍ଦ' ଢଗଢମାଳିର ଅନୁକରଣ ବୋଲି ସ୍ପଷ୍ଟ ପ୍ରମାଣିତ ହେଉଅଛି ।'' ଏହି ମହାଭାରତର ଆରମ୍ଭ 'ବିଚିତ୍ର ରାମାୟଣ' ଓ 'ଚଣ୍ଡୀପୁରାଣ'ର ଆରମ୍ଭ ଠାରୁ ଭିନ୍ନ– 'ଜୟ ତୁ ନୃସିଂହ ପ୍ରଭୁ ଅନାଦି କାରଣ । ଭବ ଭୟ ବିନାଶନ ଭଗତ ରକ୍ଷଣ' । ସାରଳାଦାସ ତାଙ୍କ ଗ୍ରନ୍ଥାରମ୍ଭ ଗଣେଶ ବନ୍ଦନାରେ, ପ୍ରାୟ ଏକା ପ୍ରକାର ଭାଷାରେ, ଆରମ୍ଭ କରିଥାନ୍ତି । ଏହି ପୋଥିଟି ସାରଳାଦାସଙ୍କ ଲେଖା ଅବଶ୍ୟ ନୁହେଁ, ଜଗନ୍ନାଥ ଦାସଙ୍କ ଭାଗବତ (ଦଶମ ସ୍କନ୍ଦ) ଛାଞ୍ଚରେ ଏହା ଢଳା ହୋଇଛି ।

ଦେବୀ ସାରଳାଚଣ୍ଡୀ ସାରଳାଦାସ କିପରି କବି ହେଲେ ତାହାର ବୃତ୍ତାନ୍ତ ମହାଭାରତ ନିନ୍ଦକ ପଣ୍ଡିତମାନଙ୍କୁ ସ୍ୱପ୍ନରେ ଜଣାଇଥିବା କଥା ଏଥିରେ ରହିଛି–

ପଣ୍ଡିତ ଜନମାନେ ନିନ୍ଦିଲେ ଯହୁ ଗ୍ରନ୍ଥ ।
ସମସ୍ତ ପଣ୍ଡିତଙ୍କୁ ଆଜ୍ଞା ଦେଲେ ଜଗନ୍ନାଥ ।।
ନିଦ୍ରାରେ ସ୍ୱପନେ କହିଲେ ଦେବୀ ଯାହା ।
ଶୁଣ ହେ ପଣ୍ଡିତମାନେ କହିଦେବି ତାହା ।।
ଅନେକ ଭାରତ ଏଥି ହୋଇଛି ଭିଆଣ ।
କେତେ କେତେ ଭାରତ କରିଛି ପ୍ରମାଣ ।।
ସମସ୍ତ ଭାରତ କଥା ଆମ୍ଭେ ସିନା ଜାଣୁ ।
ନ ଜାଣି ପଣ୍ଡିତମାନେ କହ ଏଣୁତେଣୁ ।।
ମୁଁ ଯାହା କହଇ ତାହା କରଇ ଲେଖନ ।
ନ ଜାଣି କିମ୍ପା ହାସ କର ବୃଦ୍ଧଜନ ।।

କୈଳାସବାସୀ ସେ ଶାପରେ ଅବତାର ।
ମୂର୍ଖ ହୋଇ ଜନ୍ମ ହେଲା ଶୂଦ୍ରଘର ॥
ବିରଜାମଣ୍ଡଳ ଦେଶେ କୃଷି କରୁଥାଇ ।*
ଏକ ଦିନେ ପଦ ସେ ଟେକିଲା ଗୀତ ଗାଇ ॥
ପଛକୁ ଚାହିଁଲା ଆମ୍ଭେ ବୃଦ୍ଧ ସ୍ତିରୀ ରୂପ ।
ତେଣୁ କରି ଗୀତ ପଦ କଲାକ ସେ ଲୋପ ॥
କରେ ହଳବାଡ଼ି ଘେନି ଭୂମି ଚଷି ।
ପୁଣି ହିଂ ଡମାଳୀ ଗୀତ ଗାଇଲା ପଦେ ହସି ॥
ଅତି ବୃଦ୍ଧ ଅବସ୍ଥା ହୋଇଣ ଆମ୍ଭେ ଗଲୁ ।
ସେ କୃଷିକାର ପାଶେ ଆମ୍ଭେ ପ୍ରବେଶ ହୋଇଲୁ ॥
ଚାଲନ୍ତେ ଲଡ଼ବଡ଼ ଯେ ଛିଡ଼ା ଧୋତି କଟୀ ।
ସେ ଭୂମିର ହୁଡ଼ା ନ ପାରିଲୁ ଉଠି ॥
ଥରଥର ହୋଇ ଭୂମିରେ ପଡ଼ିବା ବେଳେ ।
କୃଷିକାର ଦେଖି ଧାଇଁଲା ତକ୍ଷଣେ ॥
ବେନି କରେ ମତେ କୋଳାଗ୍ରତ କରି ।
ସ୍ଥିର କରି ନେଇ ବସାଇଲା ଧରି ॥
କାହିଁର ମାତା ତୁ ଗୋ କେବଣ ଦେଶ ଯାଉ ।
ସଙ୍ଗେ କେହି ନାହିଁ ଏକା ଅଇଲୁ କାହୁଁ ॥
ମୁଁ ବୋଇଲି ଆରେ ବନ୍ଧୁବର୍ଗ ମୋର ନାହିଂ ।
ତେଣୁ ଏକା ହୋଇ ଅଇଲି ଯେ ମୁହିଂ ॥
ଯକ୍ଷପୁର ଶାସନେ ଅଟଇ ମୋର ବାସ ।
ବଣା ହୋଇ ଅଇଲି ନ ଜାଣି କଉଂ ଦେଶ ॥
ମୁଁ ବୃଦ୍ଧ ଗଙ୍ଗା ମୋତେ ପାରି କରିଦିଅ ।
ଆମ୍ଭର ଆୟୁଷ ଘେନି ଆପଣେ ବର୍ତ୍ତି ଥାଅ ॥

× × ×

ମୁହିଂ ବୃଦ୍ଧ ସ୍ତିରୀ ଯେ ଦେହ ସୁସ୍ଥ ନାହିଁ ।
ଢଳ ଶରୀରେ ଲାଗିଲେ ବ୍ୟାଧି ଯେ ବଳଇ ॥

---

* ସାରଳାଦାସ ତାଙ୍କ ଦେଶର ନାମ 'ଭୁବନ ଯାଯନଗ୍ର' ବୋଲି ଜଣାଇଛନ୍ତି । ଦକ୍ଷିଣ ଓଡ଼ିଶାର ଲେଖନକାର ଏହାର ପ୍ରକୃତ ଅର୍ଥ ବୁଝି ନ ପାରି ତାହା 'ବିରଜା ମଣ୍ଡଳ' ବୋଲି ଭ୍ରମବଶତଃ ଲେଖିଛନ୍ତି ।

ଏ ନଦୀ ପାର ମୋତେ ଦିଅ ହୋ କୃଷିକାର ।
ତ୍ୱରିତେ ଯିବି ମୁଁ ମୋର ଯକ୍ଷପୁର ।।
ଶୁଣି ମହାକାଳ ହଳ ଛାଡ଼ି ଦେଲା ।
ମୋତେ ନେଇଣ ସେ କାଖରେ ବସାଇଲା ।।
ବୃଦ୍ଧ ଗଙ୍ଗାତୀରେ ହୋଇଲା ପ୍ରବେଶ ।
ଦେଖିଣ ତାହାର ଯେ ଉଡ଼ିଲା ସାହସ ।।
ମନେ ବିଚାରିଲା ପ୍ରଖର ନଦୀଜଳ ।
କେମନ୍ତ କରି ଏଥି ପାଇବି ଥଳକୂଳ ।।
ଆମ୍ଭେ ବୋଇଲୁ ବାବୁରେ ବହନ ପାରି କର ।
ତ୍ୱରିତେ ଯିବି ମୁହିଂ ନୋହିବ ଉଚ୍ଛୁର ।
ଶୁଣି କରି ଜଳରେ ପଶିଲା ଧସାଇ ।
ବାମ କାଖ ଉପରେ ମୋତେ ଯେ ବସାଇ ।।
ଡାହାଣ କରେ ଯେ ଧରିଛି ହଳବାଡ଼ି ।
ସ୍ଥିର ସ୍ଥିର କରି ଚରଣ ଯେ ଛାଡ଼ି ।।
ଚରଣ ବୁଡ଼ି ଜାନୁ ବୁଡ଼ିଲା ତାର କଟୀ ।
କାଖର ପରୁ ପୁଣି ଆମ୍ଭଙ୍କୁ ଦେଲା ଟେକି ।।
ସ୍କନ୍ଧ ଉପରେ ନେଇ ବସାଇଲା ତ୍ୱରିତ ।
ପୁଣି ସ୍କନ୍ଧକୁ ଜଳ ଘୋଟିଲା ଅପ୍ରମିତ ।।

× × ×

ପୁଣି ମାୟାରେ ଜଳ ସ୍କନ୍ଧକୁ ଲାଗିଲା ।
ମସ୍ତକ ଉପରେ ବେଗ ନେଇ ବସାଇଲା ।।
ଆମ୍ଭେ ଜାଣିଲୁ ତାର ହୃଦର ବେଦନା ।
ବୋଇଲୁ ବାବୁ ଗୀତ ପଦେ ଗାଉକିନା ।।
ବଚନେ କହିଲା ମାଗୋ ମୂର୍ଖ ମୋର ମତି ।
ଅସକ୍ତାର ପଦ କେମନ୍ତେ କରିବି ଉକତି ।।
ଆମ୍ଭେ ବିଚାରିଲୁ ରେ ହୋଇଲା ତୋର ଜ୍ଞାନ ।
ଶ୍ରୀ ମହାଭାରତ ଏବେ କର ତୁ ଲେଖନ ।।
କୈଳାସବାସୀ ତୁ ମହାକାଳ ତୋର ନାମ ।
ମତ୍ତଗର୍ବେ ନିନ୍ଦିଲୁ ଆମ୍ଭର ପରାକ୍ରମ ।।

ତେଣୁ କରି ଶାପ ଦେଲେ ତୋତେ ହର ।
ହରିବୁ ଦୁଷ୍କୃତ ଶ୍ରୀ ମହାଭାରତ କର ।।
× × ×
ସାରଳାଚଣ୍ଡୀ ନାମ ଅଟଇ ଆମ୍ଭର ଯେଣୁ ।
ଶୂଦ୍ରମୁନି ସାରଳାଦାସ ବୋଲାଅ ଯେ ତେଣୁ ।।
ମନ ଚୈତନ୍ୟ ତାର ହୋଇଲା ଏକତ୍ର ।
ତେଣୁ କରି ସେ ରଚିଲା ଏହୁ ଯେ ଭାରତ ।।
ଏହା କହି ଦେବୀ ହୋଇଲେ ଅନ୍ତର୍ଧ୍ୟାନ ।
ନିଶିଶେଷେ ବ୍ରାହ୍ମଣେ ସାରିଲେ ନିତ୍ୟକର୍ମ ।
ସାରଳାଦାସକୁ ହକରାଇ ଆଣିଲେ ।
ମୁକ୍ତମଣ୍ଡପରେ ନେଇଣ ବସାଇଲେ ।।
ଶିରେ ଶାଢ଼ି ବାନ୍ଧି ବିପ୍ରେ କଲେକ କଲ୍ୟାଣ ।
ଶ୍ରୀ ମହାଭାରତ ଦାସେ କରିବା ବଖାଣ ।।
ବିପ୍ରଙ୍କ ବଚନେ ଦାସେ କ[ହି]ଲେ ଯେ ଭାରତ ।
ଅଠର ଖଣ୍ଡ ଭାରତ କହିଲେ ଆଦିଅନ୍ତ ।।
ସେଠାରୁ ଭାରତ ଗ୍ରନ୍ଥ ହୋଇଲା ପ୍ରଶସ୍ତ
ଶ୍ରୀ ମହାଭାରତ ଏ ଅଟଇ ପ୍ରାକୃତ ।। (ଚିକିଟି ପୋଥି)

ଏହାର ଭାଷା ତ ସାରଳାଦାସଙ୍କ ସମୟର ନୁହେଁ, ରଚନାଶୈଳୀ ମଧ୍ୟ ଦାଣ୍ଡୀ ନୁହେଁ । ମହାଭାରତ ଗ୍ରନ୍ଥ ରଚନା ସଂପୂର୍ଣ୍ଣ ହେବାର ବହୁ କାଳ ପରେ ପ୍ରାକୃତ ଗ୍ରନ୍ଥଟି ପ୍ରତି ପଣ୍ଡିତମାନଙ୍କର ତାଚ୍ଛଲ୍ୟ ଭାବର ଅପନୋଦନ ଉଦ୍ଦେଶ୍ୟରେ କୌଣସି ପ୍ରାକୃତ ଭକ୍ତ ଏହାର ସଂଯୋଗ କରିଛି ନିଶ୍ଚୟ । ଦୈବୀପ୍ରସାଦ ଦାବିଗ୍ରନ୍ଥର ଲୋକପ୍ରିୟତା ବୃଦ୍ଧିରେ କିପରି ସହାୟକ ହୋଇଥାଏ ତାହା ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ହେବ । ଆଖ୍ୟାନର ଦେବୀ ସାରଳାଚଣ୍ଡୀ ସ୍ୱୟଂ ବାଗ୍‌ଦେବୀ । କୃଷକ ଢମାଳି ଗୀତ ଗାଉଥିଲା । ବାଗ୍‌ଦେବୀ ତାକୁ ମହାଭାରତ ଲେଖିବାକୁ ପ୍ରେରଣା ଦେବାରୁ ସେ ଭାବିଲା ଅସକ୍ରାର ପଦ (ଅର୍ଥାତ୍ ଅସଂସ୍କୃତ ପ୍ରାକୃତଭାଷା) ନେଇ ସେ ଗ୍ରନ୍ଥ ରଚିବ କିପରି ? କୃଷକ ଶୂଦ୍ରର ଦେବୀଙ୍କୁ ନଦୀର ଗୋଟିଏ କୂଳରୁ ଅନ୍ୟ କୂଳକୁ (ଅର୍ଥାତ୍ ସଂସ୍କୃତ ଭାଷାର କୂଳରୁ ପ୍ରାକୃତ ଭାଷାର କୂଳକୁ) ପାର କରାଇବା ପାଇଁ ଏକାନ୍ତ ନିଷ୍ଠାପର ଉଦ୍ୟମ ଦେଖି ବାଗ୍‌ଦେବୀ ପ୍ରସନ୍ନ ହୋଇ କହିଲେ– "ଆମ୍ଭେ ବିଚାରିଲୁ ରେ ହୋଇଲା ତୋର ଜ୍ଞାନ" ଆଖ୍ୟାନଟି ସଂକେତ ଦେଉଛି ଯେ ସାରଳାଦାସଙ୍କ ପୂର୍ବରୁ ପ୍ରାକୃତ ଭାଷାରେ କିଛି ଢମାଳି ଗୀତ ହିଁ ଥିଲା । ଢମାଳିଗୀତର ଅର୍ଥ କ୍ଷୁଦ୍ରକ୍ଷୁଦ୍ର ଗାଉଁଲି ଗୀତ, ହଳିଆ ଗୀତ ଶ୍ରେଣୀର । ଓଡ଼ିଆ

ଅଭିଧାନଗୁଡ଼ିକରେ ଢମାଳିର ଅର୍ଥ ଦିଆଯାଇଥାଏ 'କବିତ୍ୱହୀନ ଗାଉଁଲି ଗୀତ' ଓ ତାହା ଦେଶଜ ଶବ୍ଦ ବୋଲି କଥିତ । ପ୍ରାଚୀନ ବଙ୍ଗଭାଷାରେ 'ଧାମାଳ' ନାମକ ରଚନାମାନ ଥିଲା ଯାହା ଚୁଗୁଲି ଓ ପରିହାସବ୍ୟଞ୍ଜକ ଗୀତ ବୋଲି କୁହାଯାଉଛି । ଉପେନ୍ଦ୍ର ଭଞ୍ଜ 'ଢମାଳି' ଶବ୍ଦକୁ ପରିହାସାତ୍ମକ ଉକ୍ତି ଭାବରେ ଗ୍ରହଣ କରିଥିବା ମନେହୁଏ । ସେ ଲାବଣ୍ୟବତୀରେ ଲେଖିଛନ୍ତି– ''ଢମାଳି ନୁହେଁ ଏ ସତ'' ।

ସାରଳାଦାସଙ୍କ ପୂର୍ବରୁ ଓଡ଼ିଆ (ପ୍ରାକୃତ) ଭାଷାରେ କେବଳ କେତେକ କ୍ଷୁଦ୍ରକ୍ଷୁଦ୍ର ଗ୍ରାମ୍ୟ ଗୀତ ହିଁ ଥିଲା । ଏହି କଥାଟି ସାରଳାଦାସଙ୍କ ପ୍ରଶଂସକ କୌଣସି ଲୋକର ବିଚାର ଥିଲା । ସେ ସାରଳା-ମହାଭାରତର ଆଦର ପଣ୍ଡିତ ସମାଜରେ ନଥିବା ଦେଖି ପ୍ରତିକାର କଳ୍ପେ ଗ୍ରନ୍ଥର ଆରମ୍ଭରେ ଏହି ଆଖ୍ୟାନକୁ ଯୋଗ କରିଛି । ଏହି ଆଖ୍ୟାନ ସୂଚାଉଛି ଯେ ସାରଳାଦାସଙ୍କ 'ଆଦିକବି' ଆଖ୍ୟାର ଯଥାର୍ଥତା ଅତୀତରେ ମଧ୍ୟ ଅନୁଭୂତ ହେଉଥିଲା ।

—

# ପଞ୍ଚମ ଅଧ୍ୟାୟ

## ସାରଳାଦାସ : ଜାତିସ୍ମରଣ ଓ ଦୈବୀପ୍ରସାଦ

ପୂର୍ବରୁ ସୂଚାଇଛି ଯେ ସାରଳାଦାସଙ୍କର ମୁଖ୍ୟ ତିନୋଟି କୃତି (୧. ବିଚିତ୍ର ରାମାୟଣ, ୨. ମହାଭାରତ ଓ ୩. ଚଣ୍ଡୀପୁରାଣ) ମଧ୍ୟରୁ ବିଚିତ୍ର ରାମାୟଣଟିକୁ ସେ ସିଦ୍ଧେଶ୍ୱର ଦାସ ନାମରେ ଲେଖିଥିଲେ । ବିଚିତ୍ର ରାମାୟଣର ପିତୃତ୍ୱ ଓ ରଚନା କାଳର ନିର୍ଣ୍ଣୟ ସଂପର୍କରେ ବିଶଦ ଆଲୋଚନା ଅଷ୍ଟମ ଅଧ୍ୟାୟରେ କରାଯିବ । କବି ତାଙ୍କର ଏହି ପ୍ରାଥମିକ ରଚନାଟିରେ ତାଙ୍କର ପୂର୍ବଜନ୍ମର ବିବରଣ ଦେଇନାହାନ୍ତି କି କୌଣସି ଦେବଦେବୀ ତାଙ୍କ ପ୍ରତି ପ୍ରସନ୍ନ ହୋଇ କବିତ୍ୱ ଲାଭ ବର ଦେଇଥିବା କଥା ଲେଖିନାହାନ୍ତି । ଏ ପ୍ରକାର ଦ୍ୱିବିଧ ପରିକଳ୍ପନା ପରବର୍ତ୍ତୀ ସମୟରେ ତାଙ୍କ ମନରେ ଉଦୟ ହୋଇଥିଲା ଓ ସେ ତାହାକୁ ତାଙ୍କର ମହାଭାରତ ଓ ଚଣ୍ଡୀପୁରାଣରେ ସ୍ଥାନ ଦେଇଛନ୍ତି । ଆଲୋଚକମାନେ ପ୍ରାୟ ସମସ୍ତେ ଜାତିସ୍ମରଣ ଓ ଦୈବୀପ୍ରସାଦକୁ ବାସ୍ତବ ଘଟନା ବୋଲି ଗ୍ରହଣ କରି ନେଇଥିବାରୁ ଜାତିସ୍ମରଣ ଓ ଦେବୀପ୍ରସାଦ ପରିକଳ୍ପନାର ପ୍ରୟୋଜନ କବିଙ୍କ ପାଇଁ କାହିଁକି ଥିଲା ସେଥିପ୍ରତି ଦୃଷ୍ଟି ଦେଇନାହାନ୍ତି । ଦେଖାଯାଉଛି, ମହାଭାରତରେ ବର୍ଣ୍ଣିତ ଜାତିସ୍ମରଣ ବିବରଣ ଓ ଚଣ୍ଡୀପୁରାଣରେ ବର୍ଣ୍ଣିତ ବିବରଣ ମଧ୍ୟରେ ଉଲ୍ଲେଖନୀୟ ତାରତମ୍ୟ ରହିଛି । ଏହି ତାରତମ୍ୟର ତାତ୍ପର୍ଯ୍ୟ ବୁଝିବା ପାଇଁ ସାରଳାଦାସଙ୍କର ରଚନା ଗୁଡ଼ିକର ଯେଉଁ ଅତୁଳନୀୟତା ରହିଛି ତାହାର ଅବବୋଧ ଆବଶ୍ୟକ ।

ପୂର୍ବ ଅଧ୍ୟାୟରେ ଦକ୍ଷିଣ ଓଡ଼ିଶାରେ ମିଳୁଥିବା ମହାଭାରତ ପୋଥିରେ ସାରଳାଦାସ କିପରି ସାରଳାଚଣ୍ଡୀଙ୍କ ଅନୁଗ୍ରହ ପାଇଥିଲେ ଓ ମହାଭାରତ ରଚନା କରିଥିଲେ ତାହା ବର୍ଣ୍ଣିତ ହୋଇଥିବା ଆଲୋଚିତ ହୋଇଛି ଓ ସେ ପୂର୍ବଜନ୍ମରେ କୈଳାସରେ 'ମହାକାଳ' ଥିଲେ ଓ ଶିବଙ୍କ ଅଭିଶାପ ପାଇ ଶୂଦ୍ର କୃଷକ ହୋଇ ଜନ୍ମଲାଭ କରିଥିବା କଥା ମଧ୍ୟ ଲେଖାଅଛି । ଦକ୍ଷିଣ ଓଡ଼ିଶାର ମହାଭାରତର ସେହି ଅଂଶ ନିଜେ ସାରଳାଦାସ ଲେଖିନାହାନ୍ତି ବୋଲି ଦେଖାଇ ଦିଆଯାଇଛି । ତେଣୁ ସାରଳାଦାସଙ୍କ ଜାତିସ୍ମରଣ ଓ ଦୈବୀପ୍ରସାଦ ଲାଭ ଆଲୋଚନା ପ୍ରସଙ୍ଗରେ ତାହାକୁ ବିଚାରକୁ ନିଆଯାଉନାହିଁ, ଯଦିବା ସାରଳାଦାସଙ୍କ କୃତିର ପ୍ରଶଂସକ କି ଦୃଷ୍ଟିରେ ତାଙ୍କୁ ଦେଖୁଥିଲେ ତାହାର ଚିତ୍ର ସେଥିରେ ଫୁଟିଛି ।

## ମୌଳିକ ଓଡ଼ିଆ ପୁରାଣ

ଅଣଓଡ଼ିଆ ପଣ୍ଡିତଙ୍କ ସହିତ ଓଡ଼ିଆ ପଣ୍ଡିତମାନେ ପୁରାଣ ଆଦି ବିଷୟରେ ଆଲୋଚନା କଲାବେଳେ ଏକ ବିଚିତ୍ର ଅବସ୍ଥା ଅନେକ ବେଳେ ଉପୁଜୁଥିବା କଥା ଅନେକେ ଅନୁଭବ କରିଥିବେ । ଥରେ ତେଲୁଗୁ ସାହିତ୍ୟିକ ସୁପଣ୍ଡିତ ସ୍ୱର୍ଗତ ପୁରୀପଣ୍ଡା ଅପ୍ପଲସ୍ୱାମୀ ଅଭିଯୋଗ ବାଢ଼ିବା ପରି ମୋତେ କହିଥିଲେ ଯେ ଓଡ଼ିଆ ଲୋକଙ୍କ ସହିତ ଅନ୍ୟଭାଷାଭାଷୀମାନେ ମହାଭାରତ ପୁରାଣାଦି ପ୍ରସଙ୍ଗ ଚର୍ଚ୍ଚା କରିବା ଦୁଷ୍କର । କାରଣଟି ହେଲା, ଓଡ଼ିଆମାନେ ସାରଳାଦାସଙ୍କ ମହାଭାରତାଦି ଗ୍ରନ୍ଥରେ ବର୍ଣ୍ଣିତ ଚରିତ ହିଁ ଜାଣନ୍ତି ଓ ସଂସ୍କୃତ ଗ୍ରନ୍ଥରେ ବର୍ଣ୍ଣିତ ଓ ଭାରତରେ ସର୍ବତ୍ର ପ୍ରଚାରିତ ଚରିତ ସହିତ ତାହାର ମେଳ କମ୍, ଅମେଳ ଅଧିକ । ଅଭିଯୋଗଟି ନିରାଧାର ନୁହେଁ । କୃଷ୍ଣସିଂହ ସଂସ୍କୃତ ମହାଭାରତକୁ ଓଡ଼ିଆରେ ଅନୁବାଦ (ଖ୍ରୀ. ୧୭୮୨-୮୮) କରିବା ପର୍ଯ୍ୟନ୍ତ ଓଡ଼ିଶାରେ ସାରଳାଦାସଙ୍କ ମହାଭାରତର ପ୍ରତିପତ୍ତି ଅପ୍ରତିପକ୍ଷ ଥିଲା ଓ ଓଡ଼ିଆ ସାହିତ୍ୟରେ ପୌରାଣିକ ଚରିତ୍ରର ଚିତ୍ରଣ ବେଳେ ସାରାଳାଦାସଙ୍କ ବର୍ଣ୍ଣିତ ଚରିତ ବିଶେଷତଃ ଗୃହୀତ ହେଉଥିଲା । ପ୍ରାଚୀନ ଓଡ଼ିଆ କବିଙ୍କ ମଧ୍ୟରୁ ସାରଳାଦାସଙ୍କ ଅନୁକାରୀ ବହୁତ । ଏପରିକି ଉପେନ୍ଦ୍ରଙ୍କ ପରି ସଂସ୍କୃତଜ୍ଞ କବିମାନେ ମଧ୍ୟ ଚରିତ ବର୍ଣ୍ଣନା ବେଳକୁ ବ୍ୟାସଙ୍କୁ ଛାଡ଼ି ସାରଳାଦାସଙ୍କ ଉପରେ ନିର୍ଭର କରୁଥିଲେ (ଯଥା– ସୁଭଦ୍ରା ପରିଣୟ) । ଜନୈକ ବିପ୍ର ଜଗନ୍ନାଥ ଦାସ (ଯେ ଭାଗବତକାର ନୁହନ୍ତି) ଭାରତ ସୂତ୍ରୋପାଖ୍ୟାନ ନାମରେ ସାରଳାଦାସଙ୍କ ଚରିତକୁ ଅନୁସରଣ କରି ସଂକ୍ଷିପ୍ତ ନବାକ୍ଷରୀ ମହାଭାରତ ରଚନା କରିଥିବା କଥା ଓ ଗୋପୀଦାସ 'ଅଷ୍ଟାଦଶ ପର୍ବ' ନାମରେ ସାରଳା-ମହାଭାରତର କ୍ଷୁଦ୍ର ରୂପ ପ୍ରସ୍ତୁତ କରିଥିବା କଥା ପରେ ସୂଚିତ ହେବ । ଏସବୁ ସାରଳାଦାସଙ୍କ ରଚନାର ପ୍ରଭାବ । ସ୍ପଷ୍ଟ ମନେ ହେଉଛି, ସାମାଜିକ ଇତିହ ବା ମିଥ୍ (myth) କ୍ଷେତ୍ରରେ ସଂସ୍କୃତ ଗ୍ରନ୍ଥଗୁଡ଼ିକ ଭାରତୀୟ ଉପମହାଦେଶର ସାଂସ୍କୃତିକ ଐକ୍ୟଭାବର ତଥା ତଜ୍ଜନିତ ଉପମହାଦେଶୀୟ ଜାତୀୟବାଦ (nationalism)ର ପୋଷକତା କରିଆସୁଥିବାବେଳେ ସାରଳାଦାସ ଓଡ଼ିଆଭାଷୀ ଅଞ୍ଚଳର ସ୍ୱତନ୍ତ୍ରତା-ଭାବକୁ ପ୍ରୋତ୍ସାହ ଦେବା ଭଳି ସ୍ୱତନ୍ତ୍ର ଇତିହ ସବୁ ଉଦ୍ଭାବନ କରିଥିଲେ । ମହାରାଜା କପିଳେନ୍ଦ୍ର (ଖ୍ରୀ. ୧୪୩୫-୬୭)ଙ୍କର ଦୃପ୍ତ ଧ୍ୱଜା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ଉଡୁଥିବା ସମୟରେ ସାରଳାଦାସ ଓଡ଼ିଆଭାଷୀଙ୍କୁ ଅଲଗା କରି ସ୍ୱତନ୍ତ୍ର ଇତିହ ଯୋଗାଇବାର ରାଜନୀତିକ ତାତ୍ପର୍ଯ୍ୟ ସ୍ୱତନ୍ତ୍ର ଭାବରେ ଆଲୋଚ୍ୟ । ଜଣେ ମଣିଷର ଅନ୍ୟ ଜଣକ ସହିତ ଏକତ୍ୱ ବୋଧର ଅନେକ ବନ୍ଧନରଜ୍ଜୁ ମଧ୍ୟରୁ ଭାଷାର ରଜ୍ଜୁ ଗୋଟିଏ, ଇତିହର ରଜ୍ଜୁ ତଦପେକ୍ଷା କମ୍ ଶକ୍ତିଶାଳୀ ନୁହେଁ । ଜାତୀୟବାଦ ରୂପକ ମହାଦ୍ରୁମର ଚେର ଇତିହରୁ ସାର ନେଇ ପୁଷ୍ଟିଲାଭ କରିଥାଏ । ସୃଷ୍ଟି ମାତ୍ରେ– ତାହା ଭୂତାତ୍ମକ ହେଉ କି ଭାବାତ୍ମକ ହେଉ– ଅପୂର୍ବତା-ଗୁଣ

ଯୋଗୁଁ ସାର୍ଥକ ହୁଏ । ସାହିତ୍ୟ ପାଇଁ ତ ଅପୂର୍ବତା– ନୀଳକଣ୍ଠଙ୍କ ଭାଷାର ‘ଚମକ’– ଅପରିହାର୍ଯ୍ୟ । ସାରଳାଦାସଙ୍କ ପୁରାଣାଦି ସୃଷ୍ଟିର ମୂଲ୍ୟାଙ୍କନ, ପ୍ରାୟଶଃ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଦ୍ୱାରା ଉଦ୍‌ଘାଟିତ ସରଣିରେ, ସଂସ୍କୃତ ଭାଷାର ନିକିତିରେ ତଉଲି ଅପୂର୍ବତା ଦିଗରୁ ବିଶେଷ କିଛି ହେଉଛି, ଜାତୀୟବାଦ ଦିଗରୁ ମଧ୍ୟ ହେବା ଉଚିତ । ସଂସ୍କୃତ ପୁରାଣାଦି ସହିତ ତାହାର ମେଳ ନଥିବାରୁ ‘‘ଘଟନାର ଅସାଦୃଶ୍ୟ ସହ ଅପ୍ରାକୃତତ୍ୱ ଓ ଅଦ୍ଭୁତତ୍ୱ ଅପିଚ ମଧ୍ୟେ ମଧ୍ୟେ ଅସଂଗତି ମଧ୍ୟ ସ୍ପଷ୍ଟ ପ୍ରତୀୟମାନ ହୁଏ’’ ବୋଲି ବିଚାର କଲେ ବିଚାରର ମାନଦଣ୍ଡ ସାରଳାଦାସଙ୍କ ରଚନା ପାଇଁ ଅନୁପଯୋଗୀ ହେବ । ସଂସ୍କୃତ ଆଂଚଳିକ ଭାଷା କେବେ ବି ନଥିଲା, କିନ୍ତୁ ଓଡ଼ିଆ ଏକ ଆଂଚଳିକ ଭାଷା । ଆଂଚଳିକ ଭାଷାର ଅଭିବ୍ୟକ୍ତି ଆଂଚଳିକ ହେବା ସ୍ୱାଭାବିକ । ସାରଳାଦାସ ତାଙ୍କ ରଚନାଗୁଡ଼ିକରେ ନୂଆ ଇତିହ ଯୋଗାଇ ଓଡ଼ିଆକୁ ସଂସ୍କୃତଠାରୁ ପୃଥକ୍ ଭୂମିକା ଯୋଗାଇଥିଲେ ।

ସାରଳାଦାସ ଜଣେ ମୌଳିକ ଓଡ଼ିଆ ପୁରାଣକର୍ତ୍ତା । ଓଡ଼ିଶାରେ ‘ପୁରାଣ’ ଶବ୍ଦ ସଂସ୍କୃତର ପୁରାଣ– ତାହା ମହାପୁରାଣ କି ଉପପୁରାଣ ଯାହା ବା ହେଉ– ଅର୍ଥରେ ତ ଚଳେ, ଅଧିକନ୍ତୁ ମହାଭାରତ, ରାମାୟଣ, ହରିବଂଶ ଆଦି ଦେବଦେବୀଙ୍କ ଚରିତ ସଂବଳିତ ପୁରାତନ କଥା ବର୍ଣ୍ଣନା କରୁଥିବା ଗ୍ରନ୍ଥ ଅର୍ଥରେ ମଧ୍ୟ ଚଳେ । ତେଣୁ ସଂସ୍କୃତ ପୁରାଣର ପରିଭାଷା, ତାହାର ଲକ୍ଷଣ ଚର୍ଚ୍ଚା (ପଞ୍ଚଲକ୍ଷଣ, ଦଶଲକ୍ଷଣ ଆଦି), ସଂଖ୍ୟା (ଅଷ୍ଟାଦଶ ମହାପୁରାଣ, ଅଷ୍ଟାଦଶ ଉପପୁରାଣ) ଓ ସେସବୁର ଚିହ୍ନଟ ଓଡ଼ିଆ ମୌଳିକ ପୁରାଣ ପାଇଁ କେବଳ ପୋଥିବାଇଗଣ । ଓଡ଼ିଆ ପୁରାଣର ଲକ୍ଷଣ ଚର୍ଚ୍ଚା ହୋଇନାହିଁ, କିନ୍ତୁ ସେ ସବୁକୁ ଅଧ୍ୟୟନ କଲେ ଜଣାଯିବ ଯେ ମୌଳିକ ଓଡ଼ିଆ ପୁରାଣ ସୃଷ୍ଟିର ପ୍ରବର୍ତ୍ତକ ସାରଳାଦାସ ଓଡ଼ିଆ ପୁରାଣର ଲକ୍ଷଣକୁ ସଂସ୍କୃତ ପୁରାଣର ଲକ୍ଷଣ ମଧ୍ୟରେ ସୀମାବଦ୍ଧ କରି ରଖିନାହାନ୍ତି ।

ପ୍ରଥମ କଥା ହେଲା, ରାମାୟଣ, ମହାଭାରତ, ହରିବଂଶ ଆଦି ଓଡ଼ିଶାରେ ଇତିହାସ ବା ମହାକାବ୍ୟ ନ ବୋଲାଇ ପୁରାଣ ବୋଲାଇଥାଏ, କିନ୍ତୁ ସଂସ୍କୃତରେ ଏ ସବୁ ପୁରାଣ ନୁହେଁ । ଏହି ବିଚାରର ସୂତ୍ରପାତ କଲେ ସିଦ୍ଧେଶ୍ୱର ଦାସ । ସେ ‘ବିଚିତ୍ର ରାମାୟଣ’କୁ ପୁରାଣ ଆଖ୍ୟା ଦେଇଛନ୍ତି । ଗୁରୁ ବାଲ୍ମୀକିଙ୍କୁ ଲବକୁଶଙ୍କ ତୁଣ୍ଡରେ କୁହାଇଛନ୍ତି–

ତୁମ୍ଭର ପ୍ରସାଦେ ଗ୍ୟାନବନ୍ତ ହୋଇଲୁ ।<br>
ରାମାୟେଣ ପୁରାଣ ଗର୍ଭଗତ କଲୁ ।। (ପୃ. ୬୪, ବିଚିତ୍ର ରାମାୟଣ)

ସାରଳାଦାସ ମହାଭାରତକୁ ମଧ୍ୟ ପୁରାଣ ଆଖ୍ୟା ଦେଇଛନ୍ତି (ମଧ୍ୟ ୭୮୩, ୮୨୯; ୨ ବନ ୪୩୧) । ସେ ଲେଖିଛନ୍ତି ଯେ ଦେବୀ ଶୂନ୍ୟରୁ ଏକ ଗ୍ରନ୍ଥ ଆଣି ମହାଭାରତ ଲେଖିବା ସକାଶ ସାରଳାଦାସଙ୍କୁ ଦେଇଥିଲେ, ସେହି ଗ୍ରନ୍ଥଟି ଥିଲା ଏକ ସିଦ୍ଧ ପୁରାଣ–

''ଆକାଶୁ ଆଣି ଦିଲେ ମୋତେ ସିଦ୍ଧ ପୁରାଣ ପୋଥି'' (୨ ବନ ୪୩୧) ତଦନୁସାରେ ସେ ଲେଖିଥିବା ମହାଭାରତ ଥିଲା ପୁରାଣ—

ଶ୍ରୀ ମହାଭାରତ ଯେ ଅମୃତ ରସ କଥା ।
ସଂସାର ବୋଧନେ ଯେ ପୁରାଣ ସଂହିତା ।। (୨ବନ ୩୫୦)
ମୁଂ କାହିଂ କହିଦି ପୁରାଣ ଅକଳିତ ଶ୍ରୀ ମହାଭାରତ ।। (ଉଦ୍‌ଯୋଗ ୨୭)
ଶୂଦ୍ରମୁନି ସାରୋଳଦାସ କହନ୍ତି ଭାରଥ ପୁରାଣେ ।। (ଉଦ୍‌ଯୋଗ ୨୦୮)

କୃଷ୍ଣଙ୍କ ଚରିତ ବର୍ଣ୍ଣନା କରୁଥିବା ହେତୁ ସାରଳାଦାସଙ୍କ ବିଚାରରେ ମହାଭାରତ ହେଉଛି ବିଷ୍ଣୁପୁରାଣ (ମଧ୍ୟ ୩୨୯, ୬୪୯, ୮୨୮; ବିରାଟ ୧୦୬; ୧୨୯; ଉଦ୍‌ଯୋଗ ୨୪୨, ଅଶ୍ୱମେଧ ୫୬) । ମହାଭାରତର ଶେଷକୁ କବି ଲେଖିଛନ୍ତି—

''ଶ୍ରୀ ମହାଭାରତ ଯେ ବିଷ୍ଣୁର ପୁରାଣ'' (ସ୍ୱର୍ଗାରୋହଣ ୨୩୭)

ସେ ଯେ ମହାଭାରତକୁ ହିଁ ବିଷ୍ଣୁପୁରାଣ ବୋଲି କହୁଛନ୍ତି ତାହା ଭୀଷ୍ମପର୍ବର ନିମ୍ନ ପଦରୁ ସ୍ପଷ୍ଟ ହୋଇପଡ଼େ— (କିନ୍ତୁ ଆଦିପର୍ବ ଆରମ୍ଭ ବେଳକୁ ତାଙ୍କର ଏ ବିଚାର ନଥିଲା)

ବଦୟନ୍ତି ଅଗସ୍ତି ଭୀଷ୍ମପର୍ବର ଯେ କଥା ।
ବିଷ୍ଣୁପୁରାଣର ମଧ୍ୟେ ଅଷ୍ଟାଦଶ ପର୍ବର ବାରତା ।। (ଭୀଷ୍ମ ୩୪୬)

ତାଙ୍କର ବିଷ୍ଣୁପୁରାଣ ଶୂନ୍ୟ ଆକାଶର, ଦେବର୍ଷିମାନଙ୍କ ଦ୍ୱାରା ଅଧୀତ ହେଉଥିଲା । ବ୍ୟାସଦେବ ଅଚେତ ଅବସ୍ଥାରେ ତାହାକୁ ପକାଇଦେଲେ । ସେହି ବିଷ୍ଣୁପୁରାଣ (ଅର୍ଥାତ୍ ମହାଭାରତ) ହେଉଛି ଶ୍ରେଷ୍ଠ ପୁରାଣ ।

ଦେବରଷିମାନେ ଯେ ପୁରାଣ ପଢୁଥିଲେ ଆକାଶେ ।
ଅସାକ୍ଷମ ହୋଇଣ ବିଷ୍ଣୁ ପୁରାଣ ପୋଥି ପକାଇଲେ ବେଦବ୍ୟାସେ ।।
ସେ ବିଷ୍ଣୁ ପୁରାଣ ରାଜା, ମାର୍କଣ୍ଡ ପୁରାଣ ପାତର ।
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।। (ଗଦା ୬୮)

ସାରଳା ଦାସ ବେଦକୁ ମଧ୍ୟ ପୁରାଣ ନାମରେ ଅଭିହିତ କରିଛନ୍ତି । ଯେତେବେଳେ କୃଷ୍ଣ ଅନ୍ତିମ କାଳରେ କାଦମ୍ବରୀ ପାନରେ ମତ୍ତ ହୋଇ କ୍ରୀଡ଼ାରଙ୍ଗରେ ଶିଆଳି ଲତା ତଳେ ବସିଥିଲେ ବ୍ରହ୍ମା ସେଠାକୁ ଆସି ଜଣାଇଦେଲେ ଯେ କୃଷ୍ଣ ପରଦାରାରତ ଥିବା ହେତୁ ବେଦରେ ସ୍ଥାନ ପାଇନାହାନ୍ତି ।

ତହିଂ ଆସ ବେଦବର ହୋଇଲେ ପ୍ରବେଶ ।
ଚାରି ମୁଖେ ଚାରି ବେଦ କରନ୍ତି ଅଭ୍ୟାସ ।।
ହରିଂକି ବୋଇଲେ ଧାତା କୋହବାକ୍ୟ ବାଣୀ ।
ପୁରାଣ ପୁସ୍ତକ ଫେଡ଼ି କହିଲେ ପୁଣି ପୁଣି ।।
କଲୁ ତୁହି ପରଦାରା ଲୋଭ କି କରି ଭୋଳେ ।
ସେ ପୁରାଣ ପୁସ୍ତକୁଂ କୃଷ୍ଣ ତୁ ବାହାର ହେଲୁ ବଳେ ।। (୨ ବନ ୧୭୭)

ସାରଳାଦାସ ପୁରାଣର ଏପରି ଯେଉଁ ପ୍ରସାରିତ ଅର୍ଥ ଦେଲେ ତାହାକୁ ଓଡ଼ିଶାର ପରବର୍ତ୍ତୀ ଓଡ଼ିଆ କବିମାନେ ମଧ୍ୟ ଗ୍ରହଣ କରିଛନ୍ତି । ପୀତାମ୍ବର ଦାସ (ଖ୍ରୀ. ୧୮ଶ. ଶତାବ୍ଦୀ) ଓ ଗୌରାଙ୍ଗ ଦାସ (ଖ୍ରୀ. ୧୯ଶ. ଶତାବ୍ଦୀ) ଅଷ୍ଟାଦଶ ପୁରାଣ ବାହାରେ 'ପଞ୍ଚପୁରାଣ'ର ତାଲିକା ଦେଇ ତନ୍ମଧ୍ୟରେ ରାମାୟଣ, ମହାଭାରତ ଓ ହରିବଂଶକୁ ଗଣିଛନ୍ତି । ଏହି ଶ୍ରେଣୀୟ ସବୁ ଗ୍ରନ୍ଥର ଆଲୋଚନା (ପାଠ ଓ ବ୍ୟାଖ୍ୟା) ହେଉଥିବା ସ୍ଥାନ ପୁରାଣ ସଭା । ପୁରାଣସଭାରେ ଯେଉଁ ପଣ୍ଡିତ (ପଣ୍ଡା) ରାମାୟଣାଦି ପାରାୟଣ କରନ୍ତି ଓ ବୁଝାନ୍ତି ସେ 'ପୁରାଣପଣ୍ଡା' ନାମରେ ପରିଚିତ ।

ଦ୍ୱିତୀୟ କଥା ହେଲା, ଓଡ଼ିଆ ମୌଳିକ ପୁରାଣରେ କୌଣସି ଦେବଦେବୀଙ୍କ ମାହାତ୍ମ୍ୟ ପ୍ରାଚୀନ କାଳରେ ଘଟିଥିବା ଚରିତ ରୂପରେ ପ୍ରଖ୍ୟାପିତ ହୋଇଥାଏ । ସାରଳାଦାସଙ୍କ ଭାଷାରେ ପୂର୍ବୋଦ୍ଧୃତ 'ଅମୃତ ରସ କଥା' (୨ ବନ ୩୫୦) ଅମୃତ ଅର୍ଥାତ୍ ଦେବତାଙ୍କ ଚରିତର ସୂଚନା ଦେବା ଅନୁମିତ ହୁଏ । ଏହି ନିୟମ ଅନୁସାରେ କବି ବିଚିତ୍ର ରାମାୟଣରେ ରାମଙ୍କ ମାହାତ୍ମ୍ୟ, ମହାଭାରତରେ କୃଷ୍ଣଙ୍କ ମାହାତ୍ମ୍ୟ ଓ ଚଣ୍ଡୀପୁରାଣରେ ଦେବୀଙ୍କ ମାହାତ୍ମ୍ୟ ବର୍ଣ୍ଣିଛନ୍ତି । ପରବର୍ତ୍ତୀ କାଳର ବଳରାମ ଦାସଙ୍କ ଦାଣ୍ଡୀ (ଜଗମୋହନ) ରାମାୟଣରେ ରାମଙ୍କ ମାହାତ୍ମ୍ୟ ଓ ଲକ୍ଷ୍ମୀପୁରାଣରେ ଲକ୍ଷ୍ମୀଙ୍କ ମାହାତ୍ମ୍ୟ, ଅଚ୍ୟୁତାନନ୍ଦଙ୍କ ସାତଖଣ୍ଡିଆ ହରିବଂଶରେ କୃଷ୍ଣଙ୍କ ମାହାତ୍ମ୍ୟ, ମହାଦେବ ଦାସଙ୍କ ବିଷ୍ଣୁକେଶରୀ ପୁରାଣ ତଥା ନାରାୟଣ ରାଜଗୁରୁଙ୍କ କୃଷ୍ଣକେଶରୀ ପୁରାଣରେ ହିରଣ୍ୟକଶିପୁହନ୍ତା ନୃସିଂହଙ୍କ ମାହାତ୍ମ୍ୟ, ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ ମୁରହନ୍ତା ନୃସିଂହଙ୍କ ମାହାତ୍ମ୍ୟ, ଗୌରାଙ୍ଗ ଦାସଙ୍କ ଦାମୋଦର ପୁରାଣରେ ଦାମୋଦର ଅବତାରର ମାହାତ୍ମ୍ୟ ଓ ଆଧୁନିକ ଜଗନ୍ନାଥ ପୁରାଣରେ ଜଗନ୍ନାଥଙ୍କ ମାହାତ୍ମ୍ୟ କୀର୍ତ୍ତିତ ହୋଇଛି । ଏଗୁଡ଼ିକ ମୌଳିକ ଓଡ଼ିଆ ପୁରାଣ, ଅନୁବାଦ ନୁହନ୍ତି । ମୌଳିକ ପୁରାଣ ରଚନା ପରଂପରାର ସୂତ୍ରପାତ ସାରଳାଦାସ କରିଥିବା ପରି ଜଗନ୍ନାଥ ଦାସ ଭାଗବତ ରଚନା କରି ଅନୁବାଦ ପରଂପରାର ବାଟ ଖୋଲିଲେ ଓ ସେହି ବାଟରେ ନୀଳାମ୍ବର ଦାସ, ମହାଦେବ ଦାସ, ଜୟସିଂହ, କୃଷ୍ଣସିଂହ, କୃଷ୍ଣଚରଣ ପଟ୍ଟନାୟକ, ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ ପ୍ରଭୃତି କବି ଗତିକରିଥିଲେ ।

ଓଡ଼ିଆ ସାହିତ୍ୟରେ ଏହି ନିୟମର ବ୍ୟତିକ୍ରମ ନଗଣ୍ୟ । ଆଧୁନିକ ଯୁଗରେ ଠକଙ୍କ ମାହାତ୍ମ୍ୟ ବର୍ଣ୍ଣନା କରୁଥିବା 'ଠକପୁରାଣ', ଲୁଚ୍ଚର ମାହାତ୍ମ୍ୟ ଚର୍ଚ୍ଚା କରୁଥିବା 'ଲୁଚ୍ଚପୁରାଣ' ଆଦି ଲେଖା ହୋଇଛି । କିନ୍ତୁ, ଏହି ସବୁ ପୁରାଣର ପ୍ୟାରୋଡ଼ି ମାତ୍ର । ସଂସ୍କୃତରେ କ୍ଷେତ୍ରମାହାତ୍ମ୍ୟକୁ ସ୍ଥଳପୁରାଣ କୁହାଯାଏ ଓ ସେହି ଧରଣର କେତେକ ସଂସ୍କୃତ ପୁରାଣ (ଯଥା— ଏକାମ୍ର ପୁରାଣ, ନୀଳମଣି ପୁରାଣ) ଓଡ଼ିଶାରେ ରଚିତ ହୋଇଛି । ଆଲୋଚ୍ୟ ନିୟମର ଏକମାତ୍ର ବ୍ୟତିକ୍ରମ, ବୋଧହୁଏ ବାସୁଦେବ ସୋମନିଶିଙ୍କ ଦ୍ୱାରା ପ୍ରଣୀତ

'ପତିଭକ୍ତା ପୁରାଣ' ଯହିଁରେ ପତିଭକ୍ତିର (କୌଣସି ଦେବଦେବୀଙ୍କର ନୁହେଁ) ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ଏହା ତେଲୁଗୁ ଭାଷାରେ ରଚିତ 'ଚିତ୍ରାଙ୍ଗଦ ପୁରାଣ'ର ଓଡ଼ିଆ ଭାଷାନ୍ତର ହୋଇଥିବାରୁ ପୁରାଣ ନାମଟି ତେଲୁଗୁ ପରଂପରାରୁ ଗୃହୀତ ହୋଇପଡ଼ିଛି ।

ବାସ୍ତବରେ ପୁରାଣ ଶବ୍ଦଟିର ଅଭିଧାମୂଳ ଅର୍ଥ ପୁରୁଣା । ବାୟୁପୁରାଣ (୧/୨୦୩) ନିର୍ଣ୍ଣୟ କରିଛି ଯେ ଯାହା ପୂର୍ବରୁ ଚଳିଆସୁଛି ତାହା ପୁରାଣ– 'ଯସ୍ମାପୁରାହ୍ୟନତୀଦଂ ପୁରାଣଂ ତେନ ହି ସ୍ମୃତମ୍' । ମତ୍ସ୍ୟପୁରାଣ (୫୩/୬୩) ମଧ କହେ ଯେ ପୂର୍ବର କଥା ସବୁ ପୁରାଣ– 'ପୁରାତନସ୍ୟ କଳ୍ପସ୍ୟ ପୁରାଣାନି ବିଦୁର୍ବୁଧା ।' ପଞ୍ଚଲକ୍ଷଣ, ଦଶଲକ୍ଷଣ ଆଦି ଏ ଦୃଷ୍ଟିରୁ ଅବାନ୍ତର ଗଣନା । ଓଡ଼ିଆ ସାହିତ୍ୟରେ ଦେବଦେବୀଙ୍କ ମାହାତ୍ମ୍ୟ ହେଉଛି ମୌଳିକ ପୁରାଣର ବିଶେଷତ୍ୱ ।

## ଓଡ଼ିଆ ପୁରାଣର ମାନ୍ୟତ୍ୱ

ଓଡ଼ିଆ ଭାଷାର ପୁରାଣଗୁଡ଼ିକ ଦୁଇ ଶ୍ରେଣୀର । କିଛି ପୁରାଣ ମୋଟାମୋଟି ଭାବରେ ମୌଳିକ ଓ ଆଉ କିଛି– ସଂସ୍କୃତ ଭାଷାରେ ବର୍ଣ୍ଣିତ ମୂଳ ବିଷୟରେ କ୍ୱଚିତ୍ ଯୋଗବିଯୋଗ କରାଯାଇଥିବା ସତ୍ତ୍ୱେ– ଅନୁବାଦ । ସାରଳାଦାସଙ୍କ ତିନୋଟିଯାକ ମୁଖ୍ୟ ସୃଷ୍ଟି ମୌଳିକ । ଅନୁବାଦ ପୁରାଣଗୁଡ଼ିକର ମୂଳ ସଂସ୍କୃତ ଭାଷାରେ (ଅଥବା ଦୀନବନ୍ଧୁ ସୋମନିଶିଙ୍କ କ୍ଷେତ୍ରରେ ତେଲୁଗୁ ଭାଷାରେ) ପୂର୍ବରୁ ଥିଲା, ତାହାର ଓଡ଼ିଆ ପଦ୍ୟରେ ଭାଷାନ୍ତର କରିବାରୁ ଅନୁବାଦ ପୁରାଣର ସୃଷ୍ଟି ହେଲା । ଜଣେ ମୌଳିକ ପୁରାଣକାର ପାଇଁ ସବୁଠାରୁ ବଡ଼ ସମସ୍ୟା ହେଉଛି, ତାହାର ପରିକଳ୍ପିତ ପୁରାଣ ବର୍ଣ୍ଣିତ ଚରିତକୁ ଲୋକରେ ଆଦୃତ କରାଇବା, ସମାଜର ଗ୍ରହଣୀୟ କରାଇବା । କାବ୍ୟ ସାହିତ୍ୟ ପାଇଁ ନୂତନତ୍ୱ ବା ଅପୂର୍ବତା ଏକ ଗୁଣ । କିନ୍ତୁ ପୁରାଣରେ ଅପୂର୍ବତା ଆଦୃତ ହେବ କିପରି ? ପୁରାଣ ମାତ୍ରେ ପରା ପୁରୁଣା କଥା । ପୁରାଣରେ ଅତୀତର ଚରିତ/ଆଖ୍ୟାନ ବର୍ଣ୍ଣିତ ହୋଇଛି ବୋଲି ଶ୍ରୋତା/ପାଠକ ମନରେ ବିଶ୍ୱାସ ଜନ୍ମାଇ ନ ପାରିଲେ ପୁରାଣ ରଚନା ବୃଥା ହେବ, ପୁରାଣଟି ଜନ-ସମାଦର ପାଇ ପାରିବ ନାହିଁ କି ତହିଁରେ ବର୍ଣ୍ଣିତ ଚରିତ ପୁରାଣର ମର୍ଯ୍ୟାଦା ପାଇ ପାରିବ ନାହିଁ । ପଣ୍ଡିତେ ଯାହା କହନ୍ତୁ ପଛକେ, ସାଧାରଣ ଲୋକଙ୍କ ଧାରଣାରେ ପୁରାଣରେ ଇତିହାସ ଥାଏ । ସମାଜଗ୍ରାହ୍ୟ ହେବା ସମସ୍ୟା ଅନୁବାଦକ ପୁରାଣକାର ପାଇଁ ନ ଥାଏ, କାରଣ ସେ ଅନୁବାଦ କରୁଥିବା ମୂଳ ପୁରାଣର ଚରିତ ପୂର୍ବରୁ ଜନସମାଦର ପାଇ ସାରିଥାଏ, ଯଦିଚ ଭିନ୍ନ କୌଣସି ଭାଷାର ଗ୍ରନ୍ଥକୁ ଆଶ୍ରୟ କରି । ବସ୍ତୁତଃ, ଅନୁବାଦକ ଲୋକରେ ପ୍ରତିଷ୍ଠା ପାଇ ସାରିଥିବା ମୂଳ ପୁରାଣକୁ ବାଛେ ଓ ତାହାର ପ୍ରତିଷ୍ଠାକୁ ପୁଞ୍ଜି କରି, କୃଷ୍ଣଦ୍ୱୈପାୟନାଦିଙ୍କ ବଚନର ଖ୍ୟାତିକୁ ଭରସା କରି, ପୁରାଣର ଭାଷାନ୍ତରିତ ରୂପକୁ ପରିବେଷଣ କଲେ ଲୋକେ ଭାଷାନ୍ତରଟିକୁ ଦ୍ୱିଧାହୀନ ଭାବରେ ଗ୍ରହଣ କରି

ନେଇଥାନ୍ତି । ଭାଷାର ପରିବର୍ତ୍ତନ ଭାବର ମାନ୍ୟତାକୁ କ୍ଷୁଣ୍ଣ କରେ ନାହିଁ । ଏହି ବିଚାର ଭୂପତି ପଣ୍ଡିତ 'ପ୍ରେମ ପଞ୍ଚାମୃତ' ଆରମ୍ଭରେ ବ୍ୟକ୍ତ କରିଛନ୍ତି—

ପାଟ ବସନେ ଗୁଞ୍ଜ ଫଳ । ଥିଲେ ନୋହଇ ବହୁମୂଲ୍ୟ ।।
ଚିରା କନାରେ ମଣିବର । ଥିଲେ ନ ତୁଟେ ମୂଲ୍ୟ ତାର ।।

ଗ୍ରନ୍ଥର ମାନ୍ୟତ୍ୱ-ସୃଷ୍ଟିର ପ୍ରୟୋଜନ ଜଣେ କାଳ୍ପନିକ କାବ୍ୟକର୍ତ୍ତା ପାଇଁ ମଧ୍ୟ ନଥାଏ । ଭାଷାର ଚମତ୍କାରିତା ଓ ଭାବର ଅପୂର୍ବତା ମାଧ୍ୟମରେ ଲୋକଙ୍କୁ ସେ ତା'ର କବିତ୍ୱ-ଶକ୍ତିର ପରିଚୟ ଦେଇ ପାରିଲେ ହେଲା । ଲୋକେ ତାହାଠାରୁ କଳ୍ପନାପାଟବ ଆଶା କରନ୍ତି । କିନ୍ତୁ, ଜଣେ ମୌଳିକ ପୁରାଣକାର— ଯେ କି ଅନୁବାଦକ ନୁହେଁ ଓ ଯାହା ଠାରୁ ଲୋକେ ଇତିହାସ ଚାହାନ୍ତି; କଳ୍ପନା ନୁହେଁ— ତାହାର ଉଦ୍‌ଭାବିତ ଅଭିନବ ଚରିତକୁ ଲୋକରେ ଗ୍ରହଣୀୟ କରାଇବ କିପରି ? ପୁରାଣର ଚରିତ ଯେତେ ଅଶ୍ରୁତପୂର୍ବ ହେବ ପାଠକ/ଶ୍ରୋତା ତାହାକୁ ଅମୂଳକ କପୋଳକଳ୍ପନା ବୋଲି ତେତେ ଅମାନ୍ୟ କରିବେ ନାହିଁ କି ? ମୌଳିକ ପୁରାଣକୁ ଲୋକରେ ଗ୍ରହଣୀୟ କରାଇନେବା ଲକ୍ଷ୍ୟରେ ସାରଳାଦାସ ପ୍ରଥମେ ମହାଭାରତରେ ଓ ପରେ ଚଣ୍ଡୀପୁରାଣରେ ପ୍ରଧାନତଃ ଦ୍ୱିବିଧ କାବ୍ୟକୌଶଳ ଅବଲମ୍ବନ କରିଛନ୍ତି— ଗୋଟିଏ ଜାତିସ୍ମରଣ ଓ ଅପରଟି ଦୈବୀପ୍ରସାଦ ଲାଭ ।

ସାରଳାଦାସ ଯେଉଁ ସମାଜର ଗ୍ରହଣୀୟ ହେବା ଲକ୍ଷ୍ୟ ରଖି ଗ୍ରନ୍ଥରଚନା କରୁଥିଲେ ତାହା ଥିଲା ଓଡ଼ିଶାର ଗ୍ରାମ୍ୟସମାଜ । ଗ୍ରାମାଞ୍ଚଳର ପ୍ରାୟଶଃ ନିରକ୍ଷର, ଅଶିକ୍ଷିତ, ବିଦ୍ୱଜ୍ଜନ ସାଂଗତ୍ୟ-ବର୍ଜିତ ଲୋକଙ୍କ ପାଇଁ ସେ ପୁରାଣ ଲେଖୁଥିଲେ । ଗାଉଁଲି ଲୋକେ ବିଶେଷ ଭାବରେ ଧର୍ମଭୀରୁ । ସରଳବିଶ୍ୱାସୀ । ଏମାନେ ସଂସ୍କୃତ ପୁରାଣଗୁଡ଼ିକର ଓ ରାମାୟଣ-ମହାଭାରତ କାହାଣୀ ସବୁ ପରଂପରାକ୍ରମେ ହେଉ ବା ଆଖପାଖ ଗ୍ରାମର ପୁରାଣସଭାର ପୁରାଣ ପଣ୍ଡା ମୁଖରୁ ଯାହା ଶୁଣିଛନ୍ତି ତାହା ସବୁ ଧ୍ରୁବ ସତ୍ୟ ବୋଲି ଗ୍ରହଣ କରି ଆସିଥାନ୍ତି । ପୌରାଣିକ ଚରିତର ରୂପ ଯେ ଭିନ୍ନ ଭିନ୍ନ ପୁରାଣରେ ଭିନ୍ନ ଭିନ୍ନ ହୋଇଥାଏ ଏ ଜ୍ଞାନ ତାଙ୍କର ନଥାଏ । ସେମାନଙ୍କ ମାନସ-କ୍ଷେତ୍ରରୁ ପୁରୁଣା ଚରିତ ଲତାକୁ ଉନ୍ମୂଳିତ କରାଇ ତାହା ସ୍ଥାନରେ ନିଜର ଉଦ୍ଭାବିତ ଅଭିନବ ଚରିତଲତାକୁ ରୋପଣ କରି ଦୃଢ଼ମୂଳ କରାଇବା ସୁସାଧ୍ୟ ବ୍ୟାପାର ନୁହେଁ । ଏହି ପ୍ରୟୋଜନ ହେତୁରୁ ମୌଳିକ ପୁରାଣକାର ପୌରାଣିକ ଇତିହ (myth) ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନିଜ ସମ୍ପର୍କରେ ମଧ୍ୟ ଇତିହ ସୃଷ୍ଟି କରି ନିଜେ ଅତୀତରେ ଥିଲା ଓ ସେ ଜାତିସ୍ମର ହୋଇଥିବାରୁ ଅତୀତ ବିଷୟରେ ତାହାର ବର୍ଣ୍ଣନା ସାକ୍ଷ୍ୟପ୍ରମାଣ କୋଟୀର ବୋଲି କହିଥାଏ ଓ ତତ୍‌ସହ ଦୈବୀ ପ୍ରସାଦ-ପ୍ରାପ୍ତି ଦାବି ମଧ୍ୟ କରିଥାଏ । କାରଣ, ଧର୍ମଭୀରୁ ଜନତା ସବୁ ଯୁଗରେ ଦେବତାଙ୍କ ନାମରେ

ଶପଥ ନେବା ଲୋକର କଥାକୁ ସନ୍ଦେହ କରନ୍ତି ନାହିଁ । ଏହି କ୍ରମ ଗଡ଼ିଆସି ଏବେ ବି ସାକ୍ଷୀ ଓ କାର୍ଯ୍ୟଦାୟିତ୍ୱ ଗ୍ରହଣ କରିବାକୁ ଯାଉଥିବା ଲୋକ 'ଈଶ୍ୱରଙ୍କ ନାମରେ ଶପଥ' ନେଇଥାଏ ।

ସାରଳାଦାସ ତାଙ୍କର ପ୍ରଥମ ରଚନା ବିଚିତ୍ର ରାମାୟଣରେ ଏହି କାବ୍ୟ କୌଶଳର ଉପଯୋଗ କରିନଥିଲେ । ବୋଧହୁଏ, ଲୋକେ ତାଙ୍କର ଚରିତ ବୈଚିତ୍ର୍ୟରେ ପରିପୂର୍ଣ୍ଣ ଏହି ରଚନାକୁ ମାନ୍ୟତ୍ୱ ନଦେବା ଦେଖି ମହାଭାରତରେ ଜାତିସ୍ମରଣ ଓ ଦୈବୀପ୍ରସାଦ ପ୍ରାପ୍ତିର ଆଶ୍ରୟ ନେବାକୁ ଶ୍ରେୟ ବିଚାର କଲେ । ବିଚିତ୍ର ରାମାୟଣରେ ଏତାଦୃଶ ଇତିହର ପ୍ରୟୋଗ କରିପାରିଥିଲେ ତାହା ମଧ୍ୟ ଲୋକପ୍ରିୟତା ଅର୍ଜନ କରିପାରିଥାନ୍ତା ବୋଲି ଅନୁଭବ କରି ତାଙ୍କର ବିଚିତ୍ର ରାମାୟଣର ତେଲୁଗୁ ଅନୁବାଦକ ଇତିହ ସଂଯୁକ୍ତ କରି ତେଲୁଗୁ ବିଚିତ୍ର ରାମାୟଣମୁ ଲେଖିଲେ ଓ ତାହା ତେଲୁଗୁ ଦେଶରେ କିପରି ଆଶାତୀତ ସଫଳତା ପାଇଲା ତାହା ପରବର୍ତ୍ତୀ ଅଷ୍ଟମ ଅଧ୍ୟାୟରେ ଆଲୋଚିତ ହେବ । ମୂଳ ଓଡ଼ିଆ ବିଚିତ୍ର ରାମାୟଣ ଓଡ଼ିଆ ସମାଜର ଗ୍ରହଣୀୟ ହୋଇ ପାରିଲାନାହିଁ କବି ନିଜକୁ ଜାତିସ୍ମର ଓ ଦୈବୀପ୍ରସାଦ ପ୍ରାପ୍ତ ବୋଲି ଆତ୍ମପ୍ରକାଶ କରିନଥିବା ସକାଶରୁ । ଦୈବୀପ୍ରସାଦ ପ୍ରାପ୍ତିକୁ ସ୍ୱୀକାର କରିବା ହେତୁରୁ କବି ତାଙ୍କର ପୂର୍ବର (ସମ୍ଭବତଃ ପିତୃଦତ୍ତ) ନାମକୁ ତ୍ୟାଗ କରି ସାରଳାଦାସ ନାମ ଗ୍ରହଣ କରିଥିଲେ ବୋଲି ମଧ୍ୟ ଅନୁମାନ କରାଯାଇପାରେ । ସାରଳାଦାସ ତାଙ୍କର ମୂଳ ନାମ ନୁହେଁ । ଦେବୀ ସରସ୍ୱତୀ (ସାରୋଳଚଣ୍ଡୀ) ତାଙ୍କୁ ବରପ୍ରସାଦ ଦେଇ ତାଙ୍କ ନାମକୁ ସାରଳାଦାସ କରାଇଥିବା କଥା କବି ବହୁସ୍ଥାନରେ ଲେଖିଛନ୍ତି ।

ନିଜର ରଚନାକୁ ସମାଜରେ ଆଦୃତ କରାଇବା ଲକ୍ଷ୍ୟରେ କବି ଲୋକଙ୍କ ଈଶ୍ୱର ବିଶ୍ୱାସର ସୁଯୋଗ ନେଇ ଅବାସ୍ତବ କଥାର ଆଶ୍ରୟ ନେଇଛନ୍ତି ସତ୍ୟ । ହେଲେହେଁ ତାଙ୍କର କାର୍ଯ୍ୟ ଅସତ୍ୟ ନୁହେଁ, ଅନ୍ୟକୁ ମିଥ୍ୟା କହିଲେ ହିଁ ଯଦି ତାହାର ଉପକାର ହୋଇପାରେ ତେବେ । ରୋଗୀର ବିଶ୍ୱାସ ବଢ଼ାଇବା ପାଇଁ ହୋମିଓପାଥି ଚିକିତ୍ସକ ଔଷଧ ନାଁରେ ଦୁଧଗୁଣ୍ଡ ଦିଏ ତ । ସତ୍ ଉଦ୍ଦେଶ୍ୟରେ ସାଧିତ କର୍ମ ସତ୍ୟ (ସତ୍+ଯ=ସତ୍ୟ) ନୁହେଁ କି ? କୁହାଯାଏଁ, କବିମାନେ ବାଟ ଦେଖନ୍ତି– କବୟୋ କ୍ରାନ୍ତି ଦର୍ଶିନଃ । କବିଙ୍କର ହୃଦ୍‌ବୋଧ ହେଲା ଯେ ସମାଜର ହିତ (ସତ୍) ସାଧନ କରିବାର ମାର୍ଗ ସେ ପାଇଛନ୍ତି । ତାଙ୍କୁ ସେହି ମାର୍ଗରେ ଚଳାଇପାରିଲେ ସେହିମାନଙ୍କର ହିଁ ହିତ ହେବ । ତେଣୁ ତାହା ଅସତ୍ୟ କହିଲେ ସତ୍ୟର ଅସଲ ଅର୍ଥକୁ ଅତି ସଂକୁଚିତ କରି ବୁଝିବାକୁ ହେବ । ଏ କାର୍ଯ୍ୟ କରିବା ଫଳରେ କବି ନିଜର ସ୍ୱାର୍ଥ ଅପେକ୍ଷା ସାହିତ୍ୟ (ଯାହା ହିତଯୁକ୍ତର ଭାବ)ର ସ୍ୱାର୍ଥ ପ୍ରତି ଅଧିକ ନିଷ୍ଠାବାନ୍ ହେଲେ ନାହିଁ କି ?

## ମହାଭାରତରେ ବର୍ଣ୍ଣିତ ଜାତିସ୍ମରଣ

ସାରଳାଦାସ ମହାଭାରତରେ ଦେଇଥିବା ପୂର୍ବଜନ୍ମର ବିବରଣ ଚଣ୍ଡୀପୁରାଣୋକ୍ତ ବିବରଣଠାରୁ ଭିନ୍ନ । ମହାଭାରତ ଅନୁସାରେ ସେ ଥିଲେ ମହାଦେବଙ୍କ ଆସ୍ଥାନ କୈଳାସର ସିଂହଦ୍ୱାରର ରକ୍ଷକ ନନ୍ଦୀ (ନାମାନ୍ତର ନନ୍ଦୀକେଶ୍ୱର)* । ତାହାଙ୍କର ବର୍ଣ୍ଣନା ଅନୁସାରେ କୈଳାସର ଚାରି ଦ୍ୱାର ଓ ପ୍ରତ୍ୟେକ ଦ୍ୱାରର ଦୁଇ ଦୁଇ ଜଣ ରକ୍ଷକ । ତନ୍ମଧ୍ୟରୁ ସିଂହଦ୍ୱାର ଅର୍ଥାତ୍ ପୂର୍ବ ଦ୍ୱରର ରକ୍ଷକ ହେଲେ– ୧ ନନ୍ଦୀ ଓ ୨. ମହାକାଳ (୧ ବନ ୪୯୬; ୨ ସଭା ୫୩୭; ବିରାଟ ୨୪୯) । ନନ୍ଦୀ ଶିବଙ୍କର ପୁତ୍ର/ଧର୍ମପୁତ୍ର ସ୍ଥାନୀୟ ଓ ବିନାୟକଙ୍କ ପରି ସେ ମଧ୍ୟ ବିଘ୍ନ ବିନାଶନ (୨ ସଭା ୪୪୮) ।

ଶିବର ସିଂଘଦ୍ୱାରେ ଦ୍ୱାରପାଳ ମୁହିଂ ପୂର୍ବେ ।
କିଞ୍ଚିତ ପାତକେ ମୁଁ ମାନବ ଜନ୍ମ ଯେବେ ।। (୨ ବନ ୩୪୯)

× × ×

ମୁହିଂ ଯହୁଂ ଦ୍ୱାରପାଳ କପିଳାସ ଭୁବନେ ।
ଇତି ନନ୍ଦିକେଶ୍ୱର ଶାପେ୍ୟ ଗ୍ୟାନହୀନେ ।। (୨ ସଭା ୫୪୩)

× × ×

ମୁହିଂ ରୁଦ୍ରଗଣ ନନ୍ଦିକେଶ୍ୱର କଳା । (ବିରାଟ ୯୬)

ପାର୍ବତୀଙ୍କ ଦ୍ୱାରା ଅଭିଶପ୍ତ ହେବାରୁ ସେ ମାନବ ଜନ୍ମ ପାଇଥିବା କଥା ଅନେକ ସ୍ଥାନରେ ସୂଚାଇଛନ୍ତି କିନ୍ତୁ ପାର୍ବତୀ ତାଙ୍କୁ ଅଭିଶାପ ଦେବାର କାରଣ ଜଣାଇନାହାନ୍ତି–

ଗିରିଜାର ବାକ୍ୟରେ ମୁଁ ହୋଇଲି ମାନବା । (ଆଦି ୯୩୨)

× × ×

କପିଳାସ କନ୍ଦର ସିଂଘଦ୍ୱାରେ ର୍ମୁ ଦ୍ୱାରପାଳ ।
ଗିରିଜାର ଶାପେ ମୁଂ ଜନମିଲି ମହୀଥଳ ।। (ମଧ୍ୟ ୮୨୭)

× × ×

---

* ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂକଳିତ ବହୁ ତାଳପତ୍ର ପୋଥି ମଧ୍ୟରୁ ଏକମାତ୍ର 'ଦ' ପୋଥିର ଆରମ୍ଭରେ ଲେଖାଅଛି ଯେ ସେ କୈଳାସର ପଶ୍ଚିମଦ୍ୱାରର ରକ୍ଷକ ଥିଲେ । ସିଂହଦ୍ୱାର ହେଉଛି ପୂର୍ବଦ୍ୱାର । ଶ୍ରୀ ମହାନ୍ତି ଏହି ପୋଥିର ଜୀବନବୃତ୍ତାନ୍ତ ଅଂଶଟିକୁ ମୌଳିକ ବୋଲି ଗ୍ରହଣ ନକରି ତାହାକୁ ଗ୍ରନ୍ଥର ଅନ୍ତର୍ଗତ ନକରି ପରିଶିଷ୍ଟ ରୂପେ ସ୍ଥାନ ଦେଇଛନ୍ତି । ତାହା ମୌଳିକ ନୁହେଁ ପ୍ରକ୍ଷିପ୍ତ ବୋଲି ବିବେଚନା କରିବା ଲାଗି ଅନ୍ୟାନ୍ୟ ବହୁ କାରଣ ରହିଛି । ଦକ୍ଷିଣ ଓଡ଼ିଶାରେ ଲଭ୍ୟ ତାଳପତ୍ର ପୋଥିରେ କବି କୈଳାସର ସିଂହଦ୍ୱାରର ରକ୍ଷକ 'ମହାକାଳ' ବୋଲି ଲେଖାଅଛି । ତାହା ମଧ୍ୟ ମୌଳିକ ନୁହେଁ ପ୍ରକ୍ଷିପ୍ତ ବୋଲି ପୂର୍ବେ ଆଲୋଚିତ ହୋଇସାରିଛି ।

ପୁରରବା ସଞ୍ଚିତ ସେ ଝଂଖେରପୁର ଯାହା ବୋଲି ।
ଶ୍ରୀ ଗିରିଜାର ଆଗ୍ୟାଂୟେ ମୁହିଂ ତହିଂ ଜନମିଲି । (ବିରାଟ ୭୦୯)

କିନ୍ତୁ, ଅନ୍ୟତ୍ର ଗଣେଶଙ୍କ ଶାପ ଯୋଗୁଁ ଓ ଶ୍ରୀରାମଙ୍କ ଅନୁଗ୍ରହରୁ କବି ନରଜନ୍ମ ଲାଭ କରିଥିବା କଥା କହିଛନ୍ତି । ଜାତିସ୍ମରଣ ଘଟନାଚକ୍ର ମଧ୍ୟକୁ ଶ୍ରୀରାମ କିପରି ଆସିଲେ ସ୍ପଷ୍ଟ ହେଉ ନାହିଁ ।

ତବ ଶାପ୍ୟରେ ମାନବ ଜନ୍ମରେ ମୁଂ ଜାତ ।
ୟେ ଭବସାଗରୁ ପାରି କର ଗଣନାଥ ।। (୧ବନ ୨୭)

× × ×

ସ୍ୱାମି, ମୁହିଂ ସେ ଯେ ଦ୍ୱାରପାଳ କପିଳାସ ସ୍ୱର୍ଗେ ।
ମାନେବ ଜନ୍ମ ମୁହିଂ ଶ୍ରୀରାମଙ୍କ କିଞ୍ଚିତ ଅନୁରାଗେ ।। (ସ୍ୱର୍ଗାରୋହଣ ୨୦)

ଏ କଥା କୁହାଯିବାର ଅଳ୍ପ କେତୋଟି ପଦ ପରେ କବି ଶାପଗ୍ରସ୍ତ ହେବାର ହେତୁ ବର୍ଣ୍ଣିତ ହୋଇଛି, ଯେଉଁଠାରେ ଶାପକର୍ତ୍ତା ଗଣେଶ । କବି ସେଠାରେ ଲେଖିଛନ୍ତି ଯେ ଖୋଦ୍ ସାରୋଳଚଣ୍ଡୀ କବିଙ୍କୁ ତାଙ୍କ ପୂର୍ବଜନ୍ମର କଥା ଜଣାଇଥିଲେ । ଅନ୍ୟ କେହି ଜଣାଇବା ଫଳରେ ଜନ୍ମିବା ଜ୍ଞାନ ପ୍ରକୃତରେ ଜାତିସ୍ମରଣ ନୁହେଁ । ତଦନୁସାରେ ପାର୍ବତୀ ଦୁର୍ଗା ରୂପରେ ମହିଷାସୁରକୁ ବଧ କରିବାକୁ ଯାଇଥିବା ବେଳେ ନନ୍ଦୀ ସଙ୍ଗରେ ଯାଇଥିଲେ । ଅସୁର ଅନ୍ୟଥା ହୀନବଳ ହେବ ନାହିଁ ବୋଲି ଜାଣିବାରୁ ପାର୍ବତୀ ତାହାକୁ କାମାସକ୍ତ କରିବା ପାଇଁ ଉଲଙ୍ଗ ହୋଇଥିଲେ । ନନ୍ଦୀ ଏ ବିଷୟ ପ୍ରକାଶ କରିଦେବାରୁ ଗଣେଶ ରାଗିଯାଇ ନନ୍ଦୀ ମନୁଷ୍ୟ ଜନ୍ମ ପାଇବେ ବୋଲି ଶାପ ଦେଲେ । ଶାପଗ୍ରସ୍ତ ନନ୍ଦୀ ପ୍ରଥମ ଜନ୍ମରେ କାଳିଦାସ, ଦ୍ୱିତୀୟ ଜନ୍ମରେ ମହାକାଳିକା ବିଜୟ (?) ଓ ତୃତୀୟ ଜନ୍ମରେ ସାରଳାଦାସ ହୋଇ ଜନ୍ମିଲେ। ସେ ଆଉ ଏକ ମନୁଷ୍ୟ ଜନ୍ମ ଗ୍ରହଣ କରିବା ପରେ ପୁନର୍ବାର ଶିବଙ୍କ ଦ୍ୱାରପାଳ ହେବେ।

କପିଳାସ ଦ୍ୱାରପାଳ ନାମ ମୋ ନନ୍ଦିକେଶ୍ୱର ।
ପାର୍ବତୀ ଦୁର୍ଗା ରୂପେ ବଧିଲେ ମଇଂଷାସୁର ।।
ଉଲଙ୍ଗ ହୋଇଣ ସେ ବଧ କଲେ ତାକୁ ।
ସିଂଘ ବାହନେ ବିଜେ କରି ନେଇଥିଲେଁ ମୁକୁ ।।
ୟେସନେକ କୀରତି ତହିଂ କହିଲଇଂ ମୁହିଂ ।
ଶୁଣି କୋପ କଲେ ମୋତେ ତ୍ରିଦଶର ସାଇଂ ।।
ୟେହେନେକ ଚରିତ ହୋଇଲା ଶୁଣି କରି ବୋଇଲେ ।
ମାତାଂକ କର୍ମ କହିଲୁ ବୋଲି ବିଘ୍ନରାଜ କୋପ କଲେ ।।
କୋପ କରି ଗଜାନନ ଦିଲେକ ମୋତେ ଶାପ ।

ସେ ଦୋଷରୁ ହୋଇଲି ମାନୁଷ ସରୂପ ।।
ପ୍ରଥମ ଜନ୍ମରେ ମୁଂ ହୋଇଲି କାଳିଦାସ ।
ମହାକାଳିକା ବିଜୟ ନାମେ ଅଂଶ ।
ତୃତୀୟ ଜନ୍ମରେ ମୁଂ ସାରୋଳଦାସ କବି ।
ଆର ଜନ୍ମରେ ପୁଣି ମୃତ୍ୟୁମଣ୍ଡଳେ ଜନ୍ମିବି ।।*
ଆହୋ ଜନ୍ମେ ଜନ୍ମେ ପନ୍ଦର ଲକ୍ଷ ବିଷ୍ଣୁକଳାରେ ଉକତ ।
ଚାରି ଜନ୍ମେ ହୋଇବ ଯେ ଷାଠିଏ ଲକ୍ଷ ଗ୍ରନ୍ଥ ।।
ଷାଠିଏ ଲକ୍ଷ ଗ୍ରନ୍ଥ କହିବି ମର୍ତ୍ତ୍ୟର ଭୁବନେ ।
ତେବେ ସେ ବସିବି ଯାଇଂ ଶିବ ଦ୍ୱାର ସ୍ଥାନେ ।।
ଜାତିସ୍ମର ନୁହଇ ମୁଂ ନ ଜାଣଇ ଯେହା ।
ସିଦ୍ଧ ଚଣ୍ଡୀସାରୋଳା କହିଲେ ମୋତେ ଯାହା ।। (ସ୍ୱର୍ଗାରୋହଣ ୨୧-୨୨)

ଅଧ୍ୟାପକ ମହାନ୍ତି ମହାଭାରତ ସଂପାଦନା କରିବା ପୂର୍ବରୁ ପ୍ରକାଶିତ ଚଉଦଅକ୍ଷରୀ ମହାଭାରତରେ ଉପରେ ଉଦ୍ଧୃତ ପଦଗୁଡ଼ିକ ସ୍ଥାନରେ, ସେହି ସ୍ୱର୍ଗାରୋହଣ ପର୍ବରେ, ଲେଖାଅଛି ଯେ ନନ୍ଦୀ ଶିବପାର୍ବତୀଙ୍କୁ ଆଗମ (ତନ୍ତ୍ର) ବିଧିରେ ଆରାଧନା କରିଥିବାରୁ ଗଣେଶ ତାଙ୍କୁ ଶାପ ଦେଇଥିଲେ—

କୈଳାସର ଦ୍ୱାରପାଳ ନାମ ମୋର ନନ୍ଦୀ ।
ଶାସ୍ତ୍ରର ଆଗମେ ହରଗଉରୀଙ୍କୁ ବନ୍ଦି ।।
ଯେଉଁପରି ରତିରସ ସେ ମୋତେ ବୋଇଲେ ।
ପିତାମାତାଙ୍କର ସଙ୍ଗ ବୋଲିଣ କହିଲେ ।।
ତାହା ଶୁଣି ବିଘ୍ନରାଜ ଦେଲେ ମୋତେ ଶାପ ।
ତହୁଁ ହୋଇଲି ମୁଁ ମନୁଷ୍ୟ ସ୍ୱରୂପ ।।
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ ।।
ତୃତୀୟ ଜନ୍ମରେ ମୁହିଁ ସାରଳାଦାସ କବି ।
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।।

ଏହି ଅଂଶଟି ସାରଳାଦାସଙ୍କ ମୌଳିକ ଲେଖା ବୋଲି ନିର୍ବିଚାରରେ ଧରି ନେଇ ପ୍ରାୟ ସବୁ ଆଲୋଚକ ଅବଦ୍ଧ ଚର୍ଚ୍ଚା କରିଛନ୍ତି । କିନ୍ତୁ ଅଧ୍ୟାପକ ମହାନ୍ତିଙ୍କ ଦ୍ୱାରା

* ଅଳ୍ପ ସଂଖ୍ୟକ ପୋଥିରେ ଏହି ପଦ ''ଆର ଜନ୍ମେ ସିଦ୍ଧେଶ୍ୱର ହୋଇ ଜନ୍ମିବି'' ରୂପେ ରହିଛି । ବୋଧହୁଏ, ବିଲଙ୍କା ରାମାୟଣକାର ସିଦ୍ଧେଶ୍ୱର ଏହି ସମଗ୍ର ବିବରଣର ସ୍ରଷ୍ଟା । ଅନୁଲେଖକଙ୍କ ପସନ୍ଦକୁ ନ ଆସିବାରୁ ସେ ସିଦ୍ଧେଶ୍ୱର ନାମକୁ ଉଠାଇଦେଲେ ।

ସଂକଳିତ କୌଣସି ଗୋଟିଏ ତାଳପତ୍ର ପୋଥିରେ ବି ଏକଥା ଲେଖା ହୋଇନଥିବା ଉଲ୍ଲେଖନୀୟ । ମୁଁ ପଢ଼ିଥିବା ଦୁଇଟି ତାଳପତ୍ର ପୋଥିରେ ଅଧ୍ୟାପକ ମହାନ୍ତି ଗ୍ରହଣ କରିଥିବା ମହିଷାସୁର ବଧ ସହିତ ସଂପୃକ୍ତ ପୂର୍ବ ଜନ୍ମ ବିବରଣ ନାହିଁ କି ଆଗମ ମତ ସହିତ ସଂପୃକ୍ତ ବିବରଣ ନାହିଁ । ''ପିତାମାତାଙ୍କର ସଙ୍ଗ ବୋଲିଣ'' କିଏ କହିଲା ଉଦ୍ଧୃତିରୁ ଜଣାଯାଉନାହିଁ । ଯେ ଏକଥା କହିଲା ଯେ ବିଘ୍ନରାଜଙ୍କ ଶାପଭାଜନ ନୋହିଲା କିପରି ? ବୁଝିହେଉନାହିଁ ତ ! ପୁଣି, ଅଧ୍ୟାପକ ମହାନ୍ତି ଗ୍ରହଣ କରିଥିବା ପାଠର ''ମହାକାଳିକା ବିଜୟ ନାମେ ଅଂଶ'' ମଧ୍ୟ ନିରର୍ଥକ । ଏଠାରେ ଦ୍ୱିତୀୟ ଜନ୍ମର ବିବରଣର ଆକାଂକ୍ଷା ରହିଛି, କିନ୍ତୁ ଲେଖାହୋଇନାହିଁ । ମୁଦ୍ରିତ ପୁସ୍ତକର ''ଦ୍ୱିତୀୟ ଜନ୍ମରେ ମୁଁ ମହାକାଳ ଧ୍ୱଂସ'' ମଧ୍ୟ ଅବୋଧ୍ୟ । କିଏ ଏ ମହାକାଳ ଧ୍ୱଂସ । କାଳିଦାସ ପ୍ରସିଦ୍ଧ ମହାକବି, ଜଣେ ଐତିହାସିକ ବ୍ୟକ୍ତି । ତାଙ୍କ ପରେ ଅନ୍ୟ କେହି କବିଙ୍କୁ ନ ପାଇବା ପରି ସାରଳାଦାସ ଇତିହାସରେ ଅସ୍ତିତ୍ୱହୀନ ମହାକାଳ ଧ୍ୱଂସ ବା ମହାକାଳିକା ବିଜୟଙ୍କୁ ଦ୍ୱିତୀୟ ଜନ୍ମ ଦେଲେ ! ଏପରି ପରସ୍ପର ବିରୋଧୀ ଓ ଅସଙ୍ଗତ ପାଠ ମିଳୁଥିବାରୁ ଓ ଅନେକ ତାଳପତ୍ର ପୋଥିରେ ଏ ଅଂଶ ଜମାରୁ ନଥିବାରୁ ଅନୁମାନ କରୁଛି ଯେ ସାରଳାଦାସ ନନ୍ଦୀ ଶାପଗ୍ରସ୍ତ ହେବାର କାରଣ ଓ ତାଙ୍କର କାଳିଦାସାଦି ଚାରି ଅବତାର କଥା ମହାଭାରତରେ ଲେଖିନଥିଲେ । ଯେଉଁ କବି ମହାଭାରତ ଆରମ୍ଭରେ ହିଁ ଲେଖିଛନ୍ତି–

ପ୍ରସନ୍ନେଣ ଆଗ୍ୟାଂ ମୋତେ ଦିଲେ ଶାକାମ୍ଭେରୀ ।
ଲଭତୁ କପିଳାସ ଶ୍ରୀ ମହାଭାରତ କରି ।। (ଆଦି ୫)

ପୁଣି, ମହାଭାରତ ଲେଖା ମଧ୍ୟରେ ''ସଦୟେ ଅପର୍ଣ୍ଣା ଗୋ ମୋତେ କପିଳାସ ସ୍ୱର୍ଗ ଦେସି'' (୧ ବନ ୨୫) ଓ ବାରଂବାର 'ମୁକତି ଗତି' ବାଞ୍ଛା କରିଛନ୍ତି ସେହି କବି ମୁଁ ପୁନର୍ବାର ମନୁଷ୍ୟ ହୋଇ ଜନ୍ମିବି, ଏ ଜନ୍ମରେ ମୁକ୍ତି ପାଇବି ନାହିଁ ବୋଲି କହିବା ବିଚାର ସମୀଚୀନ ନୁହେଁ । ଅନ୍ୟ ଏକ ଦିଗରୁ ବିଚାର କଲେ ମଧ୍ୟ ସାରଳାଦାସ ଚତୁର୍ଥ ଅବତାର କଥା ଲେଖି ନ ପାରନ୍ତି । ସେ ମହାଭାରତ ଲେଖିସାରିବା ପରେ ଚଣ୍ଡୀପୁରାଣ ଲେଖିଛନ୍ତି (ଦଶମ ଅଧ୍ୟାୟ ପଠିତବ୍ୟ) ଓ ସେଥିରେ ସେ ତିନିଜନ୍ମ କଥା ହିଁ ଲେଖିଛନ୍ତି । ( ଏ ପାଠ ୧୯୬୧ରେ ଓଡ଼ିଶା ଜଗନ୍ନାଥ କମ୍ପାନୀ ଦ୍ୱାରା ପ୍ରକାଶିତ ମୁଦ୍ରିତ ପୁସ୍ତକରେ ଅଛି କିନ୍ତୁ ତାଳପତ୍ର ପୋଥିରେ ନାହିଁ)

''ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ସେ ଜନ୍ମରେ ବିଷ୍ଣୁଲୀଳା କଲି ପରକାଶ ।।
କାଳେ ସୁପ୍ରସନ୍ନ ମୋତେ ହୋଇଲେ ଅଙ୍ଗିରା ।
ବିଷ୍ଣୁଚରିତ କଥନେ ମତି ମୋର ତ୍ୱରା ।

ଦ୍ୱିତୀୟ ଜନ୍ମରେ ମହାକାଳୀ ନାମେ କବି ।
ପଙ୍କଜବଦନୀ ସୁପ୍ରସନ୍ନା ବାକ୍ୟଦେବୀ ।।
ତୃତୀୟ ଜନ୍ମରେ ହେଲି ଶ୍ରୀ ସାରଳାଦାସ ।
ଶ୍ରୀ ବିଷ୍ଣୁ ଲୀଳାକୁ ମୁଖେ କରିଲି ଅଭ୍ୟାସ ।।
ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିରୀ ଭାଗବତ ।। (ପୃ.୩୫)

ଏଥିରେ ଚଉଦ ଅକ୍ଷରୀ ମହାଭାରତର 'ମହାକାଳ ଧ୍ୱଂସ' ସ୍ଥାନ ଦଖଲ କରିଛନ୍ତି 'ମହାକାଳୀ', ଯେ ମଧ୍ୟ ଅସ୍ତିତ୍ୱହୀନ । କିନ୍ତୁ, ଚତୁର୍ଥ ଜନ୍ମ କଥା ଏଥିରେ ନାହିଁ । ଏସବୁ ସାରଳାଦାସଙ୍କ ଲେଖା ହୋଇନପାରେ । କୌଣସି ପରବର୍ତ୍ତୀ ସମୟର କବି ନିଜକୁ ସାରଳାଦାସଙ୍କର ଅବତାର ବୋଲି ପ୍ରକାଶ କରି ପ୍ରସିଦ୍ଧ କବିଙ୍କର ଲୋକପ୍ରତିଷ୍ଠାରୁ ଭାଗ ନେବା ଲକ୍ଷ୍ୟରେ ନିଜକୁ ଚତୁର୍ଥ ଅବତାର କରାଇ ଚାରି ଅବତାର ବିଷୟ ମହାଭାରତରେ ଯୋଗ କରିଥିବା ହିଁ ସମ୍ଭବ । କେତେକ ପୋଥିରେ ଚତୁର୍ଥ ଅବତାରର ନାମ ସିଦ୍ଧେଶ୍ୱର ବୋଲି ଲେଖା ଥିବାରୁ ଅନୁମାନ କରାଯାଇପାରେ ଯେ ବିଲଙ୍କା ରାମାୟଣକାର ଝଙ୍କଡ଼ର ସିଦ୍ଧେଶ୍ୱର ଦାସ, ଯେ କି ନିଜକୁ ସାରଳାଦାସ ବୋଲି ମଧ୍ୟ ଚିହ୍ନାଉଥିବା କଥା ଅଷ୍ଟମ ଅଧ୍ୟାୟରେ ଦେଖାଇ ଦିଆଯିବ, ଏହାକୁ ଯୋଡ଼ିଛନ୍ତି । କିନ୍ତୁ ସିଦ୍ଧେଶ୍ୱରଙ୍କ କାରସାଦିକୁ ଅଗ୍ରାହ୍ୟ କରାଯାଇଛି ଚଣ୍ଡୀ ପୁରାଣରେ । କେଉଁଠି କେଉଁଠି ସିଦ୍ଧେଶ୍ୱରକୁ ହଟାଇ ଅଚ୍ୟୁତ ସେ ସ୍ଥାନ ଦଖଲ କରିଛନ୍ତି–

ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ଦ୍ୱିତୀୟ ଜନ୍ମେ ହେଲି ମହାକୁଳ ଦାସ ।।
ତୃତୀୟ ଜନ୍ମେ ମୁହିଁ ସାରଳାଦାସ କବି ।
ଚତୁର୍ଥେ ଅଚ୍ୟୁତ ପିଣ୍ଡ ଘେନି ଜନମିବି ।

(ଝଙ୍କାର, ୨୨ ବର୍ଷ ପୃ. ୯୯୮ରେ ଉଦ୍ଧୃତ)

ଏ କୀର୍ତ୍ତି ନିଶ୍ଚୟ ଅଚ୍ୟୁତାନନ୍ଦ ଦାସଙ୍କର । ସିଦ୍ଧେଶ୍ୱର ବା ଅଚ୍ୟୁତ ନାମର ଉଲ୍ଲେଖକୁ ପସନ୍ଦ କରୁନଥିବା ଅନୁଲେଖକ ତାହାକୁ ଉଠାଇ ଦେଇଛି ।

ଏହିସବୁ ସନ୍ଦିଗ୍ଧ ପାଠଭେଦରୁ ଏତିକି ମାତ୍ର ସ୍ପଷ୍ଟ ଯେ ସାରଳାଦାସ ସେ ପୂର୍ବେ କୈଳାସର ପୂର୍ବଦ୍ୱାରର ରକ୍ଷକ ନନ୍ଦୀ ଥିବା କଥା ମହାଭାରତରେ ଲେଖିଥିଲେ ଓ ସେ ଶାପଗ୍ରସ୍ତ ହୋଇ ମନୁଷ୍ୟ ହୋଇଥିବା କଥା ମଧ୍ୟ ମହାଭାରତରେ ଲେଖିଥିଲେ । ସେ ଶାପଗ୍ରସ୍ତ ହେବାର କାରଣ ଓ କାଳିଦାସାଦି ରୂପରେ ତିନି/ଚାରିବାର ମନୁଷ୍ୟ ହୋଇ ଗ୍ରନ୍ଥମାନ ରଚନା କରିଥିବା ନେଇ ମହାଭାରତର କେତେକ ପାଠରେ ଯାହା ସବୁ ଲେଖା ମିଳୁଛି ସେ ସବୁ ମୌଳିକ ଅଂଶ ନୁହେଁ, ପ୍ରକ୍ଷିପ୍ତ ମାତ୍ର ।

କବି ନିଜକୁ ଶିବାନୁଚର ନନ୍ଦୀ ଭାବରେ ମହାଭାରତରେ ଉପସ୍ଥାପିତ କରିବାର ତାତ୍ପର୍ଯ୍ୟ ରହିଛି । ତାଙ୍କ ଭିତରେ ଶୈବ, ଶାକ୍ତ ଓ ବୈଷ୍ଣବ ତ୍ରିବିଧ ଧର୍ମଧାରାର ମିଶ୍ରଣ ଦେଖାଇବା ପାଇଁ ଏହା ଅଭିପ୍ରେତ ଥିବା ମନେ ହୁଏ । ଧର୍ମରାଜ୍ୟରେ ସମନ୍ୱୟ ଚେତନାଟି ପୁରୀର ଶ୍ରୀମନ୍ଦିରରେ ଲାଳିତ ହୋଇଆସୁଥିଲା ରତ୍ନବେଦୀର ବଳଭଦ୍ର (ଶୈବ), ଭଦ୍ରା (ଶାକ୍ତ) ଓ ଜଗନ୍ନାଥ (ବୈଷ୍ଣବ) ତ୍ରିମୂର୍ତ୍ତିଙ୍କୁ ଧରି । ସାରଳାଦାସ ସେହି ଚେତନାଟିକୁ ନିଜ ଭିତରେ ଫୁଟାଇଛନ୍ତି ନିଜକୁ ଶିବାନୁଚର ନନ୍ଦୀ (ଶୈବ), ସାରୋଳଚଣ୍ଡୀଙ୍କ ଉପାସକ (ଶାକ୍ତ) ଓ ବିଷ୍ଣୁଙ୍କ ମହିମାଖ୍ୟାପକ ମହାଭାରତର କବି (ବୈଷ୍ଣବ) କରି । ଏହା ସାରଳାଦାସଙ୍କ ଅସାଂପ୍ରଦାୟିକ ମନୋଭାବର ପ୍ରତିଫଳନ, ଯାହା ମହାଭାରତର ଛତ୍ରେଛତ୍ରେ ସର୍ବବିଧ ଦେବଦେବୀଙ୍କ ସ୍ତୁତିବାକ୍ୟରେ ମଧ୍ୟ ପ୍ରକାଶ ପାଉଛି ।

### ଚଣ୍ଡୀପୁରାଣରେ ବର୍ଣ୍ଣିତ ଜାତିସ୍ମରଣ

ସାରଳାଦାସ ଚଣ୍ଡୀପୁରାଣ ଲେଖିଥିବାରୁ ମହାଭାରତର ଜାତିସ୍ମରଣ ବିବରଣକୁ ବଦଳାଇବାକୁ ପଡ଼ିଲା । ମହାଭାରତ ମୂଳତଃ ବୈଷ୍ଣବ ଗ୍ରନ୍ଥ କିନ୍ତୁ ଚଣ୍ଡୀପୁରାଣ ଶାକ୍ତ । ସାରଳାଦାସ ସ୍ୱଭାବତଃ ବୈଷ୍ଣବ ଯେ କି ତାଙ୍କର ଗ୍ରାମଦେବୀ ସାରୋଳଚଣ୍ଡୀଙ୍କୁ ବୈଷ୍ଣବୀ ସରସ୍ୱତୀ ରୂପରେ ଦେଖିଛନ୍ତି । ତ୍ରିବିଧ ଧର୍ମଧାରାର ସଙ୍ଗମ ନିଜ ଭିତରେ ଦେଖାଇବାକୁ ହେଲେ ନିଜକୁ ଏ ଜନ୍ମରେ ସାରୋଳଚଣ୍ଡୀ ଉପାସକ ନ କହି ବିଷ୍ଣୁଙ୍କଠାରୁ ବରଲବ୍ଧ ବୋଲି କହିଲେ ଚଳିଥାନ୍ତା । କିନ୍ତୁ, ତାଙ୍କର କବିଚେତନା ବୋଧହୁଏ ଏତେଦୂର ବଳବତ୍ତର ଥିଲା ଯେ ସେ ବାଗ୍‌ଦେବୀ ସାରୋଳାଙ୍କୁ ଛାଡ଼ି ପାରି ନଥିଲେ । ପରିଣାମରେ ତ୍ରିବିଧ ଧର୍ମଧାରାର ମିଶ୍ରଣ ଚେତନାକୁ ବଦଳାଇ ନିଜକୁ ବିଷ୍ଣୁଭକ୍ତ ମହର୍ଷି ମନୁ ରୂପେ ଉପସ୍ଥାପନ କଲେ ।

ନୂଆ ଜାତିସ୍ମରଣ ଆଖ୍ୟାନ ପାଇଁ ସାରଳାଦାସ ସଂସ୍କୃତ ଭାଗବତ ପୁରାଣର ସପ୍ତମ ସ୍କନ୍ଦ ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ଜୟ-ବିଜୟଙ୍କ ଶାପ ପ୍ରାପ୍ତି ଆଖ୍ୟାନର ଆଶ୍ରୟ ନେଇଛନ୍ତି । ସଂପୂର୍ଣ୍ଣ ଅଭିନବ ଇତିହ (myth) ଅପେକ୍ଷା ସୁବିଦିତ ଇତିହର ନବୀକରଣ ଅଧିକ ବିଶ୍ୱାସ୍ୟ ହେବା ଆଶାରେ ସେ ଏପରି କରିଥିବା ସମ୍ଭବ । ଭାଗବତର ଚରିତ ଅନୁସାରେ ବୈକୁଣ୍ଠର ଜୟ ଓ ବିଜୟ ନାମଧେୟ ଦୁଇ ଦ୍ୱାରପାଳ ଚତୁଃସନଙ୍କୁ ଚିହ୍ନି ନପାରି ବିଷ୍ଣୁଙ୍କ ଦର୍ଶନକୁ ଛାଡ଼ି ନଥିଲେ । ସନକ, ସନନ୍ଦନ, ସନାତନ ଓ ସନତ୍‌କୁମାର ନାମକ ବ୍ରହ୍ମାଙ୍କର ଏହି ଚାରିଜଣ ପୁତ୍ର ମରୀଚି ଆଦି ମହର୍ଷିଙ୍କଠାରୁ ମଧ୍ୟ ବୟୋଜ୍ୟେଷ୍ଠ ହେଲେ ହେଁ ଚିରକାଳ ପାଞ୍ଚ ଛ ବର୍ଷୀୟ ବାଳକ ରୂପଧାରୀ ହୋଇଥିବାରୁ ଦ୍ୱାରପାଳଙ୍କର ଏପରି ଭ୍ରମ ଜନ୍ମିଥିଲା । ଜୟ-ବିଜୟ ବିଷ୍ଣୁଦର୍ଶନ ପାଇଁ ବାରଣ କରିବାରୁ ଚତୁଃସନ କ୍ରୁଦ୍ଧ ହୋଇ ତାଙ୍କୁ ଶାପ ଦେଲେ ଯେ ସେମାନେ ତିନି ଜନ୍ମ ଯାଏଁ ଅସୁର ହୋଇବେ ।

ଶାପଗ୍ରସ୍ତ ଜୟବିଜୟ କ୍ରମାନ୍ୱୟରେ ହିରଣ୍ୟକଶିପୁ-ହିରଣ୍ୟାକ୍ଷ, ରାବଣ-କୁମ୍ଭକର୍ଣ୍ଣ ଓ ଶିଶୁପାଳ-ଦନ୍ତବକ୍ର ହେଲେ ।

ସାରଳାଦାସ ଚଣ୍ଡୀପୁରାଣରେ ଭାଗବତର ଆଖ୍ୟାନକୁ ବଦଳାଇ ଲେଖିଲେ– ବ୍ରହ୍ମାଙ୍କ ପୁତ୍ର ମହର୍ଷି ମନୁ ବିଷ୍ଣୁଙ୍କ ଦର୍ଶନକୁ ଯିବା ବେଳେ ଜୟବିଜୟ ତାଙ୍କୁ ଚିହ୍ନି ନ ପାରି ଭିତରକୁ ଛାଡ଼ି ନଥିଲେ । ଏଥିରେ କ୍ରୋଧାନ୍ୱିତ ହୋଇ ମନୁ ଦୁଇ ଦ୍ୱାରପାଳ ଅସୁର ଜନ୍ମ ଲଭିବେ ବୋଲି ଶାପ ଦେଲେ । ମନୁଙ୍କ ପରିଚୟ ପାଇ ଜୟବିଜୟ ଅନୁନୟପୂର୍ବକ ଶାପ ଖଣ୍ଡନ ହେବାର ଉପାୟ ଜିଜ୍ଞାସା କଲେ । ମନୁ କହିଲେ, ସେମାନେ ତ୍ରିବାର ଅସୁର ଜନ୍ମ ଲଭି ପ୍ରଥମେ ହିରଣ୍ୟକଶିପୁ-ହିରଣ୍ୟାକ୍ଷ, ଦ୍ୱିତୀୟରେ ରାବଣ-କୁମ୍ଭକର୍ଣ୍ଣ ଓ ଶେଷରେ ଦନ୍ତବକ୍ର-ଶିଶୁପାଳ ହେବେ ଓ ବିଷ୍ଣୁ ଅବତୀର୍ଣ୍ଣ ହୋଇ ତାଙ୍କୁ ନିହତ କଲେ ଯାଇ ସେମାନେ ଶାପମୁକ୍ତ ହେବେ । ମନୁ ଦ୍ୱାରପାଳଦ୍ୱୟଙ୍କୁ ଶାପ ଦେବାରୁ ବିଷ୍ଣୁ ମନୁଙ୍କ ଉପରେ ରାଗିଲେ ଓ ମନୁ ମଧ୍ୟ ତ୍ରିବାର ନରରୂପରେ ଜନ୍ମିବେ ବୋଲି ଶାପ ଦେଲେ–

ଦ୍ୱାର ଶୂନ୍ୟ ହେଲା ଯହୁଁ ବୈକୁଣ୍ଠପୁରର ।
ବିଷ୍ଣୁ କୋପ କଲେ ବ୍ରହ୍ମା-ତନୟ ଉପର ।।
ଆରେ ଅଳ୍ପ ଦୋଷେ ଦ୍ୱାରପାଳ ମୋ ନାଶିଲୁ ।
ଯାଇ ମର୍ତ୍ତ୍ୟପୁରେ ନର ହୁଅ ତୁ ରେ ଓଲୁ ।।
ମନୁ ମହରଷି ଶୁଣି ହୋଇଲେ ବିନୟୀ ।
ପିତାର ଆଜ୍ଞାରେ ଦେବ ଅଇଲି ଯେ ମୁହିଁ ।।
ତୁମ୍ଭ ଅଭିଶାପେ ମୁହିଁ ହୋଇବି ମନୁଷ୍ୟ ।
ମୁକତି ପଥକୁ ମୋତେ କହ ଜଗଦୀଶ ।।
ପ୍ରଭୁ ବୋଲନ୍ତି ମନୁଷ୍ୟ ହୋଇବୁ ନିଶ୍ଚୟ ।
ମମ ଲୀଳା କହି ପୁଣି ବୈକୁଣ୍ଠକୁ ପାଅ ।।
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ସେ ଜନ୍ମରେ ବିଷ୍ଣୁ-ଲୀଳା କଲି ପରକାଶ ।।
କାଳେ ସୁପ୍ରସନ୍ନ ମୋତେ ହୋଇଲେ ଅଙ୍ଗିରା ।
ବିଷ୍ଣୁ ଚରିତ କଥନରେ ମତି ମୋର ତ୍ୱରା ।।
ଦ୍ୱିତୀୟ ଜନ୍ମରେ ମହାକାଳୀ ନାମେ କବି ।
ପଙ୍କଜ ବଦନୀ ସୁପ୍ରସନ୍ନା ବାକ୍ୟ ଦେବୀ ।।
ତୃତୀୟ ଜନ୍ମରେ ହେଲି ଶ୍ରୀ ସାରଳାଦାସ ।
ଶ୍ରୀ ବିଷ୍ଣୁଲୀଳାକୁ ମୁଖେ କରିଲି ଅଭ୍ୟାସ ।।
ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ ।
ତୃତୀୟେ ଲିଖନ କଲି ଶିରୀ ଭାଗବତ ।।

(୧୯୬୧ରେ ଓଡ଼ିଶା ଜଗନ୍ନାଥ କମ୍ପାନି ଦ୍ୱାରା ପ୍ରକାଶିତ ଚଣ୍ଡୀପୁରାଣର ପୃ.୩୫)

ଚଣ୍ଡୀପୁରାଣ ସୁସଂପାଦିତ ହୋଇନାହିଁ । ମୁଁ ପାଠକରିଥିବା ତାଳପତ୍ର ପୋଥିରେ ଏହି ପ୍ରସଙ୍ଗ ଜମାରୁ ଲେଖା ହୋଇନାହିଁ । ତେବେ, ସେହି ପୋଥିରେ କବି ନିଜକୁ 'ଅଭିସାରିକା ମାନେବ ପୂର୍ବରୁ ଅଭିଶାପେ' ବୋଲି କହି 'ଶୂଦ୍ର ମୁନିଙ୍କି ବୈକୁଣ୍ଠେ ଠାବ ଦେବା' ବୋଲି ପ୍ରାର୍ଥନା କରିଥିବାରୁ କବି ମହାଭାରତ ରଚନା ବେଳର ବାଞ୍ଛିତ କୈଳାସବାସକୁ ଚଣ୍ଡୀପୁରାଣ ବେଳକୁ ବଦଳାଇ ଦେଇଥିବା ଅନୁମେୟ । ମୁଦ୍ରିତ ପୁସ୍ତକରେ ସାରଳାଦାସଙ୍କ ଦାଣ୍ଡୀଶୈଳୀ ନଥିବାରୁ ଦାଣ୍ଡୀ ଶୈଳୀର ତାଳପତ୍ର ପୋଥିରେ ଏ ବିଷୟର ସନ୍ଧାନ ଆବଶ୍ୟକ ହେଉଛି ।

ସାରଳାଦାସ ଭାଗବତର ବ୍ରହ୍ମାତନୟ ଚତୁଃସନଙ୍କ ଅନ୍ୟତମ ସନନ୍ଦନଙ୍କ ସ୍ଥାନରେ ବ୍ରହ୍ମାତନୟ ମହର୍ଷି ମନୁଙ୍କୁ ରଖି ଭାଗବତୋକ୍ତ ଆଖ୍ୟାନର ପରିବର୍ତ୍ତନ କଲେ । ମନୁ ବ୍ରହ୍ମାଙ୍କର ଜଣେ ପୁତ୍ର ଥିବା ବିଷୟ ମହାଭାରତ (୨ ସଭା ୩୪୯) ମଧ୍ୟରେ ବର୍ଣ୍ଣିତ ହୋଇଛି । ଚାରିଜଣ ଋଷିଙ୍କୁ ଏକ ଅବତାର କରିବାର ଅସୁବିଧା ଯୋଗୁଁ ଜଣେ ଋଷିଙ୍କ ଆବଶ୍ୟକତା ପଡ଼ିଲା । ମହର୍ଷି ମନୁ ଚରିତ୍ରଟି ସାରଳାଦାସଙ୍କ କଳ୍ପନା ଜାତ; ତାଙ୍କର ମହାଭାରତର ଶ୍ରୋତା ବୈବସ୍ୱତ ମନୁ ଓ ବକ୍ତା ମହର୍ଷି ଅଗସ୍ତି । ସେଠାରେ ମନୁରାଜା, ଏଠାରେ ସେ ମହର୍ଷି । ମନୁ ଶବ୍ଦର ମୌଳିକ (ବୈଦିକ) ଅର୍ଥ ମନନଶୀଳ ପ୍ରାଣୀ । ସାରଳାଦାସଙ୍କ ପ୍ରଚାରିତ ଇତିହରେ ମନୁ ବିଜ୍ଞମାନବର ପ୍ରତୀକ । ସେ ନିଜକୁ ମନୁଙ୍କ ଅବତାର କରି ଭାଗବତର ଆଖ୍ୟାନକୁ ଏକ ନୂଆ ମୋଡ଼ ଦେଇଛନ୍ତି । ଜୟବିଜୟଙ୍କ ତିନି ଅବତାର ସଙ୍ଗେ ତାଳମେଳ ରଖିବାରୁ ମନୁ ତିନି ଅବତାର ହେବା ସମୀଚୀନ ହେଲା । ସାରଳାଦାସ ତାଙ୍କର ପୂର୍ବଜନ୍ମର କାଳିଦାସ ଓ ମହାକାଳୀ (ଦାସ) ନାମ ଦ୍ୱୟ ନିଜର ନାମ ସହିତ ମେଳ ହେବ ବୋଲି ବାଛିଥାଇ ପାରନ୍ତି । କାଳୀ, ମହାକାଳୀ ଓ ସାରଳା ଚଣ୍ଡୀ ସମସ୍ତେ ଏହି ତିନି ଦେବୀଙ୍କ ଦାସ, ସରସ୍ୱତୀଙ୍କ କୃପାପାତ୍ର ବୈଷ୍ଣବ କବି । ସାରଳାଦାସ କୌଣସି ଐତିହାସିକ କବିଙ୍କୁ ଉଦ୍ଦେଶ୍ୟ କରି କାଳିଦାସାଦି ନାମ ଲେଖିଥିବା ମନେ ହେଉନାହିଁ । କବିଙ୍କର ତିନି ଜନ୍ମର ସଂଖ୍ୟାକୁ ଜୁଟିବ ବୋଲି କବି ତିନୋଟି ବୈଷ୍ଣବ ଗ୍ରନ୍ଥର ନାମ ଦେଇଥାଇ ପାରନ୍ତି । କବି ନିଜର କବିସତ୍ତା ମଧ୍ୟରେ ସମଗ୍ର କବିସମବାୟକୁ ସାମିଲ୍ କରି ସବୁ ପୌରାଣିକ ସୃଷ୍ଟିକୁ ନିଜର ରଚନା ରୂପେ ଚିହ୍ନଟ କରିଥାଇ ପାରନ୍ତି । ଏହି ଦୃଷ୍ଟିକୋଣରୁ ବିଚାର କଲେ ସେ ଉଲ୍ଲେଖ କରିଥିବା ରାମାୟଣ ସିଦ୍ଧେଶ୍ୱର ଦାସ ନାମରେ ସେ ପ୍ରଥମେ ଲେଖିଥିବା ବିଚିତ୍ର ରାମାୟଣକୁ ଓ ଭାଗବତ ଶେଷରେ ଲେଖୁଥିବା ଚଣ୍ଡୀପୁରାଣକୁ ବୁଝାଉଛି ବୋଲି ଦୃଢ଼ ଭାବରେ କହିହେଉ ନାହଁ । କବି 'ଲିଖନ କଲି' ବୋଲି ଭୂତକାଳର କ୍ରିୟାବ୍ୟବହାର କରିଛନ୍ତି । ଭାଗବତ ଚଣ୍ଡୀପୁରାଣକୁ ସୂଚାଇବା କଥା ହେଲେ 'ଲିଖନ କରୁଛି' ବୋଲି ବର୍ତ୍ତମାନ କାଳର କ୍ରିୟା ବ୍ୟବହାର କରିବା ଅଧିକ ସଙ୍ଗତ

ହୁଅନ୍ତା । ପାରଂପରିକ ବିଶ୍ୱାସରେ ରାମାୟଣ ଆଦିକାବ୍ୟ, ତାହାପରେ ରଚିତ ହେଲା ମହାଭାରତ ଓ ଶେଷରେ ରଚିତ ହେଲା ଭାଗବତ । ତେଣୁ ଏହି ତିନି ଗ୍ରନ୍ଥ ପାଇଁ ପ୍ରଥମେ, ଦ୍ୱିତୀୟେ ଓ ତୃତୀୟେ ଶବ୍ଦର ପ୍ରୟୋଗ ଯୁକ୍ତିଯୁକ୍ତ ।

## ଦୈବୀପ୍ରସାଦ

ସାରଳାଦାସ ତାଙ୍କ ଉଦ୍‌ଭାବିତ ଅଭିନବ ଚରିତ ଗର୍ଭକ ଗ୍ରନ୍ଥକୁ ସାଧାରଣ ଜନତାଙ୍କ ଗ୍ରହଣୀୟ କରାଇବା ଲକ୍ଷ୍ୟରେ ସେ ଦୈବୀପ୍ରସାଦ ପାଇଥିବା କଥା ମଧ୍ୟ କହିଛନ୍ତି । ମହାଭାରତ ଓ ଚଣ୍ଡୀପୁରାଣରେ ସ୍ଥାନେ ସ୍ଥାନେ ସେ ଜଣାଇଛନ୍ତି ଯେ ତାଙ୍କର ଆରାଧ୍ୟା ସିଦ୍ଧ ସାରୋଳା (ଯେକି ସ୍ୱୟଂ ବାଗ୍‌ଦେବୀ) ତାଙ୍କ ପ୍ରତି ସୁପ୍ରସନ୍ନ ହୋଇ ଗ୍ରନ୍ଥ ରଚିବାକୁ ତାଙ୍କୁ କହିବାରୁ ହିଁ ତାଙ୍କ ଭିତରେ କବିତ୍ୱର ଉଦ୍ରେକ ହେଲା ଓ ସେ ଶୂଦ୍ରମୁନି ହେଲେ । ସେ ଯାହା ସବୁ ଲେଖିଛନ୍ତି ତାହା ଦେବୀ କହିଥିବା ପ୍ରକାରେ । ଦେବୀ ରାତିରେ ଯେପରି କହନ୍ତି କବି ଦିନବେଳେ ସେହିପରି ଲେଖନ୍ତି । ଦେବୀ ତାଙ୍କୁ ଏପରି ଏକ ଚମତ୍କାର ଲେଖନୀ ଦେଇଛନ୍ତି ଯେଉଁଥିରେ ଲେଖିଲେ ଗ୍ରନ୍ଥ ଆପେ ଆପେ ଲେଖା ହୋଇଯାଏ । ସେ ନିରକ୍ଷର, ମୂର୍ଖ ଓ ବିଦ୍ୱଜ୍ଜନ ସଙ୍ଗହୀନ ହୋଇଥିବାରୁ ଦେବୀଙ୍କ ବରପ୍ରସାଦ ବ୍ୟତିରେକେ ଗ୍ରନ୍ଥକାର ହୋଇପାରନ୍ତେ ନାହିଁ । ଏପରିକି ଯେତେବେଳେ ବା ତାଙ୍କ ମନରେ ଦୋଦୋପାଞ୍ଚ ଅବସ୍ଥା ଜାତ ହୁଏ ଦେବୀ ସ୍ୱହସ୍ତରେ ଲେଖି ପଦପୂରଣ କରି ଦିଅନ୍ତି । ଏହି ଧାରାରେ ନିଜନ୍ତ ଅଜ୍ଞତା ଓ ସରସ୍ୱତୀଙ୍କ ପ୍ରସନ୍ନତା ଜ୍ଞାପକ ବହୁ କଥା ସେ ତୁଆକୁତୁଆ କହିଛନ୍ତି ଯେପରି କି ପୁରାଣ ପାଠ/ଶ୍ରବଣ ବେଳେ ପାଠକ/ଶ୍ରୋତା ଏ ବିଷୟଟିକୁ ଭୁଲିଯିବେ ନାହିଁ ଓ ତାଙ୍କଦ୍ୱାରା ପ୍ରଚାରିତ ଅଶ୍ରୁତପୂର୍ବ ଚରିତକୁ ସରସ୍ୱତୀଙ୍କ ବାକ୍ୟ ବୋଲି ଗ୍ରହଣ କରିବେ । ଏଠାରେ ଅଳ୍ପକେତୋଟି ଉଦ୍ଧୃତି ଦେଲେ ଯଥେଷ୍ଟ—

ନ ପଢ଼ି ପଣ୍ଡିତ ମୁଂ ଆଗ୍ୟାଂ ପରମାଣେ ।
ଗ୍ରନ୍ଥ ଅର୍ଥ କଲି ମୁଂ ଶ୍ରୀ ଚଣ୍ଡୀ ସାରୋଳା ପ୍ରସନ୍ନେ ॥
ସେ ଯାହା କହଇ ମୁଂ ଲିହଇ ସେହି ମତେ ।
ମୂର୍ଖ ହୋଇ୍ ଲେଖନ କଲି ମୁଂ ନୋହଇ ପଣ୍ଡିତେ ॥
ଯେ ଅବା ଭ୍ରାନ୍ତି ହୋଅଇ ମୋର ମନେ ।
ଆଁଖିଣେ ପୂରୋଇ ଦେବୀ ଶ୍ରୀହସ୍ତେ କରନ୍ତି ଲେଖନେ ॥ (ଆଦି ୯୪୮)

× × ×

ଶ୍ରୀ ଚଣ୍ଡୀ ସାରୋଳା ମୋତେ ହୋଇଲେ ପ୍ରସନ୍ନ ।
ସେ ଯାହା କହଇ ମୁଂ କରଇ ଲେଖନ ॥ (ବିରାଟ ୭୧୦)

× × ×

ପ୍ରସନ୍ନେ ଦିଲେ ମୋତେ ଲେଖନ ଗୋଟିଏ ।
ଯାହା ଘେନି ଲେଖିଲେ ହୋଇବ ଗ୍ରନ୍ଥମୟେ ।। (ବିରାଟ ୭୧୦)

× × ×

ସେ ଯାହା ରାତ୍ରେ କହଇ ମୁଂ ତାହା ଲେଖିଲି ।। (ଉଦ୍‌ଯୋଗ ୨୭)

× × ×

ମୂର୍ଖ ଅପଣ୍ଡିତ ଅଟଇ ମୋର ବୁଦ୍ଧି ।
ପଣ୍ଡିତପଣେ ମୋର ଗ୍ୟାଂନ ନାହିଂ ସିଦ୍ଧି ।।
ଆଦି ଅନ୍ନପୂର୍ଣ୍ଣା ଯେ ଯକ୍ଷେରପୁରବାସୀ ।
ସେ ମୋତେ ପ୍ରସନେ ଯେ କହଇ ଅହନିଶି ।।
ସେ ଦେବୀର ଆଗ୍ୟାଂ ପ୍ରମାଣେ କରିବି ।
ମହାଭାରତ ନିର୍ଭା କଲି ସେ ଦେବୀର ନାମ ଭାବି ।।
ସେ ମୋତେ ପ୍ରସନ୍ନେ ଦିଅନ୍ତି ଯାହା କହି ।
ଅରୁଣ ଅବକାଶେ ତିମିରି କାହିଂ ରହି ।।
ତେସନକ ଆଗ୍ୟାଂ ମୋତେ ଦିଅନ୍ତି ଭବାନୀ ।
ତାହାଙ୍କର ଆଗ୍ୟାଂରେ ମୁଁ ବୋଲାଇ ଶୂଦ୍ରମୁନି ।। (ଚଣ୍ଡୀପୁରାଣ, ଚିକିଟି)

× × ×

ହେ ବୁଧଜନେ ମୋର ଦୋଷ ନାହିଁ ।
ମହାମାୟା ମୋତେ ଯାହା ସେ କହଇ ।।
ମୁହିଂ ସେ କଥା ଗୋଟି ଅଭ୍ୟାସ କରଇ ।
ସେ ଦେବୀ ପ୍ରସନ୍ନେ ମୁଂ ଯେ ଗ୍ରନ୍ଥ କହିଲଇ ।।

(ଚଣ୍ଡୀପୁରାଣ, ଚିକିଟି ପୋଥି)

କବିର କବିତ୍ୱ ଏକ ଶକ୍ତି, ଯାହାର ଅନ୍ୟନାମ ବାଗ୍‌ଦେବୀ । ଶରୀରରେ କବିତ୍ୱର ଉଦ୍‌ଗମ ହୁଏ କଣ୍ଠରେ; କଣ୍ଠ ବାଗ୍‌ଦେବୀଙ୍କ ଅଧିଷ୍ଠାନ । କବିର ସବୁ କାବ୍ୟକୃତି ବାଗ୍‌ଦେବୀଙ୍କ କରୁଣାର ପ୍ରକାଶ । କବି ନିମିତ୍ତ ମାତ୍ର । ସମସ୍ତେ କବି ହୋଇ ପାରନ୍ତି ନାହିଁ । ଦୈବୀପ୍ରସାଦ ଦାବିରେ ଏହି ଚେତନା ପ୍ରଚ୍ଛନ୍ନ ଭାବରେ କ୍ରିୟାଶୀଳ । ପୁଣି, ଦୈବୀପ୍ରସାଦ ପ୍ରାପ୍ତି ଦାବି ଦ୍ୱାରା ଦ୍ୱିବିଧ ସିଦ୍ଧି ସୁଲଭ ହୁଏ । ପ୍ରଥମତଃ, କବିମାନେ ତିନି ଶ୍ରେଣୀର ବୋଲି ରାଜଶେଖର ପ୍ରମୁଖ ପ୍ରାଚୀନ ଆଳଂକାରିକମାନେ କହିଛନ୍ତି । କାବ୍ୟମୀମାଂସା ଅନୁସାରେ ଉତ୍ତମ ଶ୍ରେଣୀର କବିମାନଙ୍କର କବିତ୍ୱ ନୈସର୍ଗିକ, ଏମାନେ ସ୍ୱଭାବତଃ କବି । କବିତ୍ୱ ଏମାନଙ୍କର ସହଜାତ, ଏମାନେ born poet, ମଧ୍ୟମ ଶ୍ରେଣୀର କବିମାନେ ଆହାର୍ଯ୍ୟବୁଦ୍ଧି । ଏମାନେ ବହୁ ଅଧ୍ୟବସାୟ ଦ୍ୱାରା ଓ ନିଜର ଆଚାର-ବିଚାରକୁ

ଓ ଜୀବନଧାରଣ ରୀତିକୁ କବିତା ସୃଷ୍ଟିର ଅନୁକୂଳ କରାଇବା ଦ୍ୱାରା ହିଁ କବିତ୍ୱ ଶକ୍ତି ଅର୍ଜନ କରିଥାନ୍ତି । ଅଧମ ଶ୍ରେଣୀର କବିମାନେ ଦୈବୀପ୍ରସାଦ ଲବ୍ଧ । ଏମାନେ ଏତେଦୂର ମୂର୍ଖ ଯେ ଏମାନଙ୍କ ଦ୍ୱାରା କାବ୍ୟରଚନା କଦାପି ସମ୍ଭବପର ହୁଅନ୍ତା ନାହିଁ । ଦେବଦେବୀଙ୍କ କରୁଣା ଯୋଗୁଁ ହିଁ ଏମାନେ କବି ହୋଇଯାଆନ୍ତି । ଦୈବୀପ୍ରସାଦ ପାଇଁ କୌଣସି ଉଦ୍ୟମ ମଧ୍ୟ ଆବଶ୍ୟକ ନ ହୋଇପାରେ । ଈଶ୍ୱରେଚ୍ଛା ନିରଙ୍କୁଶ । ନିଜେ ଦୈବୀପ୍ରସାଦ-ଲବ୍ଧ ବୋଲି କହିବା ଦ୍ୱାରା କବି ପ୍ରକାରାନ୍ତରେ ବିନୟଭାବ ପ୍ରକାଶ କରିବା ପାଇଁ ନିଜକୁ ଅଧମ ଶ୍ରେଣୀରେ ରଖନ୍ତି । ସାରଳାଦାସ ନିଜକୁ ନିରକ୍ଷର, ମୂର୍ଖ ବୋଲି ଯାହା ସବୁ ଆତ୍ମପରିଚୟ ଦେଇଛନ୍ତି ତାହା ଦୈବୀପ୍ରସାଦ ଦାବିର ଆନୁଷଙ୍ଗିକ ମାତ୍ର । ଦୈବୀପ୍ରସାଦ ଦାବିର ଅନ୍ୟତର (ଓ ସାହିତ୍ୟର ପ୍ରସାରବୃଦ୍ଧି ସକାଶ ମହତ୍ତର) ସିଦ୍ଧି ହେଉଛି– ସରଳବିଶ୍ୱାସୀ ଧର୍ମପ୍ରାଣ ଶ୍ରୋତାମାନେ ଏହା ଫଳରେ କବି ଉପରେ ଅଧିକ ଆସ୍ଥାବାନ୍ ହୁଅନ୍ତି ଓ କବିର କଳ୍ପନାକୁ ବିଶ୍ୱାସଯୋଗ୍ୟ ତଥ୍ୟ ବୋଲି ଗ୍ରହଣ କରିନିଅନ୍ତି । ଏହା ସାହିତ୍ୟର ପ୍ରସାରର ଅନୁକୂଳ ହୁଏ । ପଲ୍ଲୀବାସୀ ପରଂପରାବଦ୍ଧ ଜନତା 'ଆବେଶ' ପ୍ରକ୍ରିୟା ଉପରେ ଖୁବ୍ ଆସ୍ଥା ରଖେ । କାଳିସୀ ଲାଗିବା ଭଳି ଘଟନା ପଲ୍ଲୀସମାଜରେ ସବୁ ସମୟରେ ଘଟୁଥିଲା, ଏବେ ବି ତାହା ଲୋପ ପାଇନାହିଁ । କାଳିସୀ ଲାଗିବା ଅବସ୍ଥାରେ ଯାହା ଦେହକୁ ଦେବୀ ଆସନ୍ତି, ଯାହା ଦେହରେ ଦେବୀ 'ଉଭା' ହୁଅନ୍ତି ତାହାର ସବୁ କଥା ଦେବୀଙ୍କ ବଚନ ଭାବରେ ମାନ୍ୟତା ପାଇଥାଏ । ଏହି ଘଟନା ଘଟିଲେ ଦେବୀ ଅମୁକ ଲୋକଠି 'ପ୍ରସନ୍ନ' ହୋଇଛନ୍ତି ବୋଲି ଦକ୍ଷିଣ ଓଡ଼ିଶାରେ କହନ୍ତି । ପ୍ରସନ୍ନ ଶବ୍ଦଟିକୁ ଏହି ଅର୍ଥରେ ତେଲୁଗୁ ଲୋକେ ବି ବ୍ୟବହାର କରୁଥିବା ମୁଁ ଜାଣେ । ପ୍ରସନ୍ନ ଶବ୍ଦଟି ପ୍ରସାଦ (ଦୈବୀପ୍ରସାଦ)ର ବିଶେଷଣ ରୂପ । ଭୂତ ଲାଗିବା, ଭେଟଣା ଆଦିରେ ମଧ୍ୟ ପ୍ରାୟ ସେହି ପରକାୟାପ୍ରବେଶ ପ୍ରକ୍ରିୟା ଘଟିଥାଏ । ସାରଳାଦାସ ନିଶ୍ଚୟ ଜାଣିଥିବେ ଯେ ଲୋକଙ୍କ ବିଶ୍ୱାସଭାଜନ ହେବା ଉଦ୍ୟମରେ ନିଜ ଭିତରେ ଦେବୀ 'ପ୍ରସନ୍ନ' ହେବା ଦାବିଟି ସହାୟକ ହେବ ।

ରାତିରେ ପୃଥିବୀ ଶାନ୍ତ ଓ କର୍ମବିରତ ଥିବା ବେଳେ କବିର କାବ୍ୟସୃଷ୍ଟିଶୀଳା ଧିଷଣା ଆଗାମୀ ଦିନର ସୃଷ୍ଟି ପାଇଁ ଭାବିତ ଥାଏ । ଧିଷଣା କବିର କାବ୍ୟଶକ୍ତି, ବାଗ୍‌ଦେବୀ-ସ୍ୱରୂପା । ସେ ହେଲେ ସାରଳାଦାସଙ୍କ ସିଦ୍ଧସାରୋଳା, ଯେ ମହାଭାରତାଦି ଚରିତ ରାତିରେ କହନ୍ତି ଓ କବି ତାକୁ ମନରେ ରଖି ପରଦିନ ଗ୍ରନ୍ଥ ଲେଖନ୍ତି ।

## ଦେବୀଙ୍କର ପୁତ୍ର

ସାରଳାଦାସ ଦେବୀ ସାରୋଳାଙ୍କୁ ନିଜର ଜନ୍ମଦାତ୍ରୀ ବୋଲି କହିଛନ୍ତି । ସବୁ କବି, ସବୁ ଭାଷାର କବି, ଭାଷା ଗର୍ଭରୁ ଜାତ ଓ ଯେ ଭାଷା ସେ ସରସ୍ୱତୀ । 'ବ୍ରାହ୍ମୀ ତୁ ଭାରତୀ ଭାଷା ଗୀର୍ବାଣ୍‌ବାଣୀ ସରସ୍ୱତୀ' (ଅମରକୋଶଃ) । ତେଣୁ କବି ମାତ୍ରେ ରାଧାନାଥରାୟଙ୍କ

ଭାଷାରେ 'ବାଣୀଙ୍କ କୁମର' । ପୁଣି, ସବୁ ଦେବୀ ମାତାଭାବରେ ଗୃହୀତ ଓ ସଂବୋଧିତ ହୁଅନ୍ତି । ଏ ଦୃଷ୍ଟିରୁ ସବୁ ଭକ୍ତ, ସେ କବି ହୁଅନ୍ତୁ କି ନୁହନ୍ତୁ, ଦେବୀଙ୍କ ସନ୍ତାନ । ସାରଳାଦାସ ନିଜର ଗ୍ରାମଦେବୀଙ୍କୁ ବାଗ୍‌ଦେବୀ ରୂପେ ଗ୍ରହଣ କରି ଏତାଦୃଶ ଚେତନାର ପ୍ରଚୋଦନାରେ ନିଜକୁ ସିଦ୍ଧସାରେଳାଙ୍କ ପୁତ୍ର ବୋଲି ଆତ୍ମପରିଚୟ ଦେଇଛନ୍ତି (ଆଦି ୫୨୭, ଭୀଷ୍ମ ୨୩୭, ସ୍ୱର୍ଗାରୋହଣ ୯୬) ।

ଶ୍ରୀ ସାରୋଳାଚଣ୍ଡୀ ନାମେ ସେ ଅଟଇ ମହାଦେବୀ ।
ତାହାଙ୍କର ପୁତ୍ର ମୁଂ ଯେ ସାରୋଳାଦାସ କବି ।। (ଆଦି ୫)

× × ×

କୃପାଜଳ ନନ୍ଦନୀ ଗୋ ସାରଳାଚଣ୍ଡୀ ଦେବୀ
ମୁହିଂ ତୋର ପୁତ୍ର ସାରଳାଦାସ କବି ।। (ଚଣ୍ଡୀପୁରାଣ, ଚିକିଟି ପୋଥି)

ଦେବଦେବୀଙ୍କ ସନ୍ତାନ ହେବା ଦାବିର ପ୍ରୟୋଜନ ଦିଗଟି ମଧ୍ୟ ଚିନ୍ତନୀୟ । ଧର୍ମଭୀରୁ ଜନତା ମଧ୍ୟରେ ଲୋକପ୍ରିୟତା ସୃଷ୍ଟି ପାଇଁ ଏହା ବିଶେଷ ସହାୟକ । ରାଜାମାନେ, ସବୁଦେଶରେ ସବୁଯୁଗରେ, ସରଳବିଶ୍ୱସୀ ପ୍ରଜାମାନଙ୍କଠାରୁ ଅଧିକ ଆନୁଗତ୍ୟ ସଂଗ୍ରହ କରିବା ପାଇଁ ଏହା କରିଆସୁଥିବା ପ୍ରମାଣ ରହିଛି । ଚୋଡ଼ଗଙ୍ଗ ଦେବ ଗୋକର୍ଣ୍ଣେଶ୍ୱରଙ୍କ ପୁତ୍ର ଓ ପ୍ରତାପରୁଦ୍ର ମହାଦେବଙ୍କ ପୁତ୍ର ହେବା ଦାବି ମାଦଳାପାଞ୍ଜିରେ ସ୍ଥାନ ପାଇଛି । କବି ଦେବୀ ସରସ୍ୱତୀଙ୍କ ପୁତ୍ର ହେବା ବିଶ୍ୱାସ ଜନ୍ମିଲେ ତାହା ଯେ କାବ୍ୟର ପ୍ରସାରର ଅଧିକ ସହାୟକ ହୋଇପାରିବ, ଏହି ବିଶ୍ୱାସ ସାରଳାଦାସ ପୋଷଣ କରିବା ଦୋଷାବହ ନୁହେଁ । ତାହା ସଦୁଦ୍ଦେଶ୍ୟ-ପ୍ରଣୋଦିତ ।

### ସାରାଳାଦାସଙ୍କ ଅନୁକାରୀ

ସାରଳାଦାସଙ୍କ ପରେ ଆବିର୍ଭୂତ ବହୁ ଓଡ଼ିଆ କବି, ବିଶେଷତଃ ମୌଳିକ ପୁରାଣକର୍ତ୍ତା ଓ ଧର୍ମପୁସ୍ତକ ପ୍ରଣେତା କବି, ଦୈବୀପ୍ରସାଦ ପାଇଥିବା ଦାବି କରିଛନ୍ତି । ଆଉ ମଧ୍ୟ ଅନେକ କବି କହିଛନ୍ତି ଯେ ସେ ଲେଖିବା ଗ୍ରନ୍ଥଟିକୁ ପ୍ରକୃତରେ ତାଙ୍କର ଆରାଧ୍ୟ ଦେବଦେବୀ ତାଙ୍କ ହୃଦୟରେ/କଣ୍ଠରେ ବସି କହି ଦେଇଛନ୍ତି ଓ ସେ ତାହାକୁ ଲେଖିଛନ୍ତି ମାତ୍ର । ଏମାନଙ୍କ ତୁଳନାରେ ଜାତିସ୍ମର ଓଡ଼ିଆ କବି ସଂଖ୍ୟାରେ କମ୍ । ସାରଳାଦାସଙ୍କୁ ଛାଡ଼ିଲେ ଅନ୍ୟାନ୍ୟ ଜାତିସ୍ମର କବିମାନେ ହେଲେ ବଳରାମ ଦାସ, ନେମାଳର ଅଚ୍ୟୁତାନନ୍ଦ ଦାସ, ପୀତାମ୍ବର ଦାସ ଓ ଗୌରାଙ୍ଗ ଦାସ । ଅଚ୍ୟୁତାନନ୍ଦଦାସ ନିଜର ଧର୍ମମତର ପ୍ରସାରକାମୀ ଓ ଅନ୍ୟମାନେ ମୌଳିକ ପୁରାଣକାର । ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ଶୂଦ୍ରମୁନି । ସେ କହିଛନ୍ତି ଯେ ସେ ରାମରାବଣ ଯୁଦ୍ଧ ବେଳେ ରାମଙ୍କ ସାନ୍ନିଧ୍ୟ ପାଇଥିଲେ–

ମୁହିଂ ବଳରାମ ଦାସ ରାମାୟଣ ଅବତାରେ ଥିଲି ।
ଦିହୁଡ଼ି ଧରିଣ ମୁଂ ସମସ୍ତ ଦେଖିଲି ॥
ମୋତେ ଆଜ୍ଞା ଦେଲେ ମର୍ତ୍ତ୍ୟପୁରକୁ ଯିବୁ ।
କଳିଯୁଗେ ଶୂଦ୍ରମୁନି ହୋଇଣ ଜନମିବୁ ॥ (ଲଙ୍କାକାଣ୍ଡ ଶେଷ)

ନୃସିଂହପୁରାଣର ପ୍ରଣେତା ପୀତାମ୍ବର ଦାସ (ଜନ୍ମ ଖ୍ରୀ. ୧୭୩୫) ଚଣ୍ଡୀପୁରାଣରେ ବର୍ଣ୍ଣିତ ସାରଳା ଦାସଙ୍କର ଜାତିସ୍ମରଣ ବିବରଣକୁ ସଂପ୍ରସାରଣ କରି କବି ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ସାରଳା ଦାସ ଓ ମହାଦେବ ଦାସଙ୍କ ସହିତ ନିଜକୁ ମିଶାଇ ସମସ୍ତେ ଶାପଗ୍ରସ୍ତ ମହର୍ଷି ମନୁଙ୍କ ଅବତାର ବୋଲି ବର୍ଣ୍ଣନା କରିଛନ୍ତି । ଦାମୋଦର ପୁରାଣ ପ୍ରଣେତା ଗୌରାଙ୍ଗ ଦାସ (ଜନ୍ମ ଖ୍ରୀ. ୧୮୦୩) ମଧ୍ୟ ନିଜେ ପୁରାଣଯୁଗର ମହର୍ଷି ତ୍ୱଷ୍ଟା ଥିବା କଥା ଓ ଶାପଗ୍ରସ୍ତ ହେବାରୁ ମାନବ ରୂପେ ଅବତୀର୍ଣ୍ଣ ହୋଇଥିବା କଥା ଲେଖିଛନ୍ତି । ଏମାନେ ସମସ୍ତେ ତାହାଙ୍କ ଦ୍ୱାରା ଉଦ୍ଭାବିତ ଅପୂର୍ବ ଚରିତକୁ ସରଳବିଶ୍ୱାସୀ ଧର୍ମଭୀରୁ ସମାଜର ଗ୍ରହଣୀୟ କରାଇନେବା ଲକ୍ଷ୍ୟରେ ହିଁ ଜାତିସ୍ମରଣ କଥାକୁ ସ୍ୱସ୍ୱ ଗ୍ରନ୍ଥରେ ପ୍ରକଟ କରିଥିବା ଅନୁମିତ ହୁଏ ।

—

## ଷଷ୍ଠ ଅଧ୍ୟାୟ

# ଶୂଦ୍ରମୁନି କାହିଁକି ?

ପ୍ରାୟ ୭୫ ବର୍ଷ ତଳେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନ କଲେଜ ଛାତ୍ର ଟିକିଟିର ରାଜକବି ରାଧାମୋହନ ରାଜେନ୍ଦ୍ର ଦେବଙ୍କୁ ଭେଟିଥିଲେ । ଅନେକ ଗ୍ରନ୍ଥର ପ୍ରଣେତା ରାଧାମୋହନ ସେ ସମୟରେ ଜଣେ କୃତୀ ନାଟକ ଲେଖକ ଓ କବି ଭାବରେ ଗଣା ଯାଉଥିଲେ । ରାଧାମୋହନଙ୍କ ରଚନାଗୁଡ଼ିକର ଭାଷା ଅତ୍ୟନ୍ତ କ୍ଲିଷ୍ଟ, ସନ୍ଧିସମାସ ଶୃଙ୍ଖଳାବଦ୍ଧ ଆଭିଧାନିକ ଶବ୍ଦ ସମନ୍ୱିତ । କଥା ପ୍ରସଙ୍ଗରେ ଛାତ୍ରମାନେ ତାଙ୍କର ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ରାଧାମୋହନଙ୍କ କେତେକ ରଚନା କଥା ପକାଇଥିଲେ ଓ ଶାବ୍ଦିକ ଆଟୋପମୟ ଦୁର୍ବୋଧ୍ୟତା ବିଷୟ ଉତ୍‌ଥାପନ କରିଥିଲେ । ରାଧାମୋହନ ଛାତ୍ରମାନଙ୍କ ଆପତ୍ତି ପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ ଯେ ସେ ପ୍ରକୃତରେ ଅପରିପକ୍ୱ ବୟସର ଛାତ୍ରମାନଙ୍କ ପାଇଁ ଲେଖୁନାହାନ୍ତି, ଲେଖୁଛନ୍ତି ପରିଣତ ବୟସର ପଣ୍ଡିତମାନଙ୍କ ପାଇଁ । ରାଧାମୋହନଙ୍କ ଏହି ପ୍ରତିକ୍ରିୟା ମଧ୍ୟରେ କ୍ଲିଷ୍ଟତା ଓ ଦୁର୍ବୋଧ୍ୟତା ଯେ ଏକ ସାହିତ୍ୟର ଦୋଷ ତାହା ଅଗ୍ରାହ୍ୟ ହେଲା । ଯାହା ଅଜ୍ଞଙ୍କ ପାଇଁ କ୍ଲିଷ୍ଟ ତାହା ପଣ୍ଡିତଙ୍କ ପାଇଁ ନୁହେଁ । ରାଧାମୋହନ ସାହିତ୍ୟିକର ଆଭିମୁଖ୍ୟ ପ୍ରତି ଇଙ୍ଗିତ କଲେ । ଲେଖକ କାହା ପାଇଁ ଲେଖୁଛି ନ ଜାଣି ତା'ର ଲେଖାର ମାନ ନିର୍ଦ୍ଧାରଣ କରିବା ଅନୁଚିତ । ପ୍ରତ୍ୟେକ ଲେଖକ ଲେଖିବାବେଳେ ସେ କାହା ପାଇଁ ଲେଖୁଛନ୍ତି ସ୍ଥିର କରିଥାନ୍ତି ଓ ସେହି ପ୍ରତ୍ୟାଶିତ ପାଠକର ମାନ ତାଙ୍କ ରଚନାର ମାନର ନିୟାମକ ହୋଇଥାଏ । ଜଣେ ସେମିନାର୍‌ରେ ଉପସ୍ଥାପନ ପାଇଁ ନିବନ୍ଧ ପ୍ରସ୍ତୁତ କରିବାବେଳେ ଶିଶୁସାହିତ୍ୟ ପତ୍ରିକା ପାଇଁ ଗପଟିଏ ଓ ପତ୍ନୀ ପାଖକୁ ପତ୍ର ମଧ ଲେଖିପାରେ । ଲେଖକ ଅଭିନ୍ନ ହେଲେ ହେଁ ଶୈଳୀ ଓ ସାହିତ୍ୟିକ କୋଟୀ ଭିନ୍ନ ଭିନ୍ନ ହୁଏ ନାହିଁକି ? ସାହିତ୍ୟର ଆଲୋଚକ କବି/ଲେଖକଙ୍କ ବିଷୟରେ ଜିଜ୍ଞାସୁ ହେଲେ ତାଙ୍କର ପ୍ରତ୍ୟାଶିତ ପାଠକ/ଶ୍ରୋତାଙ୍କ ବିଷୟରେ ଜିଜ୍ଞାସା ରଖିବାକୁ ହୁଏ ।

ଅନେକ ପ୍ରାଚୀନ କବି ସେମାନେ କାହା ପାଇଁ ଲେଖୁଛନ୍ତି ସେ କଥା ଗ୍ରନ୍ଥରେ ସୂଚାଇଥାନ୍ତି । ଭାଗବତକାର ଜଗନ୍ନାଥ ଦାସ ସାଧାରଣ ଜନତା (ସଂସାରଜନ) ପାଇଁ ଲେଖୁଥିଲେ—

ସଂସାରଜନ ହିତେ ଗୀତ । କହିଲା ବିପ୍ର ଜଗନ୍ନାଥ ।। (ସ୍କ ୪, ଅ ୧୨)
ଏହା ସଂସାରଜନ ହିତେ । ଶ୍ରୀ ଏକାଦଶ ଭାଗବତେ ।। (ସ୍କ ୧୧; ଅ ୮)
ଅଶେଷ ଜନଙ୍କର ହିତ । କହଇ ଦାସ ଜଗନ୍ନାଥ ।। (ସ୍କ ୧; ଅ ୧)

କିନ୍ତୁ, ତାଙ୍କର ସମସାମୟିକ କବି ନରସିଂହ ସେଣ ଲେଖୁଥିଲେ ରସିକଜନଙ୍କ ପାଇଁ; ତେଣୁ ସେ ପରିମଳା ଓ ଢଗ ମୁକ୍ତାବଳୀରେ ନିଜକୁ 'ରସିକବନ୍ଧୁ' ବୋଲି ଆଖ୍ୟାତ କରାଇଛନ୍ତି । ଅଭିମନ୍ୟୁ ସାମନ୍ତସିଂହାର ତାଙ୍କର 'ବିଦଗ୍ଧ ଚିନ୍ତାମଣି'ର ପ୍ରାୟ ପ୍ରତ୍ୟେକ ଛାନ୍ଦର ଆରମ୍ଭରେ ତାଙ୍କର ପ୍ରତ୍ୟାଶିତ ପାଠକଙ୍କୁ ଧୀର, ରସିକ, ବିଦୁଷ, ସାଧବ ବୋଲି ସଂବୋଧନ କରିଛନ୍ତି । ଏମାନେ ସାଧାରଣ ଜନତା (ସଂସାରଜନ) ନୁହନ୍ତି; ଏମାନେ ପାଣ୍ଡିତ୍ୟ, ଶିକ୍ଷା ଅର୍ଜନ କରିଥିବା ଶିଷ୍ଟଗୋଷ୍ଠୀ (elite) ।

ଜଗନ୍ନାଥଦାସଙ୍କ ଈପ୍‌ସିତ ପାଠକଙ୍କ ପରି ସାରଳାଦାସଙ୍କ ଈପ୍‌ସିତ ପାଠକମାନେ ମଧ୍ୟ ସଂସାରଜନ ବୋଲି ସେ ଜଣାଇଛନ୍ତି । ସାରଳାଦାସଙ୍କ ଲେଖାରେ ପ୍ରକାଶ ପାଇଥିବା ଧର୍ମବିଶ୍ୱାସ, ଚରିତ୍ରଚିତ୍ରଣ, ଲୌକିକ ରୀତିନୀତି ଆଦିରେ ସାର୍ବଜନୀନ ଆବେଦନ ରହିଛି, ଏହି ଆବେଦନ ସଂକୀର୍ଣ୍ଣ ଶିଷ୍ଟଗୋଷ୍ଠୀଙ୍କ ପ୍ରତି ଅଭିପ୍ରେତ ନୁହେଁ । ସମାଜରେ ବୈଷ୍ଣବ, ଶୈବ, ଶାକ୍ତ, ବ୍ରହ୍ମଜ୍ଞାନୀ, ତାନ୍ତ୍ରିକ ଆଦି ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଟଣାଓଟରା ଲାଗି ରହିଥିଲା, କିନ୍ତୁ, କଥାଟା ଅପ୍ରିୟ ହେଲେ ମଧ୍ୟ ସତ୍ୟ ଯେ ଏସବୁ ସାଂପ୍ରଦାୟିକ ବିବାଦ, ଭେଦଭାବ ଓ ସ୍ୱମତ-ଅଭିମାନ ମୁଖ୍ୟତଃ ଥିଲା ଶିକ୍ଷିତ, ଶାସ୍ତ୍ରଜ୍ଞ ଶିଷ୍ଟଗୋଷ୍ଠୀରେ । ସାଧାରଣ ଗ୍ରାମ୍ୟ ସମାଜ ତତ୍ତ୍ୱଭେଦ କିଛି ବୁଝୁନଥିଲା । ସାଧାରଣ ଅଶିଷ୍ଟ ଗ୍ରାମ୍ୟ ସମାଜର ଆଚାରବିଚାର ହିଁ ସାରଳାଦାସ ପ୍ରକାଶ କରିଥିଲେ । ସେ ଯେଉଁଠାରେ ବା ବୁଧ (ଅପପାଠ 'ବୁଦ୍ଧ') ଜନମାନଙ୍କୁ ସଂବୋଧନ କରିଛନ୍ତି ସେଠାରେ ନିଜର ଅପଣ୍ଡିତପଣକୁ ବିନମ୍ର ଭାବରେ ପ୍ରକାଶ କରି ପାଣ୍ଡିତ୍ୟହୀନ କବିତା ଲେଖୁଥିବାରୁ ବୁଧଜନମାନଙ୍କଠାରୁ କ୍ଷମା ଲୋଡ଼ିଛନ୍ତି; ସେମାନଙ୍କ ମଧ୍ୟରେ ତାଙ୍କ ରଚନା ଆଦୃତ ହେବା ଆଶା ସେ ଜମାରୁ ପୋଷଣ କରିନାହାନ୍ତି (ଯାହା ପରବର୍ତ୍ତୀ ଯୁଗର ଶିଷ୍ଟଗୋଷ୍ଠୀର କବିମାନେ ପୋଷଣ କରିଛନ୍ତି) । ଏହି ଦୃଷ୍ଟିରୁ ବିଚାର କଲେ ସାରଳାଦାସ ଅନେକତ୍ର ଯେଉଁ ବୁଧଜନଙ୍କୁ ସଂବୋଧନ କରିଛନ୍ତି ସେମାନେ ତାଙ୍କର ଈପ୍‌ସିତ ପାଠକ କି ଶ୍ରୋତା ନୁହନ୍ତି, ଆଶଂକିତ ସମାଲୋଚକ ମାତ୍ର ।

## ସଂସାର ଜନହିତେ

ମହାଭାରତର ବହୁ ସ୍ଥାନରେ ସାରଳାଦାସ 'ସଂସାର ଜନହିତେ'/'ଜଗତ ଜନହିତେ' ଗ୍ରନ୍ଥ ଲେଖୁଥିବା କଥା ଜଣାଇଛନ୍ତି, ଯଥା—

ସଂସାର ଜନ-ହିତେ ପ୍ରକାଶିଲି ଗ୍ରନ୍ଥ ମୁହିଂ ।(ଆଦି ୬୪୯)
ଇତି ଶ୍ରୀ ମହାଭାରତ ଆଦି ପର୍ବ ଥାପି ।

ସଂସାର ଜନହିତେ ମୁଁ ବଞ୍ଚାଇଲି ଅଦ୍ୟାପି ।।(ଆଦି ୯୩୨)
ମୁହିଂ ଏହା ବଞ୍ଚାଇଲି ସଂସାରଜନ-ହିତେ ।(ବିରାଟ (୯୬)
ସଂସାରଜନ ବୋଧନେ କହିଲେ ହେଙ୍ଗୁଳା ।
ନନ୍ଦର ନନ୍ଦନୀ ଯେ ହୃଦରେ ମୋର ହାରା ।। (୨ ସଭା ୧୧୩)
ଶ୍ରୀ ଚଣ୍ଡୀସାରଳା କହଇ ଯାହା ମୋତେ
ମୁହିଂ ତାହା କହିବି ସଂସାର ଜନ ହିତେ ।। (ଚଣ୍ଡୀପୁରାଣ, ଆରମ୍ଭ)
ଯହୁଁ ସେ ଅନୁଗ୍ରହ କଲେ ଜଗତମାତା ।
ସଂସାର କଲ୍ୟାଣେ ମୁଂ ଅଭୟ ବକତା ।। (ଚଣ୍ଡୀପୁରାଣ, ପତ୍ର ୯୬)

ଜନସାଧାରଣଙ୍କ ବୋଧଗମ୍ୟ ଭାଷାରେ (ଅର୍ଥାତ୍ ଦେଶଭାଷା ପ୍ରାକୃତରେ) ସାହିତ୍ୟ ସୃଷ୍ଟି ନ ହେଲେ ସଂସାରର କଲ୍ୟାଣ ସମ୍ଭବପର ନୁହେଁ, ଏହି ଦୃଢ଼ ବିଶ୍ୱାସ 'ସଂସାର ଜନ ହିତ' ଆକାଂକ୍ଷାରୁ ପ୍ରକାଶ ପାଉଛି । ସାରଳାଦାସଙ୍କର ଏ ପ୍ରକାର ସାହିତ୍ୟିକ ଆଭିମୁଖ୍ୟକୁ ବଳରାମଦାସ, ଜଗନ୍ନାଥଦାସ ମଧ ଗ୍ରହଣ କରିଛନ୍ତି, ଯଦିଚ ବଳରାମ ଦାସ ସଂସ୍କୃତଜ୍ଞ ଓ ଶିଷ୍ଟଗୋଷ୍ଠୀର ଲୋକ ଓ ଜଗନ୍ନାଥ ଦାସ ବ୍ରାହ୍ମଣ (ଯେଉଁମାନେ ସାଧାରଣତଃ ପ୍ରକୃତଭାଷାର ଅନୁରାଗୀ ନୁହନ୍ତି), ସଂସ୍କୃତ ଭାଷାରେ ସୁପଣ୍ଡିତ ଓ ଭାଗବତ ପରି ଉଚ୍ଚାଙ୍ଗ ସାହିତ୍ୟିକ ପୁରାଣର ଅନୁବାଦକ । ସଂସ୍କୃତ ଭାଷାର ଭଣ୍ଡାର ଅତି ସମୃଦ୍ଧ ହେଲେ ହେଁ ତାହାର ପହଞ୍ଚ କେବଳ ସୁଶିକ୍ଷିତ ଶିଷ୍ଟଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ, ସାଧାରଣ ସଂସାରଜନଠାରୁ ଦୂରରେ । ସାରଳାଦାସ (ଓ ତାଙ୍କ ଅନୁଗାମୀମାନେ) ପ୍ରାକୃତରେ ସାହିତ୍ୟ ସୃଷ୍ଟି କରି ରତ୍ନବେଦୀ ଆଗର ଚନ୍ଦନ ଅର୍ଗଳିକୁ ହଟାଇ ସାହାଣମେଲା କରିଛନ୍ତି ।

## ଶୂଦ୍ରମୁନି ପଦବୀ

ଯେଉଁ ସାରଳାଦାସ ନିଜକୁ ଅଜ୍ଞ, ମୂର୍ଖ, ହୀନ ଆଦି ଭାବରେ ପ୍ରାୟ ସର୍ବତ୍ର ଅଭିହିତ କରିଛନ୍ତି ସେ ପୁଣି ମୁନି ଭଳି ଏକ ସଂଭାବିତ ଓ ମାନନୀୟ ପଦବୀକୁ ସ୍ୱୀକାର କରିବା ଆଶ୍ଚର୍ଯ୍ୟକର ମନେ ହେବ, କାରଣ ମୁନି ଶବ୍ଦ ସାଧାରଣତଃ ତପସ୍ୱୀ, ଋଷି ଓ ଜ୍ଞାନୀ ଅର୍ଥରେ ଚଳେ । 'ଶୂଦ୍ରମୁନି' ପଦବୀ ସାରଳାଦାସଙ୍କୁ ଅନ୍ୟ କେହି ଦେଇ ନାହିଁ । ନିଜେ ନିଜକୁ ଉଚ୍ଚ ପଦବୀରେ ଭୂଷିତ କରି ସେହି ପଦବୀଯୁକ୍ତ ଆପଣା ନାମକୁ ସର୍ବତ୍ର ଘୋଷିତ କରାଇବା ଏକ ବିରଳ ଘଟନା ହେବ ନାହିଁ କି ? ନିଜକୁ ଅଜ୍ଞ, ତୁଚ୍ଛ ଆଦି କହିବାକୁ ଲଜ୍ଜାବୋଧ କରୁନଥିବା ଲୋକ ନିଜକୁ 'ମୁନି' କହୁଛି କିପରି ? ଏହା ତ ସ୍ୱଷ୍ଟତଃ ବିରୋଧାଭାସ ହୋଇ ପଡୁଛି । ଶୂଦ୍ରମୁନି ପଦବୀକୁ ଶୂଦ୍ରମାନଙ୍କର ମୁନି ବା ଋଷି ଅର୍ଥରେ ଗ୍ରହଣ କଲେ ସାରଳାଦାସଙ୍କ ଅନନ୍ୟସୁଲଭ ନମ୍ରତାକୁ ମୁନି ପଦବୀ ସମୂଳେ ଉତ୍ପାଟିତ କରିଦେବ ।

ସମ୍ଭବତଃ ଏହି ଦ୍ୱିଧାରେ ନ ପଡ଼ି ପଣ୍ଡିତ ଗୋପୀନାଥ ନନ୍ଦେ 'ମୁନି'କୁ ବ୍ୟାସଦେବଙ୍କ ପ୍ରତିସ୍ପର୍ଦ୍ଧୀ ଅର୍ଥରେ ଗ୍ରହଣ କରିଥିଲେ । ''ମୂଳଗ୍ରନ୍ଥର ରଚୟିତା ବ୍ୟାସଦେବ ବ୍ରାହ୍ମଣତ୍ୱରୁ ବ୍ରହ୍ମମୁନି ଥିବାରୁ ତଦନୁକରଣରେ ଆତ୍ମଗୌରବ ଓ ସ୍ୱକୃତ ଗ୍ରନ୍ଥର ସମୁତ୍କର୍ଷ ବର୍ଦ୍ଧନାର୍ଥ ସାରଳା ଦାସ ମହାଶୟ ଜନ୍ମତଃ ଶୂଦ୍ର ଥାଇ ସୁଦ୍ଧା ଦେବୀଙ୍କ ପ୍ରସାଦରୁ ଭାରତ ରଚନାରେ ପ୍ରାପ୍ତ-ସାମର୍ଥ୍ୟ ହେଲେ ବୋଲ ଶୂଦ୍ରମୁନି ନାମ ଉପାଧିରୂପେ ପରିଗ୍ରହ କରିଥିଲେ'' (ଶ୍ରୀ ଭାରତ ଦର୍ପଣ, ପୃ. ୨୮୭) । ପୁଣି ''ସାରଳାଦାସେ ସ୍ୱକୀୟ ପୌରାଣିକ ଗୌରବ ସମ୍ପାଦନାର୍ଥ ଓ ପୂର୍ବ ଜନ୍ମାନୁଗତ ବାସନାର ଔନ୍ନତ୍ୟ ସାଧନାର୍ଥ କେବଳ ମୂଳ କବିଙ୍କ ନାମାନୁକରଣରେ ଶୂଦ୍ରମୁନି ଉପାଧି ଧାରଣ କରିଥିଲେ, ସନ୍ଦେହ ନାହିଁ'' (ତତ୍ରତ୍ୟ) । ଜଣେ ସ୍ୱଭାବତଃ ବିନୟୀ କବିଠାରେ ପୂର୍ବଜନ୍ମାନୁଗତ ବାସନାର ଉନ୍ନତତା ଆରୋପ ଅବିଚାରିତ ।

କେହି କେହି ମୁନିକୁ ଦେବୀପୂଜକ ଶୂଦ୍ର ଜାତି ବିଶେଷ ଅର୍ଥରେ ଗ୍ରହଣ କରିଛନ୍ତି । ସେମାନେ ଏହି ନିର୍ଣ୍ଣୟକୁ ଇ.ଥର୍ଷ୍ଟନ୍‌ଙ୍କ ଖ୍ରୀ. ୧୯୦୯ରେ ପ୍ରକାଶିତ ଦକ୍ଷିଣ ଭାରତର ଜାତି ଓ ଗିରିଜନ (Castes and Tribes of South India) ଗ୍ରନ୍ଥର ଷଷ୍ଠ ଖଣ୍ଡରୁ ନେଇଥିବା ଅନୁମିତ ହୁଏ । ଥର୍ଷ୍ଟନ୍ ତାଙ୍କ ଗ୍ରନ୍ଥରେ ଦର୍ଶାଇଛନ୍ତ ଯେ ଓଡ଼ିଆ ଭାଷୀଙ୍କ ମଧ୍ୟରେ ତିନିଜାତିର ମନ୍ଦିର-ସେବକ ଅଛନ୍ତି– ୧. ରାଉଳ (ଶିବ ମନ୍ଦିରର ସେବକ); ୨. ମାଳି (ଶିବ ଓ ବିଷ୍ଣୁମନ୍ଦିରର ସେବକ) ଓ ୩. ମୁନି (କେବଳ ଦେବୀ ମନ୍ଦିରର ସେବକ) । ଏହି ଖଣ୍ଡର ପୃ. ୨୪୭ରେ ଲେଖାଅଛି– ''ଜନୈକ ମୁନି, ସାରଳାଦାସ, ମହାଭାରତର ସର୍ବାଧିକ ଲୋକପ୍ରିୟ ଓଡ଼ିଆ ରୂପର ପ୍ରଣେତା ଓ ସେ ଶୂଦ୍ରମୁନି, ଶୂଦ୍ରସାଧୁ, ଭାବରେ ପରିଚିତ'' (A muni, Sarala Dass, was the author of the most popular Oriya version of the Mahabharata, and he is known as Sudra Muni, the Sudra Saint) । ମାନ୍ଦ୍ରାଜର ୧୯୦୧ ଖ୍ରୀ. ଜନଗଣନା ରିପୋର୍ଟ ଅନୁଯାୟୀ ରାଉଳ ଜାତିର ଏକ ଶାଖାର ନାମ ସିପିଟି, ଏମାନେ ଗ୍ରାମଦେବୀ ପୂଜକ ସ୍ମାର୍ତ୍ତ । ସିପିଟିମାନଙ୍କର ଜାତି ସାଂଜ୍ଞା 'ମୁନି' । ଥର୍ଷ୍ଟନ୍ ସିପିଟି ଜାତିକୁ ମୁନି ଜାତି ବୋଲି ଗ୍ରହଣ କରି ଭୁଲ୍ କରିଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ ତାଙ୍କର ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ଠିକ୍ ଲେଖିଛନ୍ତି ଯେ 'ରାଉଳ ସଦୃଶ ଶିବପୂଜକ ଶୂଦ୍ରଜାତିବିଶେଷ' ମୁନି । ଏ ମୁନି ଜାତି ଗଞ୍ଜାମରେ ହିଁ ଅଛନ୍ତି । ଗଞ୍ଜାମରେ ଶିବପୂଜକ କେତେକ ବ୍ରାହ୍ମଣଙ୍କର ମଧ୍ୟ କୁଳସାଂଜ୍ଞା 'ମୁନି' । ଆସିକାର ପ୍ରସିଦ୍ଧ ତ୍ରିବିଧେଶ୍ୱର ଶିବ ମନ୍ଦିରର ପୂଜକବ୍ରାହ୍ମଣମାନେ ମୁନି ସାଂଜ୍ଞାଧାରୀ । ସାରଳାଦାସ କୌଣସି ମୁନି ଜାତିର ଥିବା ସିଦ୍ଧାନ୍ତ ଭ୍ରମାତ୍ମକ । କାରଣ–

୧. ସାରଳାଦାସ ନିଜେ ଶୂଦ୍ର କୁଳରେ ଜାତ ବୋଲି ହିଁ ଆତ୍ମପରିଚୟ ଦେଇଛନ୍ତି । ଶୂଦ୍ର ଜାତିଗୋଷ୍ଠୀ ମଧ୍ୟରୁ ସେ ନିର୍ଦ୍ଦିଷ୍ଟ ଭାବରେ କେଉଁ ଜାତିର ତାହା ଜଣାଇବା ପାଇଁ

ଇଚ୍ଛା କରିନାହାନ୍ତି । ଜଣାଇଥିଲେ ସେ ସମଗ୍ର ଶୂଦ୍ର ଜନତାର ପ୍ରତିନିଧି ବୋଲି ଗୃହୀତ ହେବାରେ ବାଧା ଦେଖାଦିଅନ୍ତା ?

୨. ସାରଳାଦାସ ନିଜର କୌଳିକବୃତ୍ତି ଚାଷବାସ ଥିବା କଥା ଜଣାଇଛନ୍ତି– ''ଜନ୍ମେ ଜନ୍ମେ କୃଷିକାରୀ'' (ଚଣ୍ଡୀପୁରାଣ), ପୁଣି ''ବଳରାମ ଶହସ୍ର ଧରିଣ କୃଷି କରିଣ ବ୍ରତି ।'' ମୁନି କୃଷକ ଜାତି ନୁହେଁ ।

୩. ମୁନି ଜାତି ଗଞ୍ଜାମରେ ଅଛନ୍ତି ସିନା ପୁରୀ କି କଟକ ଜିଲାରେ ନାହାନ୍ତି । ଇତିପୂର୍ବେ ସାରଳାଦାସଙ୍କ ବାସସ୍ଥାନ କୋଣାର୍କ ନିକଟରେ ଥିବା ବିଷୟ ପ୍ରତିପାଦିତ ହୋଇଛି । ସେଠାରେ ମୁନି ଜାତି ନାହାନ୍ତି ।

୪. ସାରଳାଦାସ ବହୁବାର ଜଣାଇଛନ୍ତି ଯେ ସେ ଦେବୀ ସାରୋଳଚଣ୍ଡୀଙ୍କ ଅନୁଗ୍ରହ ପାଇ ଶୂଦ୍ରମୁନି ହେଲେ–

ଶୂଦ୍ରମୁନି ପଦକୁ ମୁଂ ଭାର୍ଜନ ସାରୋଳା ପ୍ରସାଦେ । (ଦ୍ରୋଣ ୪୮)
ଶୂଦ୍ରମୁନି ପଦ ମୋର ଶ୍ରୀ ସାରୋଳାଦେବୀ ପରସାଦେ । (କର୍ଣ୍ଣ ୧୩୩)

ଶୂଦ୍ରମୁନିକୁ ଏକ 'ପଦ' ବୋଲି ଅଭିହିତ କରୁଥିବାରୁ ମୁନିର ଅର୍ଥ ଜାତିବିଶେଷ ହୋଇ ନପାରେ । ସେ ତ ଶୂଦ୍ର । ସେ ଯଦି ଶୂଦ୍ର ଜାତି ଗୋଷ୍ଠୀ ଭୁକ୍ତ ମୁନିଜାତିରେ ଜନ୍ମିଥାନ୍ତେ ତେବେ ଶୂଦ୍ରମୁନି ବୋଲାଇବା ପାଇଁ ଦେବୀଙ୍କ ପ୍ରସାଦର ପ୍ରୟୋଜନ ଥାଆନ୍ତା ନାହିଁ ଓ ଶୂଦ୍ରମୁନି ଏକ ପଦ ହୁଅନ୍ତା ନାହିଁ ।

୫. ସାରଳା ଦାସଙ୍କ ପରି ମୌଳିକ ପୁରାଣକାର ବଳରାମ ଦାସ ମଧ୍ୟ ନିଜକୁ 'ଶୂଦ୍ରମୁନି' କହିଥିବା ଉଲ୍ଲେଖନୀୟ । ସେ ଜଗମୋହନ ରାମାୟଣର ଲଙ୍କାକାଣ୍ଡ ଶେଷରେ ଲେଖିଛନ୍ତି–

ମୁହିଂ ବଳରାମ ଦାସ ରାମାୟଣ ଅବତାରେ ଥିଲି ।
ଦିହୁଡ଼ି ଧରିଣ ମୁଁ ସମସ୍ତ ଦେଖିଲି ।।
ମୋତେ ଆଜ୍ଞା ଦେଲେ ମର୍ତ୍ତ୍ୟପୁରକୁ ଯିବୁ ।
କଳିଯୁଗେ ଶୂଦ୍ରମୁନି ହୋଇଣ ଜନମିବୁ ।।

ବଳରାମ ଦାସଙ୍କ ଜାତି ମୁନି ନଥିଲା । ସେ ପୁରୁଷୋତ୍ତମ ଦେବଙ୍କ ମନ୍ତ୍ରୀ ସୋମନାଥ ମହାପାତ୍ରଙ୍କ ପୁତ୍ର, ଜାତିରେ କରଣ । ସାରଳାଦାସଙ୍କ ପରି ସେ ମଧ୍ୟ 'ଶୂଦ୍ରମୁନି' ହୋଇଥିବାରୁ ମୁନି କୌଣସି ଜାତିବିଶେଷର ନାମ ହୋଇ ନ ପାରେ ।

୬. ସାରଳାଦାସ ନିଜେ ମୁନି ଅଂଶ ନେଇ ଜନ୍ମିଥିବା କଥା କହିଛନ୍ତି ସିନା ମୁନି ଜାତିରେ ଜନ୍ମ ଲାଭ କରିଥିବା କଥା କହିନାହାନ୍ତି ।

ମୁନି ଅଂଶ ହୋଇଣ ମୁଂ ଜାତ ଶୁଦ୍ରଯୋନି ।
ଶ୍ରୀ ସାରୋଳା ପ୍ରସନ୍ନେ ମୁଂ ହୋଇଲି ଶୂଦ୍ରମୁନି ।। (ବିରାଟ, ୭୧୦)

ଶ୍ରୀ ମହାଭାରତ ଯେ ମୁନି ଅଂଶ ବାକ୍ୟେ

ଯେହା ମୁଂ ଘଟଣ କରଇ ଯେହ୍ନେ ମୋର ଶକ୍ୟେ ।। (ସ୍ୱର୍ଗାରୋହଣ ୪୨)

ମୁନି ଅଂଶ ମୁନିଜାତି ହୋଇ ନପାରେ । ସେ ନିଜକୁ ମୁନି ଅଂଶ (ଅର୍ଥାତ୍ ମୁନିକଳା ଯୁକ୍ତ) କହିବା ସହିତ 'ମୁନି ଅବତାର' ବୋଲି ମଧ୍ୟ କହିଛନ୍ତି–

ଶ୍ରୀ କୃଷ୍ଣର ଦାସ ମୁଂ ଯେ ମୁନି ଅବତାରେ ।। (ସ୍ୱର୍ଗାରୋହଣ ୨୧)

## 'ମୁନି ଅଂଶ'ର ତାତ୍ପର୍ଯ୍ୟ

'ମୁନି ଅଂଶ' ମନୁଷ୍ୟର ପୂର୍ବ ସଂସ୍କାରଗତ ସାମର୍ଥ୍ୟ ବୋଲି ସାରଳାଦାସ ଅନେକ ସ୍ଥାନରେ ସ୍ୱଷ୍ଟ ଭାଷାରେ ଲେଖିଛନ୍ତି । ଏହା ତାଙ୍କ ବିଚାରରେ ମନୁଷ୍ୟର ସହଜାତ ଗୁଣ, ସଂଚିତ ଗୁଣ । ସାରଳାଦାସ ମନୁଷ୍ୟର ଗୁଣ ସେ ଯେଉଁ ଅଂଶ ନେଇ ଜାତ ତଦନୁସାରୀ ହୁଏ ବୋଲି ଲେଖିଛନ୍ତି–

ଭୀମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଭୟେ ।
ପ୍ରହ୍ଲାଦ ଅଂଶେ ଜାତ ହୋଇଲେ ବଇଷ୍ଣବ ହୋୟେ ।।
ମୁନି ଅଂଶେ ଜାତ ହୋଇଲେ କାବ୍ୟ ପାରଇ କହି ।
ନ ପଢ଼ିଣ ବିଦ୍ୟା ଯେ ସାଧନ କଲି ମୁହଂ ।। (୨ ବନ ୧୯୨)

× × ×

ଗନ୍ଧର୍ବ କଳା ନଥିଲେ ବୀଣାବିଦ୍ୟା ହୋଅଇ କି ସାଧି ।
ମୁନି ଅଂଶେ ଜାତ ନୋହିଲେ ଶାହାସ୍ର ପାରଇ କି ଛନ୍ଦି ।
(ଉଦ୍‌ଯୋଗ ୧୩୨)

× × ×

ଶୂଦ୍ରମୁନି ପଦକୁ ମୁଂ ଭାର୍ଜନ ସାରୋଳା ପ୍ରସାଦେ ।।
ଯେଡ଼େ ବଡ଼ ପଦକୁ କିସ ମୋହର ପ୍ରତଗ୍ୟାଂ ।
ସୟଳଜନ ତାରିଣୀ ସିଦ୍ଧ ସାରୋଳାର ଆଗ୍ୟାଂ ।। (ଦ୍ରୋଣ ୧୮)

ଅତଏବ ସାରଳାଦାସ କବିତ୍ୱ ଶକ୍ତି ଓ ଶାସ୍ତ୍ରପ୍ରଣୟନ ଶକ୍ତିକୁ 'ମୁନିଅଂଶ' ବୋଲି କହୁଛନ୍ତି ସିନା କୌଣସି ଜାତିବିଶେଷକୁ ମୁନିଅଂଶ କହୁନାହାନ୍ତି । ଭାରତର କାବ୍ୟ-ପୁରାଣରେ ସୃଷ୍ଟି ପରଂପରା ସହିତ ମୁନିମାନେ ସଂପୃକ୍ତ– ବାଲ୍ମୀକି ମୁନି, ବ୍ୟାସ ମୁନି । ମହାକାବ୍ୟ ଭାବରେ ଖ୍ୟାତ ରାମାୟଣ ଓ ମହାଭାରତ ଓଡ଼ିଶାରେ ପୁରାଣ ବୋଲାନ୍ତି । ସବୁ ପୁରାଣର କର୍ତ୍ତା ବ୍ୟାସ ମୁନି ବୋଲି ସୁପ୍ରଚାରିତ । ପୁରାଣଗୁଡ଼ିକର ପ୍ରକାଶ ନୈମିଷାରଣ୍ୟ ଆଦିରେ ଉପବିଷ୍ଟ ମୁନି ସମାଜ ମଧ୍ୟରେ ଜଣେ ବରେଣ୍ୟ ମୁନିଙ୍କ ଦ୍ୱାରା ହୁଏ । ତେଣୁ ସାରଳାଦାସଙ୍କ ବିଚାରରେ ଶୂଦ୍ରମୁନି ଏକ ଅତି ବିଶିଷ୍ଟ ପଦବୀ (ଯେଡ଼େ ବଡ଼ ପଦ) । ଶାହାସ୍ରର ଅର୍ଥ ଶାସ୍ତ୍ର ଓ ଛନ୍ଦିବାର ଅର୍ଥ ଲେଖିବା (ଶବ୍ଦଟି ଛନ୍ଦୋବଦ୍ଧ କରିବା

କ୍ରିୟାରୁ ଜାତ) । ତେଣୁ ମୁନିର ଅର୍ଥ କବି । ସାରଳାଦାସ ଚଣ୍ଡୀପୁରାଣରେ ଶୂଦ୍ରମୁନି ବଦଳେ ଶୂଦ୍ରକବି ଶବ୍ଦ ମଧ୍ୟ ବ୍ୟବହାର କରିଛନ୍ତି– "ଭାବେ ଭଜିଲା ଯେ ସାରଳା ଶୂଦ୍ର କବି ।"

## ଶୂଦ୍ର କିଏ ?

ସାରଳାଦାସ ଶୂଦ୍ର ଗୋଷ୍ଠୀଭୁକ୍ତ ବିଭିନ୍ନ ଜାତି ମଧ୍ୟରୁ କୌଣସି ଏକ ଜାତିର ଥିଲେ । କୃଷି ତାଙ୍କର କୁଳବୃତ୍ତି ଥିଲା । ତାଙ୍କର ନିର୍ଦ୍ଦିଷ୍ଟ ଜାତିର ନାମ କଣ, ତାହା ସେ ଜଣାଇନାହାନ୍ତି । ସେ ଶୂଦ୍ର ସମାଜର ଶାସ୍ତ୍ରକାର ଥିଲେ, କବି ଥିଲେ । ତେଣୁ ସେ ଶୂଦ୍ରମୁନି । ସେ 'ସଂସାରଜନହିତେ' ଗ୍ରନ୍ଥ ରଚନା କରୁଥିବା ସତ୍ତ୍ୱେ ନିଜକୁ କେବଳ ଶୂଦ୍ର ମଧ୍ୟରେ ଆବଦ୍ଧ ରଖିବାକୁ ଚାହିଁଲେ କାହିଁକି ? ସଂସାରଜନ କଣ କେବଳ ଶୂଦ୍ର ? ଏହି ସନ୍ଦେହ-ଗ୍ରନ୍ଥି ଉନ୍ମୋଚନ ପାଇଁ ସାରଳାଦାସଙ୍କ ବେଳର ଓଡ଼ିଶାରେ ଶୂଦ୍ର ଶବ୍ଦ କାହାକୁ ବୁଝାଉଥିଲା ବିଚାର କରିବା କଥା ।

ସଂସ୍କୃତ ଭାଷାର ସ୍ମୃତି ଗ୍ରନ୍ଥ (ଏପରିକି ସଂସ୍କୃତ ମହାଭାରତ, ପୁରାଣ) ଆଦିରେ ଶୂଦ୍ର ଶବ୍ଦର ଯେଉଁ ଅର୍ଥ ଦିଆଯାଇଛି ତାହା ସହିତ ଓଡ଼ିଶାରେ ଶୂଦ୍ରର ବ୍ୟାବହାରିକ ଅର୍ଥର ମେଳ ଅପେକ୍ଷା ଅମେଳ ଅଧିକ । ମନୁସ୍ମୃତି (୧/୯୦) ବିଭିନ୍ନ ଜାତିଗୋଷ୍ଠୀର କର୍ମ ଲେଖିବା ମଧ୍ୟ ବୈଶ୍ୟଜାତି ଗୋଷ୍ଠୀର କର୍ମ ନିରୂପଣ କରିଛି–

ପଶୂନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନ ମେବ ଚ ।
ବଣିକ୍ ପଥଂ କୁସୀଦଂ ଚ ବୈଶ୍ୟସ୍ୟ କୃଷିମେବଚ ॥

ଏହି ବ୍ୟବସ୍ଥା ଅନୁସାରେ ଗୋପାଳ ଜାତି, ବଣିଆ, କୁମୁଟି ଆଦି ବେପାରୀ ଜାତି, ମହାଜନ କୁଳ ଓ ବିଭିନ୍ନ କୃଷକ ଜାତି (ପନ୍ଦରା, ପାନରା ସମେତ) ବୈଶ୍ୟ ଭାବରେ ଗଣା ହେବା କଥା । କିନ୍ତୁ ଓଡ଼ିଶାରେ ଗଉଡ଼, ଚାଷୀ ଆଦି ଶୂଦ୍ର ବୋଲି ହିଁ ଧରା ହୁଅନ୍ତି । ସାରଳାଦାସ କୃଷକ ଜାତିର ହେଲେ ହେଁ ସେ ଶୂଦ୍ର । ଏହାର ରହସ୍ୟ କ'ଣ ?

ଆର୍ଯ୍ୟମାନେ ବ୍ରହ୍ମାବର୍ତ୍ତ (ବୈଦିକଯୁଗର ସରସ୍ୱତୀ ଓ ତାହାର ଉପନଦୀ ଦୃଷଦ୍‌ବତୀର ମଧ୍ୟବର୍ତ୍ତୀ) ଦେଶରେ ଥିବା ଯୁଗରେ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାର ସୃଷ୍ଟି ସମ୍ଭବତଃ ହୋଇ ନଥିଲା । ତେଣୁ ଋଗ୍‌ବେଦର ପ୍ରାଚୀନତର ଅଂଶରେ ବର୍ଣ୍ଣ ବିଭାଗର ସୂଚନା ମିଳେ ନାହିଁ । ଆର୍ଯ୍ୟସମାଜ କ୍ରମେ ମଧ୍ୟ ଦେଶକୁ (ଅର୍ଥାତ୍, ହିମାଳୟ ଓ ବିନ୍ଧ୍ୟ ପର୍ବତର ମଧ୍ୟବର୍ତ୍ତୀ କୁରୁକ୍ଷେତ୍ରର ପୂର୍ବକୁ ପ୍ରୟାଗ ପର୍ଯ୍ୟନ୍ତ ପରିବ୍ୟାପ୍ତ ଦେଶକୁ) ବ୍ୟାପିବା ବେଳେ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାର ସୃଷ୍ଟି ହେଲା । ପ୍ରଥମେ ଏହି ବର୍ଣ୍ଣ ଥିଲା ଗୁଣ-କର୍ମ-ବିଭାଗ । 'ଜନ୍ମନା ଜାୟତେତ ଶୂଦ୍ର ସଂସ୍କାରାଦ୍ ଦ୍ୱିଜମୁଚ୍ୟତେ' ବିଚାର ପ୍ରାରମ୍ଭିକ ସ୍ତରର । କାଳକ୍ରମେ ବର୍ଣ୍ଣବ୍ୟବସ୍ଥା ଗୁଣ-କର୍ମରେ ଆବଦ୍ଧ ନ ହୋଇ ବଂଶାନୁଗତ ହୋଇଗଲା । ମନୁସ୍ମୃତି ରଚନାବେଳକୁ ଜାତିବିଭାଗ ବଂଶାନୁଗତ୍ ହୋଇ ସାରିଥିଲାଣି । ଜାତି ବିଭାଗ

ମଧ୍ୟ ଦେଶରେ ଉଦ୍ଭବ ହୋଇ ପୂର୍ବ ଓ ଦକ୍ଷିଣକୁ ସଂଚାରିତ ହୋଇଥିଲା । ବ୍ରାହ୍ମଣମାନେ ମଧ୍ୟଦେଶରୁ ଯାଇ ସେଠାରେ ଜାତି ବିଭାଗର ରୋପଣ କରିବାବେଳେ ସ୍ଥାନୀୟ ଅଧିବାସୀଙ୍କୁ ସେମାନଙ୍କର ଗୁଣ-କର୍ମ ନିର୍ବିଶେଷରେ ଶୂଦ୍ର ଗୋଷ୍ଠୀଭୁକ୍ତ କରିଥିଲେ । ମଧ୍ୟଦେଶରୁ କାନ୍ୟକୁବ୍ଜ, ସାରସ୍ୱତ, ପ୍ରୟାଗ ଆଦି ବିଭିନ୍ନ ସ୍ଥାନରୁ ଓଡ଼ିଶାର ବ୍ରାହ୍ମଣମାନେ ଆସିଥିବା କଥା ସୁବିଦିତ । ବ୍ରାହ୍ମଣ୍ୟ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାକୁ ଗ୍ରହଣ କରିଥିବା ରାଜାମାନେ ଦଳେ ଦଳେ ବ୍ରାହ୍ମଣଙ୍କୁ ଉତ୍ତର ଭାରତରୁ ଆଣି ନିଷ୍କର ଭୂମି (ଶାସନ ଗ୍ରାମ) ଦେଇ ରଖିଥିଲେ । ଓଡ଼ିଶାର ବ୍ରାହ୍ମଣସମାଜ ମୋଟାମୋଟି ଭାବରେ ଉତ୍ତର ଦେଶାଗତ । ଅବଶ୍ୟ ଶିକ୍ଷା ଓ ସଂସ୍କୃତି ହାସଲ କରି ରାଜକୀୟ ପୃଷ୍ଠପୋଷକତା ଲାଭ କରି ଶୂଦ୍ରରୁ ଜାତିଆଣ ସିଡ଼ିରେ ଉଠି ବ୍ରାହ୍ମଣ (ଅଥବା କ୍ଷତ୍ରିୟ, ବୈଶ୍ୟ) ହେବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ଓଡ଼ିଶାରେ କ୍ଷତ୍ରିୟଗୋଷ୍ଠୀର ସୃଷ୍ଟିର କଥା ସୁବିଦିତ । ଓଡ଼ିଶାରେ ଯେ ବାହୁବଳରେ ରାଜ୍ୟ ଅଧିକାର କରିପାରିଲା ସେ ହେଲା କ୍ଷତ୍ରିୟ । ଓଡ଼ିଶାର 'ଛତିଶ ପାଟକ' ଜାତିଗୋଷ୍ଠୀ ମୁଖ୍ୟତଃ ଶୂଦ୍ରଜାତିମାନଙ୍କୁ ନେଇ ଗଠିତ । ସବୁଗୁଡ଼ିକ ଉତ୍ପାଦନ ବୃତ୍ତିକ ଜାତି, ଶିଳ୍ପୀ ଜାତି, ସମାଜସେବୀ ଜାତି, ବ୍ୟବସାୟୀ ଜାତି 'ଛତିଶପାଟକ ଭୁକ୍ତ' । ସାରଳାଦାସ ଭାନୁମତୀ ସ୍ୱୟଂବରରେ ଛତିଶପାଟକର ରାଜାମାନେ ଉପସ୍ଥିତ ଥିଲେ ବୋଲି ଲେଖିଛନ୍ତି । ସ୍ମୃତିଗ୍ରନ୍ଥମାନଙ୍କରେ କଳିଯୁଗର ନନ୍ଦରାଜାଙ୍କ ପରେ କ୍ଷତ୍ରିୟ ଜାତି ଲୋପ ପାଇଲା ବୋଲି ଯାହା ଲେଖାଅଛି ତାହା ସୂଚାଉଛି ଯେ କ୍ଷତ୍ରିୟମାନଙ୍କ ବିଷୟରେ ଗୁଣ-କର୍ମ ନିୟମଟି ଅପରିବର୍ତ୍ତିତ ରହିଲା । ଯେ ରାଜା ହୋଇପାରିଲା ସେ କ୍ଷତ୍ରିୟ ବୋଲାଇଲା । ଓଡ଼ିଶାରେ ସୁପ୍ରଚଳିତ ସ୍ମୃତିଶାସ୍ତ୍ର 'ପଣ୍ଡିତ ସର୍ବସ୍ୱ'ରେ ଥିବା ବିଧାନ ପ୍ରଣିଧାନଯୋଗ୍ୟ– ''ନନ୍ଦାନ୍ତାଃ କ୍ଷତ୍ରିୟାଗତା ଇତି କଳୌ କ୍ଷତ୍ରିୟଲୋପଃ । ଯଦ୍ୟପି କ୍ଷତସ୍ତ୍ରାୟତ ଇତି ବ୍ୟୁତ୍ପତ୍ତ୍ୟା କ୍ଷତ୍ରିୟଶବ୍ଦୋ ଯୋଗରୂଢ଼ ତଥାପି ପ୍ରଜାପାଳନାର୍ଥଂ ଶସ୍ତ୍ରଧାରିଣୋ ଭୂପତୟଃ କ୍ଷତ୍ରତ୍ୱେନ ବ୍ୟବହାର୍ଯ୍ୟାଃ । କେବଳଂ ଧର୍ମାଚରଣେ ଶୂଦ୍ରା ଏବ'' (ପ୍ରଥମ ପ୍ରଭା) । ପୁଣି ବ୍ରାହ୍ମଣମାନଙ୍କୁ ହିଁ ଶ୍ରେଷ୍ଠତ୍ୱ ଦେଉଥିବା ସ୍ମୃତିଶାସ୍ତ୍ର କଳିଯୁଗରେ ବୈଶ୍ୟମାନେ ଶୂଦ୍ରତୁଲ୍ୟ ବୋଲି ବିବେଚନା କରେ ''କଳୌ ବୈଶ୍ୟାଃ ଶୂଦ୍ରତୁଲ୍ୟାଃ'' (ପଣ୍ଡିତ ସର୍ବସ୍ୱ, ପ୍ରଥମ ପ୍ରଭା) । ବର୍ଣ୍ଣବିଭାଗ ସୃଷ୍ଟି ହେବା ବେଳେ ଆର୍ଯ୍ୟଗୋଷ୍ଠୀ ମଧ୍ୟରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଗଣା ହେଉଥିଲେ, ଏହି ସମସ୍ତଙ୍କର ଉପନୟନ ସଂସ୍କାର ଥିଲା, ତେଣୁ ସମସ୍ତେ ଦ୍ୱିଜ ଥିଲେ । ଓଡ଼ିଶାରେ ବର୍ଣ୍ଣବିଭାଗ ସୃଷ୍ଟି ହୋଇ ନଥିବାରୁ ବ୍ରାହ୍ମଣଙ୍କୁ ଛାଡ଼ିଲେ ପ୍ରାୟ ସମସ୍ତେ ହେଲେ ଶୂଦ୍ର । ଏହା ପଣ୍ଡିତ ସର୍ବସ୍ୱର ଭାଷାରେ– ''ଅତଏବ ବିପ୍ର ଶୂଦ୍ରାବଧିକୃତ୍ୟ ଦ୍ୱିବର୍ଣ୍ଣା କଳାବିତି ବଚନଂ । ଏତେନ ସଂପ୍ରତ୍ୟପି ଦଶ ସଂସ୍କାରା ନ ବିଧୀୟନ୍ତେ'' (ପ୍ରଥମ ପ୍ରଭା) । ଅର୍ଥାତ୍, ଅତଏବ କଳିଯୁଗରେ ବ୍ରାହ୍ମଣ ଓ ଶୂଦ୍ର ଏହି ଦୁଇ ବର୍ଣ୍ଣ ହିଁ ପୃଥିବୀରେ ଅଛନ୍ତି ବୋଲି

କୁହାଯାଏ । ଏଣୁ ସଂପ୍ରତି ସେହି (ବ୍ରାହ୍ମଣେତର)ମାନଙ୍କର ଦଶବିଧ ସଂସ୍କାର ହୁଏ ନାହିଁ ।

ଓଡ଼ିଶାରେ ଜାତିବିଭାଗ ସୃଷ୍ଟି ହୋଇ ନଥିବାରୁ ସେଠାର ପ୍ରାୟ ସବୁଜାତି ଶୂଦ୍ର ଭାବରେ ଗଣ୍ୟ ହେଲେ । ଓଡ଼ିଶାରେ ଅଧିକାଂଶ ଆଂଚଳିକ ଦେବଦେବୀଙ୍କ ଉପାସକ ଜାତି (ରାଉଳ, ରଣା, ମୁନି, ନାପିତ ଆଦି) ଶୂଦ୍ର । ବିଷ୍ଣୁ ଉପାସନା କେବଳ ବ୍ରାହ୍ମଣଙ୍କ ପକ୍ଷେ ଗ୍ରାହ୍ୟ । ଶିବ ଓ ଦେବୀଙ୍କ ଉପାସକମାନେ ଶୂଦ୍ର ହେବାର କାରଣ ବର୍ଣ୍ଣ ବ୍ୟବସ୍ଥା ଓଡ଼ିଶାରେ ରୋପିତ ହୋଇଛି ସିନା ସୃଷ୍ଟି ହୋଇନାହିଁ । ସେହିପରି ଓଡ଼ିଶାରେ ଧାତୁ ବ୍ୟବସାୟ, ରତ୍ନକାରବାର, ଗୋପାଳନ, କୃଷିକର୍ମ, ବାଣିଜ୍ୟ ଆଦି ବୈଶ୍ୟମାନଙ୍କ ବୃତ୍ତି କରୁଥିବା ଲୋକେ ଶୂଦ୍ର । ଏହି ବିଚାରରୁ ଓଡ଼ିଶାରେ ବ୍ରାହ୍ମଣଙ୍କୁ ଛାଡ଼ିଲେ ସମସ୍ତେ ଶୂଦ୍ର । ସାରଳାଦାସ ସେହି ସଂସାରଜନଙ୍କ ପାଇଁ ଗ୍ରନ୍ଥରଚନା କରିଛନ୍ତି ।

## ଶୂଦ୍ରମାନଙ୍କ ପାଇଁ ଗ୍ରନ୍ଥକାର

ସାରଳାଦାସଙ୍କ ସମୟରେ ବ୍ରାହ୍ମଣମାନଙ୍କ ଆସକ୍ତି ଥିଲା ସଂସ୍କୃତ ପ୍ରତି । ସଂସ୍କୃତ 'ଦେବଭାଷା' ବୋଲାଉଥିଲା । ଦେବଭାଷାର ଅର୍ଥ ଦେବତାଙ୍କ ଭାଷା ନୁହେଁ । ସବୁ ବ୍ରାହ୍ମଣ କର୍ମକର୍ମାଣି ବେଳେ ଆତ୍ମ ପରିଚୟ ଦେଇ ପ୍ରାୟଶଃ ନିଜକୁ 'ଦେବଶର୍ମା' ବୋଲି ଆଖ୍ୟାତ କରନ୍ତି । ବ୍ରାହ୍ମଣମାନେ ଭୂଦେବ, ଭୂସୁର । ସେହି ଦେବ/ସୁରଙ୍କ ଭାଷା ଦେବଭାଷା । ସାରଳାଦାସ ଲୋକଭାଷାର ଗ୍ରନ୍ଥକାର । ତାଙ୍କ ଭାଷା 'ପରାକୃତ' ବୋଲି ସେ ବହୁସ୍ଥଳରେ ଜଣାଇଛନ୍ତି । ପ୍ରାକୃତ ହେଉଛି ପ୍ରକୃତି ଅର୍ଥାତ୍ ପ୍ରଜାସମୂହଙ୍କ ଭାଷା । ସଂସାର ଜନ ପ୍ରକୃତିକୁ ବୁଝାଉଛି । ସେମାନଙ୍କ ପାଇଁ ସାହିତ୍ୟ-ମନ୍ଦିର ତୋଳିଲେ ସାରଳାଦାସ । ସଂସ୍କୃତର ସାହିତ୍ୟ ମନ୍ଦିରକୁ ସେମାନେ ପଶିପାରୁନଥିଲେ ।

ଏଥିରୁ ଜଣାଯାଉଛି ସାରଳାଦାସ ବ୍ୟାପକ ବ୍ରାହ୍ମଣେତର ଅର୍ଥରେ ଶୂଦ୍ର ଶବ୍ଦ ପ୍ରୟୋଗ କରିଛନ୍ତି ଓ ଗ୍ରନ୍ଥକର୍ତ୍ତା କବି ଅର୍ଥରେ ମୁନି ଶବ୍ଦ ବ୍ୟବହାର କରିଛନ୍ତି । ଶୂଦ୍ରମୁନି ପଦବୀ ତାଙ୍କର ଦେଶଭାଷା ପାଇଁ କୃତସଂକଳ୍ପ ହେବାର ସ୍ୱୀକୃତି ।

—

# ସପ୍ତମ ଅଧ୍ୟାୟ

# ସାରଳାଦାସଙ୍କ ରଚନାଶୈଳୀ : ଦାଣ୍ଡୀ

ସାରଳାଦାସଙ୍କ ଦ୍ୱାରା ବିରଚିତ ତିନୋଟିଯାକ ଗ୍ରନ୍ଥ (ବିଚିତ୍ର ରାମାୟଣ, ସାରଳା-ମହାଭାରତ ଓ ଚଣ୍ଡୀପୁରାଣ) ଯେଉଁ ଶୈଳୀରେ ରଚିତ ତାହାକୁ ସଂପ୍ରତି 'ଦାଣ୍ଡିବୃତ୍ତ' ବୋଲି କୁହାଯାଉଛି । ସାରଳାଦାସଙ୍କ ସାହିତ୍ୟିକ ଆଭିମୁଖ୍ୟ ତାଙ୍କ ରଚନା ଶୈଳୀରେ ମଧ୍ୟ ପ୍ରକାଶ ପାଉଛି ।

ଦାଣ୍ଡୀ ଶୈଳୀର ଚରଣଗୁଡ଼ିକର ଦୈର୍ଘ୍ୟରେ ବିଶେଷ ପାର୍ଥକ୍ୟ ରହିଥାଏ ଓ ତାହାର ଅକ୍ଷର ତଥା ମାତ୍ରା ସଂଖ୍ୟା ଅନିର୍ଦ୍ଦିଷ୍ଟ । ତେଣୁ 'ବୃତ୍ତ' ଆଖ୍ୟାଟି ଏଥିପାଇଁ ଅନୁପଯୁକ୍ତ । ଅସାମାକ୍ଷର/ଅସମମାତ୍ରିକ ପଦ୍ୟ ରଚନାର ନାମ 'ଦାଣ୍ଡୀ' ବୋଲି କୌଣସି ପ୍ରାଚୀନ ଗ୍ରନ୍ଥରେ ଲେଖା ହୋଇନାହିଁ । ତେବେ ବଳରାମ ଦାସଙ୍କ ଦ୍ୱାରା ଖ୍ରୀ. ଷୋଡ଼ଶ ଶତାବ୍ଦୀର ଆରମ୍ଭ ବେଳେ ରଚିତ ଜଗମୋହନ ରାମାୟଣଟିର ନାମାନ୍ତର 'ଦାଣ୍ଡୀ ରାମାୟଣ' । କିନ୍ତୁ, ନାମର ଦାଣ୍ଡୀ ଶବ୍ଦଟି ତାହାର ରଚନା ଶୈଳୀକୁ ବୁଝାଉଛି ବୋଲି କାହିଁକି ଧରି ନିଆଗଲା, ତାହା ଜଣାପଡୁନାହିଁ । ଆଲୋଚକମାନେ ଦାଣ୍ଡୀ ଶବ୍ଦଟିର ବ୍ୟୁତ୍ପତ୍ତି ସନ୍ଧାନ ଲକ୍ଷ୍ୟରେ ନିଜର ବ୍ୟକ୍ତିଗତ ବେଲଗାମ୍ କଳ୍ପନାକୁ କିପରି ଛୁଟାଇଛନ୍ତି ତାହାର ଦୁଇ ଚାରିଟି ନମୁନା ଉପସ୍ଥାପନ କଲେ ଯଥେଷ୍ଟ ହେବ ।

ଖ୍ରୀ. ୧୯୧୨ରେ ପଣ୍ଡିତ ଗୋବିନ୍ଦ ରଥ 'ଦାଣ୍ଡୀ ରାମାୟଣ'କୁ ପ୍ରକାଶ କରିବା ଅବସରରେ ଲେଖିଥିଲେ– ''ବଳରାମ ଦାସ ଦଣ୍ଡେ ମାତ୍ର ବିଳମ୍ବ ନ କରି ଅବିରାମ ପରିଶ୍ରମ ଦ୍ୱାରା ଏକ ଦାଣ୍ଡିରେ ଚାଲିଥିବାରୁ 'ଦାଣ୍ଡି-ରାମାୟଣ' ବୋଲି ନାମକରଣ କରିଛନ୍ତି ।'' ଦଣ୍ଡେ ମାତ୍ର ନ ଅଟକି ସୁବିଶାଳ ରାମାୟଣ ରଚନା ଯେପରି ଅକଳ୍ପନୀୟ, କବି ନିଜେ ତାହାର ନାମ ଦାଣ୍ଡି-ରାମାୟଣ ରଖିଥିବା ସେହିପରି ଅସତ୍ୟ । କବି ଗ୍ରନ୍ଥ ମଧ୍ୟରେ ଗ୍ରନ୍ଥର ନାମ ସର୍ବତ୍ର ରଖିଛନ୍ତି 'ଜଗମୋହନ ରାମାୟଣ' ।

ଜଗମୋହନ ରାମାୟଣ ଏ ନାମ ଏହୁ ଗ୍ରନ୍ଥ ।
ଏଥିର କବି ତ ଶ୍ରୀ ନୀଳଗିରି ଜଗନ୍ନାଥ ।। (ଉତ୍ତରକାଣ୍ଡ)

କେତେକ ତାଳପତ୍ର ଜଗମୋହନ ରାମାୟଣର ନକଲକାର ଗ୍ରନ୍ଥର ଆରମ୍ଭରେ ତାହାକୁ ଦାଣ୍ଡୀ ରାମାୟଣ ବୋଲି ନାମିତ କରିଛନ୍ତି ଭିନ୍ନ କାରଣବଶତଃ । ଦାଣ୍ଡୀ ତାହାର ରଚନାଶୈଳୀକୁ ବୁଝାଇବା ଅନୁମାନ ଅମୂଳକ ।

'ଓଡ଼ିଆ ସାହିତ୍ୟର ଆଦିପର୍ବ' ପୁସ୍ତକରେ ସୁରେନ୍ଦ୍ର ମହାନ୍ତି ଖ୍ରୀ. ୧୯୩୬ରେ ଦାଣ୍ଡି/ ଦାଣ୍ଡୀ ଶବ୍ଦର ଉତ୍ପତ୍ତି ଭିନ୍ନ ମାର୍ଗରେ ଯାଇ ଖୋଜିଲେ (ପୃ. ୨୭୭) । ତାଙ୍କ ମତ ହେଲା— "ବଳରାମ ଦାସଙ୍କ ରାମାୟଣ ଶିଷ୍ଟ, ସୁଜ୍ଞଜନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ଦାଣ୍ଡଲୋକଙ୍କ ଶୁଣିବା ଯୋଗ୍ୟ, ତେଣୁ "ଦାଣ୍ଡୀ ରାମାୟଣ' ବୋଲି ଏହାକୁ ତାଚ୍ଛଲ୍ୟ କରାଯାଇଛି ।" ଶିଷ୍ଟ, ସୁଜ୍ଞଜନମାନେ ଦାଣ୍ଡକୁ ବାହାରୁ ନଥିଲେ ନା କଣ ? ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ 'ସଂସାର ଜନହିତେ' ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ, ପୂର୍ବରୁ ସୂଚାଇଛି ଯେ ବଳରାମ ଦାସ ଶିଷ୍ଟଗୋଷ୍ଠୀ ଭୁକ୍ତ ଲୋକ; ତେଣୁ ତାଙ୍କର 'ସଂସାରଜନ' ମଧ୍ୟରେ ଶିଷ୍ଟ, ସୁଜ୍ଞନର ଯେ ଅନ୍ତର୍ଭୁକ୍ତ ତାହା ସେ ସ୍ପଷ୍ଟ ଭାଷାରେ ଜଣାଇଛନ୍ତି । ମନେହୁଏ, ଦାଣ୍ଡୀରାମାୟଣ ଶିଷ୍ଟ-ସୁଜ୍ଞଜନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ବୋଲି ଧରିନେଇ ଶ୍ରୀ ମହାନ୍ତି ତାହାକୁ ପଢ଼ିଲେ ନାହିଁ । ପଢ଼ିଥିଲେ ସେ ଜାଣିପାରିଥାନ୍ତେ ଯେ କବି ତାହାକୁ ସୁଜ୍ଞଜନଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ; ସୁଜ୍ଞଜନେ ତାହା ସେମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ବୋଲି ଆକ୍ଷେପ କରିବାର କାରଣ କବି ନୁହନ୍ତି । ତାଙ୍କ ରାମାୟଣର ଉତ୍ତର କାଣ୍ଡର ଶେଷ କେତେ ପଦ ହେଲା—

"ଭୋ ଭୋ ସୁଜ୍ଞଜନେ ତୁମ୍ଭେ ଯିସ ବାଞ୍ଛା କର ।
ନୀଳଗିରିନାଥ ଦରଶନେ ଦେବ ବର ।।"

× × ×

"ମୁହିଂ ବଳରାମ ଦାସ ଅଟଇ ଅଜ୍ଞାନ ।
ଏଥିରେ ଯେ ଦୋଷ ନ ଧରିବା ସୁଜ୍ଞଜନ ।।"

× × ×

"ସପତ କାଣ୍ଡ ରାମାୟଣ ଯେ ଲକ୍ଷେ ପଦ ।
ଶୁଣସି ହୋ ସୁଜ୍ଞଜନ ଗ୍ରନ୍ଥର ସମ୍ବାଦ ।।"

ଯାହାର ଲେଖନକାର ବର୍ଷ ପରେ ବର୍ଷ 'ଭଗ୍ନପୃଷ୍ଠକଟିଗ୍ରୀବ' ହୋଇ ଶ୍ୟେନପ୍ରାୟ ନିବଦ୍ଧ ଦୃଷ୍ଟି ଦେଇ ଅତି ଦୁଃଖରେ ଏତେ ବଡ଼ (ଲକ୍ଷେ ପଦ ବିଶିଷ୍ଟ) ବିରାଟ ଗ୍ରନ୍ଥକୁ ଉତାରି ଥାଏ ଓ ସେ ଉତାରିଥିବା ନକଲଟିକୁ ପୁତ୍ର ସମାନ ସ୍ନେହ ଦେଇ ପରିପାଳନା କରିବାକୁ ସବିନୟ ପ୍ରାର୍ଥନା ଜଣାଇଥାଏ ସେହି ଲେଖନକାର ହିଁ ଗ୍ରନ୍ଥଟିକୁ ତାଚ୍ଛଲ୍ୟ କରୁଥିବା କଳ୍ପନା ପୋଥି ନ ପଢ଼ି ପଢ଼ିଥିବାର ଛଳନା କରୁଥିବା ଲେଖକମାନେ ହିଁ କରିପାରନ୍ତି ।

ଡକ୍ଟର ମାୟାଧର ମାନସିଂହ 'ଦାଣ୍ଡୀ' ନାମର ତାତ୍ପର୍ଯ୍ୟ ନିଃସନ୍ଦେହ ଭାବରେ ସ୍ଥିରୀକୃତ ହୋଇନାହିଁ ବୋଲି ଜଣାଇ ନିଜେ ତାତ୍ପର୍ଯ୍ୟ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି— "ଦୁଇ ସାଲା ଘରମାନଙ୍କ ମଧ୍ୟରେ ଥିବା ଫାଙ୍କା ଜାଗାକୁ ଓଡ଼ିଆରେ ଦାଣ୍ଡ କୁହାଯାଏ । ଦାଣ୍ଡ ସାଧାରଣତଃ ଲମ୍ବା । ଦାଣ୍ଡୀ ବୃତ୍ତର ତାତ୍ପର୍ଯ୍ୟ ଖୁବ୍ ସମ୍ଭବତଃ ଏହି ଦାଣ୍ଡ ରୂପକରୁ ଆସିଛି, ଯେଉଁଠି ମନୁଷ୍ୟ ସ୍ୱଚ୍ଛନ୍ଦ ବିହାର କରିପାରେ (ଯେପରି ସେ କରିପାରେ ନାହିଁ ଗୃହର ଚାରି କାନ୍ଥ ଭିତରେ) । ଏହିପରି ମୁକ୍ତ ଛନ୍ଦ ବ୍ୟବହାର କରିଥିବାରୁ ବଳରାମଙ୍କ

ରାମାୟଣର ଅନ୍ୟ ନାମ ହିଁ ଦାଣ୍ଡୀ-ରାମାୟଣ'' (ଓଡ଼ିଆ ସାହିତ୍ୟର ଇତିହାସ, ପୃ. ୮୯)।

ଡକ୍ଟର ମାନସିଂହ ସ୍ୱମତର ସମର୍ଥନ ପାଇଁ ପଣିତ ବାନାମ୍ବର ଆଚାର୍ଯ୍ୟଙ୍କ ବିଚାରକୁ ବାଢ଼ିଛନ୍ତି। କିନ୍ତୁ ପଣ୍ଡିତ ଆଚାର୍ଯ୍ୟ ଦାଣ୍ଡୀକୁ ସାହିର ଦାଣ୍ଡ ସହିତ ସଂପୃକ୍ତ ନ କରି, ଯଷ୍ଟି ଅର୍ଥକ ଦଣ୍ଡ ଶବ୍ଦ ସହିତ ଯୋଡ଼ିଛନ୍ତି– ''ଗୋଟିଏ ଦଣ୍ଡର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ମଧ୍ୟରେ ବିଚ୍ଛେଦ ବା ବିରାମ ନ ଥିଲା ପରି ଆବୃତ୍ତି ବେଳେ ଏହାର ଚରଣ ଭିତରେ ଆଦୌ ବିରାମ ନଥାଏ। ସେଇଥିପାଇଁ ଏହାକୁ ଦାଣ୍ଡୀ କୁହାଯାଉଛି ବୋଲି ମନେ ହୁଏ'' (ତତ୍ରତ୍ୟ. ପୃ. ୯୭)। ପଣ୍ଡିତ ଆଚାର୍ଯ୍ୟଙ୍କ ଅନୁମାନରେ କିଛି ସାରବତ୍ତା ଅଛି। ଦାଣ୍ଡୀର ଚରଣ ମଧ୍ୟରେ ନିର୍ଦ୍ଦିଷ୍ଟ ଯତିସ୍ଥାନ ବା ପର୍ବସନ୍ଧି ବୋଲି କିଛି ନ ଥାଏ। ପୁରାଣ ପଣ୍ଡା ଗାଇଲାବେଳେ ନିଜର ସୁବିଧା ପାଇଁ ବିରାମ ଦେଇଥାଏ ବା ଦେଇନଥାଏ ମଧ୍ୟ। କିନ୍ତୁ, ଦୁଇଟି ପ୍ରଶ୍ନର ସମାଧାନ ଏହି ଅନୁମାନରେ ନାହିଁ। ପ୍ରଥମ କଥା ହେଲା ସବୁ ଦଣ୍ଡ (ଯଷ୍ଟି) ପର୍ବହୀନ ନୁହେଁ। ବାଉଁଶ ବାଡ଼ିରେ ପର୍ବ ଥାଏ, ତେବେ ବି ତାହା ଦଣ୍ଡ। ଦ୍ୱିତୀୟ କଥା ହେଲା, ଦାଣ୍ଡୀ ଶୈଳୀର ପ୍ରକୃଷ୍ଟ ଉଦାହରଣ ବଳରାମ ଦାସଙ୍କ ରାମାୟଣ ନୁହେଁ, ହେଲେ ହେଁ ତାହା ଦାଣ୍ଡୀ ରାମାୟଣ ବୋଲାଉଛି। କିନ୍ତୁ ଦାଣ୍ଡୀଶୈଳୀର ପ୍ରକୃଷ୍ଟ ଉଦାହରଣ ସିଦ୍ଧେଶ୍ୱର ଦାସ ଓ ସାରଳାଦାସଙ୍କ ନାମାଙ୍କିତ ପ୍ରାଚୀନତର ଗ୍ରନ୍ଥତ୍ରୟ ମଧ୍ୟରୁ କୌଣସି ଗୋଟିଏ ବି ଦାଣ୍ଡୀ ଶବ୍ଦ ଦ୍ୱାରା ବିଶେଷିତ ହୁଅନ୍ତି ନାହିଁ।

ଅନ୍ୟ କତିପୟ ଆଲୋଚକ 'ଦାଣ୍ଡୀ' ସଂସ୍କୃତ ଓ ପ୍ରାକୃତର ଦଣ୍ଡକ ବୃତ୍ତ, ଦଣ୍ଡକ/ଦଣ୍ଡକଳ ଛନ୍ଦ, ଦଣ୍ଡ/ଦିଣ୍ଡି ଛନ୍ଦରୁ ଜାତ ବେଲି ଅଭିମତ ଦେଇଛନ୍ତି। ସାରଳା ସ୍ମରଣିକା (୧୯୫୪, ପ. ୮୨)ରେ ଶ୍ରୀ ବଂଶୀଧର ମହାନ୍ତି ଲେଖିଛନ୍ତି– ''ପ୍ରାକୃତ ପିଙ୍ଗଳ ଛନ୍ଦଗ୍ରନ୍ଥରେ ମଧ୍ୟ 'ଦିଣ୍ଡି' ନାମକ ଏକ ବୃତ୍ତ ଥିବାର ଲକ୍ଷ୍ୟ କରାଯାଏ। ଏହାଛଡ଼ା ଅପଭ୍ରଂଶ ଭାଷାରେ ଦାଣ୍ଡି ନାମକ ବୃତ୍ତ ମଧ୍ୟ ଏକ ସମୟରେ ବିଶେଷ ଭାବରେ ପ୍ରଚଳିତ ଥିଲା। କ୍ରମେ ଏହି ଅପଭ୍ରଂଶରେ ବ୍ୟବହୃତ ଦାଣ୍ଡି ବୃତ୍ତ ପରବର୍ତ୍ତୀ ସାହିତ୍ୟର ଯୁଗରେ ଭିନ୍ନ ରୂପେ ବ୍ୟବହୃତ ହୋଇଥିଲା। ବିଚାର କରିବା ଅସଙ୍ଗତ ନୁହେଁ।'' ଅପଭ୍ରଂଶ ଭାଷାରେ ଦାଣ୍ଡି ନାମକ ବୃତ୍ତ ଥିବାର ଏକମାତ୍ର ପ୍ରମାଣ ରୂପେ ସେ Apabhramsa and Marathi Metres (1934) ଗ୍ରନ୍ଥରୁ ଉଦ୍ଧୃତି ଦେଇଛନ୍ତି। କିନ୍ତୁ, ସେଥିରେ ଦାଣ୍ଡି ନାମ ନାହିଁ; ଅଛି 'ଦିଣ୍ଡି' ନାମ୍। ଏହି ଦିଣ୍ଡି ବୃତ୍ତ ଚତୁଷ୍ପାଦୀ ଯାହାର ପ୍ରତ୍ୟେକ ପାଦରେ ୧୯ ମାତ୍ରା ଥାଏ। ଓଡ଼ିଆ 'ଦାଣ୍ଡୀ' କମାରୁ ବୃତ୍ତ ନୁହେଁ, ଚତୁଷ୍ପାଦୀ ବି ନୁହେଁ ଓ ସେଥିରେ ମାତ୍ରା ସଂଖ୍ୟା ଅନିର୍ଦ୍ଦିଷ୍ଟ। ଦିଣ୍ଡି ବୃତ୍ତରୁ ଦାଣ୍ଡୀ ଜନ୍ମିବା ବିଚାର ଅସଙ୍ଗତ ନ ହେବ କିପରି ? ପୁଣି ଶ୍ରୀ ମହାନ୍ତି 'ପ୍ରାକୃତ ପିଙ୍ଗଳ' ଛନ୍ଦଗ୍ରନ୍ଥ ଅନୁସାରେ ପ୍ରାକୃତରେ ଦିଣ୍ଡି ବୃତ୍ତ ଥିବା କଥା ଲେଖିଛନ୍ତି। ବାରାଣସୀର ପ୍ରାକୃତ ଟେକ୍ସ୍ଟ ସୋସାଇଟି ଡକ୍ଟର ଭୋଳାଶଙ୍କର ବ୍ୟାସଙ୍କ ଦ୍ୱାରା ସଂପାଦିତ ପ୍ରାକୃତ ଓ ଅପଭ୍ରଂଶ ଛନ୍ଦଗ୍ରନ୍ଥ 'ପ୍ରାକୃତ ପୈଙ୍ଗଳମ୍' ପ୍ରକାଶ କରିଛି। ଏଥିରେ ଦିଣ୍ଡି

ନାମଧେୟ କୌଣସି ଛନ୍ଦ କଥା ଲେଖା ନାହିଁ । ଦଣ୍ଡକଳ (ନାମାନ୍ତର ଦଣ୍ଡଅରୁ) ନାମକ ମାତ୍ରାବୃତ୍ତ କଥା ଲେଖାଅଛି । ଏହି ଦଣ୍ଡକଳରେ ପ୍ରତ୍ୟେକ ଚରଣରେ ୩୨ ମାତ୍ରା ଓ ଚାରି ଚରଣରେ ମୋଟ ୧୨୮ ମାତ୍ରା । ଏହାର ଚରଣଗୁଡ଼ିକରେ ପ୍ରଥମେ ଚାରିଟି ଚତୁର୍ମାତ୍ରିକ ଗଣ, ତାହାପରେ ଗୋଟିଏ ଷଟ୍‌କଳ ଗଣ, ତାହାପରେ ଦୁଇଟି ଚତୁର୍ମାତ୍ରିକ ଗଣ ଓ ଶେଷରେ ଏକ ଗୁରୁ (ଦ୍ୱିମାତ୍ରିକ) ରହେ । ଏହି ସବୁ ପ୍ରାକୃତ ଓ ଅପଭ୍ରଂଶ ବୃତ୍ତର କୌଣସି ଗୋଟିଏ ସୁଦ୍ଧା ଗୁଣଲକ୍ଷଣ ଓଡ଼ିଆ ଦାଣ୍ଡୀ ଶୈଳୀରେ ଲେଶମାତ୍ର ନାହିଁ । ଦାଣ୍ଡୀରେ ମାତ୍ରା ଅନିର୍ଦ୍ଦିଷ୍ଟ, ବର୍ଣ୍ଣସଂଖ୍ୟା ମଧ୍ୟ ଅନିର୍ଦ୍ଦିଷ୍ଟ । ପ୍ରାକୃତ ଓ ଅପଭ୍ରଂଶରେ ପାଞ୍ଚ ଶହରୁ ଅଧିକ ଛନ୍ଦର ନାମ ରହିଛି । ତାହା ମଧ୍ୟରୁ ଗୋଟିଏ 'ଦଣ୍ଡ' ଶବ୍ଦକୁ ନେଇ ହେବା ସ୍ୱାଭାବିକ । ତେଣୁ କେବଳ ନାମର ଉଚ୍ଚାରଣ ସାମ୍ୟ ମାତ୍ରକୁ ନେଇ ଦାଣ୍ଡୀକୁ ପ୍ରାକୃତ/ଅପଭ୍ରଂଶର କୌଣସି ମାତ୍ରାବୃତ୍ତ ବା ବର୍ଣ୍ଣବୃତ୍ତରୁ ଜାତ ବୋଲି ବିଚାରିବା ଭୁଲ୍ ଓ ଅସଙ୍ଗତ ।

ଦାଣ୍ଡୀ ଏକ ରଚନାଶୈଳୀର ନାମ ହିଁ ହୋଇପାରେ ବୋଲି ଧରି ନିଆଯାଇ ତାହାର ଉତ୍ପତ୍ତିର ଅନ୍ୱେଷଣା ହେଉଛି । କିନ୍ତୁ ତାହା ଯଦି ପ୍ରକୃତରେ ରଚନାଶୈଳୀ-ବାଚକ ହୋଇଥାନ୍ତା ତେବେ ବିଚିତ୍ର ରାମାୟଣ, ସାରଳା-ମହାଭାରତ ଓ ଚଣ୍ଡୀପୁରାଣ ନାମରେ ଅଭିହିତ ହୁଅନ୍ତେ ନାହିଁ ? ଏ ବିଷୟରେ ଦ୍ୱିମତ ନାହିଁ ଯେ ତଥାକଥିତ ଦାଣ୍ଡୀବୃତ୍ତର ପ୍ରକୃଷ୍ଟ ପ୍ରାଦୁର୍ଭାବ ରହିଛି ସାରଳାଦାସଙ୍କ ରଚନା ତ୍ରୟରେ । ଜଗମୋହନ ରାମାୟଣରେ ସେହି ଶୈଳୀର ଲକ୍ଷଣମାନ ଶିଥିଳ ଓ ହ୍ରସ୍ୱ, ତାହା ପରବର୍ତ୍ତୀ ସମୟର ବୃତ୍ତ/ରାଗ ଆଡ଼କୁ ମୁହାଁଇଲାଣି । ତେଣୁ, ଅନୁମେୟ ଯେ ଦାଣ୍ଡୀର ପ୍ରକୃତ ଅର୍ଥ ରଚନାଶୈଳୀ ନ ହୋଇ ଆଉ କିଛି ହୋଇପାରେ ।

ଜଗମୋହନ ରାମାୟଣର ଉପସ୍ଥାପନ ଚରିତଟି ଅନନ୍ୟସାମାନ୍ୟ । ତଦନୁସାରେ ଦକ୍ଷଙ୍କ ଯଜ୍ଞ ଧ୍ୱଂସ କରିଥିବାରୁ ମହାଦେବ ପାପଭାଗୀ ହେଲେ । ପରିଣାମରେ ତାଙ୍କ ଶରୀର ଦୁର୍ବଳ ଓ ନିସ୍ତେଜ ହେବାକୁ ଲାଗିଲା । ପାପରୁ ନିସ୍ତାର ପାଇବା ପାଇଁ ମହାଦେବ ବ୍ରହ୍ମାଙ୍କ ପରାମର୍ଶ କ୍ରମେ ରାମ ନାମ ଜପିଲେ ଓ ସମୟ କ୍ରମେ ନିଜର ପୂର୍ବ ବଳ ଓ ତେଜ ଫେରି ପାଇଲେ । ରାମ ନାମର ଏତାଦୃଶ ମହିମା ଦେଖି ଦେବୀ ପାର୍ବତୀ ରାମଙ୍କ ଚରିତ ଶୁଣିବାକୁ ଚାହିଁଲେ ଓ ମହାଦେବ ସମଗ୍ର ରାମାୟଣକୁ ପାର୍ବତୀଙ୍କୁ ଶୁଣାଇଥିଲେ । ଆଗମ ଶାସ୍ତ୍ର ଛାଞ୍ଚରେ ଢାଳିବା ପାଇଁ ବଳରାମ ଦାସ ରାମାୟଣ ଉପସ୍ଥାପନ ନିମନ୍ତେ ଶିବ-ପାର୍ବତୀ ସଂବାଦ ଉଦ୍ଭାବନ କରିଛନ୍ତି । ଫଳରେ ଏହା ହୋଇପଡ଼ିଛି ମହାଦେବୋକ୍ତ ରାମାୟଣ । ଦଣ୍ଡୀ ଶବ୍ଦର ଏକ ସୁବିଦିତ ଅର୍ଥ ମହାଦେବ (ଗୋପୀନାଥ ନନ୍ଦ ଶର୍ମାଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ ଦ୍ରଷ୍ଟବ୍ୟ) । ଏପରି ଅର୍ଥର ପ୍ରାଚୀନତା ମହାଭାରତର ଶିବ-ସହସ୍ରନାମ (ଶାନ୍ତି ପର୍ବର ୨୮୪ ଅଧ୍ୟାୟ) ମଧ୍ୟରେ ଶିବଙ୍କର ଏକତମ ନାମ ଭାବରେ 'ଦଣ୍ଡୀ'ର ଉଲ୍ଲେଖରୁ ଜଣାଯାଏ । ଓଡ଼ିଆ ସାହିତ୍ୟରେ ମଧ୍ୟ ମହାଦେବଙ୍କର ଦଣ୍ଡୀ ନାମର ବ୍ୟବହାର ଦେଖିବାକୁ ମିଳେ; ଯଥା– ''ଦଣ୍ଡୀ ରୂପ ଧରି ଯେ ବିଜୟେ ଉମାକାନ୍ତ''

(ବଲ୍ଲଭ ନାରାୟଣ ମହାପାତ୍ରଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀରେ ରଚିତ 'ତୀର୍ଥ ଚିନ୍ତାମଣି')। ଓଡ଼ିଶାର ଗଣଧର୍ମରେ ମହାଦେବଙ୍କ ଦଣ୍ଡୀ ଆଖ୍ୟାର ସଂକେତ 'ଦଣ୍ଡନାଟ'ରୁ ମିଳେ। ଭୁବନେଶ୍ୱର ଅଞ୍ଚଳ ପ୍ରାଚୀନ 'ଦାଣ୍ଡିମାଳ' ବିଷୟର ଅନ୍ତର୍ଭୁକ୍ତ। ଏହି ଇଲାକା ମଧ୍ୟରେ ବହୁ ଶିବ ମନ୍ଦିର ଥିବାରୁ ଏପରି ନାମ ରଖାଯାଇଥିଲା।

ମହାଦେବ ଦଣ୍ଡୀଙ୍କ ଦ୍ୱାରା କଥିତ ଅର୍ଥରେ ଦାଣ୍ଡୀ ଶବ୍ଦ ଯୋଗର ଆବଶ୍ୟକତା ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ' ଯୋଗୁଁ ଦେଖା ଦେଇଥିବା ସମ୍ଭବ। ବିଚିତ୍ର ରାମାୟଣ ଶେଷରେ ପୁଷ୍ପିକାରେ ଲେଖା ରହିଛି– "ଶ୍ରୀ ଜଗନ୍ମୋହନ ବିଚିତ୍ର ରାମାୟଣ ସଦାଜୟେ ସଂପୂର୍ଣ୍ଣ।" ବିଚିତ୍ର ରାମାୟଣର ଜଗନ୍ମୋହନ ଓ ବଳରାମ ଦାସଙ୍କ ରାମାୟଣର ଜଗମୋହନ ନାମ ଦ୍ୱୟ ଅଭିନ୍ନ ଅର୍ଥଦ୍ୟୋତକ। ସଂସ୍କୃତର 'ଦେବଭାଷା' ସଂଜ୍ଞା ଦେବ ସଂଜ୍ଞାଧାରୀ ବ୍ରାହ୍ମଣମାନଙ୍କ ଭାଷାକୁ ସୂଚାଉଛି ବୋଲି ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛି। ଜଗମୋହନ ସଂଜ୍ଞା ସମଗ୍ର ଜଗତ୍ ଅର୍ଥାତ୍ ଲୋକରେ ପ୍ରଚଳିତ ଭାଷାର ବ୍ୟବହାରଜନିତ ସାର୍ବଜନୀନ ଆଦରର ପ୍ରତ୍ୟାଶା ରଖୁଥିଲା। ଗ୍ରନ୍ଥ 'ସଂସାର ଜନହିତେ' ତେବେ ଯାଇ ହେବ ଯେବେ ତାହା ସୁବୋଧ୍ୟ ଲୋକତୁଣ୍ଡର ଭାଷାରେ ରଚିତ ହେବ। ଲୋକଙ୍କ ଭାଷାରେ ରଚିତ ହେବାରୁ ରଚନାଗୁଡ଼ିକ ଜଗମୋହନ ପଦବାଚ୍ୟ। କୌଣସି ବିଚାରବନ୍ତ ଅଭିଜ୍ଞ ଲେଖନକାର ଦୁଇ ଜଗମୋହନ ରାମାୟଣ ମଧ୍ୟର ପାର୍ଥକ୍ୟକୁ ସ୍ପଷ୍ଟ କରାଇଦେବା ଲକ୍ଷ୍ୟରେ ବଳରାମ ଦାସଙ୍କ ରଚନାଟି ମହାଦେବୋକ୍ତ ବୋଲି ସୂଚାଇବା ପାଇଁ 'ଦାଣ୍ଡୀ' ଶବ୍ଦଟି ଯୋଗ କରିଥିବା ଅସମ୍ଭବ ନୁହେଁ।

ତାହାହେଲେ, ଦାଣ୍ଡୀର ମୌଳିକ ଅର୍ଥ ମହାଦେବୋକ୍ତ ବୋଲି ବୁଝିବାକୁ ହେବ। ତାହା ଓଡ଼ିଆ ପୁରାଣଗୁଡ଼ିକର ରଚନା ଶୈଳୀ ହୋଇ ନ ପାରେ। ହେଲେ ହେଁ ଦାଣ୍ଡୀ ଶବ୍ଦଟି ବିଂଶ ଶତାବ୍ଦୀର ଆରମ୍ଭରୁ ରଚନା ଶୈଳୀ ଅର୍ଥରେ ଚଳିଲାଣି ଓ ପ୍ରୟୋଗସିଦ୍ଧ ଅର୍ଥ ହିଁ ତାହାର ଅର୍ଥ ବୋଲି ବର୍ତ୍ତମାନ ଗ୍ରହଣ କରିନେବା ସମୀଚୀନ। ସେଥିପାଇଁ କଥା ଅଛି– "ବୈୟାକରଣାଃ ପ୍ରୟୋଗଶରଣାଃ"। କେବଳ ସେଥିରେ ବୃତ୍ତର କୌଣସି ଗୁଣଲକ୍ଷଣ ନଥିବାରୁ ତାହାକୁ ଦାଣ୍ଡୀବୃତ୍ତ ନ କହି ଦାଣ୍ଡୀଶୈଳୀ କହିବାକୁ ହେବ।

## ଦାଣ୍ଡୀଶୈଳୀର ସ୍ୱରୂପ

ଅନ୍ୟ କୌଣସି ଭାଷାର ସାହିତ୍ୟରେ ଦାଣ୍ଡୀର ସମରୂପ ଶୈଳୀର ପ୍ରଚଳନ ନାହିଁ। ଏହା ଖ୍ରୀ. ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ବିକଶିତ ହୋଇଥିଲା। ପରେ ବୃତ୍ତ/ରାଗର ଚାପରେ ଏହାର ବିକୃତି ଘଟିଥିଲେ ହେଁ ଓଡ଼ିଆରେ ପୁରାଣ ରଚନା ପାଇଁ ଦାଣ୍ଡୀର ଅବଲମ୍ବନ ଖ୍ରୀ. ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରହି ଲାଗିଥିଲା। ଚୈତନ୍ୟ ଦାସଙ୍କ 'ବିଷ୍ଣୁଗର୍ଭ ପୁରାଣ' ଦାଣ୍ଡୀଶୈଳୀର ପୁରାଣ, ଭାଗୀରଥି ସାମନ୍ତରାୟଙ୍କ ଦ୍ୱାରା ଖ୍ରୀ. ୧୭୯୭ରେ ପ୍ରଣୀତ 'ଶୈବୋତ୍ତର ପୁରାଣ' ଯାଏଁ ଦାଣ୍ଡୀଶୈଳୀ ଅବଲମ୍ବିତ ହେଉଥିଲା। ଶ୍ୟାମସୁନ୍ଦର ରାଜଗୁରୁ ସାରଳାଦାସଙ୍କ ରଚନା ଶୈଳୀ ବିଷୟ (ଉତ୍କଳ ସାହିତ୍ୟର ଖ୍ରୀ. ୧୯୦୩ ଜୁଲାଇ

ସଂଖ୍ୟାରେ) ଆଲୋଚନା କରିବା ବେଳେ ଓ ଗୋପୀନାଥ ନନ୍ଦ ସାରଳା-ମହାଭାରତ ସମାଲୋଚନା ଲେଖିବା ବେଳେ ରଚନା ଶୈଳୀ ସଂପର୍କରେ 'ଦାଣ୍ଡୀ'ର ନାମୋଲ୍ଲେଖ ସୁଦ୍ଧା କରିନାହାନ୍ତି । ନନ୍ଦ ମହାଶୟଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ମଧ୍ୟ 'ଦାଣ୍ଡୀ' ଶବ୍ଦ ସ୍ଥାନ ପାଇ ନାହିଁ । ପରେ 'ଦାଣ୍ଡୀ' ରଚନାଶୈଳୀକୁ ବୁଝାଉଛି ବୋଲି ଧରି ନିଆଗଲା ଓ ତାହାର ସ୍ୱରୂପ ତଥା ସ୍ୱଭାବକୁ ସଂସ୍କୃତ/ପ୍ରାକୃତ **ପରଂପରା** ଭିତରେ ଖୋଜା ହେବା ଯୋଗୁଁ ଠିକ୍ ଭାବରେ ଧରି ହୋଇନାହିଁ । ଫଳରେ **ସେହି** ଶୈଳୀର ମୌଳିକ ସ୍ରଷ୍ଟା ସାରଳାଦାସ ଯେତିକି ପ୍ରଶଂସା ପାଇବା କଥା ପାଇପାରିଲେ ନାହିଁ ।

ଦାଣ୍ଡୀରେ ମିତ୍ରାକ୍ଷର ବିଧି ଥିଲା, ଅର୍ଥାତ୍, ଗୋଟିଏ ପଦର ପ୍ରଥମ ଚରଣର ଶେଷ ଅକ୍ଷର ସହିତ ପରବର୍ତ୍ତୀ ଚରଣର ଶେଷ ଅକ୍ଷରର ମିତ୍ରତା (ମେଳ) ରକ୍ଷା କରାଯାଉଥିଲା । ସଂସ୍କୃତ ଓ ପ୍ରାକୃତର ଗୀତରେ ମିତ୍ରାକ୍ଷର ବିଧି ଥିଲା କିନ୍ତୁ ଦାଣ୍ଡୀର ବିଶେଷତ୍ୱ ହେଉଛି ସେଥିରେ ବର୍ଣ୍ଣର ଗୁରୁଲଘୁ ବିଚାର ସଂବଳିତ ଗଣନିୟମ ନଥାଏ । ବସ୍ତୁତଃ ଓଡ଼ିଆ ପଦ୍ୟରେ ଗଣନିୟମର ପ୍ରବର୍ତ୍ତନ ବଳଦେବ ରଥ ହିଁ ପ୍ରଥମେ କରିଥିଲେ, ତାହା ମଧ୍ୟ ଦୀର୍ଘସ୍ଥାୟୀ ହୋଇପାରି ନଥିଲା । ଆଉ ମଧ୍ୟ, ଦାଣ୍ଡୀର ଚରଣଗୁଡ଼ିକ ମଧ୍ୟରେ ବର୍ଣ୍ଣସଂଖ୍ୟା ବା ମାତ୍ରାସଂଖ୍ୟା ବିଚାରରୁ ନିୟମବଦ୍ଧତା ଅନାବଶ୍ୟକ ଥିଲା । ପୁଣି, ଦାଣ୍ଡୀରେ ପର୍ବବିଭାଗ ବା ଯତିସ୍ଥାନ ନଥିଲା ।

ଦୁଇ ଚରଣରେ ଏକ ପଦ ହେବା ଦାଣ୍ଡୀର ସାଧାରଣ ବିଧି । କ୍ୱଚିତ୍ ତିନି ଚରଣରେ ମଧ୍ୟ ଏକ ପଦ ହେଉଥିଲା ଓ ସେହି ସ୍ଥଳେ ତିନୋଟିଯାକ ଚରଣର ଶେଷ ଅକ୍ଷର ମଧ୍ୟରେ ମେଳ ରକ୍ଷା କରାଯାଉଥିଲା । ସଂସ୍କୃତ ଶ୍ଳୋକ ଗଣନାରେ ବେଳେବେଳେ ଦେଢ଼ ଶ୍ଳୋକକୁ ଗୋଟିଏ ଶ୍ଳୋକ ଭାବରେ ଗଣାଯାଏ । ଶ୍ଳୋକରେ ମିତ୍ରାକ୍ଷରର ପ୍ରୟୋଜନ ନଥିବାରୁ ଠାଏଁ ଠାଏଁ ଅର୍ଦ୍ଧଶ୍ଳୋକକୁ ମଧ୍ୟ ଏକ ଶ୍ଳୋକ ଭାବରେ ଗଣାଯାଇ ପାରୁଛି । କିନ୍ତୁ ଓଡ଼ିଆ ଦାଣ୍ଡୀ ଶୈଳୀ ମିତ୍ରାକ୍ଷର ବିଧି ପାଳୁଥିବାରୁ ଗୋଟିଏ ଚରଣରେ ଗୋଟିଏ ପଦ ହେବା ସମ୍ଭବପର ନୁହେଁ । ବିଚିତ୍ର ରାମାୟଣ, ସାରଳା-ମହାଭାରତ ଓ ଚଣ୍ଡୀପୁରାଣରେ ବହୁ ସଂଖ୍ୟକ ତିନିଚରଣିଆ ପଦ ରହିଛି । ପ୍ରକାଶିତ ବିଚିତ୍ର ରାମାୟଣର ପୃ. ୪୩ ର ୭୧ ପଦ, ପୃଷ୍ଠା ୪୭ର ୨୧ ପଦ, ପୃ. ୩୧୨ର ୫୩ ପଦ ଆଦି ତିନି ଚରଣିଆ ପଦ । ଉଦାହରଣ—

ଭ୍ରଥ ଲକ୍ଷ୍ମଣ କାନ୍ଦନ୍ତେ ମାନଭର ।
ସମସ୍ତ ଜନ ଯହୁଁ ହୋଇଲେ କ୍ରୋଧଭର ।
କାବ୍ୟ ବିଶ୍ରାମିଲେ ଦୁଇ କୁମର ।। ପୃ.୩୧୨, ପଦ ୫୩)

ସାରଳା-ମହାଭାରତରେ ତିନି ଚରଣିଆ ପଦ ପାଇଁ ୨ ସଭା ୨୬୩; ୧ବନ ୮୫ ଓ ୩୩୬; ୨ବନ ୯୩, ୧୧୧ ଓ ୧୯୨; ବିରାଟ ୭୯ ଓ ୬୮୫; ସ୍ୱର୍ଗାରୋହଣ ୧୩୫ ଆଦି ଦ୍ରଷ୍ଟବ୍ୟ । ଦେଖାଯାଉଛି, ଦାଣ୍ଡୀର ସ୍ୱରୂପର ଏହି ବିଶେଷତ୍ୱ ଅବିଦିତ ଥିବାରୁ

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ସାରଳା-ମହାଭାରତରେ ବହୁତ ସ୍ଥାନରେ ଅକାରଣ ଗୋଟିଏ ଚରଣକୁ ପୁନରୁକ୍ତ କରାଇ ଗୋଟିଏ ପଦକୁ ଦୁଇ ପଦ ଭାବରେ ଗଣାଯାଇଛି ବା ଗୋଟିଏ ଚରଣକୁ ଗୋଟିଏ ପଦ ବୋଲି ଗଣାଯାଇଛି ବା ସେହିପରି କିଛି କାରସାଦି କରାଯାଇଛି । ଉଦାହରଣ—

ମରଡ଼ାଶାଳେ ଯେ ଲୋକ ପ୍ରକୃତି ଶଂକା ଅର୍ଥେ ।
ଅସଂସ୍କାର ଭୂମିରେ ଯେ ପକାଇ ତୁମ୍ଭନ୍ତେ ॥୪୧॥
ଅସହର ଭୂମିରେ ପକାଇ ତୁମ୍ଭନ୍ତେ ।
ଅସାର୍ଥୁକ ଜୀବନ ତୁ ରହୁ ଏହି ମତେ ॥୪୨॥ (୧ ବନ ୮୫)

ଏଥିରେ ୪୨ ପଦର ପ୍ରଥମ ଚରଣଟି ୪୧ ପଦର ଦ୍ୱିତୀୟ ଚରଣର ପୁନରୁକ୍ତି ମାତ୍ର (ଅସହର ଶବ୍ଦଟି ଅସଂସ୍କାରର ଅପପାଠ) । ଅନ୍ୟ ଏକ ଉଦାହରଣ—

ଆପଣେ ନ ଦେଇ ଯେ ଦାତବ୍ୟ ଲୋକନ୍ତ ବାରି ।
କଳାର କୃତକର୍ମ ସେହୁ ଯେବଣ ଲୋକ ହରି ॥୮୯॥
ଆପଣେ ନ ଦେଇ ଯେ ଦାତବ୍ୟ ଲୋକନ୍ତ ବାରି ।
ବ୍ରହ୍ମହତ୍ୟା ଦୋଷରୁ ଯେ ଅଟଇ ବଡ଼ ଭାରି ॥୯୦॥ (୧ ବନ ୩୩୬)

ଏଥିରେ ୮୯ ପଦର ପ୍ରଥମ ଚରଣକୁ ୯୦ ପଦର ପ୍ରଥମ ଚରଣ ଭାବରେ ପୁନରୁକ୍ତ କରାଇ ଗୋଟିଏ ତିନି ଚରଣିଆ ପଦକୁ ଦୁଇ ପଦ ଭାବରେ ଗଣାଯାଇଛି । ଆଉ କେତେକ ସ୍ଥାନରେ ଗୋଟିଏ ତିନି ଚରଣିଆ ପଦର ଶେଷ ଚରଣଟିକୁ ପୃଥକ୍ କରି ଏକ ଚରଣକୁ ଏକ ପଦ ବୋଲି ଗଣାଯାଇଛି, ଯଥା :—

ଯେତେ ବୋଲି ବିଶ୍ରବା ଭୋଜନ ତାକୁ ଦିଏ ।
ଭୁଞ୍ଜାଇ ସୁମାଳି ଯେ ପରଷନ୍ତି ବିଶ୍ରବାୟେ ॥୧୬୩॥
ଅନେକ ସନ୍ତୋଷେ ଭୁଞ୍ଜାଇ ଅସୁରେଶ୍ୱର ରାୟେ ॥୧୬୪॥ (୨ବନ୯୩)

× × ×

ଯମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଦ୍ଦୟେ ।
ଭୀମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଭୟେ ॥୧୩୨॥
ପ୍ରହ୍ଲାଦ ଅଂଶେ ଜାତ ହୋଇଲେ ବଇଷ୍ଣବ ହୁଏ ॥୧୩୩॥
(୨ ବନ ୧୯୨)

## ଦାଣ୍ଡୀ ଶୈଳୀର ସ୍ୱଭାବ

ଦାଣ୍ଡୀ ଶୈଳୀରେ ରଚିତ ପଦ୍ୟରେ ଗୋଟିଏ ଅଭିବ୍ୟକ୍ତି ଗୋଟିଏ ପଦରେ (କିମ୍ବା ତାହାର ଗୋଟିଏ ଚରଣରେ) ବ୍ୟକ୍ତ ହୁଏ । ଆଧୁନିକ ଗଦ୍ୟର ବାକ୍ୟ ପରି ଦାଣ୍ଡୀର ପଦ । ଆଧୁନିକ ଗଦ୍ୟରେ ଯେତିକି ଭାବ ଗୋଟିଏ ବାକ୍ୟ ମଧ୍ୟରେ ପ୍ରକାଶ ପାଇବା କଥା, ଦାଣ୍ଡୀରେ ଗୋଟିଏ ପଦ (ବା ଚରଣ) ମଧ୍ୟରେ ତାହା ରହୁଥିଲା । ମୁଖ୍ୟତଃ ଏହି ନିୟମକୁ

ଧରିବାରୁ ପ୍ରକାଶିତବ୍ୟ ଭାବର ଆବଶ୍ୟକତାର ଅନୁରୋଧରେ ଚରଣର ଦୈର୍ଘ୍ୟରେ ତାରତମ୍ୟ ରହିଥିଲା ଓ କ୍ୱଚିତ୍ ତିନି ଚରଣରେ ଗୋଟିଏ ପଦ ହେଉଥିଲା ।

ଦାଣ୍ଡୀରେ ଠାଏଁ ଠାଏଁ ଚରଣକେ ୯/୧୦ ଅକ୍ଷର ତ ଅନ୍ୟତ୍ର ତ୍ରିଂଶାଧିକ ଅକ୍ଷର ଯାଏଁ ରହୁଥିବା କଥା ପ୍ରତି ଆଲୋଚକମାନେ ଦୃଷ୍ଟି ଆକର୍ଷଣ କରିଛନ୍ତି (ସାରଳା-ସ୍ମରଣିକା, ୧୯୫୪, ପୃ. ୮୧) । କିନ୍ତୁ, ଦାଣ୍ଡୀର ପ୍ରଯୋକ୍ତା କବି ଯେ ଜମାରୁ ଅକ୍ଷରସଂଖ୍ୟା ସଚେତନ ନ ହୋଇ (୧) ପୂର୍ଣ୍ଣ ଭାବ ପ୍ରକାଶ, (୨) ବାକ୍ ବିନ୍ୟାସ (diction) ଓ (୩) ମିତ୍ରାକ୍ଷର ବିଧି ପ୍ରତି ହିଁ ଧ୍ୟାନ ଦେଉଥିଲା, ଏହା ନିଶ୍ଚିତ କଥା । ମିତ୍ରାକ୍ଷର ବିଧି ପାଳନା ସତ୍ତ୍ୱେ ଦାଣ୍ଡୀ, ଯଦି ସେଥିରେ ପଦ୍ୟଧର୍ମୀ ବାକ୍‌ବିନ୍ୟାସ ନ ଥାନ୍ତା ତେବେ, ଗଦ୍ୟ ପଦବାଚ୍ୟ ହୁଅନ୍ତା । ସାରଳାଦାସଙ୍କ ମହାଭାରତ ଓ ଚଣ୍ଡୀପୁରାଣରେ ପ୍ରଶସ୍ତିବାଚକ ଶ୍ରୀମୁଖ (ରାଜକୀୟ ଆଜ୍ଞାପତ୍ର) ଭାବରେ ଅନେକ ଠାରେ ଗଦ୍ୟ ରହିଛି । ଗଦ୍ୟହେଲେ ସୁଦ୍ଧା ସେଥିରେ ମିତ୍ରାକ୍ଷର ବିଧି ଅନେକ ପରିମାଣରେ ଅଛି । ଉଦାହରଣ ସ୍ୱରୂପ ଚନ୍ଦ୍ରାବତୀ ହରଣ ପୂର୍ବରୁ ଦୁର୍ଯ୍ୟୋଧନ ନିକଟକୁ କୃଷ୍ଣ ଲେଖି ପଠାଇଥିବା ପତ୍ରର କିୟଦଂଶ (ମଧ୍ୟ ୬୧) ଦିଆଯାଉଛି :—

''ଶ୍ରୀ ନିରଞ୍ଜନ ପାଦେ ନତମସ୍ତକ । କୁଞ୍ଜଗଳ ଦେଶ ହସ୍ତିନା କଟକ ।
ଦ୍ରିଯୋଧନ ଛାମୁକୁ ଆଗ୍ୟାଂ ଶ୍ରୀମୁଖ । ଶ୍ରୀହସ୍ତ ପ୍ରସାଦ ସନ୍ତକ ।
ଏହା ପଢ଼ି ଦୃଢ଼ ବଚନ ଶୁଣି । ଶାମ୍ବକୁମର ତୁଲେ ତୋହର ଦୁହିତା
ଚନ୍ଦ୍ରାବତୀ କି ଘେନି ।
ବହନ ହୋଇତୁ କରିଯିବୁ ଦ୍ରଶନ । ନଇଲେ ଚଉଚେତ ଧୃଶାସନ ।
ଦୁର୍ଜୟ ଦୁର୍ବିନ୍ଧ ଜଦ୍ୟରଥ କର୍ଣ୍ଣ ।
ବାହ୍ଲିକ ଭୀଷ୍ମ ଦ୍ରୋଣ ଶକୁନି । ସେ ଏଗାର ଅକ୍ଷଉଣୀ ବଳ ଘେନି ।
ପଟୋୟାରେ ସାବଧାନେ ଥିବୁ ।''

ମିତ୍ରାକ୍ଷର ନିୟମ ପାଳନ କରୁଥିବା ଗଦ୍ୟ ଓଡ଼ିଆ ସାହିତ୍ୟରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚଳିଆସୁଥିଲା । ଦ୍ରଷ୍ଟବ୍ୟ— ରୁଦ୍ରସୁଧାନିଧି, ଚତୁରବିନୋଦ, ହାସ୍ୟକଲ୍ଲୋଳ । ରୁଦ୍ର ସୁଧାନିଧିର ସଂପାଦକଙ୍କୁ ତାହାର ଭାଷା ଏକ ପ୍ରକାର ଦ୍ୱନ୍ଦ୍ୱରେ ପକାଇଛି । ଡକ୍ଟର କରୁଣାକର କର ଗଦ୍ୟରେ ପଦ୍ୟସତ୍ତା ଦେଖାଇ ଲେଖିଛନ୍ତି— ''ରୁଦ୍ରସୁଧାନିଧିର ଭାଷା ହେଉଛି— ପଦ୍ୟାତ୍ମକ ଗଦ୍ୟ । ପ୍ରତି ପଦରେ ପଦ୍ୟର ସତ୍ତା ଥିବା ପରି ବୋଧ ହୁଏ । ତେଣୁ କେହି କେହି ଏହାକୁ ପଦ୍ୟ ବୋଲି ଅଭିହିତ ଓ ପ୍ରମାଣିତ କରିବାକୁ ପ୍ରୟତ୍ନ କରିଛନ୍ତି । କିନ୍ତୁ ଆମୂଳଚୂଳ ପାଠ କଲେ ସହଜରେ ପ୍ରତୀତ ହୁଏ ଯେ ରୁଦ୍ର ସୁଧାନିଧି ଗଦ୍ୟରେ ହିଁ ଲିଖିତ ।'' ଦାଣ୍ଡୀରେ ପଦ୍ୟଧର୍ମୀ ବାକ୍‌ବିନ୍ୟାସ ନଥିଲେ ତାହା ଗଦ୍ୟ ବୋଲାନ୍ତା । ଦାଣ୍ଡୀ ଶୈଳୀରେ ଲେଖୁଥିବା କବି ଭାବପ୍ରକାଶ, ମିତ୍ରାକ୍ଷର ଓ ବାକ୍‌ବିନ୍ୟାସ ଛଡ଼ା ଆଉ ଯେଉଁ ବିଷୟ ପ୍ରତି ଧ୍ୟାନ ଦେବାକୁ ହେଉଥିଲା ତାହା ଥିଲା ଗାନ-ସୁକରତ୍ୱ । ଚରଣ ଅତି ଦୀର୍ଘ

ହୋଇଗଲେ ଗାଇବା ବେଳେ ଗାୟକର ନିଃଶ୍ୱାସ ଅଣ୍ଟିବ ନାହିଁ । ପୁଣି, ଭାବପ୍ରକାଶକୁ ସରଳ ନ କଲେ ଚରଣ ଦୀର୍ଘ ହୋଇପଡ଼ିବା ଅପରିହାର୍ଯ୍ୟ ହୋଇପଡ଼ିବ । ଏହି ଆବଶ୍ୟକତାକୁ ନେଇ କବି ତାଙ୍କ ଭାବପ୍ରକାଶ ରୀତିର ଆଦର୍ଶକୁ ନିର୍ଣ୍ଣୟ କରି ସନ୍ଧି-ସମାସ-ସମନ୍ୱିତ ଜଟିଳ ଭାଷାକୁ ଅନାଦର କରି କହିଛନ୍ତି–

ରାନ୍ଧଣା ମିଠା ଯେବେ ସୁପଂକୁ ହୋଇ ସିଝି ।
କହଣାର ମିଠା ବେବେ ଶୁଣନ୍ତା ଲୋକ ବୁଝି ।। (୨ ସଭା ୪୫)

ସାରଳା ଦାସ ତାଙ୍କ ପୁରାଣଗୁଡ଼ିକର ପ୍ରଚାର ପାଇଁ ଉପଯୋଗୀ ହେବ ବୋଲି ଦାଣ୍ଡୀ ଶୈଳୀଟିକୁ ନିଜେ ଗଢ଼ିଥିବା ଅନୁମାନ କରାଯାଇ ପାରେ । ସେ ଥିଲେ ଗ୍ରାମ୍ୟ-ସମାଜର ଶୂଦ୍ର କୃଷକ । ତାଙ୍କର ଅଭିଳଷିତ ଶ୍ରୋତୃବର୍ଗ ଥିଲେ ପ୍ରାୟଶଃ ନିରକ୍ଷର ଗାଉଁଲି ଜନତା– ଧର୍ମଭୀରୁ ଓ ସରଳବିଶ୍ୱାସୀ । ସେମାନଙ୍କ ନିକଟରେ ତାଙ୍କ ସୃଷ୍ଟିକୁ ପହଞ୍ଚାଇବାର ମାଧ୍ୟମ ରୂପେ ସେ ପରଂପରା କ୍ରମେ ଚଳିଆସୁଥିବା ପୁରାଣ-ସଭା ଅନୁଷ୍ଠାନଟିକୁ ଉପଯୋଗ କରିବାକୁ ଚାହିଁଲେ । ଗାଁର ପୁଣ୍ୟକାମୀ ଦିବ୍ୟ-ଚରିତ-ଶ୍ରଦ୍ଧ ଜନତାଙ୍କୁ ପୁରାଣ-ପଣ୍ଡା ସଂସ୍କୃତ ପୁରାଣ ଶୁଣାଇ ଦକ୍ଷିଣା ପାଇ ପରିବାର ପୋଷଣ କରୁଥିଲା । ଗାଉଁଲି ସମାଜର ଆର୍ଥିକ ସମ୍ବଳ ଓ ପରିବେଶ ଜଣେ ସଂସ୍କୃତ ପଣ୍ଡିତକୁ ସ୍ୱଚ୍ଛଳ ବୃତ୍ତି ଦେବା ସମ୍ଭବପର ନଥିଲା । ଗାଁର ପୁରାଣପଣ୍ଡାମାନେ ଆଧୁନିକ କର୍ମକାଣ୍ଡୀ ପୁରୋହିତଙ୍କ ମାଫିକେ ଅକ୍ଷର ଚିହ୍ନି ଅଶୁଦ୍ଧ ଉଚ୍ଚାରଣ କରି ସଂସ୍କୃତ ପୁରାଣ ପଢୁଥିଲେ ସିନା ଅର୍ଥ ବୁଝାଇବା ସାମର୍ଥ୍ୟ ତାଙ୍କର ନଥିଲା । ସେମାନେ ଜନତାଙ୍କୁ ବିଶ୍ୱାସ ଦେଉଥିଲେ ଯେ ଦେବଭାଷାର ଶବ୍ଦ କାନରେ ପଡ଼ିଗଲେ ହେଲା, ପୁଣ୍ୟାର୍ଜନ ପାଇଁ ତାହାର ଅର୍ଥ ବୁଝିବାର କିଛି ପ୍ରୟୋଜନୀୟତା ନାହିଁ । ତଦ୍ଦ୍ୱାରା ଲୋକଙ୍କର ଦିବ୍ୟ ଚରିତ ଶ୍ରଦ୍ଧା ମେଣ୍ଟୁ ନଥିବା ଅନୁଭବ କରି ସାରଳା ଦାସଙ୍କର ବିଶ୍ୱାସ ଜନ୍ମିଥିବ ଯେ ଯଦି ପୁରାଣପଣ୍ଡାକୁ ଓଡ଼ିଆ ଭାଷାରେ ପୁରାଣ ଯୋଗାଇ ହେବ ତେବେ ଲୋକେ ଅବୋଧ୍ୟ ଅଶୁଦ୍ଧ ସଂସ୍କୃତ ଭାଷା ବଦଳରେ ସୁବୋଧ୍ୟ ଲୋକଭାଷାରେ ଦିବ୍ୟଚରିତ ଶୁଣି ଓ ବୁଝି ଆନ୍ତରିକ ସନ୍ତୋଷ ପାଇ ପାରିବେ । ଓଡ଼ିଶାରେ ସଂସ୍କୃତ ଭାଷାର ଲିପି ଯାହା ଆଂଚଳିକ ପ୍ରାକୃତ ଭାଷାର ଲିପି ମଧ ତାହା ହିଁ ଥିଲା । ତେଣୁ ପୁରାଣପଣ୍ଡା ନୂଆ ଲିପି ଶିଖିବା ଅନାବଶ୍ୟକ ଥିଲା । ଯଦି ତାହାର ମନରେ ବିଶ୍ୱାସ ଜନ୍ମି ପାରିବ ଯେ ଲୋକଭାଷାରେ ପୁରାଣ ପଢ଼ିବା ଦ୍ୱାରା ଶ୍ରୋତାଙ୍କ ଆଗ୍ରହ ବଢ଼ିବ ଓ ଅନୁଷ୍ଠାନଟି ଅଧିକ ଶ୍ରୋତୃମଣ୍ଡଳୀକୁ ଆକର୍ଷିତ କରିବ ତେବେ ସେ ସଂସ୍କୃତ ପୁରାଣ ବଦଳେ ଓଡ଼ିଆ ପୁରାଣ ଶୁଣାଇ ଅଧିକ ଲୋକଙ୍କଠାରୁ ଦକ୍ଷିଣା ପାଇ ନିଜ ଜୀବିକାକୁ ଅଧିକ ଅର୍ଥସଂଗ୍ରାହୀ କରିପାରିବ । ଆଧାର ଆଧେୟ ନୁହେଁ, ତେଣୁ ପୁଣ୍ୟ କୌଣସି ଭାଷାର ଏକାଧିପତ୍ୟ ନୁହେଁ । ସଂସ୍କୃତର ଦେବଭାଷା ଆଖ୍ୟା ଏକ ଭଣ୍ଡାଣ । ଗଙ୍ଗାଜଳ ସୁନାଝରୀରେ ନ ରହି ମାଟି ପାତ୍ରରେ ରହିଲେ ତାହା ପବିତ୍ରତା ହରାଏ ନାହିଁ । ମୁଖ୍ୟ କଥା ହେଲା ପୁରାଣସଭାରେ ପଢ଼ିବା ପାଇଁ ପୁରାଣ-ପଣ୍ଡାଙ୍କୁ ଆକର୍ଷିତ କରିବା ।

ସାରଳାଦାସ ତାଙ୍କର ସବୁଗୁଡ଼ିକ ରଚନାରେ ଶ୍ରୋତାମାନେ ପୁରାଣପାଠକଙ୍କୁ ସମୁଚିତ ଦକ୍ଷିଣା ନ ଦେଲେ ପୁରାଣ ଶ୍ରବଣ ନିଷ୍ଫଳ ହେବ ବୋଲି ବାରଂବାର ଚେତାଇବାର ଅସଲ ଉଦ୍ଦେଶ୍ୟ ତାଙ୍କ ରଚନାର ପ୍ରଚାରକଙ୍କୁ ଖୋରାକି ଯୋଗାଇବା । ତାଙ୍କ କହିବା ଅନୁସାରେ—

ଯେ ଯାହାର ଅନରୂପେ ଦାନ ଦକ୍ଷିଣା ଦେବେ ।
ପୁରାଣ ଶୁଣିବାର ସଦଗତି ଲଭିବେ ।। (ବିଚିତ୍ର ରାମାୟଣ)

× × ×

ଦକ୍ଷିଣା ଦେଲେ ସେ ଫଳଶ୍ରୁତି ପାଇ । (ବିଚିତ୍ର ରାମାୟଣ)

× × ×

ଆହେ ପ୍ରାଣୀମାନେ ତୁମ୍ଭେ ଶୁଣ ଯେକ ମନେ ।
ଭାରଥ ଶୁଣି ଦକ୍ଷିଣା ଦେବଟିକି ଦିବ୍ୟମାନେ ।।
ଯେମନ୍ତ ଦାନ ଦେଇ ତେମନ୍ତ ଫଳ ପାଇ ।
ଦକ୍ଷିଣା ନ ଦିଲେ ଫଳ କେବେହେଁ ନୁହଇ ।। (ମଧ୍ୟ ୧୧୬୬)

× × ×

କେବଳ ଦକ୍ଷିଣା ଯେ ଦେବ ମନ ପୂର୍ଣ୍ଣ ।
ବକତାକୁ ମଣିବ ବ୍ୟାସଂକ ସମାନ ।।
ଧୂପ ଦୀପ ଦେଇଣ ନଇବେଦ୍ୟ ପୂଜା କର ।
ଦକ୍ଷିଣା ନ ଦିଲେ କର୍ଣ୍ଣ ହୋଅଇ ବଧୀର । (ସ୍ୱର୍ଗାରୋହଣ ୨୩୮)

ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ପଦ୍ୟ ଥିଲା ଗୁରୁଲଘୁ ବର୍ଣ୍ଣଭେଦାତ୍ମକ, ଗଣନିୟମାଧୀନ । ସାରଳାଦାସଙ୍କ ଶତ ଶତ ବର୍ଷ ପୂର୍ବରୁ ଦାକ୍ଷିଣାତ୍ୟର ସବୁଗୁଡ଼ିକ ଲୌକିକ ଭାଷାରେ ପୁରାଣ ଓ ମହାକାବ୍ୟର ସୃଷ୍ଟି ହୋଇସାରିଥିଲାଣି । ବୈଷ୍ଣବ ଧର୍ମର ମୂଳ ଉତ୍ସ ଦାକ୍ଷିଣାତ୍ୟ ଧର୍ମକୁ ଲୋକପ୍ରିୟ କରାଇବା ପାଇଁ ଲୋକଭାଷାକୁ ମାଧ୍ୟମ କରିଥିଲା । ଏହି ପରିସ୍ଥିତି ସାରଳାଦାସଙ୍କୁ ଓଡ଼ିଶାର ଲୌକିକ ଭାଷାରେ ପୁରାଣ ସୃଷ୍ଟି ପାଇଁ ପ୍ରେରଣ ସହିତ ଆହ୍ୱାନ ଯୋଗାଇଥିବା ଅନୁମେୟ । ଦାକ୍ଷିଣାତ୍ୟର ଭାଷାରେ ମଧ୍ୟ ଗୁରୁ-ଲଘୁ 'ନିୟମାଶ୍ରିତ ପଦ୍ୟ'ର ପ୍ରଚଳନ ଥିଲା । ପରିଣାମତଃ, ଲୌକିକ ଭାଷାର ସାହିତ୍ୟ ମଧ୍ୟ କଠିନ ରୂପ ନେଉଥିଲା । ମାର୍ଗ କବିତା ନାମରେ ପରିଚିତ ଏହି ସବୁ ଲୌକିକ ଭାଷାର ପୁରାଣର ପରିବେଷଣ ପାଇଁ ଆବଶ୍ୟକ ପଡୁଥିଲେ ଅତି କମ୍‌ରେ ତ୍ରିଜଣ— ଜଣେ ଜଟିଳ ଛନ୍ଦନିୟମକୁ ଧରି ଗାଇପାରୁଥିବା ଗାୟକ, ଜଣେ ଜଟିଳ ଭାଷାକୁ ଶ୍ରୋତୃବର୍ଗଙ୍କୁ ବୁଝାଇବା ପାଇଁ ପଣ୍ଡିତ ଓ କିଛି ବାଦକ । ଏତେ ସଂଖ୍ୟକ ଲୋକଙ୍କୁ ଖୋରାକି ଯୋଗାଇ ନ ପାରିଲେ ପୁରାଣ ଅଭିଳଷିତ ଶ୍ରୋତାଙ୍କ ପାଖରେ ପହଞ୍ଚି ପାରିବ ନାହିଁ । ତେଣେ ଗ୍ରାମବାସୀଙ୍କ ଆର୍ଥିକ ଦୁର୍ବଳତା ଏକ ବାସ୍ତବତା । ଏହି ପରିସ୍ଥିତି ଦୃଷ୍ଟେ ସାରଳାଦାସ ଅନ୍ତଙ୍କ ପୁରାଣପଣ୍ଡାର ସାମର୍ଥ୍ୟକୁ ଚାହିଁ ବୃତ୍ତ ନିୟମ ବର୍ଜିତ ସରଳ ଲୌକିକ ଭାଷାର

ଦାଣ୍ଡୀ ଶୈଳୀର ପ୍ରବର୍ତ୍ତନ କରିଥିବା ଅନୁମିତ ହୁଏ । ଦାଣ୍ଡୀରେ ଚରଣର ଦୈର୍ଘ୍ୟର ତାରତମ୍ୟକୁ ସମତୁଲ କରାଇବା ପାଇଁ ଗାୟକକୁ କେତେବେଳେ ଧଡ଼ସି ତ କେତେବେଳେ ମଠାଇ କରି ଗାଇଲେ ହେଲା । ଛନ୍ଦଗ୍ରନ୍ଥ 'ପ୍ରାକୃତ ପୈଙ୍ଗଳମ୍' ଗୁରୁଲଘୁ ନିୟମକୁ ମାନୁଥିବା ସତ୍ତ୍ୱେ ଗାୟକ ଏକ ଦୀର୍ଘ ବର୍ଣ୍ଣକୁ ଗାଇବା କୌଶଳରେ ହ୍ରସ୍ୱ କରିପାରିବ ବୋଲି କହେ—

''ଜଇ ଦୀହୋ ବି ଅ ବଣ୍ଣୋ ଲହୁ ଜୀହା ପଢ଼ି ହୋଇ ସୋ ବି ଲହୁ ।
ବର୍ଣ୍ଣୋ ବି ତୁରିଅ ପଢ଼ିଓ, ଦୋ ଭିଣ୍ଣି ବି ଏକ୍କ ଜାଣେ ହୁ ।।'' (୧/୮)

ଅର୍ଥାତ୍, ଜିଭ ଯଦି ଦୀର୍ଘ ବର୍ଣ୍ଣକୁ ଲଘୁ କରି ପଢ଼େ, ତେବେ ତାହା ବି ଲଘୁ ହୁଏ ଓ ଦୁଇ ତିନି ବର୍ଣ୍ଣ ଶୀଘ୍ର ପଢ଼ାହେଲେ ଏକ ବର୍ଣ୍ଣ ରୂପେ ଗୃହୀତ ହୁଏ । ଦାଣ୍ଡୀ ଏହି ମାଫି ଉପରେ ଦଣ୍ଡାୟମାନ । ତାହା ପୁରାଣପାଠକର ଗାନକୌଶଳ ଓ ସମର୍ଥନ ଉପରେ ଭରସା ରଖେ ।

ଯେଉଁମାନେ ପ୍ରାଚୀନ ଢଙ୍ଗର ଗଦ୍ୟପାଠ ଶୁଣିଥିବେ, ସେମାନେ ଗଦ୍ୟକୁ ମଧ୍ୟ କିପରି ସ୍ୱରଲହର ଦେଇ ଗାନ କରାଯାଇପାରେ ତାହା ଜାଣିଥିବେ । ସଂପ୍ରତି ମଧ୍ୟ କେହି କେହି ପୁରୁଣାକାଳିଆ ଗ୍ରାମ୍ୟ ପୁରୋହିତ ଗଦ୍ୟଲିଖିତ ବ୍ରତ କଥାଗୁଡ଼ିକୁ ପାଠ ନ କରି ଏକ ପ୍ରକାର ଗାଇଥାନ୍ତି । ଏହା ଦାଣ୍ଡୀର ଧ୍ୱଂସାବଶେଷ । ଦାଣ୍ଡୀ ଅନ୍ୟ କୌଣସି ରଚନା ଶୈଳୀର ଜନକ ନହେଲେ ହେଁ ସବୁର ଅଗ୍ରଜ ।

**ଦାଣ୍ଡୀର ଅନୁଜ**

ପଲ୍ଲୀରେ ଜାତ ଓ ଲାଳିତ ହୋଇ ଦାଣ୍ଡୀ-ରଚନା ଲୌକିକ ଭାଷାର ସାହିତ୍ୟିକ ସମ୍ଭାବନାକୁ ସ୍ୱୀକାର କରିବା ପରେ ପରଂପରାକ୍ରମେ ସଂସ୍କୃତ ସାହିତ୍ୟର ବିଭବରେ ବିମୁଗ୍ଧ ନଗରପାଟଣାର ବିଦଗ୍ଧ ଗୋଷ୍ଠୀର ଅସଂସ୍କୃତ-ବାଣୀ ପ୍ରତି ଚିରପୋଷିତ ଅବଜ୍ଞାର ମାତ୍ରା ହ୍ରାସ ପାଇଲା । ଲୌକିକ ଭାଷାର ରଚନାର ବିବର୍ଦ୍ଧମାନ ଜନପ୍ରିୟତା ସଂସ୍କୃତ ଭାଷାପ୍ରେମୀଙ୍କୁ ମଧ୍ୟ ଲୌକିକ ଭାଷାରେ ସାହିତ୍ୟ ସୃଷ୍ଟି ପ୍ରତି ଅନୁକୂଳ କରାଇଲା । ମାତୃସ୍ତନରେ ଦୁଗ୍ଧ ଭରି ଉଠିଲେ ସେ ତାହାକୁ ସନ୍ତାନକୁ ଖୁଆଇବାକୁ ଅସମ୍ଭାଳ ହେବା ପରି ଭାବୁକର ହୃଦୟରେ ଭାବ ଖୁନ୍ଦି ହୋଇ ଉବେଇଟୁବେଇ ହେଲେ ସେ ଅଧିକରୁ ଅଧିକ ସଂଖ୍ୟକ ଶ୍ରୋତାଙ୍କୁ ଖୋଜେ ହୃଦୟକୁ ହାଲୁକା କରାଇବା ପାଇଁ— ''ଯା ବୈ ଭୂମା ତତ୍ ସୁଖଂ ନାଳ୍ପେ ସୁଖମସ୍ତି ।'' ବହୁ ଲୋକଙ୍କ ପାଖରେ ପହଞ୍ଚିବା ପାଇଁ ବହୁଲୋକଙ୍କ ଭାଷାକୁ ଆଦରିବାକୁ ହିଁ ହେବ । ସଂସ୍କୃତର ପହଞ୍ଚ ଅତି ସୀମିତ କିନ୍ତୁ ଲୋକଭାଷାର ପହଞ୍ଚ ସୁବିସ୍ତୃତ । ପରିଣାମତଃ ନଗରବାସୀ ଶିଷ୍ଟଗୋଷ୍ଠୀର ସଂସ୍କୃତ ପଢୁଆ ଭାବୁକମାନେ—ମହାମନ୍ତ୍ରୀ-ସୁତ ବଳରାମ ଦାସ, ସଂସ୍କୃତ-ପଣ୍ଡିତ ଜଗନ୍ନାଥ ଦାସ, ସଂସ୍କୃତ ପଢୁଆ କୁଳର ନରସିଂହ ସେଣ ଆଦି— ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି ପ୍ରତି ମନୋଯୋଗୀ ହେଲେ । ଏମାନେ ଥିଲେ ପୁରୀ ନଗରବାସୀ ବା ରାଜଧାନୀ କଟକର ବାସିନ୍ଦା, କେହି ପଲ୍ଲୀବାସୀ ନଥିଲେ ।

ସଂସ୍କୃତଜ୍ଞ ପଣ୍ଡିତମାନେ ଓଡ଼ିଆ ସାହିତ୍ୟ ସୃଷ୍ଟି ପ୍ରତି ଦୃଷ୍ଟି ଦେବାରୁ ଓଡ଼ିଆ ସାହିତ୍ୟ ସଂସ୍କୃତର ନିକଟବର୍ତ୍ତୀ ହେବା, ସଂସ୍କୃତକୁ ଆଦର୍ଶ ବୋଲି ମାନି ସଂସ୍କୃତ ଆଡ଼କୁ ଆଉଜିବା ଶ୍ରେୟ ବୋଲି ବିଚାର ଜନ୍ମିଲା । ଫଳ ହେଲା ଦ୍ୱିବିଧ– (୧) ଛନ୍ଦହୀନ ଦାଣ୍ଡୀକୁ ଛନ୍ଦକବିତା ଘୋଟିଲା ଓ (୨) ସଂସ୍କୃତରୁ ଅନୁବାଦ ପ୍ରକ୍ରିୟାର ସୂତ୍ରପାତ ହେଲା । ସାରଳାଦାସ ପୁରାଣାଦି ବହୁତ ସୃଷ୍ଟି କରିଛନ୍ତି କିନ୍ତୁ ଜମାରୁ ଅନୁବାଦ କରିନାହାନ୍ତି । ସଂସ୍କୃତର ରାମାୟଣ, ମହାଭାରତ କି ଚଣ୍ଡୀ ସହିତ ତାଙ୍କ ରଚନାଗୁଡ଼ିକର ସଂପର୍କ ନାହିଁ । ସାରଳାଦାସଙ୍କ ଦାଣ୍ଡୀ ରଚନାଗୁଡ଼ିକ ଦାଣ୍ଡୀ ଶୈଳୀ ପରି ମୌଳିକ; କାହାର ଭାଷାନ୍ତର ନୁହନ୍ତି । ପକ୍ଷାନ୍ତରେ, ବଳରାମ ଦାସ ମୂଳ ବାଲ୍ମୀକି ରାମାୟଣର ପର୍ବକ୍ରମକୁ ଅପରିବର୍ତ୍ତିତ ରଖିଛନ୍ତି, ଚରିତ ବର୍ଣ୍ଣନାରେ ଖୁବ୍ କମ୍ ଅପୂର୍ବତା ଫୁଟାଇଛନ୍ତି ଓ ସାରଳାଦାସ ମହାଭାରତ ରଚନା ଭିତରେ ସ୍ଥାନ ଦେଇ ନଥିବା ଭଗବଦ୍‌ଗୀତା ଆଦିକୁ ଅନୁବାଦ କରିଛନ୍ତି । ଜଗନ୍ନାଥ ଦାସ ମୂଳ ଭାଗବତକୁ ଶ୍ରୀଧର ସ୍ୱାମୀଙ୍କ ଟୀକା ଧରି ଶ୍ଳୋକ ପରେ ଶ୍ଳୋକ ଭାଷାନ୍ତର କରିଛନ୍ତି । ସ୍କନ୍ଧକୁ ଓ ଚରିତ କ୍ରମକୁ ତ ଅକ୍ଷୁଣ୍ଣ ରଖିଛନ୍ତି, ଅଧ୍ୟାୟଗୁଡ଼ିକର ବିଷୟବସ୍ତୁରେ ମଧ୍ୟ କ୍ୱଚିତ୍ ଯୋଗ-ବିଯୋଗ କରିଛନ୍ତି । ଜଗନ୍ନାଥ ଦାସଙ୍କ ସ୍ୱୀକୃତି ''ପାମର ବୁଦ୍ଧି ତୁଚ୍ଛ ଭାଷା'' ଏହି ସୂଚନା ଦେଉଛି ଯେ ନଗରର ବିଜ୍ଞ ଶିଷ୍ଟ ସମାଜ ସଂସ୍କୃତ ଭାଷାର ଉତ୍କର୍ଷର ସ୍ତାବକ ଥିଲେ । ପକ୍ଷାନ୍ତରେ, ସାରଳାଦାସଙ୍କ ଭାଷା ବାସ୍ତବରେ ସଂସ୍କୃତ ଭାଷାଠାରୁ ଅଧିକ ଦୂରତ୍ୱ ରକ୍ଷା କରୁଥିଲେ ହେଁ ସେ ବ୍ୟବହାର କରୁଥିବା ପ୍ରାକୃତ ଭାଷା ଦେବୀ ସରସ୍ୱତୀ (ସାରୋଳା)ଙ୍କ ମୁଖନିଃସୃତ ହେବାରୁ 'ତୁଚ୍ଛ' ନ ଥିଲା । ଦୃଷ୍ଟିକୋଣର ପାର୍ଥକ୍ୟ ମାନିବାକୁ ପଡୁଛି ।

ଦାଣ୍ଡୀ ଓଡ଼ିଆର ନିଜସ୍ୱ, ସ୍ୱକୀୟ । ଦାଣ୍ଡୀରଚନାଗୁଡ଼ିକ ଅଖିଳ ଭାରତୀୟ ଭୂମିରୁ ପୃଥକ୍ ହୋଇ ନିଜସ୍ୱ ଇତିହ (myth)ସୃଷ୍ଟି କରିଛନ୍ତି । ପୂର୍ବେ (ପଞ୍ଚମ ଅଧ୍ୟାୟରେ) ଦେଖାଇ ଦିଆଯାଇଛି ସାରଳାଦାସଙ୍କ ରଚନାଗୁଡ଼ିକ କିପରି ଆଂଚଳିକ ଇତିହ ସୃଷ୍ଟି କରି ଆଂଚଳିକ ସଂହତିକୁ ଦୃଢ଼ କରିବା ସ୍ଥଳେ ସଂସ୍କୃତ ଗ୍ରନ୍ଥଗୁଡ଼ିକରେ ସଂଚିତ ଇତିହ ଅନାଞ୍ଚଳିକ ଅଖିଳ ଭାରତୀୟତାର ପୋଷକ । ଫଳରେ ସଂସ୍କୃତ ଗ୍ରନ୍ଥଗୁଡ଼ିକର ଅନୁବାଦ ମଧ୍ୟ ଆଂଚଳିକତାର ପରିପନ୍ଥକ । ଦାଣ୍ଡୀରେ ରଚିତ ମୌଳିକ ଓଡ଼ିଆ ପୁରାଣ ଓ ସଂସ୍କୃତରୁ ଭାଷାନ୍ତରିତ ପୁରାଣ ମଧ୍ୟର ବିରୋଧ ସ୍ୱାଭାବିକ ।

## ଛନ୍ଦର ସର୍ଗ ଓ ଉପସର୍ଗ

ଦୀର୍ଘକାଳ ଧରି ଦାଣ୍ଡୀ ପାଠ ଚଳିବା ପରେ ଏହା ଅନୁଭୂତ ହୋଇଥିବ ଯେ ଓଡ଼ିଆ ପଦ୍ୟ ମଧ୍ୟକୁ ଛନ୍ଦ/ରାଗକୁ ପ୍ରବେଶ ନ କରାଇଲେ ପୁରାଣପାଠକମାନେ ଗାଇବା ରୀତି ନେଇ ଲଗାମଛଡ଼ା ମନମାନିଆ ହୋଇପଡ଼ିବେ । ତେଣୁ ପୁରାଣପାଠର ଶୃଙ୍ଖଳା ଓ ନିୟମିତତା ରକ୍ଷା ପାଇଁ ଛନ୍ଦର ଆବଶ୍ୟକତା ଦେଖା ଦେଲା । ବଳରାମ ଦାସ ଦାଣ୍ଡୀ-ଗାନର ଅସୁବିଧାକୁ କମାଇବା ଲକ୍ଷ୍ୟରେ ଚତୁର୍ଦ୍ଦଶାକ୍ଷରୀ ବୃତ୍ତକୁ ଓ ବଙ୍ଗଳାଶ୍ରୀ ଆଦି ବୃତ୍ତକୁ

ଚଳାଇଲେ । ଜଗନ୍ନାଥ ଦାସ ଦାଣ୍ଡୀକୁ ଛାଡ଼ି ଧରିଲେ ନବାକ୍ଷରୀ ବୃତ୍ତକୁ, ଯାହାର ଚରଣଗୁଡ଼ିକର ଦୈର୍ଘ୍ୟ ଅତି କମ୍ ତଥା ତାରତମ୍ୟବର୍ଜିତ ହୋଇଥିବା ସକାଶରୁ ଗାଇବା ପାଇଁ ଯେପରି ସୁସାଧ ହେଲା, ସେହିପରି ସୁଶ୍ରାବ୍ୟ ହେଲା । ଜଗନ୍ନାଥ ଦାସଙ୍କ ଭାଗବତର ନବାକ୍ଷରୀ ଛନ୍ଦର ଗାନ-ସୌକର୍ଯ୍ୟ ଓଡ଼ିଶାରେ ବୈଷ୍ଣବ ଭକ୍ତିଧର୍ମର ପ୍ରସାରକୁ ପ୍ରଭୂତ ସାହାଯ୍ୟ କରିଥିଲା । ଓଡ଼ିଶାର ଗ୍ରାମେ ଗ୍ରାମେ ଭାଗବତ ଘର (ଟୁଙ୍ଗି ବା ଗାଦି) ସ୍ଥାପିତ ହୋଇପାରିଲା ଖାସ୍ ନବାକ୍ଷରୀ ଓଡ଼ିଆ ଭାଗବତ ଯୋଗୁଁ । ସଂସ୍କୃତ ଭାଗବତ ଲୋକପ୍ରିୟତାରେ ପଛରେ ପଡ଼ିଗଲା । ଧର୍ମ ଇଲାକାରୁ 'ଦେବଭାଷା'କୁ ହଟାଇ ଲୋକଭାଷାକୁ ସ୍ଥାନାପନ୍ନ କରାଇବା ଏକ ପ୍ରକାର ଅସାଧ ସାଧନ । ତୁଳସୀଦାସଙ୍କ ରାମଚରିତ ମାନସ କ୍ଷେତ୍ରରେ ଏହା ଘଟିଲା ଓଡ଼ିଆ ଭାଗବତର ପ୍ରସାରର ଅର୍ଦ୍ଧଶତାବ୍ଦୀ ପରେ । ପକ୍ଷାନ୍ତରେ, ଭଗବଦ୍‌ଗୀତାର ଅନୁବାଦ ଓଡ଼ିଆ ଭାଷାରେ ଅର୍ଦ୍ଧଶତାଧିକ ଥିଲେ ହେଁ ଧାର୍ମିକ ଅନୁଷ୍ଠାନ ପାଇଁ ଅଦ୍ୟାବଧି ସଂସ୍କୃତ ଭାଷାର ଗୀତା ହିଁ ଯୋଗ୍ୟ ବିବେଚିତ ହେଉଛି । କୌଣସି ଗୋଟିଏ ବି ଓଡ଼ିଆ ଭଗବଦ୍‌ଗୀତା ସଂସ୍କୃତ ଗୀତାକୁ ହଟାଇ ପାରୁନାହିଁ ।

ବିଦ୍ୱତ୍ ଗୋଷ୍ଠୀର ସଂଶ୍ରବରେ ଆସିବାରୁ ଓଡ଼ିଆ ସାହିତ୍ୟରେ ଏକ ଦିଗରେ ଛନ୍ଦ କବିତାର ଆଗମ ହେଲା ଓ ଅନ୍ୟ ଦିଗରେ ଆଞ୍ଚଳିକତାର ଗାଢ଼ ରଙ୍ଗ ଫିକା ପଡ଼ିବାକୁ ଲାଗିଲା । ସବୁ କାଳେ ସବୁ ଦେଶରେ ବିଦ୍ୱତ୍‌ଗୋଷ୍ଠୀ ଆଞ୍ଚଳିକ ସଂକୀର୍ଣ୍ଣତା ବାହାରକୁ ଯାଇଥାନ୍ତି ଓ ଗ୍ରାମ୍ୟ ଅଶିକ୍ଷିତ ଲୋକେ ନିଜର କ୍ଷୁଦ୍ର ବେଢ଼ ମଧ୍ୟରେ ପଡ଼ିରହିଥାନ୍ତି । ସଂସ୍କୃତ କାବ୍ୟର ଆଦର୍ଶରେ ଓଡ଼ିଆରେ କାବ୍ୟର ଉଦୟ ହେଲା । ଓଡ଼ିଆରେ କାବ୍ୟର ସୁବିଦିତ ନାମ ଛାନ୍ଦ; ସମଗ୍ର କାବ୍ୟଟି ଛାନ୍ଦ ବୋଲାଏ ଓ ତାହାର ପ୍ରତ୍ୟେକ ସର୍ଗ ମଧ୍ୟ ଛାନ୍ଦ । କାବ୍ୟବିଶେଷର ଅଂଶ ହୋଇନଥିବା କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ଛନ୍ଦରେ ଲେଖା ହୋଇଥିବା ଦୀର୍ଘ କବିତା ମଧ୍ୟ ଓଡ଼ିଆରେ ଛାନ୍ଦ ବୋଲାଏ । ଛାନ୍ଦ ନାମଟି ଛନ୍ଦ ଶବ୍ଦରୁ ଜାତ । ଓଡ଼ିଆ ସାହିତ୍ୟିକ ପରଂପରାରେ ଛନ୍ଦ ଓ ଛାନ୍ଦ ଯମଜ । ଓଡ଼ିଆ ଭାଷାରେ ଅକ୍ଷର ଗୁଡ଼ିକର ଧ୍ୱନିମୂଲ୍ୟ ସମାନ (ଅର୍ଥାତ୍ ଗୁରୁଲଘୁ ଭେଦ ବର୍ଜିତ) ହେବା ସକାଶରୁ ଛାନ୍ଦର ସ୍ୱରୂପ ତାହାର ଚରଣ/ପର୍ବ ଭୁକ୍ତ ଅକ୍ଷରଗୁଡ଼ିକର ସଂଖ୍ୟା ଉପରେ ନିର୍ଭର କରିବା ସ୍ୱାଭାବିକ ହେଲା । ଛାନ୍ଦ ହେଲା ଅକ୍ଷର ସଂଖ୍ୟାରେ ବନ୍ଧା, ଦାଣ୍ଡୀ ସେହି ବନ୍ଧନରୁ ମୁକ୍ତ ଥିଲା । ଓଡ଼ିଆ ସାହିତ୍ୟ-ରାଜ୍ୟରୁ ଦାଣ୍ଡୀର ପ୍ରଭାବ-ହ୍ରାସ ସହସା ହୋଇନଥିଲା । ସାହିତ୍ୟ ଓ କଳା କ୍ଷେତ୍ରରେ ଗୋଟିଏ ସାଧାରଣ ନିୟମ ଏହି ଯେ କୌଣସି ଆଂଗିକ ବା ରୂପ ଅପେକ୍ଷା ଅଧିକତର ଉପଯୋଗୀ/ଶ୍ରେୟସ୍କର ବିକଳ୍ପ ଉଦ୍‌ଭାବିତ ହେବା ପରେ ପ୍ରାଚୀନ ଆଂଗିକ ବା ରୂପର ଉପଯୋଗିତା ହ୍ରାସ ପାଇଲେ ହେଁ ପ୍ରାଚୀନର ପୋଷକ ଏକାବେଳେକେ ଉଭେଇ ଯାଆନ୍ତି ନାହିଁ, କେବଳ କ୍ରମଶଃ ଧୀରେ ଧୀରେ ଅଳ୍ପତର ହୋଇଯାଆନ୍ତି । ଷୋଡ଼ଶ ଶତାବ୍ଦୀର ଛାନ୍ଦ ରଚନାର ପ୍ରାଥମିକ ସ୍ତରରେ ଚରଣ/ପର୍ବ ଗୁଡ଼ିକର ଅକ୍ଷର ସଂଖ୍ୟାରେ ଯେଉଁ ସାମାନ୍ୟ ଊନାଧିକ୍ୟ ରହୁଥିଲା (ଯଥା— ନରସିଂହ ସେଣଙ୍କ ଗୋପକେଳି ଓ

ପରିମଳା କାବ୍ୟରେ ଓ ଅର୍ଜ୍ଜୁନ ଦାସଙ୍କ ରାମବିଭା ଓ କଳ୍ପଲତା କାବ୍ୟରେ) ତହିଁରୁ ସ୍ପଷ୍ଟ ହୁଏ ଦାଣ୍ଡୀର ପ୍ରଭାବକୁ ହଟାଇ ଓଡ଼ିଆ ସାହିତ୍ୟରେ ଛନ୍ଦ ପୂର୍ଣ୍ଣମାତ୍ରାରେ ପ୍ରତିଷ୍ଠିତ ହେବାକୁ ଦୀର୍ଘ ସମୟ ନେଇଥିଲା । 'ଅକ୍ଷର ଗଣିବ ହସ୍ତରେ, ତେବେ ସେ ଲିହିବ ପତରେ' ବୋଲି କୃଷ୍ଣଦାସ ସୁପାରିସ୍ ଦେବା ବେଳକୁ ଅଷ୍ଟାଦଶ ଶତାବ୍ଦୀ ହୋଇ ସାରିଥିଲା ।

## ସାହିତ୍ୟର ରାଜକୀୟ ପୋଷଣ

ଦାଣ୍ଡୀର ପ୍ରସାର ପାଇଁ ରାଜକୀୟ ସମର୍ଥନର ପ୍ରୟୋଜନ ନଥିଲା । ଲୋକେ ପୁରାଣପଣ୍ଡାକୁ ଦକ୍ଷିଣା ଦେଇ ପୋଷିବେ ଓ ପୁରାଣପଣ୍ଡା ସନ୍ଧ୍ୟାରେ ପୁରାଣ ପାଠ କରିବ ଓ ଦିନବେଳେ ପୁରାଣର ନକଲ ପ୍ରସ୍ତୁତ କରି ଅନ୍ୟକୁ ବିକିବ । ଏହି କ୍ରମରେ ସାହିତ୍ୟର ପ୍ରସାର ବାହାରର ସାହାଯ୍ୟକୁ ଅପେକ୍ଷା କରୁନଥିଲା ।

ରାଜାମାନେ 'କୀର୍ତ୍ତିରକ୍ଷର ସଂବନ୍ଧା ସ୍ଥିରା ଭବତି ଭୂତଳେ' ବୋଲି ବୁଝି ମନ୍ଦିର, ତଡ଼ାଗ ଆଦି ଅଚିରସ୍ଥାୟୀ କୀର୍ତ୍ତି ପ୍ରତିଷ୍ଠାରେ ସନ୍ତୁଷ୍ଟ ନହୋଇ ସାହିତ୍ୟିକ କୀର୍ତ୍ତି ସହିତ ନିଜକୁ ସଂଶ୍ଳିଷ୍ଟ କରିବାକୁ ଆଗଭର ହେଉଥିଲେ । ରାଜାକୁ କୀର୍ତ୍ତିମାନ୍ କରାଇବା ପାଇଁ କବି ଶାସ୍ତ୍ରକାରମାନଙ୍କ ପ୍ରୟୋଜନ ଥିଲା ପରି କବିର କାତରତା ଦୂର କରାଇବା ପାଇଁ ରାଜକୀୟ ପୃଷ୍ଠପୋଷକତାର ମଧ୍ୟ ପ୍ରୟୋଜନ ଥିଲା । ରାଜାର ଭାବମୂର୍ତ୍ତି ତାହାର ରାଜସଭାର କବିପଣ୍ଡିତଙ୍କ ମହତ୍ତ୍ୱ ମୁକୁରରେ ପ୍ରତିଫଳିତ ହେଉଥିଲା । ରାଜସଭାର ସପ୍ତବିଧ ଉପାଦାନ (ସପ୍ତାଙ୍ଗ) ମଧ୍ୟରେ ପଣ୍ଡିତ ଓ କବିମାନେ ଗଣ୍ୟ ହେଉଥିଲେ ।

> ବିଦ୍ୱାଂସୋ କବୟୋ ଭଟ୍ଟା ଗାୟକା ପରିହାସକାଃ ।
> ଇତିହାସ ପୁରାଣଜ୍ଞା ସଭା ସପ୍ତାଙ୍ଗ ସଂଯୁତା ।

ରାଜାଙ୍କ ଭାବମୂର୍ତ୍ତିର ଓ ରାଜସଭାର ଗୌରବର ବୃଦ୍ଧି ପାଇଁ କବି ଓ ରାଜା ପରସ୍ପର ପରିପୂରକ ବୋଲି ପରିଗଣିତ ହେଉଥିଲେ– ''କବିନା ଚ ବିଭୁର୍ବିଭୁନା ଚ କବି କବିନା ବିଭୁନା ଚ ବିଭାତି ସଭା ।'' ସାରଳାଦାସ ମଧ୍ୟ ଭୀଷ୍ମ ପାଣ୍ଡବଙ୍କୁ ରାଜଧର୍ମ ବୁଝାଇବା ମଧ୍ୟରେ କବିଙ୍କ ପ୍ରତି ବଦାନ୍ୟ ହେବା ଉଚିତ ବୋଲି କହିଛନ୍ତି–

> ଗୁଣ ଅନୁକ୍ରମେ କରୁଥିବୁ ପୂଜା
> କବି କୃତଜନଙ୍କୁ କୃପଣ ନୋହିବୁଟି ମହରାଜା । (ଶାନ୍ତି ୫)

ବହୁ ସଂସ୍କୃତ କବି ଓ ପଣ୍ଡିତ ଓଡ଼ିଶାର ରାଜସଭା ଅଲଂକୃତ କରି ସ୍ୱସ୍ୱ ଗ୍ରନ୍ଥରେ ଗଙ୍ଗ ଓ ସୂର୍ଯ୍ୟବଂଶର ରାଜାମାନଙ୍କର ଗୁଣଗାନ କରିଛନ୍ତି । କିନ୍ତୁ ସାରଳାଦାସଙ୍କ ବେଳକୁ ସଂସ୍କୃତେତର ଭାଷାର କବି ଓଡ଼ିଶାର ରାଜକୀୟ ପୃଷ୍ଠପୋଷଣ ପାଇ ପାରୁନଥିଲେ, ପ୍ରାକୃତ ଭାଷା ପ୍ରତି ପାରଂପରିକ ଅନାଦର ଯୋଗୁଁ । ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ହିଁ ଓଡ଼ିଆ କବି ରାଜସଭାରେ ସ୍ଥାନ ପାଇଲା । ଏହି ପରିସ୍ଥିତିର ସମ୍ମୁଖୀନ ହୋଇ ସାରଳାଦାସ ରାଜସଭାକୁ ଉପେକ୍ଷା କରି ପୁରାଣସଭା ମାଧ୍ୟମରେ ତାଙ୍କ ସାହିତ୍ୟର ପ୍ରସାର ଘଟାଇଥିଲେ ।

ମୁଦ୍ରାଯନ୍ତ୍ର ଊନବିଂଶ ଶତାବ୍ଦୀର ତୃତୀୟ ପାଦରେ ଓଡ଼ିଆ ସାହିତ୍ୟର ପ୍ରଚାର ଓ ପ୍ରସାର ଭାର ନିଜ କାନ୍ଧକୁ ନେବା ପୂର୍ବରୁ ସେ ଦାୟିତ୍ୱ ମୂଳରେ ନିଭାଉଥିଲେ ମୁଖ୍ୟତଃ ଦୁଇଟି ଅନୁଷ୍ଠାନ, ଗୋଟିଏ ପଲ୍ଲୀର ପୁରାଣସଭା ଓ ଅନ୍ୟଟି ରାଜଧାନୀର ରାଜସଭା ଓ ଗୌଣତଃ ପୁରୀର ଭକ୍ତଗୋଷ୍ଠୀ । ଓଡ଼ିଆ ସାହିତ୍ୟର ମୂଳଉତ୍ସ ମଧ୍ୟ ତାହାକୁ ଧରି ମୁଖ୍ୟତଃ ଦୁଇଟି । ଏ ଦୁଇ ମଧ୍ୟରୁ ପୁରାଣସଭା ପ୍ରାଚୀନତର ଓ ଦାଣ୍ଡୀର ପ୍ରସାରସ୍ଥଳ । ରାଜସଭାରେ ମୁରବିଗିରି କରିଆସୁଥିବା କବି-ପଣ୍ଡିତ-ବର୍ଗ (ପଣ୍ଡିତ ବୋଇଲେ ସେ କାଳେ କେବଳ ସଂସ୍କୃତ ଭାଷାଭିଜ୍ଞ) ପ୍ରାକୃତ ଭାଷା ବିମୁଖତାକୁ ବିଜ୍ଞତାର ଲକ୍ଷଣ ବୋଲି ବିଚାରୁଥିଲେ । ରାଜା ପ୍ରତାପରୁଦ୍ର ଦେବ ତେଲୁଗୁ ଓ କନ୍ନଡ଼ ସାହିତ୍ୟର ମହାପୃଷ୍ଠପୋଷକ ବିଜୟନଗରର ରାଜା କୃଷ୍ଣଦେବ ରାୟଙ୍କ ରାଜକୀୟ ରୀତିନୀତି ଦେଖି ଓଡ଼ିଆ ସାହିତ୍ୟ ପ୍ରତି ଆଗ୍ରହ ଓ ଆନୁକୂଲ୍ୟ ପ୍ରଥମେ ଦେଖାଇଲେ ଗୋପକେଳି ଓ ପରିମଳାର ଶୃଙ୍ଗାରୀ କବି ନରସିଂହ ସେଣଙ୍କ କ୍ଷେତ୍ରରେ ଅନ୍ଦାଜ ଖ୍ରୀ.ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ । ଏହା ପୂର୍ବରୁ ସେହି ପ୍ରତାପରୁଦ୍ର ବଳରାମ ଦାସ, ଜଗନ୍ନାଥ ଦାସ ଆଦିଙ୍କ ପ୍ରତି ସୁମୁଖ ନଥିବା କଥା ଅନେକ ପୋଥିରେ ରହିଛି । ସେହିଠାରୁ ବିଭିନ୍ନ ରାଜସଭାରେ ଲାଳିତ ଓ ରାଜାନୁଗ୍ରହପୁଷ୍ଟ ଓଡ଼ିଆ ସାହିତ୍ୟର ଧାରା ପୁରାଣ ସଭାରେ ପାଳିତ ଓ ଗାଉଁଲି ଲୋକଙ୍କ ଦ୍ୱାରା ଆଦୃତ ଓଡ଼ିଆ ସାହିତ୍ୟର ଧାରାଠାରୁ ଅଲଗା ହୋଇ ଭିନ୍ନ ରୂପ ପରିଗ୍ରହ କରି ଭିନ୍ନ ଦିଗକୁ ମୁହାଁଇ ଗଡ଼ିଚାଲିଲା । ମଣିଷଙ୍କ ପରି ସାହିତ୍ୟର ମଧ୍ୟ ଭାଷା, ଢଙ୍ଗ ଓ ଭାବ ତାହାର ଅଧ୍ୟୁଷିତ ଅଞ୍ଚଳ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । କବି ଯେଉଁ ଉତ୍ସଙ୍କୁ ଆଶ୍ରୟ କରିଥାଏ ତାହାର ସୃଷ୍ଟି ତଦନୁସାରୀ ହୁଏ । ପୁରାଣ-ସଭା ଦ୍ୱାରା ପାଳିତ; ଅଶିକ୍ଷିତ ଗ୍ରାମ୍ୟ ସମାଜ ପାଇଁ ଉଦ୍ଦିଷ୍ଟ ସାହିତ୍ୟରେ ଶବ୍ଦାଡ଼ମ୍ବରର ପ୍ରତିଷ୍ଠା ନାହିଁ, ପାଣ୍ଡିତ୍ୟର ପ୍ରଦର୍ଶନ ନାହିଁ, ଅଳଂକାରର ପ୍ରୟୋଗ ନାହିଁ; ଶୃଙ୍ଗାରରସର ପ୍ରାବଲ୍ୟ ନାହିଁ କି ଛନ୍ଦର ପ୍ରାଚୁର୍ଯ୍ୟ ନାହିଁ । ସେ ସବୁ କଥା ରାଜସଭାର ବୁଧଶିଷ୍ଟ ସମାଜ ପାଇଁ ଉଦ୍ଦିଷ୍ଟ ସାହିତ୍ୟରେ ସୁଲଭ, ଯେଉଁଠାରେ ସଦାଚାରର ଆହ୍ୱାନ କ୍ଷୀଣ, ସାମାଜିକ ମୂଲ୍ୟବୋଧର ମୂଳଦୁଆ ଦୁର୍ବଳ, ସାହିତ୍ୟର ପ୍ରଚାର ପାଇଁ ପୁଣ୍ୟାର୍ଜନର ପ୍ରତିଶ୍ରୁତି ଅନାବଶ୍ୟକ, ଧର୍ମବିଶ୍ୱାସର ଆଶ୍ରୟ ଅବାନ୍ତର ଓ ବ୍ୟକ୍ତିର ଆତ୍ମସମର୍ପଣ ଚାହୁଁଥିବା ଭକ୍ତିବାଦର ପ୍ରଭାବ ଗୌଣ ।

ଏହି ଦ୍ୱିବିଧ ମୌଳିକ ଧାରା ଏକ ଦିଗରେ ସିଦ୍ଧେଶ୍ୱର ଦାସ/ସାରଳାଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ନୀଳାମ୍ବର ଦାସ, ମହାଦେବ ଦାସ, ପୀତାମ୍ବର ଦାସ ପ୍ରମୁଖଙ୍କୁ ନେଇ ଓ ଅନ୍ୟ ଦିଗରେ ନରସିଂହ ସେଣ, ବିଷ୍ଣୁଦାସ, ରଘୁନାଥ ହରିଚନ୍ଦନ, ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ ପ୍ରମୁଖଙ୍କୁ ନେଇ ବହୁକାଳ ପ୍ରବାହିତ ହେବା ଲକ୍ଷ୍ୟ କରାଯାଇପାରେ । ପରେ ଭକ୍ତଗୋଷ୍ଠୀ ମଧ୍ୟରେ ବିକଶିତ, କୃଷ୍ଣ-ଜଗନ୍ନାଥ କୈନ୍ଦ୍ରିକ ସାହିତ୍ୟ କେତେକାଂଶରେ ବୈଷ୍ଣବ ମଠମହନ୍ତଙ୍କ ଆନୁକୂଲ୍ୟ ଲାଭ କରି ପୂର୍ବକଥିତ ଦୁଇ ଧାରାର ଆଂଶିକ ମିଶ୍ରଣ ଘଟାଇଥିଲା ।

ପୁରାଣ ସଭାରେ ସାହିତ୍ୟର ପ୍ରସାର ସହିତ ଶ୍ରୋତାମାନଙ୍କର ବ୍ୟକ୍ତିଗତ ସହଯୋଗ ରହୁଥିଲା, ଦକ୍ଷିଣାଦାନ ମାଧ୍ୟମରେ ପୁରାଣ ପ୍ରଚାରକର ଅନ୍ନସଂସ୍ଥାନ ମଧ୍ୟରେ । ରାଜସଭାର ସାହିତ୍ୟ ସହିତ ସାଧାରଣ ଲୋକଙ୍କର ସମ୍ପର୍କ ରହିଲା ନାହିଁ । ରାଜକୀୟ ସ୍ୱୀକୃତି ପ୍ରାପ୍ତ ବିଜ୍ଞମଣ୍ଡଳୀଙ୍କ ପ୍ରଶଂସାର୍ଜନ ହିଁ ସାହିତ୍ୟସ୍ରଷ୍ଟାର କାମ୍ୟ ହୋଇ ପଡ଼ିଲା । ରାଜସଭାର ବିଳାସବିଧୃତ ବିଦଗ୍ଧମାନଙ୍କ ରୁଚିକୁ ମାନ୍ୟତା ଦେବାରୁ ସଂସ୍କୃତର କବିମାନେ (କାଳିଦାସ, ଶ୍ରୀହର୍ଷ ପ୍ରମୁଖ) ହୋଇପଡ଼ିଲେ ସାହିତ୍ୟିକର ଆଦର୍ଶ, ଛାଞ୍ଚ । ଆଦର୍ଶର ଅନୁକରଣ ଅପୂର୍ବତା ସୃଷ୍ଟି କରିପାରେ ନାହିଁ । ମଧ୍ୟ ଯୁଗର ଓଡ଼ିଆ କବିମାନେ ନିଜତ୍ୱ ନଖୋଜି ଆଦର୍ଶ ଖୋଜିବାରେ ବ୍ୟସ୍ତ ଥିଲେ ।

କବିମାନେ ସ୍ୱରଚିତ କାବ୍ୟକୁ ଅନ୍ୟ ନାମରେ ଭଣିତ କରି ଅର୍ଥୋପାର୍ଜନ କରିବା ପ୍ରଥା (ଯାହା ତାଙ୍କ ସମୟରେ ସଂସ୍କୃତ କବିମାନେ କରୁଥିଲେ) ନିନ୍ଦନୀୟ ବୋଲି ସାରଳାଦାସ କହିଛନ୍ତି । ଯମ ଯେଉଁମାନଙ୍କୁ ଦଣ୍ଡ ଦିଅନ୍ତି ତାହା ଭିତରେ ଅଛନ୍ତି—

ଯମ ବୋଇଲା ସ୍ୱାମୀ ଯେ କଲା କୃତ୍ୟ ବିକି ।
ଅଛବେ ଜାତ ହୋଅଇ ଅଛବେ ତାହାକଇ ଲେଖି ।। (୨ ସଭା ୧୦୫)

ସାରଳାଦାସଙ୍କ ପ୍ରବର୍ତ୍ତିତ ଦାଣ୍ଡୀଶୈଳୀ କବିଁର ସ୍ୱାବଲମ୍ବନର ପଥିକୃତ୍ ।

—

# ଅଷ୍ଟମ ଅଧ୍ୟାୟ

## ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ

ଓଡ଼ିଶାର ପ୍ରାଚୀନ ଲୋକଙ୍କ ବିଶ୍ୱାସ ସୀତା ମନ୍ଦୋଦରୀର ପାଳିତ କନ୍ୟା । ଏହି ବିଶ୍ୱାସ ଗୋଟିଏ ସୁବିଦିତ ଲୋକୋକ୍ତିରେ ପ୍ରକାଶ ପାଉଛି–

''ବାପର ମରଣ୍ ପୁଅର ଦଶା, ଦୁଆରେ କରିଛି ବାବାଜି ବସା,
ମାଆକୁ ଲାଗିଛି ବର, ଝିଅ ଯିବ ଶାଶୁଘର ।''

ଏଥିରେ ବାପା ରାବଣ, ପୁଅ ଇନ୍ଦ୍ରଜିତ୍, ବାବାଜି ରାମ, ମାଆ ମନ୍ଦୋଦରୀ, ବର ବିଭୀଷଣ ଓ ଝିଅ ସୀତା । ଅନ୍ୟ ଏକ ସ୍ଥାନୀୟ ଲୋକବିଶ୍ୱାସ ହେଲା– ମାୟାମୃଗ (ମାରିଚ) ଗୋଟିଏ ଦୁଇମୁଣ୍ଡିଆ ହରିଣ ଥିଲା । ଓଡ଼ିଶାର ଗାଉଁଲି କଣ୍ଢେଇ ଶିଳ୍ପୀମାନେ ଦୁଇମୁଣ୍ଡିଆ ହରିଣ ଗଢ଼ିଥାନ୍ତି ଓ ତାହା ଗ୍ରାମାଞ୍ଚଳର ଯାନିଯାତ୍ରାର ପସରାରେ ଏବେ ବି ବେଳେବେଳେ ଦେଖିବାକୁ ମିଳେ । ଏହି ପ୍ରକାରର ବହୁତ କୌତୂହଳଜନକ ବିଶ୍ୱାସର ମୂଳ ହେଉଛି ସିଦ୍ଧେଶ୍ୱର ଦାସଙ୍କ ଦ୍ୱାରା ରଚିତ 'ବିଚିତ୍ର ରାମାୟଣ' ।

'ବିଚିତ୍ର ରାମାୟଣ'ର ପରିଚୟ ପ୍ରଥମେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଦେଲେ ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥରେ–

''ସିଦ୍ଧେଶ୍ୱର ଦାସ– ଉନ୍‌ହୋନେ ସୀତା ବନବାସ ସେ ଲେକର୍
ରାମାୟଣକେ ଅନ୍ତତକ କଥାଭାଗ କୋ ଲେକର ବିଚିତ୍ର ରାମାୟଣ
ନାମକ କାବ୍ୟଗ୍ରନ୍ଥ ଲିଖା ହୈ । ୟହ ରଚନା ଉଚ୍ଚକୋଟୀକି
ନହି ହୈ । ୟେ ମୁକୁନ୍ଦ ଦାସ କେ ସମସାମୟିକ ଥେ ।'' (ପୃ.୬୦)

ଅଧ୍ୟାପକ ମହାନ୍ତିଙ୍କ ମତାନୁସାରେ ''ମୁକୁନ୍ଦ ଦାସ ୧୭ଶ ଶତାବ୍ଦୀ କୋ ମଧ୍ୟଭାଗ କେ କବି ହୈ ।'' ସେ ଏପରି କାଳନିର୍ଣ୍ଣୟ ସମ୍ପର୍କରେ କୌଣସି ଯୁକ୍ତି ଦର୍ଶାଇ ନାହାନ୍ତି । ଅଥଚ, ବିଚିତ୍ର ରାମାୟଣର ତେଲୁଗୁ ଅନୁବାଦକ ଡୋଙ୍କାଡ଼ ଗୋପୀନାଥ ତାଙ୍କର ଗଦ୍ୟାନୁବାଦରେ ଲେଖିଛନ୍ତି ଯେ ସେ ଏହି ପୁରାତନ ଓଡ଼ିଆ କାବ୍ୟକୁ ତେଲୁଗୁ ଗଦ୍ୟରେ ପ୍ରକାଶ କରୁଛନ୍ତି– 'ପୁରାତନୋତ୍କଳ ବଚ ଶ୍ରୀଶାଳୀ ଗଦ୍ୟାକୃତିନ୍' । ତେଲୁଗୁ ସାହିତ୍ୟର ଐତିହାସିକମାନଙ୍କର ମତରେ ଡୋଙ୍କାଡ଼ ଗୋପୀନାଥ ଷୋଡ଼ଶ ଶତାବ୍ଦୀର ବ୍ୟକ୍ତି । ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ ପଢ଼ିବା ପରେ ଗୋପୀନାଥଙ୍କ ଉକ୍ତି ଦୃଷ୍ଟେ ମୂଳ ବିଚିତ୍ର ରାମାୟଣର ରଚନା କାଳ ୧୭ଶ ଶତାବ୍ଦୀ ନହୋଇ ୧୬ଶ ଶତାବ୍ଦୀର ପୂର୍ବ ହେବ ବୋଲି

ବିଖ୍ୟାତ ତେଲୁଗୁ ସାହିତ୍ୟିକ ପୁରିପଣ୍ଡା ଅପ୍‌ପଲସ୍ୱାମୀ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ବ୍ୟକ୍ତିଗତ ଭାବରେ ଭେଟି ଜଣାଇଥିଲେ । ଶ୍ରୀ ମହାନ୍ତିଙ୍କୁ ଭେଟିଲାବେଳେ ଶ୍ରୀ ଅପ୍‌ପଲସ୍ୱାମୀ ଓଡ଼ିଆ ବିଚିତ୍ର ରାମାୟଣ ପୋଥିର ସ୍ଥିତି ବିଷୟ ଜିଜ୍ଞାସା କରିଥିଲେ ହେଁ ଶ୍ରୀ ମହାନ୍ତି ତାହାକୁ ନିଜେ ପାଠ କରିଥିବା ବା ତାହାର ସ୍ଥିତି ବିଷୟ ସେ ଜାଣିଥିବା କଥା କିଛି ଜଣାଇ ନଥିଲେ । ବିଚିତ୍ର ରାମାୟଣରେ ସୀତା ବନବାସରୁ ଆରମ୍ଭ କରି ରାମାୟଣର ଶେଷ ଯାଏଁ ବିଷୟ ରହିଛି ବୋଲି ସେ ଦେଇଥିବା ମତରୁ ଅନୁମାନ କରାଯାଇପାରେ ଯେ ସେ (କିମ୍ବା ତାଙ୍କୁ ତଥ୍ୟ ଯୋଗାଇଥିବା ବ୍ୟକ୍ତି) ବିଚିତ୍ର ରାମାୟଣକୁ ପୂରା ପଢ଼ିନାହାନ୍ତି । କେବଳ ଆରମ୍ଭ ଓ ଶେଷ ମାତ୍ର ପଢ଼ିଥାଇ ପାରନ୍ତି । ପୂରା ପଢ଼ିଥିଲେ ସେଥିରେ ସମଗ୍ର ରାମାୟଣ ଚରିତ ଥିବା କଥା କହିଥାନ୍ତେ ଓ ତାହାର ଭାଷାର ପ୍ରାଚୀନତା, କଥାବସ୍ତୁର ଅନନ୍ୟସାମାନ୍ୟତା ଆଦି ବହୁବିଧ ବୈଶିଷ୍ଟ୍ୟ ଆଲୋଚନା ନକରି ରହି ପାରନ୍ତେ ନାହିଁ । ଏହି ପ୍ରକାରେ ବିଚିତ୍ର ରାମାୟଣର ରଚନା କାଳ ସମ୍ପର୍କରେ ଅଧ୍ୟାପକ ମହାନ୍ତିଙ୍କ ମତ କୌଣସି ଯୁକ୍ତି ଉପରେ ଆଧାରିତ ନୁହେଁ । ତେବେ ମୋ ଦୃଷ୍ଟିରେ ପଡ଼ିଥିବା ଦୁଇଟି ତାଳପତ୍ର ପୋଥି ଛଡ଼ା ଆଉ ଗୋଟିଏ ପୋଥି ଓଡ଼ିଆ ବିଚିତ୍ର ରମାୟଣ ଥିବା ଅନୁମିତ ହେଉଛି । କାରଣ ମୋ ଦୃଷ୍ଟିରେ ପଡ଼ିଥିବା ଦୁଇଟିଯାକ ପୋଥି ମଧ୍ୟରୁ କୌଣସିଟି ଅଧ୍ୟାପକ ମହାନ୍ତି (ବା ତାଙ୍କୁ ତଥ୍ୟ ଯୋଗାଇବା ବ୍ୟକ୍ତି) ଦେଖିଥିବା ସମ୍ଭାବନା ନାହିଁ । ସେହି ତୃତୀୟ ପୋଥିଟିର ସ୍ଥିତି ବର୍ତ୍ତମାନ ଅଜ୍ଞାତ ।

## ତାଳପତ୍ର ପୋଥିର ବିବରଣ

ବିଚିତ୍ର ରାମାୟଣର ଖଣ୍ଡିଏ ତାଳପତ୍ର ପୋଥି ମୁଁ ଛତ୍ରପୁରରୁ ଖ୍ରୀ. ୧୯୬୭ରେ ପାଇଲି । ପୋଥିଟି ପାଇଲାବେଳକୁ ମୋର ଧାରଣା ନଥିଲା ଯେ ଓଡ଼ିଆ ଭାଷାର ପ୍ରକାଶିତ ତଥା ଜଣାଶୁଣା ସବୁ ଗ୍ରନ୍ଥ ଅପେକ୍ଷା ପ୍ରାଚୀନ ଏକ ଗ୍ରନ୍ଥ ମୁଁ ପାଇଛି । ମୁଁ ନାମ ମାତ୍ର ଦେଖି ଧରି ନେଇଥିଲି ଯେ ତାହା ପ୍ରସିଦ୍ଧ କବି ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର ରାମାୟଣ' ନାମଧେୟ ସୁପ୍ରଚାରିତ ଛାନ୍ଦ ପୋଥିର ନକଲ ମାତ୍ର । ମୁଁ ବିଶ୍ୱନାଥଙ୍କ କୃତିଟିକୁ ପୂର୍ବରୁ ପଢ଼ିଥିଲି ତେଣୁ ଏହି ନବଲବ୍ଧ ପୋଥିକୁ ନ ଫିଟାଇ କେବଳ ସାଇତିଲି । କେତେ ଦିନ ପରେ ପ୍ରତାପରୁଦ୍ର ଦେବଙ୍କ ସଭାକବି ନରସିଂହ ସେଣଙ୍କର 'ଗୋପକେଳି' ନାମକ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରାଧାକୃଷ୍ଣକେଳି ବିଷୟକ ଲଳିତ ପଦାବଳିମୟ କାବ୍ୟକୁ ସଂପାଦନା କରି ତାହାର ମୁଖବନ୍ଧ ଲେଖିବା ବେଳକୁ ଗୋପକେଳିର ବୋଲିର ରାଗ ବିଚିତ୍ର ରାମାୟଣର କୌଣସି ଛାନ୍ଦରେ ନିର୍ଦ୍ଦେଶିତ ହୋଇଛି କି ନାହିଁ ଦେଖିବା ପାଇଁ ଏହି ପୋଥିଟିକୁ ଫିଟାଇବା ପରେ ମୁଁ ଅବର୍ଣ୍ଣନୀୟ ଆନନ୍ଦରେ ଉଲ୍ଲସିତ ହେଲି । ଛାନ୍ଦ ରଚନା ବଦଳେ ଦାଣ୍ଡୀଶୈଳୀର ଲେଖାକୁ ଭେଟିବା ଏକ ଚମକପ୍ରଦ ଅନୁଭୂତି । ସବୁ କଥାକୁ ଆଡ଼େଇ ଦେଇ ଦାଣ୍ଡୀ ବିଚିତ୍ର ରାମାୟଣକୁ ସାରିଲି । କହିବା ଅନାବଶ୍ୟକ, କବିଙ୍କର

ସିଦ୍ଧେଶ୍ୱର ଦାସ ନାମଟି ମଧ୍ୟ ମୋତେ ଚମତ୍କୃତ କରିଥିଲା । କାରଣ, ଆଦିକବି ସାରଳାଦାସଙ୍କର ମୂଳ ନାମ ସିଦ୍ଧେଶ୍ୱର ଥିବା ଜନଶ୍ରୁତି ବେଶ୍ ଜଣାଶୁଣା ଓ ଚଣ୍ଡୀପୁରାଣର କେତେକ ପୋଥିରେ ସେ ମହାଭାରତ ଲେଖିବା ପୂର୍ବରୁ ରାମାୟଣ ଲେଖିଥିବାର ସୂଚନା ରହିଛି ବୋଲି ସାଧାରଣ ଭାବରେ ସ୍ୱୀକୃତ ହେଉଛି । ଏହି 'ରାମାୟଣ' 'ବିଲଙ୍କା ରାମାୟଣ' ବୋଲି ଅନେକେ ମତ ଦେଇଥାନ୍ତି । କିନ୍ତୁ ବିଲଙ୍କା ରାମାୟଣରେ 'ଦାଣ୍ଡୀ' ଶୈଳୀର ଅଭାବ, ତାହାର ଭାଷାର ଅର୍ବାଚୀନତା ଆଦି ବହୁ କାରଣରୁ ଏହି ମତ ମୋ ମନକୁ ପାଉ ନଥାଏ । ବିଚିତ୍ର ରାମାୟଣର ଭାଷାର ପ୍ରାଚୀନତା ଓ ଦାଣ୍ଡୀ ଶୈଳୀ ଦେଖି ମୁଁ ଆନନ୍ଦିତ ହେଲି । ଭାଷାର ରୂପ ବିଚାରରୁ ଏହା ସାରଳା-ମହାଭାରତଠାରୁ ପ୍ରାଚୀନତର ବୋଲି ସହଜେ ଦାବି କରି ପାରିବ । ପରେ ଭାଷା ଓ ଶୈଳୀ ଆଲୋଚନା ପ୍ରସଙ୍ଗରେ ଏ ବିଷୟରେ ଯତ୍ସାମାନ୍ୟ ଲେଖିବି ଓ କେଉଁ କେଉଁ କାରଣରୁ ସିଦ୍ଧେଶ୍ୱର ଦାସ ପ୍ରଥମେ ବିଚିତ୍ର ରାମାୟଣ ଲେଖି ପରେ ସାରଳାଦାସ ନାମ ଗ୍ରହଣ କରି ମହାଭାରତ ଓ ଚଣ୍ଡୀପୁରାଣ ଲେଖିଲେ ବୋଲି ନିଷ୍ପତ୍ତି କରାଯାଇପାରୁଛି ତାହା ଚର୍ଚ୍ଚା କରିବି ।

ମୁଁ ବିଚିତ୍ର ରାମାୟଣଟିକୁ ସଂପାଦିତ କରି ଖ୍ରୀ. ୧୯୮୦ରେ ପ୍ରକାଶ କରିଛି । ସଂପାଦନା ଉଦ୍ଦେଶ୍ୟରେ ଦୁଇଟି ବିଚିତ୍ର ରାମାୟଣ ପୋଥିର ପାଠକୁ ବ୍ୟବହାର କରାଯାଇଛି, ପ୍ରଥମତଃ ମୁଁ ପ୍ରଥମେ ଛତ୍ରପୁରରୁ ପାଇଥିବା ପୋଥି (ଯାହା ମୁଦ୍ରିତ ପୁସ୍ତକରେ 'କ' ପୋଥି ଭାବରେ ଚିହ୍ନିତ) ଓ ଦ୍ୱିତୀୟତଃ ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ରକ୍ଷିତ ପୋଥି (ଯାହା ମୁଦ୍ରିତ ପୁସ୍ତକରେ 'ଖ' ପୋଥି ଭାବରେ ଚିହ୍ନିତ) ।

'କ' ପୋଥି ବିଚିତ୍ର ରାମାୟଣର ଅବସ୍ଥା ଭଲ ଥିଲା । ପୋଥିର ମୋଟ ୨୬୪ ଗୋଟି ପତ୍ରରେ ପ୍ରାୟ ସାଢ଼େ ପାଞ୍ଚହଜାର ପଦ ବିଶିଷ୍ଟ ବିଚିତ୍ର ରାମାୟଣ କାବ୍ୟଟି ମୂଳରୁ ଶେଷ ଯାଏଁ ରହିଛି । ଯଦିଚ, ଅଳ୍ପ କେତେକ ସ୍ଥାନରେ ଲେଖନକାରର ପ୍ରମାଦ ହେତୁରୁ ଚରିତର କ୍ରମ ଓଲଟପାଲଟ ହୋଇଥାଏ । ପତ୍ରଗୁଡ଼ିକ ଲମ୍ବରେ ଏକ ଫୁଟ ଓ ଓସାରରେ ୧.୪ ଇଞ୍ଚ । ପତ୍ରର ପ୍ରତ୍ୟେକ ପାଖରେ ସାଧାରଣତଃ ପାଞ୍ଚ (ଅଳ୍ପ ସଂଖ୍ୟକ ପତ୍ରରେ ଚାରି) ଧାଡ଼ି ଲେଖା । ପୋଥି ଶେଷକୁ ଅନେକ ଲେଖନକାର ନିଜର ନାମ, ଧାମ ଓ କାଳର ସୂଚନା ଦେଇଥାନ୍ତି, କିନ୍ତୁ ଏହି ପୋଥିରେ ସେ କଥା ଲେଖା ନଥିବାରୁ ଲେଖନକାର କି ଲେଖନକାଳ ବିଷୟରେ କିଛି ଜଣାଗଲା ନାହିଁ । ଲିପିର ଗଢ଼ଣରୁ ଜଣାଯାଏ ଯେ ଏହାର ଲେଖନକାର ଦୁଇଜଣ । ଗ୍ରନ୍ଥର ଚାରିଭାଗରୁ ତିନିଭାଗର ଲେଖନକାରଙ୍କ ଅକ୍ଷରଗୁଡ଼ିକ ସୁଗଠିତ । ପ୍ରାଚୀନ ଲିପି ବିଚାରରୁ ଏହାଙ୍କର ଲିପିର ରୂପ ଆଧୁନିକ । ଅବଶିଷ୍ଟ ଏକ ଚତୁର୍ଥାଂଶର ଲେଖକଙ୍କର ଅକ୍ଷରଗୁଡ଼ିକ ସୁଗଠିତ ନୁହେଁ, ପୁଣି, ଅପେକ୍ଷାକୃତ ପ୍ରାଚୀନ ଢଙ୍ଗର । ଅନୁମାନ କଲି ଯେ ଅଧିକାଂଶର ଲେଖନକାର ଯୁବକ

ପୁତ୍ର ଓ ଅନ୍ତାଂଶର ଲେଖନକାର ବୃଦ୍ଧ ପିତା । ପ୍ରବୀଣ ଲେଖନକାରଙ୍କର ନକଲର ଭାଷା (ବିଶେଷତଃ ବନାନ) ପ୍ରାଚୀନତର ରୂପ ପରିଗ୍ରହ କରିଥିବା ହେତୁରୁ ଜଣାଯାଏ କି ନବୀନ ଲେଖନକାର ଆଦର୍ଶର (ଯେଉଁ ମୂଳ ପୋଥିକୁ ନକଲ କରାଯାଉଥିଲା ତାହାର) ଭାଷାକୁ ସାମାନ୍ୟ ସଜାଡ଼ିବା ଚେଷ୍ଟା କରିଛନ୍ତି । ଗ୍ରନ୍ଥଟିକୁ ଅଧ୍ୟାୟ ବା କାଣ୍ଡରେ ବିଭକ୍ତ କରାଯାଇନାହିଁ କି ପଦ ଶେଷକୁ ପଦର କ୍ରମିକ ସଂଖ୍ୟା ଲେଖାଯାଇନାହିଁ । ଆଲୋଚନା ବେଳେ ସୂଚନା ଦେବା ପାଇଁ ସୁବିଧା ହେବ ବୋଲି ସଂପାଦନାରେ ମୁଁ ଏସବୁ କରିଛି । ଯେଉଁ ପ୍ରାଚୀନ ଅଭିଜାତ ଘରୁ ମୁଁ ପୋଥିଟି ପାଇଥିଲି ସେମାନେ ଖ୍ରୀ. ୧୯୦୦ ପରେ ଆଉ ତାଳପତ୍ର ପୋଥି ସଂଗ୍ରହ କରିନାହାନ୍ତି । ଉଭୟ ଲେଖନକାରଙ୍କର ଅକ୍ଷରର ରୂପ ବିଚାର କଲେ ପୋଥିଟି ଊନବିଂଶ ଶତାବ୍ଦୀର ତୃତୀୟ ପାଦରେ ନକଲ ହୋଇଥିବା ଅନୁମିତ ହେଲା ।

ମୁଁ ବିଚିତ୍ର ରାମାୟଣର ତାଳପତ୍ର ପୋଥି ('କ' ପୋଥି) ପାଇବା ପରେ ଅନ୍ୟ ଏକ ତାଳପତ୍ର ପୋଥିର ସଂଧାନ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲାର ଟିକିଲିର ପ୍ରାଚୀନ ଓଡ଼ିଆ ରାଜପରିବାରରୁ ମିଳିଥିଲା । ଅଧ୍ୟାପକ ରଘୁନାଥ ପାଢ଼ୀ ଶର୍ମାଙ୍କ ଅନୁଗ୍ରହରୁ ମୁଁ ଏହି ଦ୍ୱିତୀୟ ପୋଥିର ନକଲଟି ପଢ଼ିବାକୁ ପାଇଥିଲି । ଏହା ସଂପାଦନାର 'ଖ' ପୋଥି । ପୋଥିଟିର ଅବସ୍ଥା ଭଲ ନଥିଲା । ବହୁସ୍ଥାନରେ ପାଠ ନଷ୍ଟ ହୋଇଯାଇଥିବା ଏହି କୀଟଦଷ୍ଟ ପୋଥିଟିକୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଦିଆଯାଇଥିଲା । ଦୁଇ ପୋଥି ମଧ୍ୟର ତାରତମ୍ୟ ବିଶେଷ ନୁହେଁ । ଗୋଟିଏ ଉଲ୍ଲେଖଯୋଗ୍ୟ ତାରତମ୍ୟ ହେଉଛି 'ଖ' ପୋଥି ଯେଉଁଠି ସରିଛି ତାହାର ଶେଷ ଭଣିତା ପଦ ସ୍ଥାନରେ 'କ' ପୋଥିରେ ଅଧିକ ୩୨ ପଦ ରହିଛି । ଦୁଇ ପୋଥିର ପାଠ ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରକାଶିତ ବିଚିତ୍ର ରାମାୟଣରେ ପାଦଟୀକାରେ ସୂଚାଇ ଦିଆଯାଇଛି ।

### ତେଲୁଗୁ ଅନୁବାଦ

ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣର ପାଞ୍ଚ ଛଅ ଗୋଟି ଭାଷାନ୍ତର ତେଲୁଗୁ ଭାଷାରେ ରହିଛି । ପ୍ରାଚୀନ କାଳରେ ସଂସ୍କୃତରୁ ଆଞ୍ଚଳିକ ଭାଷାକୁ ଭାଷାନ୍ତର ସାଧାରଣ କଥା ଥିଲା । କିନ୍ତୁ, ଗୋଟିଏ ଆଞ୍ଚଳିକ ଭାଷାର ଗ୍ରନ୍ଥର ଏତେ ସଂଖ୍ୟାରେ ଭାଷାନ୍ତର ପ୍ରସ୍ତୁତ ହେବା ଘଟନା ଏକା ଓଡ଼ିଆ ସାହିତ୍ୟ କାହିଁକି ଯେକୌଣସି ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏକାନ୍ତ ବିରଳ । ଏହି କାରଣରୁ ଭାରତୀୟ ସାହିତ୍ୟର ଇତିହାସରେ ବିଚିତ୍ର ରାମାୟଣ ସ୍ୱତନ୍ତ୍ର ଉଲ୍ଲେଖ ପାଇବାକୁ ଯୋଗ୍ୟ । ଓଡ଼ିଆର ଯେଉଁ ମୂଳ ରଚନାଟି ଏପରି ଅନନ୍ୟସାଧାରଣ ଗୌରବ ପାଇଛି ତାହା ଲୋକଲୋଚନର ଅନ୍ତରାଳରେ ରହି ଆସିଥିଲା । ବିଚିତ୍ର ରାମାୟଣର ତେଲୁଗୁ ରୂପାନ୍ତରଗୁଡ଼ିକରେ ଓଡ଼ିଆ ବିଚିତ୍ର ରାମାୟଣ ଓ ତାହାର କବି ସିଦ୍ଧେଶ୍ୱର ଦାସଙ୍କ ସଂପର୍କରେ ପ୍ରଦତ୍ତ ତଥ୍ୟ ଉପରେ ନିର୍ଭର କରି

ପୁରୀପଣ୍ଡା ଅପ୍‌ପଲସ୍ୱାମୀ* ତେଲୁଗୁ ସଂସ୍କୃତି ପତ୍ରିକାରେ ଖ୍ରୀ. ୧୯୫୫ ଓ ୧୯୬୦ରେ ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କରିବା ମଧ୍ୟରେ ସିଦ୍ଧେଶ୍ୱର ଦାସ ଓ ତାଙ୍କ ରଚନା ବିଷୟ ଉଲ୍ଲେଖ କରିଥିଲେ । ଏ କଥା ଜାଣିବା ପରେ ତେଲୁଗୁ ଅନୁବାଦକ, ଅନୁବାଦ ଓ ସେଥିରେ ପ୍ରଦତ୍ତ ସିଦ୍ଧେଶ୍ୱର ଦାସଙ୍କ ବିବରଣ ବିଷୟରେ ଜାଣିବା ପାଇଁ ଶ୍ରୀ ଅପ୍‌ପଲସ୍ୱାମୀଙ୍କ ପାଖକୁ ପତ୍ର ଲେଖିଲି । ବିଚିତ୍ର ରାମାୟଣର ମୂଳ ଓଡ଼ିଆ ଗ୍ରନ୍ଥ ମିଳିଥିବା ଘଟଣାରେ ସେ ଏତେଦୂର ଆନନ୍ଦିତ ହେଲେ ଯେ ବିଚିତ୍ର ରାମାୟଣର ତେଲୁଗୁ ଅନୁବାଦକମାନଙ୍କ ସଂପର୍କରେ ବହୁ ଶ୍ରମ ସ୍ୱୀକାର ପୂର୍ବକ ତଥ୍ୟ ସଂଗ୍ରହ କରି ଓଡ଼ିଆ ଗ୍ରନ୍ଥଟିକୁ ଦେଖିବା ଇଚ୍ଛାରେ ସ୍ୱୟଂ ମୋର ଭୁବନେଶ୍ୱର ବସାରେ ପଦାର୍ପଣ କଲେ । ସାହିତ୍ୟ ରାଜ୍ୟରେ ସମୁଚ୍ଚ ସମ୍ମାନର ଅଧିକାରୀ, ଆନ୍ଧ୍ର ବିଶ୍ୱବିଦ୍ୟାଳୟର ସମ୍ମାନସୂଚକ ଡକ୍ଟରେଟ୍ (କଳାପ୍ରପୂର୍ଣ୍ଣ) ଉପାଧିଧାରୀ, ଏକଦା ଅଖିଳ ଭାରତୀୟ ଲେଖକ ସମ୍ମେଳନର ଅଧ୍ୟକ୍ଷ ପଦାରୂଢ଼ ଶ୍ରୀ ଅପ୍‌ପଲସ୍ୱାମୀ ମୋ ଭଳି ଜଣେ ଅପରିଚିତର ଅନୁରୋଧ ରକ୍ଷା କରିବା ପାଇଁ ଏତେ ଶ୍ରମ ସ୍ୱୀକାର କରିବା ଓ ଗୋଟିଏ ପୋଥି ଦେଖିବା ପାଇଁ ମୋ ବସାରେ ଦିନେ ରହି ସବୁ ତଥ୍ୟ ଯୋଗାଇବା ମୋତେ ଅଭିଭୂତ କରିଥିଲା । ସେ ତେଲୁଗୁର ସର୍ବ ପ୍ରାଚୀନ ବିଚିତ୍ର ରାମାୟଣର ଖ୍ରୀ.୧୮୯୨ରେ ମୁଦ୍ରିତ ପୁସ୍ତକ ସଙ୍ଗରେ ଧରି ଆସିଥିଲେ ଓ ଓଡ଼ିଆ ଗ୍ରନ୍ଥର ପାଠ ସହିତ ତାକୁ ମିଳାଇ ଦେଖିବା ପରେ ଆଉ ସନ୍ଦେହ ରହିଲା ନାହିଁ ଯେ ମୂଳ ବିଚିତ୍ର ରାମାୟଣଟି ଆବିଷ୍କୃତ ହୋଇଛି ।

ବିଚିତ୍ର ରାମାୟଣ ତେଲୁଗୁ ଦେଶରେ ସୁପ୍ରଚାରିତ । ଶୁଣିଲି ଯେ ବିଚିତ୍ର ରାମାୟଣର କଥାବସ୍ତୁକୁ ଧରି ତେଲୁଗୁରେ ଚଳଚ୍ଚିତ୍ର ମଧ୍ୟ ପ୍ରସ୍ତୁତ ହୋଇଥିଲା । ତେଲୁଗୁରେ ଶ୍ରୀ ବେମୂର ଶ୍ରୀନିବାସ ରାଓଙ୍କ ଦ୍ୱାରା ପ୍ରଣୀତ 'ପୂର୍ବଗାଥା ଲହରୀ' ନାମକ ବିରାଟ ପୌରାଣିକ ଚରିତର କୋଷଗ୍ରନ୍ଥରେ ବିଚିତ୍ର ରାମାୟଣର ଚରିତଗୁଡ଼ିକର ବିଶେଷତ୍ୱ ଅଞ୍ଜନା ଆଦି

* ଶ୍ରୀ ପୁରିପଣ୍ଡା ଅପ୍‌ପଲସ୍ୱାମୀ (ଜନ୍ମ ୧୯୦୪) ତେଲୁଗୁ ସାହିତ୍ୟରେ ଆଧୁନିକ ଯୁଗର ଅନ୍ୟତମ ପ୍ରବର୍ତ୍ତକ । ସେ ସମଗ୍ର ମହାଭାରତ, ରାମାୟଣ, ଭାଗବତ ଓ ଦେବୀ ଭାଗବତକୁ ସଂସ୍କୃତରୁ ତେଲୁଗୁ ବ୍ୟାବହାରିକ ଗଦ୍ୟରେ ଅନୁବାଦ କରିଛନ୍ତି । ତାଙ୍କର କବିତାବଳୀ 'ସୌଦାମିନୀ' ଓଡ଼ିଆ ଆଦି ଅନେକ ଭାଷାରେ ଅନୁବାଦିତ ହୋଇଛି । ତାଙ୍କର ଜନ୍ମ ସ୍ଥାନ ସାଲୁରୁ ଓଡ଼ିଶାର ସୀମାନ୍ତବର୍ତ୍ତୀ (ସାଲୁରୁ ଘାଟି ପାଇଁ ପ୍ରସିଦ୍ଧ) ଓ ସେଠାର ଓଡ଼ିଆ ରାଜପରିବାର ସହିତ ତାଙ୍କର ଆବାଲ୍ୟ ସଂପର୍କ ଥିବାରୁ ସେ ଓଡ଼ିଆ ଭାଷା ଓ ସାହିତ୍ୟ ଆୟତ୍ତ କରିଥିଲେ । ମାଟିର ମଣିଷ, ଅମୃତର ସନ୍ତାନ, ଛମାଣ ଆଠଗୁଣ୍ଠ, କଳାପାହାଡ଼ (ନାଟକ) ଓ ଅମାବାସ୍ୟାର ଚନ୍ଦ୍ରର ତେଲୁଗୁ ଭାଷାନ୍ତର ସେ କରିଛନ୍ତି । ସେ ଓଡ଼ିଆରେ ତେଲୁଗୁ ସାହିତ୍ୟର ଇତିହାସ (ମୋର ସହଯୋଗରେ) ରଚନା କରୁଥିଲେ କିନ୍ତୁ ତାଙ୍କର ଦେହାନ୍ତ ହେବାରୁ କାର୍ଯ୍ୟଟି ଅପୂର୍ଣ୍ଣ ରହିଗଲା ।

ଅନେକାନେକ ଚରିତର ବିବରଣ ମଧ୍ୟରେ ସ୍ଥାନ ପାଇଛି ।* ସିଦ୍ଧେଶ୍ୱର ଦାସଙ୍କ ଉର୍ବରା କଳ୍ପନା ଶକ୍ତି ରାମାୟଣର କଥାବସ୍ତୁକୁ ଅନେକ ରୂପରେ ପରିବର୍ତ୍ତିତ କରିଛି । ବିଚିତ୍ର ରାମାୟଣର ଚରିତ ସହିତ ଭାରତର ଅନ୍ୟ କୌଣସି ରାମଚରିତର ମେଳ ପ୍ରାୟ ନାହିଁ । ଏହାର କଥାବସ୍ତୁର ବୈଚିତ୍ର୍ୟ କବିଙ୍କର ପରିଚୟ ଓ ଭାଷାର ପ୍ରାଚୀନତା ନେଇ ଆଲୋଚନା କରିବା ପୂର୍ବରୁ ଏହାର ତେଲୁଗୁ ଅନୁବାଦ ଓ ଅନୁବାଦକମାନଙ୍କ ବିଷୟରେ ଯତ୍‌ସାମାନ୍ୟ ପରିଚୟ ଦେବା ସମୀଚୀନ । ତେଲୁଗୁ ସାହିତ୍ୟରେ ମୋର ବିଶେଷ ପ୍ରବେଶ ନାହିଁ । ଶ୍ରୀ ଅପ୍ପଲସ୍ୱାମୀ ଯୋଗାଇଥିବା ତଥ୍ୟ ଉପରେ ନିର୍ଭର କରି ଏହା ଲେଖୁଛି ।

ବିଚିତ୍ର ରାମାୟଣକୁ ସର୍ବପ୍ରଥମେ ତେଲୁଗୁ ଗଦ୍ୟରେ ଅନୁବାଦ କରିଥିଲେ ଡୋଙ୍କାଡ଼ ଗୋପୀନାଥ । ଗୋପୀନାଥଙ୍କ ଗଦ୍ୟାନୁବାଦକୁ ଆଧାର କରି ଅନ୍ୟାନ୍ୟ ତେଲୁଗୁ ବିଚିତ୍ର ରାମାୟଣ ଗଦ୍ୟରେ ବା ଗଦ୍ୟପଦ୍ୟ ମିଶ୍ରିତ ଚମ୍ପୂ ଭାବରେ ରଚିତ ହୋଇଥିବା ସ୍ୱୀକୃତ ହୁଏ । ଅନ୍ୟତମ ତେଲୁଗୁ ବିଚିତ୍ର ରାମାୟଣ ରଚୟିତା କୋମ୍ମୋଜୁ ସୋମାୟା ଓଡ଼ିଆ ଗ୍ରନ୍ଥଟିକୁ ପାଠ କରିଥିବା ଅନୁମିତ ହେଉଛି । କିନ୍ତୁ ଅନ୍ୟ କେହି ମୂଳ ଗ୍ରନ୍ଥଟିକୁ ପାଠ କରିଥିଲେ ବୋଲି କୁହାଯାଇପାରୁନାହିଁ । ତେଲୁଗୁ ଅନୁବାଦକମାନଙ୍କ ବିଷୟରେ ଜ୍ଞାତବ୍ୟତଥ୍ୟ ନିମ୍ନରେ ଦିଆଗଲା ।

## ୧. ଡୋଙ୍କାଡ଼ ଗୋପୀନାଥ

ଡୋଙ୍କାଡ଼ ଗୋପୀନାଥ ପ୍ରାଚୀନ ନନ୍ଦପୁର ରାଜ୍ୟର ରାଜା ବିଶ୍ୱମ୍ଭର ଦେବଙ୍କ ଜନୈକ ମନ୍ତ୍ରୀ ଥିବା ଜଣାଯାଏ । ଏହି ନନ୍ଦପୁର ରାଜ୍ୟ ପରବର୍ତ୍ତୀ କାଳରେ ଜୟପୁର ଜମିଦାରିରେ ପରିଣତ ହୋଇଥିଲା । ବିଶ୍ୱମ୍ଭର ଦେବ ବହୁତଗୁଡ଼ିଏ ବ୍ରାହ୍ମଣ ବସତି (ଶାସନ) ପ୍ରତିଷ୍ଠା କରିଥିବା କଥା କୁହାଯାଏ । ନନ୍ଦପୁରର ସୂର୍ଯ୍ୟବଂଶରେ ଦୁଇଜଣ୍ ବିଶ୍ୱମ୍ଭର ଦେବ ରାଜ୍ୟଶାସନ କରିଥିଲେ । ପ୍ରଥମ ବିଶ୍ୱମ୍ଭର ଦେବ ଖ୍ରୀ. ୧୬୭୨ ରୁ ୧୬୭୬ ଯାଏଁ ମାତ୍ର ଚାରିବର୍ଷ କିନ୍ତୁ ଦ୍ୱିତୀୟ ବିଶ୍ୱମ୍ଭର ଦେବ ଖ୍ରୀ. ୧୭୧୩ ରୁ ୧୭୫୨ ଯାଏଁ ଦୀର୍ଘ ୩୯ ବର୍ଷ ରାଜ୍ୟଶାସନ କରିଥିଲେ (ଦେଖନ୍ତୁ– ବେଲ୍‌ଙ୍କ କୋରାପୁଟ ଜିଲାର ଗେଜେଟିଅର୍, ୧୯୪୧, ପୃ.୨୩) । ଦ୍ୱିତୀୟ ବିଶ୍ୱମ୍ଭର ଅନେକ (୧୬ଟି) ଶାସନାଗ୍ରହାର ପ୍ରତିଷ୍ଠା କରିଥିବା ଜଣାଯାଏ । ଗୋପୀନାଥଙ୍କର୍ ପୃଷ୍ଠପୋଷକଙ୍କର୍ କୀର୍ତ୍ତି ବିଚାରରୁ ସେ ଦ୍ୱିତୀୟ ବିଶ୍ୱମ୍ଭର ଦେବ (୧୭୧୩-୫୨) ଥିଲେ ବୋଲି ନିରୂପଣ କରିବା

* ବ୍ରହ୍ମପୁରର ଶ୍ରୀ ବୈଶ୍ୟେରାଜୁ ନାରାୟଣ ମୂର୍ତ୍ତି ରାଜୁ 'ପୂର୍ବଗାଥା ଲହରୀ'ର ଓଡ଼ିଆ ଅନୁବାଦ 'ପୂର୍ବକଥା ମଞ୍ଜରୀ' ନାମରେ ପ୍ରସ୍ତୁତ କରିଥିଲେ । ପୂର୍ବକଥା ମଞ୍ଜରୀର ପ୍ରାୟ ୮୦୦ ପୃଷ୍ଠା ବିଶିଷ୍ଟ ପ୍ରଥମ ଭାଗ ('ନ' ବର୍ଣ୍ଣ ଯାଏଁ) ୧୯୬୮ରେ ପ୍ରକାଶିତ ହୋଇଛି । ପରବର୍ତ୍ତୀ ଭାଗ ମୁଦ୍ରିତ ହେବା ପୂର୍ବରୁ ରାଜୁ ମହାଶୟଙ୍କ ଦେହାନ୍ତ ହୋଇଗଲା ।

ଯୁକ୍ତିଯୁକ୍ତ ବୋଧହୁଏ । ଏହି ପ୍ରକାରେ ଗୋପୀନାଥଙ୍କର ସମୟ ଅଷ୍ଟାଦଶ ଶତାବ୍ଦୀର ପୂର୍ବାର୍ଦ୍ଧ ବୋଲି ନିରୂପଣ କରାଯାଇପାରୁଛି । ତେଲୁଗୁ ସାହିତ୍ୟର ଇତିହାସ ଲେଖକମାନେ ତଥା ଶ୍ରୀ ଅପ୍ପଲସ୍ୱାମୀ କୌଣସି ଯୁକ୍ତି ନଦେଇ ସେ ପ୍ରଥମ ବିଶ୍ୱମ୍ଭର ଦେବଙ୍କ ସମୟର ଥିଲେ ବୋଲି କହିଛନ୍ତି ।

ଗୋପୀନାଥ ତାଙ୍କର 'ବିଚିତ୍ର ରାମାୟଣମୁ'ର ଆଦ୍ୟ କବିବନ୍ଦନା ମଧ୍ୟରେ ଜଣାଇଛନ୍ତି ଯେ ସେ ଏହି ପ୍ରାଚୀନ ଓଡ଼ିଆ (ଉତ୍କଳ) ଭାଷାର ସୁନ୍ଦର (ଶ୍ରୀଶାଳୀ) କାବ୍ୟକୁ ଗଦ୍ୟ ଆକାରରେ ପ୍ରକାଶ କରୁଛନ୍ତି ।

> "ନାନାବିଧ ଚାତୁରୀମଧୁରା ବାକ୍‌ବ୍ୟାପାର ସାରୈକ ଦୀକ୍ଷାନ୍ ଏନ୍ନାଙ୍ଗା ବିଚିତ୍ର ରାମଚରିତ ଆଖ୍ୟାଂ ଗୋପୀନାଥଣ୍ଡୁ ଚେସେନ୍ ନିର୍ମଲ୍ୟା ପୁରାତନୋତ୍କଳ ବଚଶ୍ରୀଶାଳୀ ଗଦ୍ୟାକୃତିନ୍ ।"

ଗୋପୀନାଥଙ୍କ ବେଳକୁ ଓଡ଼ିଆ ବିଚିତ୍ର ରାମାୟଣ ଏକ ପ୍ରାଚୀନ ଗ୍ରନ୍ଥ ଭାବରେ ପରିଗଣିତ ହେଉଥିବାରୁ ତାହା ଖ୍ରୀ. ୧୬ଶ ଶତାବ୍ଦୀ ପୂର୍ବର ରଚନା ବୋଲି ସ୍ଥିର କରାଯାଇପାରେ ।

କବି ବନ୍ଦନା ପରେ ପରେ ଗୋପୀନାଥ ମୂଳ ଗ୍ରନ୍ଥକର୍ତ୍ତା ସିଦ୍ଧେଶ୍ୱର ଦାସଙ୍କର ତଥା ନିଜର ପରିଚୟ ଓ ସେ ଗ୍ରନ୍ଥଟିକୁ ତେଲୁଗୁ ଭାଷାରେ ଲେଖିବାର କାରଣ ନେଇ ଯାହାସବୁ ଲେଖିଛନ୍ତି ତାହା ନିମ୍ନରେ ଉଦ୍ଧୃତ ହେଲା–

> "ଇ ପୁରାଣମ୍ମୁ ମାନୁଷ ଭବମ୍ମୁନା ଉତ୍ତର ଦେଶମ୍ମୁନା ନୁନା ସିଦ୍ଧେଶ୍ୱର ଦାସୁଣ୍ଡାନୁ ବିପ୍ରଯୋଗୀ ପୁଙ୍ଗବୁଣ୍ଡୁ ଓଡ୍ରଭାଷାନୁ ରଚିଞ୍ଚେ କାବୁନା ନାଦି ୟାନ୍ଧ୍ରୁଲାକୁ ଦେଲିୟାକୁଣ୍ଡୁତାଂ ଜେସି ଏନୁ ଶ୍ରୀମତ୍ ଚତୁରାନନା ପଦ୍ୟାଂ ଗୋଷ୍ଠିଂ ଜେସି ସଂଜାତଂ ବୈନା ଶୃଷ୍ଟିକରଣ କୁଲମ୍ମୁଲୋନା ଡୋଙ୍କାଡ଼ାନ୍ୱୟମ୍ମୁନା ଭାରଦ୍ୱାଜ ଗୋତ୍ରମ୍ମୁନା ଲକ୍ଷ୍ମୀନାରାୟଣ ନାମଧେୟ ଦମ୍ପତୁଲକୁ ଭବିଞ୍ଚି, ଗୋପୀନାଥାଭିଧାନମ୍ମୁ ଗାଲିଗି ଶ୍ରୀମଦ୍ ଭଟ୍ଟରୁ ଜଗନ୍ନାଥାଭିଧାନାଚାର୍ଯବର୍ଯୁଲା ପଦ ସରୋଜମ୍ମୁଲୁ ଦଲଞ୍ଚି ଶୁଦ୍ଧ ବଚନ ପ୍ରକାରମ୍ମୁଲ ରଚିଞ୍ଚିଦା । × × × ନେନୁ ଆ ବିଚିତ୍ର ରାମାୟଣମ୍ମୁ ଭିନି ଅତ୍ୟନ୍ତ ସନ୍ତୁଷ୍ଟାନ୍ତରଙ୍ଗୁଣ୍ଡାନୈ × × × ଗଦ୍ୟ ପଦ୍ୟାତ୍ମତୁକାର୍ଦ୍ଦି କବିତ୍ୱ ରଚନା ସୌଷ୍ଠବଂ ବେରୁଙ୍ଗକା ବିଚିତ୍ର ରାମାୟଣମ୍ମୁ ତେନ୍ନୈଙ୍ଗୁନାନେ ରାସିନା ନେ ମହାଭାବୁଣ୍ଡାଇନା ନିନ୍ଦୁକୁ ଗଦ୍ୟପଦାତ୍ମିକା ବୈନା କାବ୍ୟମ୍ମୁ ରଚିଞ୍ଚିନୋୟାନି ବିଚାରିଞ୍ଚି × × × ଶୁଦ୍ଧ ବଚନ ପ୍ରକାରମ୍ମୁନା ରଚିଞ୍ଚିଦା ।"

ଏଥିରେ କୁହାଯାଇଛି ଯେ ଏହି ପୁରାଣଟିକୁ ଉତ୍ତର ଦେଶବାସୀ ସିଦ୍ଧେଶ୍ୱର ଦାସ ନାମଧେୟ 'ବିପ୍ରଯୋଗୀପୁଙ୍ଗବ' ଓଡ୍ରଭାଷାରେ ରଚନା କରିଥିବାରୁ ଆନ୍ଧ୍ରଲୋକେ ତାହା ଜାଣିପାରୁନାହାନ୍ତି । ତେଣୁ ମୁଁ ଶୃଷ୍ଟିକରଣ କୁଳର ଡୋଙ୍କାଡ଼ ବଂଶଜ ଭାରଦ୍ୱାଜ ଗୋତ୍ରର

ଲକ୍ଷ୍ମୀନାରାୟଣ ନାମଧେୟ ଦମ୍ପତିଙ୍କ ପୁତ୍ର ଗୋପୀନାଥ ମୋର ଗୁରୁ ଶ୍ରୀମଦ୍ ଜଗନ୍ନାଥ ଭଟ୍ଟରୁଙ୍କର ପାଦପଦ୍ମ ସ୍ମରଣ ପୂର୍ବକ ତାହାକୁ ଶୁଦ୍ଧ ଗଦ୍ୟ ଆକାରରେ ରଚନା କରିବି । ମୁଁ ସେହି ବିଚିତ୍ର ରାମାୟଣ ବୁଝି ଅତ୍ୟନ୍ତ ସନ୍ତୁଷ୍ଟ ହେଲି । ନିଜେ ତେଲୁଗୁରେ ଗଦ୍ୟପଦ୍ୟାତ୍ମକ ରଚନା କରିବାକୁ ସମର୍ଥ ହୋଇନଥିବାରୁ ଭବିଷ୍ୟତ୍‌ରେ ଅନ୍ୟ କେହି ଲୋକ ବିଚିତ୍ର ରାମାୟଣକୁ ଗଦ୍ୟପଦ୍ୟ ରୂପ ଦେବ ବୋଲି ଅଭିଳାଷ କରି ଶୁଦ୍ଧ କଥା ଭାବରେ ଏହାକୁ ପ୍ରକାଶ କରୁଛି ।

ଗୋପୀନାଥ ଜାତିରେ ଶୃଷ୍ଟିକରଣ ଥିବା କଥା ଲେଖିଛନ୍ତି । ଏମାନେ ବର୍ତ୍ତମାନ ଶିଷ୍ଟିକରଣ ବା ଶିଷ୍ଟକରଣ ନାମରେ ପରିଚିତ ହେଉଛନ୍ତି । ଏମାନଙ୍କର ମୂଳ ବାସସ୍ଥାନ ଓଡ଼ିଶା । 'ବ୍ରଜବିହାର'ର କବି ଦାଶରଥି ଦାସ ଏହି ଶିଷ୍ଟକରଣ ଜାତିର ଥିବା କଥା ସେହି କାବ୍ୟର ନବମ ବୋଲି ଶେଷକୁ ଜଣାଇଛନ୍ତି– 'କାଶ୍ୟପ ଗୋତ୍ରେ ହୋଇ ଜାତ, ଶିଷ୍ଟକରଣ କୁଳେ ଖ୍ୟାତ ।' ଗଙ୍ଗବଂଶର ରାଜତ୍ୱ କାଳରୁ ଏମାନେ ବିଭିନ୍ନ ରାଜକାର୍ଯ୍ୟରେ ନିଯୁକ୍ତ ରହି ତାତ୍‌କାଳିକ ଓଡ଼ିଶାର ଦକ୍ଷିଣଭାଗ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଅଞ୍ଚଳରେ ବସବାସ କରିବାକୁ ଲାଗିଲେ । ଆନ୍ଧ୍ର ଅଞ୍ଚଳରେ ରହିଯିବା ଓଡ଼ିଆ ଲୋକେ (ବ୍ରାହ୍ମଣଠାରୁ ହାଡ଼ି ପର୍ଯ୍ୟନ୍ତ ସବୁ ଜାତିର ଲୋକେ) ଦକ୍ଷିଣ ଭାରତୀୟ ଢଙ୍ଗରେ ନିଜ ନାମ ଆଗରେ ବାସନାମ (ଇଣ୍ଟିପେରୁ) ବ୍ୟବହାର କରନ୍ତି । ଏହି ପ୍ରକାରେ ଗୋପୀନାଥଙ୍କର ବାସନାମ ଡୋଙ୍କାଡ଼ କୌଣସି ଏକ ଗ୍ରାମର ନାମ ହୋଇଥିବା ସମ୍ଭବ । ଆନ୍ଧ୍ର ଅଞ୍ଚଳର ଶିଷ୍ଟକରଣମାନେ ବର୍ତ୍ତମାନ ସୁଦ୍ଧା ଘରେ ତେଲୁଗୁ ପ୍ରଭାବିତ ଓଡ଼ିଆ ଭାଷା ବ୍ୟବହାର କରନ୍ତି । ବାହାରେ ତେଲୁଗୁ ଭାଷାକୁ ଆଦରି ନେଇ ଅନେକ ଶିଷ୍ଟିକରଣ ତେଲୁଗୁରେ ପାଣ୍ଡିତ୍ୟ ଅର୍ଜନ କରିଛନ୍ତି ଓ ଅନେକେ ତେଲୁଗୁ ଭାଷାରେ ବହୁ କାବ୍ୟକବିତା ରଚନା କରିଛନ୍ତି । 'ତେଲୁଗୁ ସାହିତ୍ୟକୁ ଓଡ଼ିଆଙ୍କ ଦାନ' ଶୀର୍ଷକ ନିବନ୍ଧ (ମୋର ଅତୀତର ବର୍ଣ୍ଣବୋଧ, ୨୦୦୨, ପୁସ୍ତକର ଦ୍ୱାଦଶ ଅଧ୍ୟାୟ) ମଧ୍ୟରେ ତେଲୁଗୁର ସାହିତ୍ୟ ସୃଷ୍ଟିରେ ଯୋଗଦାନ କରିଥିବା ଓଡ଼ିଆମାନଙ୍କ ବିଷୟ ମୁଁ ଚର୍ଚ୍ଚା କରିଛି । ଏପରି ଓଡ଼ିଆ ଲୋକଙ୍କ ମଧ୍ୟରେ ଅଧିକାଂଶ ଶିଷ୍ଟିକରଣ କୁଳର । ଡୋଙ୍କାଡ଼ ଗୋପୀନାଥ ବିଚିତ୍ର ରାମାୟଣର ଅନୁବାଦ ଛଡ଼ା ତେଲୁଗୁରେ 'ହରିଶତକମୁ' ନାମକ ଏକ ଶତକ ରଚନା କରିଛନ୍ତି ।

ଗୋପୀନାଥଙ୍କ ବିଚିତ୍ର ରାମାୟଣମୁ ଖ୍ରୀ. ୧୮୯୨ରେ ମୁଦ୍ରିତ ହୋଇଛି । ଏହି ମୁଦ୍ରିତ ପୁସ୍ତକ ବର୍ତ୍ତମାନ ବଜାରରେ ଦୁର୍ଲଭ । ଏହାର ଅଭିଧାନ ପୃଷ୍ଠା/Title pageରେ ଲେଖାଅଛି– ''ସିଦ୍ଧେଶ୍ୱର ଦାସୁ ଉତ୍କଳମୁନା ରଚିଞ୍ଚିନା ବିଚିତ୍ର ରାମାୟଣମୁ ଡୋଙ୍କାଡ଼ ଗୋପୀନାଥଚେ ତେନୁଗୁନା ଶୁଦ୍ଧ ବଚନ ପ୍ରକାରମୁ ବିରଚିଞ୍ଚିନାଦି । ୧୮୯୨ ।'' ଅର୍ଥାତ୍– ସିଦ୍ଧେଶ୍ୱର ଦାସ ଉତ୍କଳ (ଭାଷା)ରେ ରଚନା କରିଥିବା ବିଚିତ୍ର ରାମାୟଣ ଯାହାକୁ ଡୋଙ୍କାଡ଼ ଗୋପୀନାଥ ତେଲୁଗୁରେ ଶୁଦ୍ଧ କଥାରେ ବିରଚନା କରିଛନ୍ତି ।

ମାନ୍ଦ୍ରାଜର ସରକାରୀ ପ୍ରାଚ୍ୟ ପାଣ୍ଡୁଲିପି ପାଠାଗାର (Government Oriental Manuscript Library) ମଧ୍ୟରେ ଗୋପୀନାଥଙ୍କର ବିଚିତ୍ର ରାମାୟଣମ୍‌ର ଗୋଟିଏ ତାଳପତ୍ର ପୋଥି (ସଂ-୨୧୮) ରହିଛି । ଏହି ପୋଥିର ଶେଷକୁ ଗୋପୀନାଥଙ୍କ ପରିଚୟ ସଂପର୍କରେ କେତେକ ଅଧିକ ତଥ୍ୟ ରହିଛି ଯାହା ମୁଦ୍ରିତ ପୁସ୍ତକରେ ନାହିଁ । ପୋଥି ଶେଷରେ ଲେଖାଅଛି–

''ଇତି ଶ୍ରୀ ସୀତାରାମ ବରପ୍ରସାଦ-ଲବ୍ଧ କବିତ୍ୱ ଚାତୁର୍ଯ୍ୟ ଧୁରନ୍ଧର ବିଦ୍ୱଜ୍ଜନ ସଂଗତ୍ୟ ବନ୍ଧୁର ଭରଦ୍ୱାଜଗୋତ୍ର-ପବିତ୍ର ନାରାୟଣ ମନ୍ତ୍ରୀ ପୁତ୍ର ବିତରଣ ବିଜିତ ରାଧେୟ ଗୋପୀନାଥ ନାମଧେୟ ପ୍ରଣୀତଂ ବୈନା କେବଳ ବଚନ ବିଚିତ୍ର ରାମାୟଣାଭିଧାନ ମହାକାବ୍ୟମ୍ଭାନୁ ସର୍ବମ୍ଭୁ ସମାପ୍ତାଃ ।''

ଏହାର ଅର୍ଥ ହେଲା– ଶ୍ରୀ ସୀତାରାମଙ୍କ ବରପ୍ରସାଦ ଲବ୍ଧ, କବିତ୍ୱ ଚାତୁର୍ଯ୍ୟରେ ଧୁରନ୍ଧର, ବିଦ୍ୱଜ୍ଜନ ସଂଗତିରେ ଶୋଭିତ, ଭରଦ୍ୱାଜଗୋତ୍ରର ଭୂଷଣ, ନାରାୟଣ ନାମକ ମନ୍ତ୍ରୀଙ୍କ ପୁତ୍ର, ଦାତାପଣରେ କର୍ଣ୍ଣଙ୍କଠାରୁ ଅଧିକ ଦାନୀ ଗୋପୀନାଥଙ୍କ ଦ୍ୱାରା କେବଳ କଥାରେ ପ୍ରଣୀତ ଏହି ବିଚିତ୍ର ରାମାୟଣ ନାମକ ମହାକାବ୍ୟ ସର୍ବସମାପ୍ତ ।

ଗୋପୀନାଥଙ୍କ ପୂର୍ବପୁରୁଷମାନେ ବନ୍ଧିଲି ରାଜ୍ୟର ରାଜକର୍ମଚାରୀ ଥିବା ଜଣାଯାଏ । କବିଙ୍କ ପିତା ଓ କବି ନିଜେ ରାଜ୍ୟର ମନ୍ତ୍ରୀପଣ କରୁଥିବା କଥାରୁ, ତଥା ସେ କର୍ଣ୍ଣତୁଲ୍ୟ ଦାନୀ ବୋଲି ପ୍ରଶଂସିତ ହୋଇଥିବାରୁ ତାହାଙ୍କର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିବା ନିଃସନ୍ଦେହ । ସେ ଅନେକ ପଣ୍ଡିତଙ୍କ ପୃଷ୍ଠପୋଷକତା ଦେଉଥିବା କଥା 'ବିଦ୍ୱଜନ ସଙ୍ଗତ୍ୟ ବନ୍ଧୁର' (ଅର୍ଥାତ୍ ବିଦ୍ୱଜନ ସଂଗତିରେ ଶୋଭିତ) ଉକ୍ତିରୁ ଜଣାପଡୁଛି । ଗୋପୀନାଥଙ୍କ ଭାଷା ସଂସ୍କୃତ ପ୍ରଭାବିତ ଗଦ୍ୟ, ଯଦିଚ ତାହା 'ଶୁଦ୍ଧ ବଚନ' ଅର୍ଥାତ୍ ଆଳଂକାରିକ ଛଟା ବର୍ଜିତ ତୁଣ୍ଡର ଭାଷା ବୋଲି ସେ ବାରଂବାର ଜଣାଇଛନ୍ତି । ସେ ସଂସ୍କୃତ, ଓଡ଼ିଆ ଓ ତେଲୁଗୁ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିବା କଥା ଅନୁମିତ ହୁଏ । ପ୍ରାଚୀନ ତେଲୁଗୁ ଗଦ୍ୟ ସାହିତ୍ୟ କ୍ଷେତ୍ରରେ ବିଚିତ୍ର ରାମାୟଣମ୍‌ର ସ୍ଥାନ ଉଚ୍ଚରେ । କାଳେ କେହି ତାଙ୍କ ଗ୍ରନ୍ଥ ପାଠ କରି ତେଲୁଗୁ ଗଦ୍ୟପଦ୍ୟରେ (ଅର୍ଥାତ୍, ୧ ଚମ୍ପୂ ଶୈଳୀରେ ୨. ପଦ୍ୟାକାରରେ ୩. ଆଳଂକାରିକ ଗଦ୍ୟଶୈଳୀରେ) ବିଚିତ୍ର ରାମାୟଣ ରଚନା କରିପାରନ୍ତି ବୋଲି ସେ ଯେଉଁ ଆଶା ପୋଷଣ କରିଥିଲେ ତାହା ବିଶେଷ ଭାବରେ ସଫଳ ହୋଇଛି । ଏହାକୁ ପାଠ କରି ଚାରି ପାଞ୍ଚଜଣ କବି ପଦ୍ୟରେ ଓ ଗଦ୍ୟପଦ୍ୟ ମିଶ୍ରିତ ଚମ୍ପୂ ଭାବରେ ବିଚିତ୍ର ରାମାୟଣ ଲେଖିଥିବା ହେତୁ ନିଃସନ୍ଦେହ ଭାବରେ କହି ହୁଏ ଯେ ଗୋପୀନାଥଙ୍କ ଗଦ୍ୟ ରଚନାଟି ଲୋକପ୍ରିୟତା ଅର୍ଜନ କରିପାରିଥିଲା । ଗୋପୀନାଥ ଶୁଦ୍ଧ ବଚନ ଅର୍ଥାତ୍ ନିରଳଂକୃତ ଗଦ୍ୟରେ ଲେଖୁଥିବା ହେତୁ ନ୍ୟୂନତା ପ୍ରକାଶ କରିବାର କାରଣ ଏହି ଯେ ପ୍ରାଚୀନ କାଳରେ

ପଦ୍ୟହୀନ ରଚନା ବିଦ୍ୱଜ୍ଜନଗୋଷ୍ଠୀରେ ମାନ୍ୟତା ପାଉନଥିଲା । ତେଲୁଗୁ ପଦ୍ୟ ରଚନାରେ ସଂସ୍କୃତ ପରି ଗୁରୁଲଘୁ-ନିୟମ ଅନୁସୃତ ହେଉଥିବାରୁ ସଂସ୍କୃତ ପଦ୍ୟ ଭଳି ତେଲୁଗୁ ପଦ୍ୟ ଯୋଜନା କଷ୍ଟସାଧ୍ୟ ବ୍ୟାପାର । ଗୋପୀନାଥଙ୍କ 'ଶୁଦ୍ଧ ବଚନ' ଶୈଳୀଟି ସିଦ୍ଧେଶ୍ୱର ଦାସଙ୍କ ଲୋକମୁଖର ମାମୁଲି ଭାଷାକୁ ହୁଏତ ସ୍ୱୀକୃତି ଦେଉଛି ।

## ୨. ନରସିଂହ ଦେବରା ବେଙ୍କଟଶାସ୍ତ୍ରୀ

ନରସିଂହ ଦେବରା ବେଙ୍କଟଶାସ୍ତ୍ରୀ ଗୋଦାବରୀ ମଣ୍ଡଳ, ନିଡୁଦାବଲୁ ଅଞ୍ଚଳ (ଆଧୁନିକ ରାଜମହିନ୍ଦ୍ରୀ ଜିଲାର ତାଣୁଗୁ ତାଲୁଗା) ଅନ୍ତଃପାତୀ ବେଲଗାତୁରୁ ଗ୍ରାମର ଅଧିବାସୀ ଥିଲେ । ସେ ଥିଲେ ଶ୍ରୀବସ୍ତ ଗୋତ୍ରର ଆପସ୍ତମ୍ବ ସୂତ୍ରୀ ବୈଦିକ ବ୍ରାହ୍ମଣ । ତାଙ୍କର ପିତାମାତାଙ୍କ ନାମ ଉମାମହେଶ୍ୱର ଓ ନାରସମାମ୍ବା ଓ ଗୁରୁଙ୍କର ନାମ ବ୍ରହ୍ମୟ୍ୟା । ଏହାଙ୍କର କାଳ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇନାହିଁ ।

ଶ୍ରୀ ବେଙ୍କଟଶାସ୍ତ୍ରୀ ଜଣେ ସିଦ୍ଧହସ୍ତ ତେଲୁଗୁ କବି ଥିଲେ । ସେ 'ବେଣୀ ପ୍ରବନ୍ଧ' ନାମକ ଏକ ଉଚ୍ଚକୋଟୀର କାବ୍ୟ ରଚନା କରିଥିଲେ ଓ ଗୋପୀନାଥଙ୍କର ବିଚିତ୍ର ରାମାୟଣମୁକୁ, ଗୋପୀନାଥଙ୍କ ଅଭିଳାଷ ପ୍ରକାରେ, ଗଦ୍ୟପଦ୍ୟାତ୍ମକ ରୂପ ଦେଇଥିଲେ । ତାଙ୍କ ବିଚିତ୍ର ରାମାୟଣମୁରେ ସିଦ୍ଧେଶ୍ୱର ଦାସ କିପରି ମୂଳ ଓଡ଼ିଆ ଗ୍ରନ୍ଥଟିକୁ ପ୍ରଣୟନ କରିଥିଲେ ଓ ତାହାକୁ ତୋଙ୍କାଡ଼ ଗୋପୀନାଥ କିପରି ତେଲୁଗୁ ଭାଷାରେ ରୂପାନ୍ତରିତ କଲେ ସେହି ବିଷୟରେ କେତେକ ବିବରଣ ଦିଆଯାଇଛି, ଯାହା ଅନ୍ୟତ୍ର ମିଳେ ନାହିଁ । ସେ ଲେଖିଛନ୍ତି—

''ଉତ୍ତର ଦେଶମୁନୁ ବ୍ରାହ୍ମଣୋତ୍ତମୁଂଡୁ ଶ୍ରୀ ହରିଦ୍ୱାର ମନିଏଡ଼ି କ୍ଷେତ୍ରମାନ୍ଦୁ
ତପମୁ ଶେୟଙ୍ଗା ନକ୍କନାଡୁ ଦୈବଯୋଗମୁନା ଯଜ୍ଞଦତ୍ତୁନି ମ୍ରୋଲା
ଗାନିଏ × × × ।
କୁଲଗୋତ୍ରମୁଲୁ ଦେଲ୍‌ଗୁ ନି ମନୋମୁଲୋ କୋର୍କେନ୍ ଦାଗାନ୍ ଦିର୍ଚେଦନ୍ ।
ଜଲଜାତ ପ୍ରିୟ ସନ୍ନିଭଙ୍ଗା ଆନିନାନ୍ ସନ୍ତୋଷିତ ସ୍ୱାନ୍ତୁଡ଼ୈ ।।
ଭିଲ୍ ସିଦ୍ଧେଶ୍ୱର ଦାସୁଡ଼ାନ୍ଦୁରିଲା ବିଶ୍ରଦ୍ୱମୁନୁନ୍ ଜେନ୍ଦିତିନ୍ ।
ନଲିନାଖ୍ୟାଂଘ୍ରି ସରୋଜ ଭୃଙ୍ଗୁନାନୁ ସନ୍ମାର୍ଗମୁ ନନ୍ଦିମ୍ପବେ ।।

ଇ ବିଧମୁନା ସାମ୍ପ୍ରାର୍ଥିଞ୍ଚୁନା ବିପ୍ରବରୁନି ଯଜ୍ଞଦତ୍ତୁଣ୍ଡୁ ମାନିଞ୍ଚି ନୃଙ୍ଗରମୁନା ଲିଖିତମୈନା ବିଚିତ୍ର ରାମାୟଣମୁ ନୋସାଙ୍ଗି ପଠିଇଞ୍ଚୁନା ନି ବାଞ୍ଛିତମ୍ପୁ ଦିଇରୁ ନାନି ୟାନତିଚି ଅଗୋଚରୁଣ୍ଡୈୟେ ନା ବିପ୍ରୁଣ୍ଡୁ ନା ଗ୍ରନ୍ଥମୁ ନୋଡ୍ରା ଭାଟାଚେ ରଚିଇଞ୍ଚି ପ୍ରକାଶିମ୍ପଜେସେ ନାନ୍ଧ୍ର ଦେଶସ୍ଥୁଣ୍ଡୁନୁ ଭାରଦ୍ୱାଜ ଗୋତ୍ର ତିଲକୁଣ୍ଡୈନା ଗୋପୀନାଥ ନାମଧେୟୁଣ୍ଡୋଡ୍ରୁ ଭାଷାଭିରତୁଣ୍ଡୈ ଅଭ୍ୟସିଞ୍ଚିଆ ବିଚିତ୍ର ରାମାୟଣାଶୟମୁ ଗ୍ରହିଞ୍ଚି

ଗଦ୍ୟପଦ୍ୟାତ୍ମକ କାବ୍ୟମ୍ନୁ ଜେୟୁଟା କସମର୍ଥୁଡ଼େ ଶୁଦ୍ଧ ବଚନ କାବ୍ୟମ୍ନୁ ଜେସେ । ତଦ୍ ବଚନ ଭବମ୍ନୁ ନେନୁ ଗ୍ରହିଞ୍ଚି ଗଦ୍ୟପଦ୍ୟାତ୍ମକ କାବ୍ୟମ୍ନୁ ଜେଉଟାକୁ ଉତ୍ସୁକୁଣ୍ଡାନୈ ।''

ଶ୍ରୀ ବେଙ୍କଟଶାସ୍ତ୍ରୀଙ୍କ ବକ୍ତବ୍ୟର ସାରକଥା ଏହିପରି– ଉତ୍ତର ଦେଶର ଜନୈକ ଶ୍ରେଷ୍ଠ ବ୍ରାହ୍ମଣ ହରଦ୍ୱାର କ୍ଷେତ୍ରରେ ତପସ୍ୟା କରୁଥିଲେ । ଥରେ ଦୈବଯୋଗରେ ଯଜ୍ଞଦତ୍ତ (କୌଣସି ଜଣେ ବ୍ୟକ୍ତି) ତାଙ୍କୁ ଦେଖାଦେଲେ ଓ ତାଙ୍କର କୁଳଗୋତ୍ରାଦି ପରିଚୟ ସହିତ ମନୋବାଞ୍ଛା ପଚାରିଲେ । ବ୍ରାହ୍ମଣ କହିଲେ, ମୋ ନାମ ସିଦ୍ଧେଶ୍ୱର ଦାସ, ମୁଁ ବ୍ରାହ୍ମଣତ୍ୱ ମଧ୍ୟ ଲାଭ କରିଅଛି । ଯଜ୍ଞଦତ୍ତ ସିଦ୍ଧେଶ୍ୱରଙ୍କୁ ନାଗରାକ୍ଷରରେ ଲିଖିତ (ଅର୍ଥାତ୍ ସଂସ୍କୃତ ଭାଷାର) ବିଚିତ୍ର ରାମାୟଣ ପୋଥି ଦେଲେ । ତଦନନ୍ତର ସେହି ବିପ୍ର ସେହି ଗ୍ରନ୍ଥକୁ ଓଡ୍ରଭାଷାରେ ରଚନା କରି ପ୍ରକାଶ କଲେ । ଆନ୍ଧ୍ରଦେଶର ଭାରଦ୍ୱାଜ ଗୋତ୍ରର ଗୋପୀନାଥ ଓଡ୍ରଭାଷା ଶିକ୍ଷା କରି ଓଡ୍ର ଗ୍ରନ୍ଥର ଅବଲମ୍ବନରେ ତେଲୁଗୁ ଭାଷାରେ ଶୁଦ୍ଧ ବଚନକାବ୍ୟ ରଚନା କଲେ, କାହିଁକି ନା ସେ ଗଦ୍ୟପଦ୍ୟାତ୍ମକ କାବ୍ୟ ଲେଖିବାକୁ ଅସମର୍ଥ ଥିଲେ । ମୁଁ ତାହାଙ୍କର ବିଚିତ୍ର ରାମାୟଣମୁର ବଚନ ଭାବକୁ ଗ୍ରହଣ କରି ଗଦ୍ୟପଦ୍ୟାତ୍ମକ କାବ୍ୟ ରଚନା କରିବାକୁ ପ୍ରୟାସୀ ହୋଇଛି ।

ବର୍ତ୍ତମାନ ମିଳୁଥିବା ଗୋପୀନାଥଙ୍କ ବିଚିତ୍ର ରାମାୟଣମୁରେ ସିଦ୍ଧେଶ୍ୱର ଦାସଙ୍କ ତପସ୍ୟା ଫଳରେ ସଂସ୍କୃତ ବିଚିତ୍ର ରାମାୟଣ ଗ୍ରନ୍ଥ ପ୍ରାପ୍ତି ଆଖ୍ୟାନଟି ସ୍ଥାନ ପାଇନାହିଁ । ବର୍ତ୍ତମାନ ମିଳିଥିବା ଓଡ଼ିଆ ବିଚିତ୍ର ରାମାୟଣରେ ମଧ୍ୟ ଏହି ଆଖ୍ୟାନ ବର୍ଣ୍ଣିତ ହୋଇ ନାହିଁ । ଏକଥା ନିଶ୍ଚିତ ଯେ ଶ୍ରୀ ବେଙ୍କଟଶାସ୍ତ୍ରୀ ଓଡ଼ିଆ ପଢ଼ି ନଥିଲେ । କାବ୍ୟ ରଚନା ଲାଗି ସେ ପୂର୍ଣ୍ଣତଃ ଗୋପୀନାଥଙ୍କ ବିଚିତ୍ର ରାମାୟଣମୁ ଉପରେ ନିର୍ଭର କରିଥିବା ସ୍ୱୀକାର କରିଛନ୍ତି । ଏପରି ସ୍ଥଳେ ସେ ଏହି ଆଖ୍ୟାନଟିକୁ ବର୍ଣ୍ଣନା କରିଥିବା ହେତୁରୁ ଅନୁମିତ ହୁଏ କି ଏକେତ ସେ ଗୋପୀନାଥଙ୍କ ବିଚିତ୍ର ରାମାୟଣମୁର ଅନ୍ୟ କୌଣସି ପୋଥିରେ ଏହି ଆଖ୍ୟାନଟି ଲେଖାଥିବା ପଢ଼ିଛନ୍ତି ଅଥବା ମାନିବାକୁ ହେବ ଯେ ଏହା ତାଙ୍କର କଳ୍ପନା-ପ୍ରସୂତ ମାତ୍ର । ଗୋଟିଏ ଗ୍ରନ୍ଥର ରଚନା ଜଣେ ଶ୍ରେଷ୍ଠ ବ୍ରାହ୍ମଣଙ୍କର ଏକ ପ୍ରସିଦ୍ଧ କ୍ଷେତ୍ରରେ ତପସ୍ୟାରୁ ଲବ୍ଧ ଫଳ ଓ ଗ୍ରନ୍ଥର ମୂଳ ପୂର୍ବରୁ ସଂସ୍କୃତ ଭାଷାରେ ରହିଥିଲା ବୋଲି ବର୍ଣ୍ଣନା କରୁଥିବା ଆଖ୍ୟାନ ଗ୍ରନ୍ଥଟିକୁ ସରଳବିଶ୍ୱାସୀ ଜନସାଧାରଣଙ୍କର ଗ୍ରହଣଯୋଗ୍ୟ କରାଇବ ବୋଲି ବିଶ୍ୱାସ ଶ୍ରୀ ବେଙ୍କଟଶାସ୍ତ୍ରୀଙ୍କର ଥାଇପାରେ । ସାରଳାଦାସଙ୍କ ସ୍ୱରଚିତ ଅପୂର୍ବ ଆଖ୍ୟାନ ମଣ୍ଡିତ ମହାଭାରତ ଓ ଚଣ୍ଡୀପୁରାଣ ଲୋକରେ ପ୍ରଚାରିତ ହେବାରେ ସହାୟକ ହେବ ବୋଲି ଜାତିସ୍ମରଣ ଓ ଦୈବୀପ୍ରସାଦ କଥାର ଉଲ୍ଲେଖ କରିଥିବା ବିଷୟ ପୂର୍ବେ ଆଲୋଚିତ ହୋଇଛି । ଶ୍ରୀ ବେଙ୍କଟଶାସ୍ତ୍ରୀ ଲେଖିଥିବା ଆଖ୍ୟାନଟି ମଧ୍ୟ ଅନୁରୂପ ଉଦ୍ଦେଶ୍ୟ ସାଧନ ପାଇଁ ଅଭିପ୍ରେତ ହୋଇଥାଇ ପାରେ ।

ସେ ଯାହାହେଉ, ଯଜ୍ଞଦତ୍ତ ସିଦ୍ଧେଶ୍ୱର ଦାସଙ୍କୁ କୁଳଗୋତ୍ର ପଚାରିଥିବା ସତ୍ତ୍ୱେ ସିଦ୍ଧେଶ୍ୱର ତାଙ୍କର ଗୋତ୍ର ସଂପର୍କରେ କିଛି ନ ଜଣାଇ ''ମୁଁ ବ୍ରାହ୍ମଣତ୍ୱ ମଧ ଲାଭ କରିଛି'' ବୋଲି କହିଥିବା ବର୍ଣ୍ଣନା ତାତ୍ପର୍ଯ୍ୟପୂର୍ଣ୍ଣ । ସିଦ୍ଧେଶ୍ୱର 'ବିପ୍ରଯୋଗୀ ପୁଙ୍ଗବ' ବୋଲି ଗୋପୀନାଥ ଲେଖିଥିଲେ ହେଁ ସେ ମୂଳତଃ ବ୍ରାହ୍ମଣ ନଥିବା ସଂକେତଟି ଏଠାରେ କିପରି ରହିପାରିଲା ଆଶ୍ଚର୍ଯ୍ୟକର । ଏ ବିଷୟରେ ସିଦ୍ଧେଶ୍ୱରଙ୍କ ଜାତି ନିର୍ଣ୍ଣୟ ପ୍ରସଙ୍ଗରେ ଅନ୍ୟତ୍ର ଆଲୋଚିତ ହେବ । ଶ୍ରୀ ବେଙ୍କଟଶାସ୍ତ୍ରୀ ଗୋପୀନାଥ ଆନ୍ଧ୍ର ଥିଲେ ବୋଲି ଜଣାଇ ସେ ଓଡ଼ିଆ ଭାଷା ଶିକ୍ଷା କରିଥିଲେ ବୋଲି କହିଛନ୍ତି । ନିଜେ ଗୋପୀନାଥ ତାଙ୍କର ଜାତିର ପରିଚୟ ଦେଇଥିବା ଦୃଷ୍ଟେ ତଥା ସେ ଓଡ଼ିଶାର ନନ୍ଦପୁରର ଓଡ଼ିଆ ରାଜାଙ୍କ ମନ୍ତ୍ରୀ ଥିବା ଦୃଷ୍ଟେ ଶ୍ରୀ ବେଙ୍କଟଶାସ୍ତ୍ରୀଙ୍କ ମତଟି ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଶ୍ରୀ ବେଙ୍କଟଶାସ୍ତ୍ରୀଙ୍କ ବିଚିତ୍ର ରାମାୟଣମୁ ପ୍ରଥମେ ଖ୍ରୀ. ୧୮୮୮ରେ ଓ ପରେ ଖ୍ରୀ. ୧୯୦୪ରେ ମୁଦ୍ରିତ ହୋଇଛି । ଏହି ମୁଦ୍ରିତ ଗ୍ରନ୍ଥ ରାଜମହିନ୍ଦ୍ରୀର ଗୌତମୀ ପାଠାଗାରରେ ତଥା ଅନ୍ୟତ୍ର ରହିଛି ।

### ୩. ବେଲପୁରି ବେଙ୍କଟେଶ୍ୱର କବି

ବେଲପୁରି ବେଙ୍କଟେଶ୍ୱରଙ୍କର ନିବାସ ସ୍ଥାନ ବିଶାଖାପାଟଣା ଜିଲାର ବିଜୟନଗର ଜମିଦାରି ଅନ୍ତର୍ଗତ ରାବିବରସା ଗ୍ରାମ । ସେ ଆପସ୍ତମ୍ବ ସୂତ୍ରୀ ମୌଦ୍‌ଗଲ୍ୟ ଗୋତ୍ରୀ ନିଯୋଗୀ ବ୍ରାହ୍ମଣ । ତାହାଙ୍କର ପିତାଙ୍କର ନାମ ବ୍ରହ୍ମନାମାତ୍ୟ ଓ ଗୁରୁଙ୍କର ନାମ ଗୋଙ୍ଗାଲ ରାମ ଶାସ୍ତ୍ରୀ । ତେଲୁଗୁରେ ଏହାଙ୍କର ଅନେକ ରଚନା ରହିଛି । ଗଦ୍ୟପଦ୍ୟରେ ରଚିତ ବିଚିତ୍ର ରାମାୟଣମୁ ଛଡ଼ା ଗୋବ୍ୟାଘ୍ର ଚରିତ (ଓଡ଼ିଆର ବଉଳା ଗାଈ ଚରିତ), ଗୌରୀଶଙ୍କର ବିଳାସ ଓ ରାମଲୀଳା ଏହାଙ୍କର ଲେଖନୀ ପ୍ରସୂତ । ଏହାଙ୍କର ଜନ୍ମ ଖ୍ରୀ. ୧୭୮୦ରେ ଓ ମୃତ୍ୟୁ ଖ୍ରୀ.୧୮୫୩ରେ ହୋଇଥିବା ଜଣାଯାଏ ।

### ୪. କାଲ୍ଲେପଲ୍ଲି ବେଙ୍କଟ ନରସିଂହ ମୂର୍ତ୍ତି

କାଲ୍ଲେପଲ୍ଲି ବେଙ୍କଟ ନରସିଂହ ମୂର୍ତ୍ତିଙ୍କର ମୂଳ ବାସସ୍ଥାନ କାଲ୍ଲେପଲ୍ଲି । ସେ ଶ୍ରୀକାକୁଳମ୍ ଜିଲା ବାକାଡ଼ା ଗ୍ରାମର ବୋର୍ଡ଼ସ୍କୁଲ୍‌ର ପଣ୍ଡିତ ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କର ଗୋତ୍ର ନାଗେଶ, ମାତାଙ୍କ ନାମ ବେଙ୍କମ୍ମା ଓ ପିତାଙ୍କର ନାମ ବରାହନରସିଂମ୍ (ସେ ମଧ ଜଣେ କବି) । ସେ ଖ୍ରୀ. ୧୮୯୦ ବେଳେ ବିଚିତ୍ର ରାମାୟଣକୁ ଆମୂଳାନ୍ତ ତେଲୁଗୁ ପଦ୍ୟରେ ଚରନା କରି ଗ୍ରନ୍ଥଟିକୁ ତିଲାରୁହୁଣ୍ଡାର ଜମିଦାର ମ୍ୟଦୁଗୁଲା ବେରମ୍ମାଙ୍କୁ ଉତ୍ସର୍ଗ କରିଥିଲେ । ସେ ଶ୍ରୀରଙ୍ଗମ୍ ଶତକମ୍, ଭୀମେଶ ଶତକମ୍ ଓ ନରସିଂହ ଶତକ ମଧ ରଚନା କରିଥିଲେ । ତାଙ୍କ ରଚିତ ବିଚିତ୍ର ରାମାୟଣମୁ ଖ୍ରୀ. ୧୯୦୦ରେ ମୁଦ୍ରିତ ହୋଇଥିଲା । ଶ୍ରୀ ନରସିଂହ ମୂର୍ତ୍ତିଙ୍କର ଜନ୍ମ ଖ୍ରୀ.୧୮୬୪ରେ ଓ ମୃତ୍ୟୁ ୧୯୧୧ରେ ହୋଇଥିଲା ।

### ୫. କୋମ୍ମାକୁ ସୋମାୟା

କୋମ୍ମାକୁ ସୋମାୟା (ନାମାନ୍ତର ସୋମନାଥ ଶିକ୍ଷାଚାର୍ଯ୍ୟ) ଥିଲେ ଜାତିରେ ସୁନାରି । ସେ ପାର୍ବତୀପୁର ମାଳର ରାଜା ଧନଞ୍ଜୟ ଆଟରାଜାଙ୍କର ସଭାକବି ଥିଲେ । ପାର୍ବତୀପୁର ଜମିଦାରିଟି ଜୟପୁର (କୋରାପୁଟ) ସୀମାକୁ ଲାଗି ଆଧୁନିକ ଆନ୍ଧ୍ରପ୍ରଦେଶରେ ଅବସ୍ଥିତ । ଏହାର ରାଜାମାନେ ଥିଲେ ଓଡ଼ିଆ । ଶ୍ରୀ ସୋମାୟାଙ୍କର ପଦ୍ୟାକାରରେ ରଚିତ ବିଚିତ୍ର ରାମାୟଣମୁରେ ମୋଟ ୨୦୦୦ ପଦ ରହିଛି ଓ ତାହା ୨୪ ଗୋଟି ଆଶ୍ୱାସ (ଅଧ୍ୟାୟ)ରେ ବିଭକ୍ତ । ସେ ଲେଖିଛନ୍ତି ଯେ ଓଡ଼ିଆ ବିଚିତ୍ର ରାମାୟଣରେ ମୋଟ ୧୦ ହଜାର ପଦ ରହିଛି । ଏଥିରୁ ସେ ଓଡ଼ିଆ ଗ୍ରନ୍ଥଟି ପାଠ କରିଥିଲେ ବୋଲି ସନ୍ଦେହ କରାଯାଇପାରେ । କିନ୍ତୁ, ମିଳିଥିବା ବିଚିତ୍ର ରାମାୟଣରେ ପ୍ରକୃତରେ ସାଢ଼େ ପାଞ୍ଚହଜାର ପଦ ବା ୧୧ ହଜାର ପାଦ ରହିଛି । ସେ ପାଦକୁ ପଦ ବୋଲି କହିଥିବା ସମ୍ଭବ । ଏହାଙ୍କର ବିଚିତ୍ର ରାମାୟଣମୁ ମୁଦ୍ରିତ ହୋଇନାହିଁ ।

### ୬. ମାଚିନା ସୋମାୟା

ମାଚିନା ସୋମାୟାଙ୍କ ଦ୍ୱାରା ରଚିତ ତେଲୁଗୁ 'ବିଚିତ୍ର ରାମାୟଣମୁ' ଥିବା କଥା ଶୁଣାଯାଏ କିନ୍ତୁ ଏହି ଗ୍ରନ୍ଥ ବା ତାହାର କବିଙ୍କର ପରିଚୟ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇ ନାହିଁ ।

### ରାମଚରିତର ବୈଚିତ୍ର୍ୟ

ଆମୂଳାନ୍ତ ଦାଣ୍ଡୀଶୈଳୀରେ ରଚିତ ଏହି ବିଚିତ୍ର ରାମାୟଣରେ ବର୍ଣ୍ଣିତ ରାମଚରିତରେ ବହୁତ ବୈଚିତ୍ର୍ୟ ରହିଛି । ଆଳଂକାରିକ କାବ୍ୟଯୁଗରେ ବିବିଧ ରାଗରାଗିଣୀଯୁକ୍ତ ଛାନ୍ଦକାବ୍ୟକୁ ବିଚିତ୍ରକାବ୍ୟ କୁହାଯାଉଥିଲା । ସେଥିପାଇଁ ବିଶ୍ୱନାଥ ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣ, ଗୋପୀନାଥ ଦାସଙ୍କ ବିଚିତ୍ର ବିଲଙ୍କା, ବିଶ୍ୱମ୍ଭର ଦାସଙ୍କ ବିଚିତ୍ର ଭାରତ ଭଳି ଅନେକ ଛାନ୍ଦକାବ୍ୟ 'ବିଚିତ୍ର' ଆଖ୍ୟା ବହନ କରିଛନ୍ତି । କିନ୍ତୁ ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣର ବୈଚିତ୍ର୍ୟ କାବ୍ୟର ଆଂଗିକ କି ରୂପଗତ ନୁହେଁ, ତାହା ଚରିତଗତ । ଅନ୍ୟ କଥାରେ, ଏହି ବୈଚିତ୍ର୍ୟ ବହିରଙ୍ଗ ନୁହେଁ, ଅନ୍ତରଙ୍ଗ । ଏହି ବିଷୟରେ କବି ସିଦ୍ଧେଶ୍ୱର ଦାସ ସଚେତନ ଥିବା ଜଣାପଡୁଛି, କାରଣ ମଙ୍ଗଳାଚରଣ ରୂପ ଗଣେଶ ବନ୍ଦନାର ଅବ୍ୟବହିତ ପରେ ଗ୍ରନ୍ଥର ସର୍ବପ୍ରଥମ ପାଦରେ ହିଁ ସେ କହୁଛନ୍ତି— 'ଏଥୁ ଅନନ୍ତରେ ଶୁଣ ବିଚିତ୍ର ଆଛାନ' (ପୃ.୨, ଆଖ୍ୟାନ=ଆକ୍ଷାନ=ଆଛାନ) ।

ବିଚିତ୍ର ରାମାୟଣରେ ଯେଉଁ ଢଙ୍ଗରେ ରାମଚରିତ ଉପସ୍ଥାପିତ ହୋଇଛି ସେଥିରେ ମଧ୍ୟ ବୈଶିଷ୍ଟ୍ୟ ରହିଛି । ପାଣ୍ଡବଙ୍କ ବନବାସ କାଳରେ ମାର୍କଣ୍ଡେୟ ଋଷି ଯୁଧିଷ୍ଠିରାଦି ପାଞ୍ଚ ଭାଇ, ଦ୍ରୌପଦୀ ଓ ଅନ୍ୟାନ୍ୟ ଲୋକଙ୍କ ଆଗରେ ସୀତାଙ୍କ ନିର୍ବାସନ ଚରିତ

କହିଛନ୍ତି । ଏହି ପ୍ରକାରେ ବିଚିତ୍ର ରାମାୟଣର ଚରିତର ଆରମ୍ଭ ହୋଇଛି ସୀତାଙ୍କ ନିର୍ବାସନରେ । ତିନିମାସର ଅନ୍ତଃସତ୍ତ୍ୱା ସୀତା ଦୋହଦ ପ୍ରକାଶ କଲେ ଅରଣ୍ୟର ଶୋଭା ଦେଖିବାକୁ । ରାମ ଲୋକାପବାଦକୁ ଏଡ଼ିବା ପାଇଁ ସୀତାକୁ ତ୍ୟାଗ କରିବାକୁ ଭାବୁଥିଲେ । ଦୋହଦର ସୁଯୋଗ ନେଇ ରାମ ସୀତାଙ୍କୁ ବଣରେ ଛାଡ଼ି ଆସିବାକୁ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ । ସୀତା ବନଦର୍ଶନାଭିଳାଷିନୀ ହୋଇ ଲକ୍ଷ୍ମଣଙ୍କ ସହିତ ବଣକୁ ବାହାରିଲେ । ଘୋର ବଣରେ ପଥଶ୍ରାନ୍ତିବଶତଃ ସୀତା ଶୋଇପଡ଼ିଥିବା ବେଳେ ତାଙ୍କୁ ଏକାକିନୀ କରି ଛାଡ଼ି ଲକ୍ଷ୍ମଣ ଅଯୋଧ୍ୟାକୁ ବାହୁଡ଼ିଗଲେ । ନିଦରୁ ଉଠି, ଲକ୍ଷ୍ମଣ ରଖି ଆସିଥିବା ପତ୍ର ପଢ଼ି ସୀତା ବୁଝିଲେ ଯେ ସେ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତା । ସେହି ବଣର ଜୀବଜନ୍ତୁମାନେ ସୀତାଙ୍କୁ ତାଙ୍କ ପିତ୍ରାଳୟ ବୈଦେହୀମଣ୍ଡଳକୁ ବାଟ କଢ଼ାଇ ନେଲେ । ବାଟରେ ବାଲ୍ମୀକିଙ୍କ ଆଶ୍ରମ ପଡ଼ିଲା । ବାଲ୍ମୀକି ସୀତାଙ୍କୁ କେତେକ ଦିନ ନିଜ ଆଶ୍ରମରେ ରଖିଲେ । ସେ ଧ୍ୟାନଦ୍ୱାରା ଜାଣିଲେ ଯେ ଲକ୍ଷ୍ମୀନାରାୟଣଙ୍କୁ ଏକତ୍ର ଦେଖି ପାପୀମାନେ ମୁକ୍ତି ପାଇଯାଉଥିବା ହେତୁ ଦେବତାମାନେ ଚକ୍ରାନ୍ତ କରି ନାରାୟଣଙ୍କୁ ଶ୍ରୀହୀନ କରାଇଦେଲେ । ଲକ୍ଷ୍ମୀଙ୍କୁ ଛାଡ଼ିଲେ ନାରାୟଣ ଶ୍ରୀହୀନ ଏହି ବିଚାର ବୀଜଟିକୁ ନେଇ ପରବର୍ତ୍ତୀ କାଳରେ ବଳରାମ ଦାସ 'ଲକ୍ଷ୍ମୀପୁରାଣ' ରଚନା କରିଥିଲେ ।

ବିଶ୍ରାମ ପରେ ବାଲ୍ମୀକି ସୀତାଙ୍କୁ ଧରି ବୈଦେହୀମଣ୍ଡଳକୁ ବାହାରିଲେ । ବୈଦେହୀମଣ୍ଡଳ ନିକଟ ହୋଇ ଆସିଲା ବେଳକୁ ବନ ମଧ୍ୟରେ ସୀତାଙ୍କର ଦୁଇ ପୁତ୍ର ଜାତ ହେଲେ; ବଡ଼ ପୁଅ ଲବ ଓ ସାନ କୁଶ । ସଂବାଦ ପାଇ ଜନକ ଆସି ସମସ୍ତଙ୍କୁ ନବରକୁ ନେଲେ । ଲୋକାପବାଦ ଯୋଗୁଁ ରାମ ସୀତାଙ୍କୁ ପରିତ୍ୟାଗ କରିଥିବା କଥା ଶୁଣି ପିତା ଜନକ ମଧ୍ୟ ସୀତାଙ୍କୁ କହିଲେ ସେ ନିର୍ଦ୍ଦୋଷ ଥିବାର ପ୍ରମାଣ ରୂପେ ମାଣ୍ଡୁ ପରୀକ୍ଷା ଦେବାକୁ । ସୀତା ସର୍ବୋତ୍ତମ ମାଣ୍ଡୁ ଯେଉଁ ଅଗ୍ନି ପରୀକ୍ଷା ତାହା ପୁନରାୟ ଦେବାକୁ ସ୍ୱୀକାର କଲେ ଓ ସର୍ବସାଧାରଣଙ୍କ ସମକ୍ଷରେ ଅନେକ ଦିନ ଧରି ଅଗ୍ନିକୁଣ୍ଡରେ ରହି ଅକ୍ଷତ ଅବସ୍ଥାରେ ବାହାରିଲେ ।

ଜନକ ବାଲ୍ମୀକିଙ୍କୁ ଅଟକାଇ ରଖିଲେ ଓ ବାଲ୍ମୀକି ଲବକୁଶଙ୍କୁ ଯଥାକାଳେ ଖଡ଼ି ଛୁଆଁଇ ବିଭିନ୍ନ ବିଦ୍ୟାରେ ନିପୁଣ କରାଇଲେ । ସବୁ ପାଠ ପଢ଼ାଇବା ପରେ ବାଲ୍ମୀକି ଲବକୁଶଙ୍କୁ ରାମାୟଣ ଶିଖାଇଲେ । ଲବକୁଶ ଗ୍ରାମେ ଗ୍ରାମେ ବୁଲି ଦ୍ୱାରେ ଦ୍ୱାରେ ରାମାୟଣ ଆବୃତ୍ତି ସହିତ ଚାଟ-ଭିକ୍ଷା ସଂଗ୍ରହ କରି ପ୍ରତ୍ୟହ ଗୁରୁ ବାଲ୍ମୀକିଙ୍କୁ ଦିଅନ୍ତି । ଏହି ପରିତ୍ୟକ୍ତା ଅବସ୍ଥାର ସୀତାଙ୍କ ଦୁଃଖରେ ଦେବତାମାନେ ଅତିଶୟ ଆକୁଳ ହୋଇ ଶୀଘ୍ର ରାମାବତାରକୁ ଶେଷ କରାଇବା ଯୋଜନା କଲେ । ତଦନୁସାରେ ଲବକୁଶ ଦିନେ ଭିକ୍ଷା ମାଗି ଯିବା ପଥରେ ପରସ୍ପର କଳି କରି ଭିନ୍ନ ବାଟ ଧରିଲେ । ଲବଙ୍କୁ ପବନ ୮୪ ଯୋଜନ ଦୂରବର୍ତ୍ତୀ ଅଯୋଧ୍ୟାକୁ ଉଡ଼ାଇ ନେଲା । ସେ ଦିନ ରାମଚନ୍ଦ୍ର ପିତୃଶ୍ରାଦ୍ଧ

କରୁଥିଲେ । ଶ୍ରାଦ୍ଧ ପରେ ରାମ, ରାଜପରିବାରର ସମସ୍ତେ ଓ ଅଯୋଧ୍ୟାବାସୀ ଲବଙ୍କଠାରୁ କିଛି ରାମାୟଣ ଶୁଣିଲେ । କିନ୍ତୁ, ବେଳ ଗଡ଼ିଯିବାରୁ ତହିଁଆର ଦିନ ଆସି ପୁଣି ରାମାୟଣ ଶୁଣାଇବେ ବୋଲି ପ୍ରତିଶ୍ରୁତି ଦେଇ ଲବ ସଞ୍ଜ ଧରି ଫେରିଗଲେ (ପୂର୍ବବତ୍ ପବନର ସହାୟତା ଯୋଗେ) ।

ଲବଙ୍କ ଠାରୁ ଅଯୋଧ୍ୟାର ବର୍ଣ୍ଣନା ଓ ସେଠାର କି ରାଜା କି ପ୍ରଜା ସମସ୍ତଙ୍କର ରାମାୟଣ ଶୁଣିବାକୁ ବିଶେଷ ଆଗ୍ରହ ବିଷୟ ଶୁଣି ତହିଁଆର ଦିନ କୁଶ ମଧ ଲବଙ୍କ ସହିତ ଅଯୋଧ୍ୟାକୁ ବାହାରିଲେ ଓ ଉଭୟେ ପବନ ସହାୟତାରେ ଅଯୋଧ୍ୟାରେ ଶୀଘ୍ର ପହଞ୍ଚିଗଲେ । ରାମ, ଭରତ, ଲକ୍ଷ୍ମଣ— ଶତ୍ରୁଘ୍ନ ଅଯୋଧ୍ୟାରେ ଅନୁପସ୍ଥିତ ଥିଲେ— ବଶିଷ୍ଠ ଓ ପାତ୍ର, ମନ୍ତ୍ରୀ ଆଦି ସକଳ ଅଯୋଧ୍ୟାବାସୀଙ୍କ ସଭା ମଧ୍ୟରେ ଲବ ଲଳିତ କଣ୍ଠରେ ରାମାୟଣ ଗାନ କଲେ । ଏହି ପ୍ରକାରେ ସଭାରେ ଲବକୁଶ ବର୍ଣ୍ଣନା କରୁଥିବା ରାମାୟଣ ଚରିତ ଆମୂଳାନ୍ତ ବିଚିତ୍ର ରାମାୟଣ ମଧ୍ୟରେ ବର୍ଣ୍ଣିତ ହୋଇଛି । ଏହି ରାମାୟଣକୁ ସିଦ୍ଧେଶ୍ୱର ଦାସ ବାଲ୍ମୀକିଙ୍କ ଦ୍ୱାରା ପ୍ରଣୀତ ଗ୍ରନ୍ଥ ବୋଲି କହିଛନ୍ତି :— 'ବିଚିତ୍ର ରାମାୟେଣ ବାଲମିକ କଲା ଗ୍ରନ୍ଥ' (ବିଚିତ୍ର ରାମାୟଣ ଶେଷ ପଦ, ପୃ. ୩୯୬) । କିନ୍ତୁ ବାଲ୍ମୀକିଙ୍କ ଦ୍ୱାରା ରଚିତ ଯେଉଁ ରାମାୟଣ ଗ୍ରନ୍ଥଟି ଲୋକରେ ସୁପ୍ରଚାରିତ ତାହା ସହିତ ବିଚିତ୍ର ରାମାୟଣର ଅମେଳ ବହୁତ । ବିଚିତ୍ର ରାମାୟଣ ମଧ୍ୟରେ ବିଭିନ୍ନ ସ୍ଥାନରେ ଉଲ୍ଲିଖିତ ହୋଇଛି ଯେ ଲବ ବସନ୍ତଗୁର୍ଜରୀ, ବିଚିତ୍ର ଦେଶାଖ୍ୟ, ଭୋପାଳପ୍ରିୟ, ଗୁଣ୍ଡରିକେରୀ, ଧନାଶ୍ରୀ, ବସନ୍ତ ବରାଡ଼ୀ, ବରାଡ଼ୀ ଆଦି ନାନାବିଧ ରାଗରାଗିଣୀରେ ରାମାୟଣ ଗାନ କରୁଥିଲେ ଓ ଯେଉଁ ଯେଉଁ ସ୍ଥଳେ ରାମାୟଣର ପଦର ଅର୍ଥବୋଧ ସୁଗମ ହୁଏ ନାହିଁ, ସେହି ସ୍ଥଳେ କୁଶ ପ୍ରାଞ୍ଜଳ ଭାବରେ ତାହା ବୁଝାଇ ଦେଉଥିଲେ :—

(କ) ଶ୍ରୀରାମର ସଭାରେ ଲବ କୁମର କହଇ ।।
ଯେବଣ ପଦ ଅବା ହୁଅଇ ଅନ୍ତର ।
ଅର୍ଥ କରି ବୁଝାଇ ତାହା କୁଶ କୁମର ।। (ପୃ. ୧୭୩)

(ଖ) ତହୁଁ ଲବକୁଶେ କହନ୍ତି ପୁରାଣ ଧ୍ୱନି ।।
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶ କୁମର ତାହା ଅର୍ଥ କରିଣ କହି ।। (ପୃ. ୧୬୦)

(ଗ) ଶ୍ରୀରାମର ଆଗେ ଲବକୁଶ କହି ।
ଯେବଣ ପଦ ଅଳପ ଅନ୍ତର ହୁଅଇ ଅର୍ଥ କରି କହଇ କୁଶାଇ ।।
(ପୃ. ୧୭୧)

ଏଥିରୁ ଜଣାପଡୁଛି ଯେ 'ବିଚିତ୍ର ରାମାୟଣ'ର ମୂଳ ଗ୍ରନ୍ଥଟି ଏହି ସରଳ ଓଡ଼ିଆ ଭାଷାର ରଚନା ନୁହେଁ ତାହା ବିଭିନ୍ନ ରାଗରାଗିଣୀ ଦ୍ୱାରା ଗେୟ ଏକ ରଚନା ବୋଲି

କବି ସୂଚାଉଛନ୍ତି । ମୂଳର କବି ବାଲ୍ମୀକି ବୋଲି କୁହାଯାଇଥିବା ହେତୁରୁ ତଥା ସ୍ଥଳ ବିଶେଷରେ ତାକୁ ଅର୍ଥ କରି ବୁଝାଇବା ଆବଶ୍ୟକ ହେଉଥିଲା ବୋଲି ଉକ୍ତ ହୋଇଥିବା ହେତୁରୁ ମୂଳଟି ସଂସ୍କୃତ ଭାଷାର ବିଭିନ୍ନ ରାଗରାଗିଣୀ ଦେଇ ଗାନ କରାଯାଇ ପାରିବା ଏକ ଗ୍ରନ୍ଥ ବୋଲି ଧାରଣା ସିଦ୍ଧେଶ୍ୱର ଦେଉଛନ୍ତି । ସଂସ୍କୃତ ବାଲ୍ମୀକି ରାମାୟଣକୁ ଲବକୁଶ ବୀଣାବାଦନ ସହ ବିଭିନ୍ନ ରାଗରେ ସଂଗୀତ ରୂପେ ଗାଉଥିବା କଥା କଥିତ ହୁଏ । ଏଠାରେ ମଧ୍ୟ ସ୍ମରଣ କରାଯାଇପାରେ ଯେ ତେଲୁଗୁ ବିଚିତ୍ର ରାମାୟଣମୁର କବି ନରସିଂହ ଦେବର ବେଙ୍କଟଶାସ୍ତ୍ରୀ ମଧ୍ୟ ମୂଳ ବିଚିତ୍ର ରାମାୟଣଟି ନାଗରକ୍ଷରରେ ଲିଖିତ– ଅର୍ଥାତ୍ ସଂସ୍କୃତବୋଲି ଜଣାଇଛନ୍ତି । ବେଙ୍କଟଶାସ୍ତ୍ରୀଙ୍କ ବର୍ଣ୍ଣନା ଅନୁସାରେ ତପସ୍ୟାରତ ସିଦ୍ଧେଶ୍ୱରଙ୍କ ପ୍ରତି ପ୍ରସନ୍ନ ହୋଇ ଯଜ୍ଞଦତ୍ତ (ଅର୍ଥାତ୍ ଅନାମିତ କୌଣସି ବ୍ୟକ୍ତି) ନାଗରୀ ଲିପିରେ ଲିଖିତ ବିଚିତ୍ର ରାମାୟଣ ପୋଥି ଦେଇଥିଲେ, ଯାହାକୁ ସିଦ୍ଧେଶ୍ୱର ଓଡ୍ର ଭାଷାରେ ରୂପାୟିତ କଲେ । ସଂସ୍କୃତ ଭାଷାରେ ବିଚିତ୍ର ରାମାୟଣ ନାମଧେୟ କୌଣସି ଗ୍ରନ୍ଥ ଥିବା ଜଣାଯାଏ ନାହିଁ । ଗୋଟିଏ ଅଦ୍ଭୁତ ରାମାୟଣ ରହିଛି, କିନ୍ତୁ ତାହାର ଚରିତ ଓଡ଼ିଆ ବିଚିତ୍ର ରାମାୟଣଠାରୁ ଭିନ୍ନ । ତେଣୁ ଓଡ଼ିଆ ବିଚିତ୍ର ରାମାୟଣକୁ, ସିଦ୍ଧେଶ୍ୱର ଦାସ ଓ ନରସିଂହ ଦେବରା ବେଙ୍କଟଶାସ୍ତ୍ରୀଙ୍କ ଉକ୍ତି ସତ୍ତ୍ୱେ, କୌଣସି ସଂସ୍କୃତ ଗ୍ରନ୍ଥର ଓଡ଼ିଆ ରୂପାନ୍ତର ବୋଲି କୁହାଯାଇପାରୁନାହିଁ । ଓଡ଼ିଆରେ ମୌଳିକ ପୁରାଣ ରଚନାର ପରଂପରା ରହିଛି । ସଂସ୍କୃତ ସାହିତ୍ୟର ପରଂପରା ଅନୁସାରେ ରାମାୟଣ ଓ ମହାଭାରତ ମହାକାବ୍ୟ, ତାହା ପୁରାଣ ନୁହେଁ । କିନ୍ତୁ ଓଡ଼ିଶାର ପରଂପରା ଅନୁସାରେ ଏଗୁଡ଼ିକ ମଧ୍ୟ ପୁରାଣ । ସାରଳାଦାସଙ୍କ ଜାତିସ୍ମରଣ ଓ ଦୈବୀପ୍ରସାଦ ଆଲୋଚନା ପ୍ରସଙ୍ଗରେ ସାରଳାଦାସ ମହାଭାରତକୁ ମଧ୍ୟ ପୁରାଣ ଭାବରେ ଗଣନା କରିଥିବା ବିଷୟର ଚର୍ଚ୍ଚା ହୋଇଛି ଓ ଓଡ଼ିଆର ମୌଳିକ ପୁରାଣର ବିଶେଷତ୍ୱ ସୂଚାଇ ଦିଆଯାଇଚି । ସିଦ୍ଧେଶ୍ୱର ଦାସ ଲବକୁଶ ବାଲ୍ମୀକିଙ୍କଠାରୁ ଶିକ୍ଷାକରି ପରିବେଷଣ କରିଥିବା ବିଚିତ୍ର ରାମାୟଣକୁ ପୁରାଣ ବୋଲି ଚିହ୍ନାଇଛନ୍ତି । ଲବକୁଶ ରାମାୟଣ ଶିକ୍ଷାପରେ ଗୁରୁ ବାଲ୍ମୀକିଙ୍କୁ କହିଛନ୍ତି :—

ତୁମର ପ୍ରସାଦେ ଗ୍ୟାଂନବନ୍ତ ହୋଇଲୁ ।
ରାମାୟେଣ ପୁରାଣ ଗର୍ଭଗତ କଲୁ ॥ (ପୃ. ୬୪)

ଏହି ପ୍ରକାରେ ସାରଳାଦାସଙ୍କ ଦ୍ୱାରା ରଚିତ ମହାଭାରତ ଓ ଚଣ୍ଡୀପୁରାଣ ପରି ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ ମଧ୍ୟ ଏକ ମୌଳିକ ଓଡ଼ିଆ ପୁରାଣ ।

ଅଯୋଧ୍ୟାର ପୁରାଣସଭାରେ ଲବକୁଶଙ୍କ ଦ୍ୱାରା ରାମାୟଣ ପରିବେଷଣ ମଧ୍ୟରେ ସିଦ୍ଧେଶ୍ୱର ଋଷ୍ୟଶୃଙ୍ଗ ଉପାଖ୍ୟାନଠାରୁ ରାବଣବଧ ପରେ ରାମାଦିଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ସୀତାଙ୍କ ନିର୍ବାସନ ପର୍ଯ୍ୟନ୍ତ ରାମ ଚରିତକୁ କ୍ରମଶଃ ପ୍ରକାଶ କରିଛନ୍ତି । ଗୋଟିଏ କାହାଣୀର ସଂପୁଟ ମଧ୍ୟରେ ଅନ୍ୟ ଏକ କାହାଣୀକୁ ସାଇତି ରଖିବାର କାବ୍ୟିକ

କୌଶଳ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିରଳତଃ ଦୃଷ୍ଟିଗୋଚର ହୁଏ । ଆନୁମାନିକ ସପ୍ତଦଶ ଶତାବ୍ଦୀର କବି ଶିଶୁ ଈଶ୍ୱର ଦାସଙ୍କ 'ନଳ ରାମ୍ ଚରିତ' (ନାମାନ୍ତର ନଳରାଜ ଚରିତ)ରେ ଅନୁରୂପ କଥାଶିଳ୍ପ ଦୃଷ୍ଟ ହୁଏ । ଏ କୌଶଳଟି ସଂସ୍କୃତ ସାହିତ୍ୟରେ ବହୁ ପୂର୍ବରୁ ରହିଆସିଛି । ପଞ୍ଚତନ୍ତ୍ରର ଗଳ୍ପଗୁଡ଼ିକ ଏହି ସୂତ୍ରରେ ଗୁନ୍ଥା । ବାଲ୍ମୀକି ରାମାୟଣ ମଧ୍ୟ ଅଯୋଧ୍ୟାର ଅଶ୍ୱମେଧ ଯଜ୍ଞ ସଭାରେ ଲବକୁଶଙ୍କ ଦ୍ୱାରା ଗୀତ ହୋଇଥିବା ଭଳି ବ୍ୟକ୍ତ ହୋଇଛି ।

ବିଚିତ୍ର ରାମାୟଣରେ ରାମଚରିତର ବର୍ଣ୍ଣନାକୁ କବି ପୁଷ୍କଳ ନକରି ସଂକ୍ଷିପ୍ତ ଭାବରେ ପ୍ରକାଶ କରିଛନ୍ତି । ଏଥିରେ ସୀତାଙ୍କ ନିର୍ବାସନ, ଲବକୁଶ ଜନ୍ମ ଓ ସେମାନଙ୍କ ରାମାୟଣ ଶିକ୍ଷା ଆଦି ଉତ୍ତର କାଣ୍ଡର ଚରିତ ଅପେକ୍ଷାକୃତ ଦୀର୍ଘ । ଗ୍ରନ୍ଥର ପ୍ରାୟ ଅର୍ଦ୍ଧାଂଶରେ ସୀତାଙ୍କ ବନଗମନ ପରବର୍ତ୍ତୀ ଚରିତ ବର୍ଣ୍ଣିତ ହୋଇଛି । କବି ବିଚିତ୍ର ରାମାୟଣକୁ 'ସୀତା ବନବାସ', 'ଲବକୁଶ ଜନ୍ମ' ନାମରେ ମଧ୍ୟ ଚିହ୍ନାଇଛନ୍ତି—

ସୀତାଙ୍କର ବନବାସ ବିଚିତ୍ର ରାମାୟେଣ ।
ଶୁଣନ୍ତେ ମହାପାପ ହୁଅଇ ଦହନ ।। (ପୃ. ୧୭, ଗ୍ରନ୍ଥାରମ୍ଭ)

× ×

ସୀତା ବନବାସ ଶୁଣଇ ଯେବଣ ଜନ ।
ଶତେ ଜନ୍ମ ତାହାକୁ ନୋହିବ ଦୁଃଖମାନ ।। (ପୃ.୪)

× ×

ଲବକୁଶ ଜନ୍ମ ଏ ଅବଶେଷ ଖଣ୍ଡ ।
ପାଣ୍ଡବଙ୍କ ଅଗ୍ରତେ ଯାହା କହିଲେ ମାରକଣ୍ଡ ।।
ଲବକୁଶ ଜନ୍ମ ମୁହିଂ କଲଇ ବଖାଣ ।
ସୁଜନ ଜନ ପ୍ରବୋଧନ ଏ ବିଚିତ୍ର ରାମାୟଣ ।। (ପୃ.୬୯)

× ×

ସିଦ୍ଧେଶ୍ୱର ଦାସ ମୁଂ ରାମାୟଣ ଗ୍ରନ୍ଥ କହିଲି ।
ଲବକୁଶଙ୍କର ଜନ୍ମ ମୁଂ ପ୍ରକାଶ କଲି ।। (ପୃ. ୩୯୬, ଗ୍ରନ୍ଥଶେଷ)

ପୁଣି, ଲବ ପ୍ରଥମ ଦିନ ଏକା ଏକା ଅଯୋଧ୍ୟାର ସଭାରେ ଗାନ କରିଥିବା ଋଷ୍ୟଶୃଙ୍ଗ ଉପାଖ୍ୟାନର ବର୍ଣ୍ଣନା ବିଶେଷ କ୍ଳୃପ୍ତ ନୁହେଁ । କିନ୍ତୁ, ତାହା ପରଦିନ ଲବକୁଶ ଉଭୟେ ମିଳି ଉପସ୍ଥାପନ କରିଥିବା ସମଗ୍ର ରାମାୟଣର ଅବତାରଣା କ୍ଳୃପ୍ତ । କବି ସେଥିରେ ମଧ୍ୟେ ମଧ୍ୟେ ସୂଚାଇଛନ୍ତି ଯେ ଲବକୁଶ ଯାହା ଯାହା ଗାନ କଲେ ତାହାକୁ ପୂର୍ଣ୍ଣଭାବରେ ନ ଲେଖି ସେ ତହିଁର ସାର କଥା ହିଁ ଲେଖୁଛନ୍ତି । ଘଟଣାର ବିଶଦ ବିବରଣ ନ ଦେଇ ସେହି ସଭାରେ ଲବ ପୂରା ବିବରଣ ଦେଇଥିଲେ ବୋଲି କବି ଅନେକ ସ୍ଥଳେ ଜଣାଇଛନ୍ତି ।

ରାବଣର ହନୁମନ୍ତର ଯେବଣ ପ୍ରତିଉତ୍ତର ।
ବିଶେଷ କହଇ ତାହା ଲବ କୁମର ॥ (ପୃ. ୨୪୨)

× × ×

ହନୁମନ୍ତକଇ ହେମବନ୍ତ ଯେତେକ କହିଲା ।
ଲବକୁମର ତାହା ଗୀତରେ ଗାଇଲା । (ପୃ.୨୫୭)

× × ×

ବିଭୀଷେଣ କୁମ୍ଭକର୍ଣ୍ଣର ଯେବଣ ଯେବଣ ସିଦ୍ଧାନ୍ତ ।
ଗୀତେଣ ଗାବନ୍ତ ତାହା ସୀତୟାର ବେନି ସୁତ । (ପୃ. ୨୬୭)

× × ×

ଶ୍ରୀରାମଙ୍କୁ ଲକ୍ଷ୍ମଣ ଯିସ କଥା କହିଲା ।
ସଭାରେ ବସି ତାହା ଲବକୁମର ଗାଇଲା ॥ (ପୃ. ୨୭୭)

କବି ଦଶରଥଙ୍କର ମୃତ୍ୟୁଠାରୁ ସୀତାଙ୍କ ଅଶୋକବନରେ ଅବସ୍ଥାନ ପର୍ଯ୍ୟନ୍ତ ବିଷୟକୁ ମାତ୍ର ଚାରୋଟି ପତ୍ରରେ ସାରିଦେଇଛନ୍ତି ଅଥଚ ଏକା ଋଷ୍ୟଶୃଙ୍ଗ ଆଖ୍ୟାନର ବର୍ଣ୍ଣନା କରିବାକୁ ୪୦ଟି ପତ୍ର ନେଇଛନ୍ତି ।

ବିଚିତ୍ର ରାମାୟଣର କାହାଣୀଟି ବାଲ୍ମୀକି ରାମାୟଣଠାରୁ ଅନେକ କଥାରେ ଭିନ୍ନ ହୋଇଛି । ରାମଚରିତ ବର୍ଣ୍ଣନା କରୁଥିବା ଗ୍ରନ୍ଥଗୁଡ଼ିକ ମଧ୍ୟରେ ବାଲ୍ମୀକି ରାମାୟଣ ପ୍ରାମାଣିକ ବୋଲି ସାଧାରଣତଃ ବିବେଚିତ ହେଉଥିଲେ ମଧ୍ୟ ତାହା ଏକମାତ୍ର ରାମଚରିତ ଗ୍ରନ୍ଥ ନୁହେଁ । ଭାରତରେ ତଥା ଭାରତ ବାହାରେ, ବିଶେଷତଃ ସୁଦୂର ପ୍ରାଚ୍ୟଦେଶଗୁଡ଼ିକରେ (ଯଥା ବ୍ରହ୍ମଦେଶରେ, ସିଂହଳରେ, ନେପାଳରେ, ତିବ୍ବତରେ, ଇଣ୍ଡୋନେସିଆରେ) ରାମଚରିତର ଅଲଗା ଅଲଗା ରୂପ ଚିତ୍ରଣ କରୁଥିବା ରାଶି ରାଶି ଗ୍ରନ୍ଥ ସଂସ୍କୃତ, ପ୍ରାକୃତ, ଅପଭ୍ରଂଶ ଓ ଅନ୍ୟାନ୍ୟ ଅନେକାନେକ ଭାଷାରେ ଲିଖିତ ହୋଇଥିବା ଜଣାଯାଏ । ଅଦ୍ୟାବଧି ଏକମାତ୍ର ସଂସ୍କୃତ ଭାଷାରେ ପ୍ରଣୀତ ଶତାଧିକ ରାମାୟଣର ସନ୍ଧାନ ମିଳିଲାଣି । ଅନ୍ୟାନ୍ୟ ଭାଷାରେ ରାମାୟଣର ସଂଖ୍ୟା କିଛି ଊଣା ନୁହେଁ । ଓଡ଼ିଆ ଭାଷାରେ ମଧ୍ୟ ଯେ ରାମଚରିତ ବର୍ଣ୍ଣନା କରୁଥିବା ଗ୍ରନ୍ଥ ସଂଖ୍ୟାରେ ଶତାଧିକ ତାହାର ସୂଚନା ଶ୍ରୀ ନୀଳମଣି ମିଶ୍ରଙ୍କ 'ଓଡ଼ିଆ ରାମ ସାହିତ୍ୟ' ପୁସ୍ତକରୁ ମିଳି ପାରିବ । ଇତିହାସର ବିଭିନ୍ନ ଯୁଗରେ ବିଭିନ୍ନ ଦେଶରେ ବିଭିନ୍ନ ମତାବଲମ୍ବୀ ବିଭିନ୍ନ ଭାଷାଭାଷୀ ଲୋକେ ବିଭିନ୍ନ ଦୃଷ୍ଟିଭଙ୍ଗୀ ନେଇ ରାମଚରିତ ରଚନା କରିଥିବା ହେତୁରୁ ଗ୍ରନ୍ଥ ମଧ୍ୟରେ ଚରିତଗତ ତଥା ଘଟନାଗତ ବିଭିନ୍ନତା ଦେଖାଦେବା ଅବଶ୍ୟ ସ୍ୱାଭାବିକ କଥା । ଏପରି ରାମାୟଣ ବି ଅଛି ଯେଉଁଠି ସୀତା ରାମଙ୍କ ଭଉଣୀ (ଦଶରଥ ଜାତକ ଦ୍ରଷ୍ଟବ୍ୟ) । ଜନକଙ୍କ ଝିଅ ହେବାରୁ ସେ ଭଉଣୀ ବୋଲି ଆଖ୍ୟାତ ହୋଇଥାଇ

ପାରନ୍ତି (ପରିହାସରେ) । ସେ ସେଠାରେ ବୈଦିକ ଯମଯମୀ ଆଖ୍ୟାନର ଯମୀ ପରି କି ଓଡ଼ିଶାର ଜଗନ୍ନାଥଙ୍କ ଭଉଣୀ ସୁଭଦ୍ରା ପରି "ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା" । ଅଥଚ କାଶ୍ମୀରର ଏକ ରାମାୟଣରେ ସୀତା ରାବଣର କନ୍ୟା । ଓଡ଼ିଶାରେ ସର୍ବାଧିକ ଲୋକପ୍ରିୟତା ଅର୍ଜନ କରିଥିବା ବଳରାମ ଦାସଙ୍କ ଦାଣ୍ଡି ରାମାୟଣରେ ରାମଚରିତଟି ଠାଏଁ ଠାଏଁ ପରିବର୍ତ୍ତିତ ରୂପ ନେଇଥିବା କଥା ଜଣାଶୁଣା । ଏପରି ଚରିତଗତ ପାର୍ଥକ୍ୟ ବଳରାମ ଦାସଙ୍କ ରାମାୟଣ ତୁଳନାରେ ବିଚିତ୍ର ରାମାୟଣରେ ଯେ ଖୁବ୍ ବେଶି, ଏହା ସୀତା ବାଲ୍ମୀକି ଆଶ୍ରମରେ ନିର୍ବାସନ କାଳ କଟାଇବା ବର୍ଣ୍ଣନା ସ୍ଥଳେ ସ୍ୱାମୀ ଛାଡ଼ି ଦେଇଥିବା ନିରାଶ୍ରୟା ଓଡ଼ିଆଣୀ ପରି ଶେଷକୁ ପିଲା ଦିଇଟାକୁ ଧରି ବାପାଘରେ ହୀନିମାନୀ ହୋଇ କାଳ କାଟିବା ବର୍ଣ୍ଣନାରୁ ଅନୁମେୟ । ବିଚିତ୍ର ରାମାୟଣରେ ରାମଚରିତର ପରିବର୍ତ୍ତନ ଛତ୍ରେ ଛତ୍ରେ । ତାହାର ତୁଳନୀୟ କେବଳ ସାରଳାଦାସଙ୍କ ମହାଭାରତରେ ବ୍ୟାସକୃତ ମହାଭାରତ ଚରିତର ପରିବର୍ତ୍ତନ । ଉଦାହରଣ ସ୍ୱରୂପ ନିମ୍ନରେ ରାମ, ସୀତା ଓ ହନୁମାନଙ୍କ ଜନ୍ମ ପ୍ରସଙ୍ଗ ମାତ୍ର ବିଚିତ୍ର ରାମାୟଣ ଅନୁସାରେ ଉଲ୍ଲେଖ କରି ବାଲ୍ମୀକି ରାମାୟଣଠାରୁ ତାହାର ପାର୍ଥକ୍ୟ ସୂଚାଉଛି । ଏହି ପ୍ରବନ୍ଧର ଶେଷ ଭାଗରେ ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ଦୁଇଜଣ କବି କି ଜଣେ କବିଙ୍କର ଦୁଇଟି ନାମ, ଏହି ପ୍ରଶ୍ନର ସମାଧାନରେ ସହାୟକ ହେବ ବୋଲି ତୁଳନାତ୍ମକ ଭାବରେ ସାରଳାଦାସ ତାଙ୍କ ମହାଭାରତରେ ଉଲ୍ଲେଖ କରିଥିବା ରାମଚରିତକୁ ମଧ୍ୟ ଉପସ୍ଥାପନ କରୁଛି ।

**ରାମ ଜନ୍ମ**

ଦଶରଥ ଥରେ ସ୍ୱର୍ଗକୁ ଯାଇଥିବାବେଳେ ଗୋମାତାଙ୍କୁ ପ୍ରଣାମ ନ କରିବାରୁ ଗୋମାତା ରୁଷ୍ଟ ହୋଇ ଦଶରଥ ଅପୁତ୍ରିକ ହେବେ ବୋଲି ଶାପ ଦେଲେ । ତେଣୁ ଦଶରଥ ବୃଦ୍ଧ ହେବା ପର୍ଯ୍ୟନ୍ତ ଅପୁତ୍ରିକ ହୋଇ ରହିଲେ । ଦଶରଥଙ୍କର ଏକମାତ୍ର କନ୍ୟା ଶାନ୍ତାର ସ୍ୱୟମ୍ବର ବେଳେ ପରଶୁରାମ ଆସିବାରୁ ରାଜାମାନେ ଭାଗି ପଳାଇଲେ ଓ ପରଶୁରାମଙ୍କ ଭୟରେ ଶାନ୍ତାଙ୍କୁ ବର ଜୁଟିଲେ ନାହିଁ । ଶାନ୍ତାକୁ ନେଇ ରାଜା ଲୋମପାଦ ପାଳିଲେ । ଲୋମପାଦଙ୍କ ରାଜ୍ୟରେ ବାରବର୍ଷ ଅନାବୃଷ୍ଟି ହେଲା । ବର୍ଷା ହେବା ପାଇଁ ଲୋମପାଦ ବେଶ୍ୟା ଜରତାକୋଷାକୁ ନିଯୁକ୍ତ କରି ଋଷ୍ୟଶୃଙ୍ଗଙ୍କୁ କାମାସକ୍ତ କରାଇ ରାଜ୍ୟକୁ ଆଣିଲେ । ବର୍ଷା ହେଲା । ଋଷ୍ୟଶୃଙ୍ଗଙ୍କ ବିବାହ ଶାନ୍ତା ସହିତ ହେଲା । ବିବାହ ପରେ ଦଶରଥ ଋଷ୍ୟଶୃଙ୍ଗଙ୍କୁ ଅନୁରୋଧ କଲେ ପୁତ୍ରେଷ୍ଟି ଯାଗରେ ପୁରୋଧା ହେବା ଲାଗି । ଋଷ୍ୟଶୃଙ୍ଗ ସମ୍ମତି ଦେବାରୁ ଦଶରଥ ଝିଅ-ଜୁଆଇଁଙ୍କୁ ଧରି ଅଯୋଧ୍ୟାକୁ ଗଲେ । ଅଯୋଧ୍ୟାରେ ଯାଗର ଆୟୋଜନ କଲାବେଳକୁ ପରଶୁରାମ ହାବୁଡ଼ିଗଲେ । ଦଶରଥ ପୁତ୍ରଲାଭ ଉଦ୍ଦେଶ୍ୟରେ ଯାଗ କରୁଥିବା ଶୁଣି ପରଶୁରାମ ଅଯୋଧ୍ୟାରେ

ଯାଗ ନକରି କୃଷ୍ଣବେଣୀ ନଦୀ ତୀରସ୍ଥ ଅନନ୍ତଶୟନଙ୍କ ନିକଟରେ* ଯାଗ କରିବାକୁ ପରାମର୍ଶ ଦେଲେ । ପରଶୁରାମ କହିଲେ ଯେ ଅଯୋଧ୍ୟାରେ ୨୪ ଜଣ ଡାକିନୀ ଅଛନ୍ତି । ସେମାନେ ଗର୍ଭସ୍ଥ ଭ୍ରୂଣ ଖାଇଯାଉଛନ୍ତି । ଦଶରଥଙ୍କ ତିନି ପାଟରାଣୀ ଓ ୨୧୦୦ ରାଣୀ । ପାଟରାଣୀମାନେ ସହୋଦର ଭଉଣୀ । ଦଶରଥ, ତିନି ପାଟରାଣୀ, ଋଷ୍ୟଶୃଙ୍ଗ ଓ ବସିଷ୍ଠାଦି ସମସ୍ତେ କୃଷ୍ଣବେଣୀ ତୀରକୁ ଗଲେ । ସେଠାର ଶବରରାଜା ମଧ୍ୟ ଅପୁତ୍ରିକ ଥିଲେ । ସେ ଯଜ୍ଞଶାଳାକୁ ଜଗିଲେ । ତାଙ୍କ ଭୟରେ ଅଯୋଧ୍ୟାରୁ ଗୋଡ଼ାଇ ଯାଇଥିବା ୨୪ ଜଣ ଡାକିନୀ ଯଜ୍ଞଶାଳା ମଧ୍ୟକୁ ପଶି ପାରିଲେ ନାହିଁ । ଯଜ୍ଞର ଧୂମ ଆଘ୍ରାଣ କରିବାରୁ ଶବର ରାଜାଙ୍କ ରାଣୀ ଗର୍ଭବତୀ ହେଲେ ଓ ଶବରୀନାରାୟଣ ଜାତ ହେଲେ । ଡାକିନୀ ୨୪ ଜଣ ମଧ୍ୟ ଯଜ୍ଞଧୂମ ଆଘ୍ରାଣ କରିବାରୁ ଗର୍ଭବତୀ ହେଲେ ଓ ବାନରମାନଙ୍କୁ ଜାତ କଲେ । ଏହି ବାନରମାନେ ବଳିଷ୍ଠ ହୋଇ ରାମ-ରାବଣ ଯୁଦ୍ଧରେ ରାମଙ୍କ ପକ୍ଷର ଯୂଥପତି ହୋଇଥିଲେ । ଯଜ୍ଞର ଅନଳରୁ ବାହାରିବା ଚରୁକୁ ପାଇ ଦଶରଥଙ୍କ ତିନି ପାଟରାଣୀ ରାମାଦି ଚାରି ପୁତ୍ରଙ୍କୁ ଜାତ କଲେ । ଏହା ବିଚିତ୍ର ରାମାୟଣର ବର୍ଣ୍ଣନା ।

ବାଲ୍ମୀକି ରାମାୟଣରେ ଗୋମାତାଙ୍କ ଶାପ ପ୍ରସଙ୍ଗ କିମ୍ବା ଶାନ୍ତାଙ୍କ ସ୍ୱୟଂବର ସଭାକୁ ପରଶୁରାମ ଭାଙ୍ଗିବା ବିଷୟ ନାହିଁ । ସେଥିରେ ଋଷ୍ୟଶୃଙ୍ଗ ବିବାହ ପରେ ଅଯୋଧ୍ୟାକୁ ଆସି ଅଯୋଧ୍ୟାରେ ଦୁଇଟି ଯାଗ କରାଇବା ବିଷୟ ବର୍ଣ୍ଣିତ ହୋଇଛି, ପ୍ରଥମେ ଅଶ୍ୱମେଧ ଯାଗ ଓ ପରେ ପୁତ୍ରେଷ୍ଟି ଯାଗ । ସେଠାରେ ଜରତାକୋଷା ନାମ ନାହିଁ କି ଦଶରଥଙ୍କ ତିନି ରାଣୀ ଛଡ଼ା ୨୧୦୦ ରାଣୀ ଥିବା ଲେଖା ହୋଇନାହିଁ । ପରଶୁରାମଙ୍କ ପରାମର୍ଶ, କୃଷ୍ଣବେଣୀ ତୀରକୁ ଯାତ୍ରା, ଶବରୀନାରାୟଣଙ୍କ ଜନ୍ମ, ଡାକିନୀମାନଙ୍କର ଭ୍ରୂଣ ଭକ୍ଷଣ ଓ ଡାକିନୀମାନଙ୍କ ଗର୍ଭରୁ ଯୂଥପତି ବାନରମାନଙ୍କ ଜନ୍ମ ବିଷୟ ବାଲ୍ମୀକି ରାମାୟଣରେ ନାହିଁ ।

ସାରଳାଦାସ ବନପର୍ବରେ ଗୋମାତା କପିଳାଙ୍କର ଦଶରଥଙ୍କ ପ୍ରତି ଅପୁତ୍ରିକ ହେବା ପାଇଁ ଦେବା ଶାପ ଓ ଦଶରଥଙ୍କ ଦୀର୍ଘକାଳ ବ୍ୟାପୀ ନିଷ୍ଠାପର ସେବାରେ ସନ୍ତୁଷ୍ଟ ହୋଇ ତାଙ୍କର ଚାରି ପୁଅ ଜାତ ହେବେ ବୋଲି ବର ଦେବା ବିଷୟରେ ଯେଉଁ ସୁନ୍ଦର ଆଖ୍ୟାନ ଦେଇଛନ୍ତି ତାହା ସିଦ୍ଧେଶ୍ୱର ଦାସଙ୍କ କଳ୍ପନାଠାରୁ ଅଧିକ ପରିପୁଷ୍ଟ । ସାରଳାଦାସ ଲେଖିଥିବା ଆଖ୍ୟାନଟି ଅଧିକ ଉନ୍ନତ ହୋଇଥିବା ହେତୁ ବିଚିତ୍ର ରାମାୟଣର କଳ୍ପନାଟି

---

* ପ୍ରସିଦ୍ଧ ଅନନ୍ତଶୟନଙ୍କ ପୀଠ ତିରୁଅନନ୍ତପୁରମ୍ (ପ୍ରାଚୀନ ତ୍ରିବନ୍ଦ୍ରମ୍) । କୃଷ୍ଣବେଣୀ ବା କୃଷ୍ଣାନଦୀ ତୀରରେ ଅନ୍ୟ କୌଣସି ଅନନ୍ତଶୟନ ପୀଠ ଥିବା ଜଣାନାହିଁ । ସାରଳାଦାସ ମଧ୍ୟ ସଭାପର୍ବରେ ନକୁଳଙ୍କ ଯାତ୍ରାପଥରେ କୃଷ୍ଣବେଣୀ ତଟରେ ଅନନ୍ତଶୟନ ଥିବା କଥା ଲେଖିଛନ୍ତି ।

ବନପର୍ବର ରଚନାର ପରବର୍ତ୍ତୀ ସମୟର ହେବା ସମ୍ଭବ ଜଣାପଡୁନାହିଁ । ପରଶୁରାମଙ୍କ ଭୟରେ ଦଶରଥ ଶାନ୍ତାଙ୍କୁ ବିବାହ ଦେଇ ପାରୁନଥିବା କଥା ମଧ୍ୟ ବନ ପର୍ବରେ ରହିଛି । ସାରଳାଦାସ ଜରତାକୋଷା ନାମ ଦେଇଛନ୍ତି ଓ ଦଶରଥଙ୍କର ତିନି ପାଟରାଣୀ ଶତ ଶତ ସଂଖ୍ୟକ (୨ ବନ ୧୯୪ରେ ୨୧ କୋଟି) ଅନ୍ୟ ରାଣୀ ଥିବା କଥା ଲେଖିଛନ୍ତି । କିନ୍ତୁ ପରଶୁରାମଙ୍କ ପରାମର୍ଶ, କୃଷ୍ଣବେଣୀ ତୀରକୁ ଯାତ୍ରା, ସେଠାରେ ଶବରରାଜାଙ୍କ ପୁତ୍ର ଭାବରେ ଶବରୀନାରାୟଣଙ୍କ ଜନ୍ମ, ଡାକିନୀମାନଙ୍କ ଭ୍ରୂଣଭକ୍ଷଣ ଓ ଡାକିନୀମାନଙ୍କ ଗର୍ଭରୁ ବାନର ଯୂଥପତିମାନଙ୍କ ଜନ୍ମ ବିଷୟ ସାରଳାଦାସ ମଧ୍ୟ ଲେଖିନାହାନ୍ତି ।

### ସୀତା ଜନ୍ମ

ବିଚିତ୍ର ରାମାୟଣ ଅନୁସାରେ ମହାଯତି ବେଦପାଠ କରି ଯଜ୍ଞରୁ ଗୋଟିଏ ଅପରୂପା କନ୍ୟାକୁ ଜାତ କରାଇ ତାହାକୁ ବେଦମତୀ ନାମ ଦେଲେ । ବେଦମତୀ ଜଗନ୍ନାଥ (ବିଷ୍ଣୁ)ଙ୍କୁ ପତି ରୂପେ ପାଇବା ପାଇଁ ଗଙ୍ଗାତୀରରେ ତପସ୍ୟା କଲେ । ରାବଣ ଉତ୍ତର ଦିଗ୍‌ବିଜୟ କରି ଯିବା ବାଟରେ ବେଦମତୀଙ୍କୁ ବଳାତ୍କାର ରମଣ କରି ଚାଲିଗଲା । ବେଦମତୀ ଧର୍ଷଣ ଯୋଗୁଁ କ୍ଷୁଭିତା ହୋଇ ରାବଣର ମୃତ୍ୟୁର କାରଣ ହେବି ବୋଲି ସଂକଳ୍ପ କରି ଅଗ୍ନିରେ ଆତ୍ମାହୁତି ଦେଲେ । ସେତିକିବେଳକୁ ରାବଣ ଦିଗ୍‌ବିଜୟରୁ ବାହୁଡୁଥାଏ । ବେଦମତୀଙ୍କର ଦରପୋଡ଼ା ଦେହଟିକୁ ଲଙ୍କାକୁ ନେଇ ରାବଣ ମନ୍ଦୋଦରୀକୁ ଦେଲା ଗୋପନରେ ତାହାକୁ ତରକାରି ରାନ୍ଧି ତାକୁ ଖାଇବାକୁ ଦେବା ପାଇଁ । ରାବଣ ଏପରି କହି ଚାଲିଯିବା ପରେ ନାରଦ ବ୍ରହ୍ମାଙ୍କ ଦ୍ୱାରା ପ୍ରେରିତ ହୋଇ ମନ୍ଦୋଦରୀ ନିକଟରେ ଉପସ୍ଥିତ ହେଲେ । ନାରଦ ମନ୍ଦୋଦରୀକୁ ବୁଝାଇଲେ ଯେ ସେ ଯେଉଁଥିପାଇଁ ରାବଣର ରାଣୀ ହୋଇଛି ତାହା ସଂପାଦନ କରିବା ସମୟ ବର୍ତ୍ତମାନ ଉପସ୍ଥିତ । ରାବଣ ଖାଇବି ବୋଲି ଆଣିଥିବା ମୃତ ଶରୀରଟିକୁ ନ ରାନ୍ଧି ଯତ୍ନ ସହକାରେ ସାଇତି ରଖିବାକୁ ପରାମର୍ଶ ଦେଇ ନାରଦ ଚାଲିଗଲେ । ମନ୍ଦୋଦରୀ ପିଣ୍ଡଟିକୁ ଏକ ଘଟ ମଧ୍ୟରେ ରଖି ଅନ୍ୟ ମାଂସ ରାନ୍ଧି ରାବଣକୁ ଭଣ୍ଡାଇଦେଲା । କିଛି ଦିନ ପରେ ନାରଦ ପୁନରାୟ ଆସି ପିଣ୍ଡଟିର ଅବସ୍ଥା ଦେଖିବାକୁ ମନ୍ଦୋଦରୀକୁ କହିଲେ । ଦେଖିଲା ବେଳକୁ ଘଟ ମଧ୍ୟସ୍ଥ ପିଣ୍ଡ ଏକ ଦିବ୍ୟ ସୁନ୍ଦରୀ କୁମାରୀ ହୋଇଛି । ଏହି କୁମାରୀକୁ ଦେଖିଲେ ରାବଣ ବଳପ୍ରୟୋଗ କରି ବିବାହ କରିବ ବୋଲି ଆଶଙ୍କା କରି ମନ୍ଦୋଦରୀ, ନାରଦଙ୍କ ପରାମର୍ଶ କ୍ରମେ, କୁମାରୀକୁ ଏକ ସିନ୍ଦୁକରେ ପୂରାଇ ସମୁଦ୍ରଜଳରେ ଭସାଇ ଦେଲା । ସିନ୍ଦୁକଟି ଭାସି ଭାସି ରାଜା ଜନକଙ୍କର ବଇଦେହୀମଣ୍ଡଳରେ ଯାଇ ଲାଗିଲା ଓ ତାହା ଉପରେ ବାଲି ମାଡ଼ିଗଲା । ଜନକଙ୍କର ପୁତ୍ରକନ୍ୟା ନଥିବାରୁ ସେ ଯାଗ କରିବା ପାଇଁ ଭୂମି ପ୍ରସ୍ତୁତ କରୁଥିଲେ । ସେହି ସମୟରେ ଏକ ଦିବ୍ୟ କନ୍ୟା ଆକାଶରେ ଉଡ଼ିଯାଉଥିବା ଦେଖି ଜନକ ସେହିପରି ଏକ କନ୍ୟା ହେଉ ବୋଲି କାମନା କଲେ । ସେହି ଦିବ୍ୟ କନ୍ୟା ଜନକଙ୍କୁ ଜଣାଇଲା ଯେ ସେଠାରେ

ଭୂମି କର୍ଷଣ କଲେ ସର୍ବଶ୍ରେଷ୍ଠ କନ୍ୟାରତ୍ନ ଲାଭ ହେବ । ଜନକ ସେ କହିବା ପ୍ରକାରେ ଭୂମି ଚଷିବାରୁ ସିନ୍ଦୁକଟି ବାଲି ତଳୁ ବାହାରିଲା । ସିନ୍ଦୁକ ଭିତରର କୁମାରୀଙ୍କୁ ଜନକ ସୀତା ନାମ ଦେଇ ଲାଳନପାଳନ କଲେ ।

ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡରେ ବୃହସ୍ପତି ପୁତ୍ର କୁଶଧ୍ୱଜଙ୍କ କନ୍ୟା ବେଦବତୀ ବିଷ୍ଣୁଙ୍କୁ ପତି ରୂପେ ପାଇବା ପାଇଁ ହିମାଳୟରେ ତପସ୍ୟା କରୁଥିବା ସମୟରେ ରାବଣ ତାଙ୍କ ଧର୍ଷଣ କରିଥିବା କଥା ବର୍ଣ୍ଣିତ ହୋଇଛି । ଏହି ବେଦବତୀ ଅଯୋନିଜନ୍ମା ହୋଇ ରାବଣର ବଧର କାରଣ ହେବା ସଂକଳ୍ପ କରି ନିଜକୁ ଅଗ୍ନିରେ ଦାହ କରିଥିବା କଥା ମଧ୍ୟ ତହିଁରେ ରହିଛି । କିନ୍ତୁ, ଦରପୋଡ଼ା ପିଣ୍ଡରୁ ସୀତା ଜନ୍ମ ହେବା ନେଇ ଯେଉଁ ଆଖ୍ୟାନ ବିଚିତ୍ର ରାମାୟଣରେ ରହିଛି, ତାହା ବାଲ୍ମୀକି ରାମାୟଣରେ ନାହିଁ । କେବଳ ଯଜ୍ଞ ପାଇଁ ଭୂମି ଚାଷ କଲାବେଳେ ସୀତା ଭୂମିତଳୁ ମିଳିଥିବା ବର୍ଣ୍ଣନା ବାଲ୍ମୀକି ରାମାୟଣର ବାଳକାଣ୍ଡରେ ରହିଛି । ସଂସ୍କୃତ ଆନନ୍ଦ ରାମାୟଣରେ ବେଦବତୀର ଦେହର ଦଗ୍ଧାଂଶ ଖାଇବାରୁ ମନ୍ଦୋଦରୀ ଗର୍ଭବତୀ ହେବା ଓ ସୀତାଙ୍କୁ ଜନ୍ମ ଦେଇ ସମୁଦ୍ରରେ ଭାସାଇ ଦେବା ବର୍ଣ୍ଣନା ମିଳେ । ଆନନ୍ଦ ରାମାୟଣର ସମୟ ଅନିଶ୍ଚିତ । ସାରଳାଦାସ ସୀତାଙ୍କୁ ବେଦମତୀଙ୍କ ଅବତାର ବୋଲି କହିଛନ୍ତି । କିନ୍ତୁ, ବେଦମତୀଙ୍କ ଦରପୋଡ଼ା ପିଣ୍ଡରୁ ସୀତା ଜନ୍ମଲାଭ କରିଥିବା କଥା ସେ ଲେଖିନାହାନ୍ତି । ସାରଳାଦାସ କୃଷ୍ଣଙ୍କ ଦରପୋଡ଼ା ପିଣ୍ଡକୁ ଅର୍ଜୁନ ସମୁଦ୍ରରେ ଭସାଇ ଦେବା ଓ ସେହି ଦରପୋଡ଼ା ପିଣ୍ଡରୁ ଜଗନ୍ନାଥଙ୍କ ଉଦ୍ଭବ ହେବା ବିଷୟ ଲେଖିଛନ୍ତି । ସିଦ୍ଧେଶ୍ୱର ଦାସଙ୍କ ପରି ସାରଳାଦାସ ମଧ୍ୟ ଜନକଙ୍କ ରାଜ୍ୟର ନାମ ବିଦେହ ବୋଲି ନ ଲେଖି ତାହା ବୈଦେହୀମଣ୍ଡଳ ବୋଲି ଲେଖିଛନ୍ତି ।

## ହନୁମାନ ଜନ୍ମ

ବିଚିତ୍ର ରାମାୟଣରେ ଅହଲ୍ୟା ଉପାଖ୍ୟାନଟି ଏତେଦୂର କ୍ଳୃପ୍ତ ଯେ ସାରଳା ଦାସଙ୍କ ମହାଭାରତ ବର୍ଣ୍ଣିତ ଉପାଖ୍ୟାନ ସହିତ ଅପରିଚିତ ଥିବା ପାଠକ ତାହାକୁ ସହଜରେ ଧରି ପାରିବ ନାହିଁ । ଏଥିରେ କୁହାଯାଇଚି ଯେ ଗୌତମପତ୍ନୀ ସୁନ୍ଦରୀ ଅହଲ୍ୟାଙ୍କୁ ଇନ୍ଦ୍ର ଓ ସୂର୍ଯ୍ୟ ଶଠତା ଆଚରଣ କରି ରମଣ କଲେ । ଦୁହିଁଙ୍କର ବୀର୍ଯ୍ୟରୁ ଅହଲ୍ୟାଙ୍କର ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ଗୌତମ ଏହି ସୁନ୍ଦର ପୁତ୍ର ଦ୍ୱୟଙ୍କୁ ସ୍ନେହ କରିବାରୁ ତାଙ୍କ କନ୍ୟା ଅଞ୍ଜନାର ଈର୍ଷାଜାତ ହେଲା । ତହୁଁ ସେ ଗୌତମଙ୍କୁ ଦୁଇ ପୁତ୍ରଙ୍କ ଜନ୍ମ ରହସ୍ୟ ପ୍ରକାଶ କରିଦେଲା । ଏହା ଶୁଣି ଗୌତମ ଦୁଇ ପୁଅଙ୍କୁ ଜଳକୁ ଫିଙ୍ଗିଦେଲେ ଓ ଅହଲ୍ୟାଙ୍କୁ ଶାପ ଦେଲେ ଭସ୍ମ ପାଲଟି ଯିବାକୁ । ଅହଲ୍ୟା ଶାପ ପାଇବାରୁ ସେ ଅଞ୍ଜନାକୁ ଶାପ ଦେଲେ । ତେଣୁ ଅଞ୍ଜନାଙ୍କ ଗର୍ଭରୁ ପବନ ବୀର୍ଯ୍ୟରେ ହନୁମାନ ଜନ୍ମଲାଭ କଲେ—

ବିଶ୍ୱାମିତ୍ର କହିଲେ ଗୌତମଙ୍କର ଭାବାନୀ ।
ଅହଲ୍ୟା ନାମେଣ ତିନି ଭୁବନ ମୋହିନୀ ।।

ଇନ୍ଦ୍ର ଆଦିତ୍ୟ ତା ରୂପ ଦେଖିଲେ ।
କଇତବ ଚରିତେ ରମଣରଙ୍ଗ କଲେ ।।
ଦୁହିଙ୍କରି ବୀର୍ଯ୍ୟେ ଉପୁଜିଲ ଦୁଇ ପୁତ୍ରେ ।
ବଡ଼ ସଂଜାତ ସ୍ୱରୂପ ତେଜବନ୍ତେ ।।
ସେ ପୁତ୍ରକଇ ଗଉତମ ଶରଧା କରନ୍ତେ ।
ଅଞ୍ଜନା କୁମାରୀ ବହିଲା ରାଗ ଚିତ୍ତେ ।।
ସେ ପୁତ୍ର ମୁନି ଜଳେଣ ପକାଇଲେ ।
ରାଗେ ବ୍ରହ୍ମଋଷି ବିଷାଦ ହୋଇଲେ ।।
ଅହଲ୍ୟାକୁ କୋପେ ଶାପ ଦେଲେ ଗଉତମେ ।
ସେ ଏଥେ ହୋଇଲାକ ପାଷାଣେ/ଭସ୍ମେ ।।

× × ×

ଅହଲ୍ୟା ଶାପ ପାଇବାର କାଳେ ।
ଅଞ୍ଜନାକୁ ଶ୍ୟାପ ଦେଲାକ ସେ ବେଳେ ।।
ଏଣୁ ସେ ଅଞ୍ଜନାକୁ ପବନ ରମଣ କଲ ।
ତାହାର ଗର୍ଭେ ହନୁମନ୍ତ ଉପୁଜିଲା ।। (ପୃ. ୨୧୯-୨୨୦)

ବାଲ୍ମୀକି ରାମାୟଣ ଅନୁଯାୟୀ ପୁଞ୍ଜିକସ୍ଥଳା ନାମକ ଅପ୍ସରା ଶାପବଶତଃ କୁଞ୍ଜର ବାନରଙ୍କ ଝିଅ ଅଞ୍ଜନା ହୋଇ ଜନ୍ମ ଲାଭ କଲେ । ଅଞ୍ଜନା କେଶରୀ କପିଙ୍କୁ ବିବାହ କଲେ । ଅଞ୍ଜନାଙ୍କୁ ପବନ ରମଣ କଲେ । ହନୁମାନ କେଶରୀ କ୍ଷେତ୍ରେ ପବନ ଔରସରୁ ଅଞ୍ଜନାଙ୍କ ପୁତ୍ର । ଅହଲ୍ୟା ଉପାଖ୍ୟାନ ସହିତ ହନୁମାନଙ୍କ ସଂପର୍କ ବାଲ୍ମୀକି ରାମାୟଣରେ ନାହିଁ । ଅହଲ୍ୟା ଉପାଖ୍ୟାନଟି ମଧ୍ୟ ବାଲ୍ମୀକି ରାମାୟଣରେ ଭିନ୍ନ ପ୍ରକାରର । ଅହଲ୍ୟାଙ୍କୁ ସୂର୍ଯ୍ୟ ରମଣ କରିବା କଥା ସେଥିରେ ନାହିଁ । ଗୌତମଙ୍କୁ ଅନୁପସ୍ଥିତିବେଳେ ଋତୁମତୀ ଅହଲ୍ୟାଙ୍କୁ ଇନ୍ଦ୍ର ଗୌତମ ବେଶ ଧରି ସଂଗମ ମାଗିଲେ । ଇନ୍ଦ୍ରଙ୍କ କପଟତା ଜାଣିଲେ ହେଁ ତାଙ୍କ ରୂପରେ ମୋହିତା ହୋଇ ଅହଲ୍ୟା ସମ୍ମତି ଜଣାଇଲେ । ଇନ୍ଦ୍ର ଉଦ୍ଦେଶ୍ୟ ସାଧନ ପରେ ଚାଲିଯିବା ବେଳକୁ ଗୌତମ ଉପସ୍ଥିତ ହୋଇ ଇନ୍ଦ୍ର ଓ ଅହଲ୍ୟା ଉଭୟଙ୍କୁ ଶାପ ଦେଲେ । ବାଲ୍ମୀକି ରାମାୟଣ ଅନୁଯାୟୀ ଅହଲ୍ୟାଙ୍କ ଗର୍ଭରୁ ଗୌତମ ଭିନ୍ନ ଅନ୍ୟ କାହାର ବିର୍ଯ୍ୟଜାତ ସନ୍ତାନ ଜନ୍ମି ନାହାନ୍ତି । ଗୌତମ ଓ ଅହଲ୍ୟାଙ୍କ ଜ୍ୟେଷ୍ଠପୁତ୍ର ଶତାନନ୍ଦ ଜନକଙ୍କ ପୁରୋହିତ ଥିଲେ ।

ସାରଳାଦାସ ବନପର୍ବରେ ଦେଇଥିବା ଅହଲ୍ୟା ଉପାଖ୍ୟାନର ସାମଞ୍ଜସ୍ୟ ବିଚିତ୍ର ରାମାୟଣର ଅହଲ୍ୟା ଉପାଖ୍ୟାନ ସହିତ ରହିଛି । ସାରଳାଦାସଙ୍କ ବର୍ଣ୍ଣନାରେ ଅହଲ୍ୟାଙ୍କୁ

ବିବାହ କରିବାକୁ ଇନ୍ଦ୍ର ଓ ସୂର୍ଯ୍ୟ ମଧ୍ୟ ଅଭିଳାଷୀ ଥିଲେ କିନ୍ତୁ ତାଙ୍କୁ ଗୌତମ ବିବାହ କଲେ । ଗୌତମଙ୍କ ଔରସରୁ ଅହଲ୍ୟାଙ୍କ କନ୍ୟା ଅଞ୍ଜନା । ଗୌତମ ଆଶ୍ରମ ବାହାରକୁ ଗଲାବେଳେ ସୁନ୍ଦରୀ ଅହଲ୍ୟାଙ୍କ ଜୀବଟିକୁ ଧରି ଯାଉଥାନ୍ତି । ଅହଲ୍ୟାଙ୍କ ପିଣ୍ଡଟି ଆଶ୍ରମରେ ପଡ଼ି ରହିଥାଏ ଓ ଅଞ୍ଜନା ତାକୁ ଜଗିଥାଏ । ଗୌତମ ଥରେ ଅହଲ୍ୟାଙ୍କ ଜୀବ ଧରି ପ୍ରୟାଗ ତୀର୍ଥକୁ ଯାଇଥିବାବେଳେ ଆଶ୍ରମକୁ ଇନ୍ଦ୍ର ଓ ସୂର୍ଯ୍ୟ ଆସିଲେ । ତହିଁଆରଦିନ ପିଣ୍ଡରେ ସୂର୍ଯ୍ୟ ପଶିଲେ ଓ ଇନ୍ଦ୍ର ରମଣ କଲେ । ଏହିପରି ଇନ୍ଦ୍ର ଓ ସୂର୍ଯ୍ୟ ଅହଲ୍ୟାଙ୍କୁ କିଛି ଦିନ ଭୋଗ କଲେ । ଦୁହିଁଙ୍କ ବୀର୍ଯ୍ୟରୁ ଅହଲ୍ୟାଙ୍କର ଦୁଇ ପୁତ୍ର ଜନ୍ମିଲେ– ଶ୍ୟାମତିଳା ଓ ଯବତିଳା । ଗୌତମ ଏହାଙ୍କୁ ଆପଣା ଔରସ ପୁତ୍ର ଜ୍ଞାନରେ ସ୍ନେହ କରୁଥାନ୍ତି । ଥରେ ଗୌତମ ଚନ୍ଦ୍ରଭାଗା ସ୍ନାନକୁ ଯାଇଥିଲେ ଦୁଇ ପୁଅ ଓ ଝିଅକୁ ଧରି । ସ୍ନାନ ପରେ ଫେରିବା ବେଳକୁ ପାଞ୍ଚ ବରଷର ଦୁଇ ପୁଅଙ୍କ ପାଦ ତତଲା ବାଲିରେ ପୋଡ଼ିବାରୁ ଗୌତମ ଦୁହିଁଙ୍କୁ କାଖ କଲେ । ଅଞ୍ଜନା ମଧ୍ୟ କାଖ ହେବାକୁ ଅଳିକଲା କିନ୍ତୁ ଝିଅଟିଏ ହୋଇ ପୁଅମାନଙ୍କ ପ୍ରତି ଈର୍ଷା କରୁଛି ବୋଲି କହି ଗୌତମ ତାକୁ ଗାଳି ଦେଲେ । ଅଞ୍ଜନା ରାଗି ଯାଇ କହିଦେଲା ଗୌତମ ପର ପୁଅଙ୍କୁ କାଖେଇ ଆପଣା ଝିଅକୁ ହତାଦର କରୁଛନ୍ତି । ଅଞ୍ଜନାର କଥାର ସତ୍ୟତା ପରୀକ୍ଷା କରିବା ପାଇଁ ଗୌତମ ଦୁଇ ପୁଅଙ୍କୁ ସମୁଦ୍ରକୁ ଫିଙ୍ଗି କହିଲେ "ତୁମେ ମୋ ପୁଅ ହୋଇନଥିଲେ ମାଙ୍କଡ଼ ହେବ ।" ସତକୁ ସତ ଦୁଇ ପୁଅ ମାଙ୍କଡ଼ ହୋଇଗଲେ । ଗୌତମ ତାହାଙ୍କୁ ନେଇ ଶରଦ ରାଜାଙ୍କ ପୁତ୍ର ଖଡ଼ଦଙ୍କୁ ଦେଲେ । ଏ ଦୁହେଁ ହେଲେ ଇନ୍ଦ୍ରପୁତ୍ର ବାଳି ଓ ସୂର୍ଯ୍ୟ-ପୁତ୍ର ସୁଗ୍ରୀବ । ଗୌତମ ଆଶ୍ରମକୁ ଫେରି ଅହଲ୍ୟାଙ୍କୁ ଶାପ ଦେଲେ । ଅହଲ୍ୟା ଅଞ୍ଜନାକୁ ଶାପ ଦେଲେ– 'ତୋ ପୁଅ ମଧ୍ୟ ମାଙ୍କଡ଼ ହେବ' । ତହୁଁ ଅହଲ୍ୟା ପୁରୁଷଙ୍କୁ ଛୁଇଁବେ ନାହିଁ ବୋଲି ପ୍ରତିଜ୍ଞା କରି ତପସ୍ୟା କଲେ । ଥରେ ଶିବପାର୍ବତୀ ବାନରବାନରୀ ରୂପେ କ୍ରୀଡ଼ା କଲାବେଳେ ଶିବଙ୍କ ବୀର୍ଯ୍ୟକୁ ପାର୍ବତୀ ଧାରଣ କରି ପାରିଲେ ନାହିଁ । ଶିବ ସେହି ବୀର୍ଯ୍ୟକୁ ନେଇ ପବନକୁ ଦେଲେ, କାରଣ ପବନ ଅପୁତ୍ରିକ ଥିଲେ । ପବନ ତାକୁ ନେଇ ଅଞ୍ଜନାକୁ ଖୁଆଇ ଦେବାରୁ ହନୁମାନ୍ ଜନ୍ମ ଲାଭ କଲେ ।

ତେଲୁଗୁ ବିଚିତ୍ର ରାମାୟଣମୁରେ ଅହଲ୍ୟାଙ୍କ ଜୀବନକୁ ନେଇ ଗୌତମ ଆଶ୍ରମ ଛାଡୁଥିବା କଥା ଓ ଶ୍ୟାମତିଳା-ଯବତିଳା ଜନ୍ମ ଆଦି କଥାର ସବିସ୍ତାର ବର୍ଣ୍ଣନା ରହିଛି ଓ ସାରଳା-ମହାଭାରତର ବର୍ଣ୍ଣନା ପରି ଶିବଙ୍କ ବୀର୍ଯ୍ୟରୁ ହନୁମାନ୍ ଜନ୍ମଲାଭ କରିଥିବାର ବର୍ଣ୍ଣନା ରହିଛି । ଏଣୁ ଅନୁମିତ ହୁଏ ଯେ ବିଚିତ୍ର ରାମାୟଣର ଅନ୍ୟ ପୋଥିରେ ସବିସ୍ତାର ବର୍ଣ୍ଣନା ରହିଥିଲା, ଯାହା ବିଚିତ୍ର ରାମାୟଣମୁରେ ସ୍ଥାନ ପାଇଛି ।

ବିଚିତ୍ର ରାମାୟଣର ରାମ ଚରିତର କେତୋଟି ଉଲ୍ଲେଖଯୋଗ୍ୟ ବୈଚିତ୍ର୍ୟକୁ ନିମ୍ନରେ ଦର୍ଶାଉଛି । ଏସବୁ ବାଲ୍ମୀକି ରାମାୟଣର ଚରିତଠାରୁ ଭିନ୍ନ ।

## ଚରିତ ବୈଚିତ୍ର୍ୟ

୧. ରାମଙ୍କ ବିବାହ ସମୟରେ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ବିବାହ କରିଥିବା ଅଳକା, ଊର୍ମିଳା ଓ ତାରା ସମସ୍ତେ ଜନକଙ୍କର ଝିଅ ।

୨. ରାମ ଚିତ୍ରକୂଟରେ ଥିବା ବେଳେ ଭରତ ଦଶରଥଙ୍କ ଶବକୁ ଧରି ସେଠାକୁ ଗଲେ ଓ ରାମ ସେଠାରେ ଦଶରଥଙ୍କ ଅନ୍ତ୍ୟେଷ୍ଟିକ୍ରିୟା କଲେ ।

୩. ମାୟାହରିଣ (ମାରୀଚ)ର ଦୁଇଟି ମୁଣ୍ଡ । ମାୟାହରିଣ ଦୁଇମୁଣ୍ଡିଆ ଥିବା କଥା ସାରଳାଦାସ ମଧ୍ୟ ଲେଖିଛନ୍ତି । ''ମାୟାମୃଗ ରୂପ ଧରି । ଯେକା କାୟ ବେନି ଶିର ।'' (୨ ବନ ୨୨୧)

୪. ପର୍ଣ୍ଣକୁଟୀ ଆଗରେ ତିନୋଟି ଗାର କାଟି ଲକ୍ଷ୍ମଣ ସୀତାଙ୍କୁ ଛାଡ଼ି ରାମଙ୍କୁ ଖୋଜିବାକୁ ଯାଇଥିଲେ । ସାରଳାଦାସ ମଧ୍ୟ ସେ କଥା ଲେଖିଛନ୍ତି । (୨ ବନ ୨୨୩)

୫. ରାମ ଲକ୍ଷ୍ମଣ ମଣି ଦେଇ ଗୋପାଳଙ୍କଠାରୁ କ୍ଷୀରପାନ କରିଥିଲେ । ସାରଳା ମହାଭାରତରେ ମୁଦି ଦେଇ କ୍ଷୀର ପିଇବା କଥା ଲେଖାଅଛି ।

୬. ଲକ୍ଷ୍ମଣ-ଶକ୍ତିଭେଦ ପରେ ହନୁମାନ୍ ବିଶଲ୍ୟକରଣୀ ପାଇଁ ସମଗ୍ର ପର୍ବତଟାଏକୁ ଧରି ଉଡ଼ିଯାଉଥିବାବେଳେ ବାଟରେ ଭରତ ବାଟୁଳି ମାରିବାରୁ ହନୁମାନ୍ ଭୂପତିତ ହୋଇଥିଲେ ।

୭. ରାବଣପୁତ୍ର ମହୀରାବଣ ମାୟାଯୁଦ୍ଧ କରି ରାମଙ୍କୁ ବନ୍ଦୀ କରିଥିଲା ।

୮. ରାମଚନ୍ଦ୍ରଙ୍କ ଅଭିଷେକ ପରେ ଗୋରଖନାଥ ତାଙ୍କ ଆଶ୍ରମ କଦଳୀବନକୁ ହନୁମାନ୍‌ଙ୍କୁ ଡାକି ନେଇଥିଲେ । ସାରଳା ମହାଭାରତରେ ମଧ୍ୟ ଗୋରଖନାଥଙ୍କ ଆଶ୍ରମ ଓ ହନୁମାନ୍‌ଙ୍କ ରାଜ୍ୟ କଦଳୀବନ ଥିବା ବର୍ଣ୍ଣନା ମିଳେ । ସାରଳା ମହାଭାରତରେ ଗୋରଖ ନାଥ ଜଣେ ସମସାମୟିକ ଯୋଗୀ ଭାବରେ ବିଭିନ୍ନ ପର୍ବରେ କଥିତ ହୋଇଛନ୍ତି ।

୯. ସୀତା ପାତାଳରେ ପଶିଯିବା କଥା ଶୁଣି ରାମଙ୍କ ମାତାମାନେ ନିଆଁରେ ଆତ୍ମାହୁତି ଦେଇଥିଲେ ।

୧୦. ଲୀଳା ସରିବା ପରେ ରାମାଦି ଚାରିଭାଇ ଏକତ୍ର ସ୍ୱଦେହରେ ବୈକୁଣ୍ଠକୁ ଗଲେ ।

ସାରଳାଦାସଙ୍କ ମହାଭାରତୋକ୍ତ ରାମଚରିତ ସହିତ ବିଚିତ୍ର ରାମାୟଣର ରାମଚରିତର ମେଳ ଏତେଦୂର ଯେ ଉଭୟର ସ୍ରଷ୍ଟା ଅଭିନ୍ନ ହେବା ଅନୁମିତ ହେଉଛି । ବିଚିତ୍ରତା ଉଭୟରେ ରହିଛି । ସାରଳାଦାସ ମହାଭାରତ ଆଖ୍ୟାନକୁ ମଧ୍ୟ ବିଶେଷ ଭାବରେ ପରିବର୍ତ୍ତିତ କରିଛନ୍ତି ଓ ଅନେକ ସ୍ଥାନରେ ସେ ତାଙ୍କ ମହାଭାରତକୁ 'ବିଚିତ୍ର ମହାଭାରତ' ବୋଲି ନାମିତ କରିଛନ୍ତି ।

"ବିଚିତ୍ର ମହାଭାରତ ଯେ ଅମୂଲ୍ୟ ବାରାନିଧି" (ବିରାଟ, ୪୫୪)
"ମୁହିଂ ତାହା ବଖାଣିଲି ବିଚିତ୍ର ଶୁଦ୍ଧ ପୋଥି" (ଉଦ୍‌ଯୋଗ, ୨)

ସାରଳାଦାସ ବ୍ୟାସଙ୍କ ଚରିତକୁ ପରିବର୍ତ୍ତନ କରି ବିଚିତ୍ରତା ସୃଷ୍ଟି କରିଛନ୍ତି, ସିଦ୍ଧେଶ୍ୱର ଦାସ ବାଲ୍ମୀକିଙ୍କ ଚରିତକୁ । ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ଏକ ବ୍ୟକ୍ତି ହେବାରୁ ଏହା ସମ୍ଭବ ହୋଇଛି ।

## ଦାଣ୍ଡୀ ଶୈଳୀ

ଦାଣ୍ଡୀ ଶୈଳୀର ସ୍ୱରୂପ ଓ ସ୍ୱଭାବ ସଂପର୍କରେ ବିଶେଷ ଆଲୋଚନା ପୂର୍ବ ଅଧ୍ୟାୟରେ କରାଯାଇଛି । ବିଚିତ୍ର ରାମାୟଣ ଆମୂଳାନ୍ତ ଦାଣ୍ଡୀ ଶୈଳୀରେ ରଚିତ ହୋଇଛି । ଦାଣ୍ଡୀର ସମସ୍ତ ଲକ୍ଷଣ ଓ ବିଶେଷତା ବିଚିତ୍ର ରାମାୟଣରେ ସୁଲଭ । ଏଥିରେ ମଧ୍ୟ ତିନି ଚରଣ ବିଶିଷ୍ଟ ପଦ ରହିଛି । (ପୃଷ୍ଠା. ୩୧୨) । ଦାଣ୍ଡୀର ଉଦାହରଣ ରୂପେ ବିଚିତ୍ର ରାମାୟଣର ପୃଷ୍ଠା ୩୬୧ର ତିନୋଟି କ୍ରମାନ୍ୱୟ ପଦକୁ ଉଦ୍ଧାର କରାଯାଇପାରେ (ବନ୍ଧନୀରେ ଚରଣର ଅକ୍ଷର ସଂଖ୍ୟା)–

ସ୍ୱାମୀର ଅଙ୍ଗ ସଙ୍ଗେ ଦେହ ଯେବେ ଦହି । (୧୩)
ଶତେ କଳପ ପରିଯନ୍ତେ ତାହାର ଜଂଘେ ବସି ଅମୃତ ପାନ କରଇ ।(୨୪)
ଭ୍ରୁଥାର କୃତ ଦୋଷ ହୁଅଇ ନାଶ । (୧୨)
ପ୍ରଭୁ ଜଂଘେ ବସିଲେ ସ୍ୱାମୀ ନ ପାଇ ତ୍ରାସ ।। (୧୪)
ପ୍ରଭୁର ସନ୍ତେକ ଘେନି ପଶଇ ହୁତାଶନ । (୧୫)
ସ୍ୱାମୀକି ଆଚ୍ଛାଦି ବସଇ ଇନ୍ଦ୍ରଭୁବନ ।।(୧୪)

## ପ୍ରାଚୀନତାର ସଙ୍କେତ

ବିଚିତ୍ର ରାମାୟଣର ପ୍ରାଚୀନତାକୁ ପ୍ରତିପାଦିତ କରିବା ପାଇଁ ଦାଣ୍ଡୀ ଅପେକ୍ଷା ବଳିଷ୍ଠତର ଯୁକ୍ତି ମଧ୍ୟ ମିଳୁଛି । ପୂର୍ବରୁ ଉଲ୍ଲେଖ କରୁଛି ଯେ ଏହାର ପ୍ରଥମ ତେଲୁଗୁ ଅନୁବାଦକ ଡୋଙ୍କାଡ଼ ଗୋପୀନାଥ ଏହାକୁ ପୁରାତନ ଉତ୍କଳଭାଷାର ରଚନା ବୋଲି ଅଭିହିତ କରିଛନ୍ତି । ତେଣୁ ଏହାର ରଚନା କାଳ ଖ୍ରୀ. ଷୋଡ଼ଶ ଶତାବ୍ଦୀର ପୂର୍ବବର୍ତ୍ତୀ ବୋଲି ଅନୁମାନ କରାଯାଇପାରେ (ପ୍ରବନ୍ଧର ଆଦ୍ୟଭାଗ ଦ୍ରଷ୍ଟବ୍ୟ) । ବିଚିତ୍ର ରାମାୟଣର ଭାଷାର ରୂପ ତାହାର ପ୍ରାଚୀନତାର ବଳବତ୍ତର ଯୁକ୍ତି ।

ଲୋକମୁଖର ଭାଷାକୁ ଜୀବନ୍ତ ବୋଲି ଏହି କାରଣରୁ କୁହାଯାଏ ଯେ ତାହାର ଅବୟବ ନିଶ୍ଚିତ ପରିବର୍ତ୍ତନ ଦେଇ ଧାରାବାହିକ ଗତି କରେ । ଏପରି ପରିବର୍ତ୍ତନର ବହୁବିଧ କାରଣ ମଧ୍ୟରୁ ଅନ୍ୟାନ୍ୟ ଭାଷାଭାଷୀଙ୍କ ସଂଶ୍ରବ, ନୂତନ ପରିସ୍ଥିତି ପାଇଁ

ନୂତନ ଶବ୍ଦର ଆବଶ୍ୟକତା, ଜ୍ଞାନବିଜ୍ଞାନର ଅଭିବୃଦ୍ଧି ହେତୁ ପାରିଭାଷିକ ଶବ୍ଦାବଳୀର ଉଦ୍‌ଭାବନ ଓ ଲୋକପ୍ରିୟ ଲେଖକଙ୍କର ବ୍ୟକ୍ତିଗତ ମରଜି ପ୍ରଧାନ। ଯେକୌଣସି ଭାଷାର ପରିବର୍ତ୍ତନର ବେଗର ମାତ୍ରା ସେହି ଭାଷାଭାଷୀ ସମାଜର ସାଂସ୍କୃତିକ ପରିବର୍ତ୍ତନର ବେଗର ମାତ୍ରା ପରି ସବୁକାଳେ ସାମାନ୍ୟ। କିନ୍ତୁ, ଅନେକ ଶତାବ୍ଦୀ ବ୍ୟବଧାନରେ ଭାଷାକୁ ଦେଖିଲେ ପରିବର୍ତ୍ତନ ସବୁ ଠୁଳ ହୋଇ ଆଖିଦୃଶିଆ ହୁଏ। ଚଣ୍ଡୀପୁରାଣର ଭାଷାଠାରୁ ନୃସିଂହ ପୁରାଣର ଓ ତାହାଠାରୁ ବର୍ତ୍ତମାନର ଭାଷାର ରୂପବିପାକ ଜଣେ ସାଧାରଣ ପାଠକ ମଧ୍ୟ ବାରି ପାରିବ। କିନ୍ତୁ, ଅନନ୍ୟ ଭାବରେ ଭାଷ୍ୟକୁ ମାନଦଣ୍ଡ କରି ସାହିତ୍ୟର ସୃଷ୍ଟିକାଳ ନିର୍ଦ୍ଦିଷ୍ଟ କରିବାରେ କେତେକ ବାଧା ମଧ୍ୟ ରହିଛି ଓ ସେଥିକୁ ଦୃଷ୍ଟି ନ ଦେଲେ ଭାଷା-ମାନଦଣ୍ଡଟି ଉଚିତ କାର୍ଯ୍ୟ କରି ନ ପାରେ। ଏକ ସମୟର ସବୁ ଲୋକଙ୍କର ଭାଷା ସମାନ ନୁହେଁ। ଜଣେ ଲେଖକର ଭାଷା ତାହାର କୌଳିକ ସଂସ୍କୃତି, ତାହାର ଚାରିପଟର ସମାଜ ଓ ତାହାର ଶାସ୍ତ୍ରାଭ୍ୟାସ ଦ୍ୱାରା ଅନ୍ୟ ଲେଖକର ଭାଷାଠାରୁ ଭିନ୍ନ। ପୁଣି, ପ୍ରତ୍ୟେକ ଲେଖକ ନିଜ ଅଭିରୁଚି ଅନୁସାରେ ପାଠକ ବାଛିଥାନ୍ତି ଓ ପ୍ରତ୍ୟାଶିତ ପାଠକର ଭାଷାକୁ ଆଦରିଥାନ୍ତି (ଯେପରିକି ବାଳେୟ ସାହିତ୍ୟର ରଚୟିତା ବାଲ୍ୟଭାଷାକୁ ଓ ପଲ୍ଲୀ ସାହିତ୍ୟର ସ୍ରଷ୍ଟା ପଲ୍ଲୀର ଭାଷାକୁ ଆଦରେ)। ସାରଳାଦାସ କି ପୀତାମ୍ବର ଦାସ ଯେ ତାଙ୍କ ସମୟର ଅନ୍ୟ ଯେକୌଣସି ଲୋକର ଭାଷାରେ ଅବିକଳ ଲେଖୁଥିଲେ ଏପରି ବିଚାର କଲେ ଭୁଲ୍‌ହେବ। ଉଦାହରଣ ସ୍ୱରୂପ ଗୋଲୋକଚନ୍ଦ୍ର ପ୍ରଧାନ ଓ ସଚ୍ଚିଦାନନ୍ଦ ରାଉତରାୟ ଏକା ସମୟର ଲୋକ ହେଲେ ମଧ୍ୟ ସେ ଦୁହିଁଙ୍କ ଭାଷାରେ ପାର୍ଥକ୍ୟ ରହିଛି। ଏହି ସବୁ ବିଷୟ ପ୍ରତି ଦୃଷ୍ଟି ରଖି ବିଚିତ୍ର ରାମାୟଣର ଭାଷାର ମୂଲ୍ୟାଙ୍କନ କରାଯାଇପାରେ।

ଭାଷା କହିଲେ ତାହାର ଶବ୍ଦାବଳୀ ବୋଲି ଅନେକେ ଧରି ନିଅନ୍ତି (ଏହି ଦୃଷ୍ଟିରେ ଅଭିଧାନ ବୋଲାଏ ଭାଷାକୋଷ!) କିନ୍ତୁ, ବସ୍ତୁତଃ ତାହା ନୁହେଁ। ଶବ୍ଦବଳୀ ତାହାର ଅବୟବର ସର୍ବାଧିକ ଭାଗ ହେଲେ ମଧ୍ୟ ଭାଷାର ମୂଳ ଲକ୍ଷଣ ଶବ୍ଦବଳୀରେ ନଥାଏ। 'ହାଇକୋର୍ଟର ରେଜିଷ୍ଟ୍ରାର୍ କ୍ୟାଣ୍ଟନ୍‌ମେଣ୍ଟ ରୋଡ୍‌ର ଆଠ ନମ୍ବର ବଙ୍ଗଳାରେ ରହନ୍ତି।' ଏହା ଏକ ଖାଣ୍ଟି ଓଡ଼ିଆ ବାକ୍ୟ, ଯଦିଚ ଏହାର ଶତକଡ଼ା ୭୫ ଭାଗ ଶବ୍ଦ ଅଣଓଡ଼ିଆ। ଶବ୍ଦବଳୀକୁ ଧରି ବିଚାର କଲେ ଭାଷା ଭାଷା ମଧ୍ୟର ପାର୍ଥକ୍ୟ ବୁଝିହେବ ନାହିଁ। ଭାଷାର ଭାଷାତ୍ୱ ଥାଏ ତାହାର କ୍ରିୟାରୂପରେ, ବିଭକ୍ତି ପ୍ରତ୍ୟୟରେ, ସର୍ବନାମରେ, କେତେକ ନିଜସ୍ୱ ଅବ୍ୟୟ ଓ ବିଶିଷ୍ଟ ବାକ୍ୟଗଠନ ପଦ୍ଧତିରେ। ଉଦ୍ଧୃତ ବାକ୍ୟର ଷଷ୍ଠୀ ବିଭକ୍ତି ସୂଚକ 'ର' ପ୍ରତ୍ୟୟ, ସପ୍ତମୀ ବିଭକ୍ତି ସୂଚକ 'ରେ' ପ୍ରତ୍ୟୟ ଓ କ୍ରିୟାରୂପ 'ରହନ୍ତି' ଯୋଗେ ବାକ୍ୟଟି ଓଡ଼ିଆ।

## ପ୍ରାଚୀନ ଶବ୍ଦାବଳୀ

ଶବ୍ଦ-ସଂପଦ ଦୃଷ୍ଟିରୁ ବିଚାର କଲେ ବିଚିତ୍ର ରାମାୟଣ ଏକ ସମୃଦ୍ଧ ପ୍ରତ୍ନଭଣ୍ଡାର । 'ଫରମାଣ' ଶବ୍ଦ ଛଡ଼ା ଅନ୍ୟ କୌଣସି ବୈଦେଶିକ ଶବ୍ଦ ଏଥିରେ ନାହିଁ । ଫରମାଣ ଶବ୍ଦଟି ସାରଳା-ମହାଭାରତର କେତେକ ତାଳପତ୍ର ପୋଥିରେ ତଥା କଳସା ଚଉତିଶାରେ ବ୍ୟବହୃତ ହୋଇଛି । ସାରଳା-ମହାଭାରତ ଓ ଚଣ୍ଡୀପୁରାଣ ପରି ଦେଶୀ ଶବ୍ଦର ପ୍ରାଚୁର୍ଯ୍ୟ ରହିଛି, ତତ୍‌ସମ ଶବ୍ଦର ପରିମାଣ ଅତ୍ୟଳ୍ପ ଓ ତଦ୍‌ଭବ ଶବ୍ଦଗୁଡ଼ିକର ଆକୃତି ପ୍ରାକୃତର ନିକଟତର । ଶବ୍ଦବଳୀରେ ଯ ଫଳା ଓ ବିସର୍ଗର ଲୋପ (ପ୍ରତକ୍ଷ, ଶୂନ, ବାଘ୍ର, ଜ୍ୱେଷ୍ଠ, ରାଜ୍ୟ ଅର୍ଥରେ ରାଜ, ଦୁଃଖ, ଅନ୍ତପୁର, ଦୁସହ, ନିଚେଷ୍ଟ ଆଦି); ଶ,ଷ,ସ, ମଧ୍ୟରେ ତାରତମ୍ୟହୀନତା (ଦୋଶ, ନାସ, ବିସୟ ଆଦି), ହ୍ରସ୍ୱଦୀର୍ଘ ଇକାର ଉକାର ମଧ୍ୟର ଭେଦ ଲୋପ (ବୀନା, ସିତା, ପୂଣ୍ୟ, ସୁନୁ ଆଦି); 'ୟ'ର ବିକଳ୍ପେ 'ୟେ' ବା 'ଏ' ରୂପ (ରାମାଏଣ, ଭୟେ, ନାରାୟେଣ ଆଦି); ଅନ୍ତିମ ଅକାର ସ୍ଥାନରେ ବିକଳ୍ପତଃ ଯ ଫଳା ଯୋଗ (ଅପବାଦ୍ୟ, ବିପିନ୍ୟ, ସିଦ୍ଧ୍ୟ ଆଦି); ଉପାନ୍ତ ବର୍ଣ୍ଣର ଅକାର ସ୍ଥଳେ, ବିଶେଷତଃ ଅନ୍ତିମ ବର୍ଣ୍ଣ କ ବା ବ ହୋଇଥିଲେ, ବିକଳ୍ପତଃ ଏକାର (ଜନେକ, ପାତେକ, ଅକଣ୍ଟେକ, ତାଡ଼େକୀ, ସନ୍ତେକ, ଜାନେକୀ, ସାଧେବ, ସାଧେବୀ, ପାଣ୍ଡେବ, ବାନ୍ଧେବ, ବିଭୀଷେଣ ଆଦି); କ୍ୱଚିତ୍ ଉପାନ୍ତ ବର୍ଣ୍ଣର ଇକାର ସ୍ଥଳେ ବିକଳ୍ପତଃ ଏକାର (କାମେନୀ, କନେଷ୍ଠ ଆଦି); ଷ୍ଟ ଓ ଷ୍ଠ ମଧ୍ୟର ଅଭିନ୍ନତା (କନେଷ୍ଟ, ଜ୍ୱେଷ୍ଠ ଆଦି); ଦ୍ୱିତ୍ୱଲୋପ (ବୁଧ, ଶ୍ରାଧ, ଇଛା, ସମୁଖ, ଭିନଭିନ, ଚିତ, ଉଚାରିବା ଆଦି); କ୍ରିୟାଶବ୍ଦରେ ବ ସ୍ଥଳେ ବିକଳ୍ପତଃ ମ (ଶୁଣିମା, ନେମି, ଘେନିମ ଆଦି) ଭଳି ପ୍ରାଚୀନ ଢଙ୍ଗର ଶବ୍ଦରୂପ ବିଚିତ୍ର ରାମାୟଣରେ ସବୁଠାରେ ରହିଛି । ଏ ସବୁ ସାରଳା ଦାସ ଓ ବଳରାମ ଦାସଙ୍କ ଲେଖାରେ ସମଭାବରେ ପ୍ରଚୁର । କିନ୍ତୁ, ଏଗୁଡ଼ିକ ମଧ୍ୟରୁ କେତେକ ଶବ୍ଦରୂପ ଅନୁଲେଖକମାନଙ୍କର ଲେଖନୀରୁ ଉଦ୍ଭୂତ ହୋଇଥିବା ସମ୍ଭାବନା ଯେ ନାହିଁ ତାହା ନୁହେଁ । ପାଠ ମଧ୍ୟରେ ଏକା ନାରାୟଣ ଶବ୍ଦର ନାରାଏଣ, ନାରାୟଣ ଓ ନାରାୟେଣ ଏପରି ତିନି ପ୍ରକାର ରୂପ ମିଳୁଛି । ଶବ୍ଦଗୁଡ଼ିକର ବନାନରେ ବିଭିନ୍ନତା ବିଚିତ୍ର ରାମାୟଣର ବିଶେଷତ୍ୱ ନୁହେଁ, ସବୁ ତାଳପତ୍ର ପୋଥିରେ ଏହା ଦେଖାଯାଏ । ପୂର୍ବରୁ ଜଣାଇଛି ଯେ ବିଚିତ୍ର ରାମାୟଣର 'କ' ପୋଥିର ଅନୁଲେଖକ ଦୁଇ ଜଣ, ଜଣେ ବୃଦ୍ଧ ଓ ଅନ୍ୟ ଜଣକ ତରୁଣ । ତରୁଣ ଉତାରିଥିବା ଅଂଶର ଶବ୍ଦରୂପ ଅପେକ୍ଷା ବୃଦ୍ଧ ଉତାରିଥିବା ଅଂଶର ଶବ୍ଦରୂପ ଅଧିକ ପ୍ରାଚୀନତାର ସଂକେତ ବହନ କରୁଥିବା ମଧ୍ୟ ସୂଚାଇଛି । ଏଥିରୁ ଜଣାପଡୁଛି ଯେ ଅନୁଲେଖକ 'ଅନ୍ଧ-ନକଲିଆ' ନଥିଲା, ନିଜେ ନିଜର ଶିକ୍ଷା ଅନୁସାରେ ଶବ୍ଦରୂପ ଲେଖୁଥିଲା ।

ଓଡ଼ିଆରେ ଉକାରର ଓକାର ପରିଣତି ଅଳ୍ପଶଃ ଦେଖାଯାଏ– ପୋଥି, କୋଦାଳ, ଗୋଛା, ପୋଖରୀ ଆଦି ଶବ୍ଦରେ । ସାରଳା ଦାସ, ବଳରାମ ଦାସଙ୍କ ରଚନାରେ ଏପରି

ସ୍ୱର ପରିବର୍ତ୍ତନ ଅଧିକ ଭାବରେ ଦେଖାଯାଏ, ବିଚିତ୍ର ରାମାୟଣରେ ତାହା ଅଧିକତର ପ୍ରଚୁର । ବିଚିତ୍ର ରାମାୟଣରେ ବ୍ୟବହୃତ ଓଦର, କୁମୋଦ, କୋଳ, କୋଟୀ (କୁଡ଼ିଆ), ତାମ୍ବୋଳ, ଦୋହିତା, ଦ୍ରୋପତ, ନିରୋପିବା, ହୋଏ, ପୋଅ, ମଧୁସୋବନ, ରୋଧିର, ଓପ୍ରଧ, ଅନ୍ତୋଡ଼ି, ଶାର୍ଦ୍ଦୋଳ, ସୋହେଡ଼, ସମୋଦ୍ର ଆଦି ଶବ୍ଦ ଏହାର ଉଦାହରଣ ।

କେତେକ ଶବ୍ଦର ଅନ୍ତିମ ସ୍ୱରର ବିଶ୍ଳେଷଣ ବିଚିତ୍ର ରାମାୟଣରେ ଯେପରି ହୋଇଛି ସେପରି ବିଶ୍ଳେଷଣ ଅନ୍ୟ କୌଣସି ପ୍ରାଚୀନ ଗ୍ରନ୍ଥରେ ଏତେ ପରିମାଣରେ ହୋଇନାହିଁ । ବିଚିତ୍ର ରାମାୟଣରେ ଖୁଡ଼ୀ ହୋଇଛି ଖୁଡ଼ଇ, ରହିବୁ ହୋଇଛି ରହିବଉ, ସହୋଦରେ (ସହୋଦରମାନେ) ହୋଇଚି ସହୋଦରଏ, କରୁ ହୋଇଚି କରଉ, କରେ ହୋଇଛି କଏ । ଏପରି ବର୍ଣ୍ଣ ବିଶ୍ଳେଷଣ ସାରଳା-ମହାଭାରତ ଓ ଚଣ୍ଡୀପୁରାଣରେ ମଧ୍ୟ ମିଳେ କିନ୍ତୁ ଅପେକ୍ଷାକୃତ କମ୍ ସଂଖ୍ୟାରେ । ମିଶ୍ରାକ୍ଷରର ପ୍ରୟୋଜନ ନଥାଇ ବର୍ଣ୍ଣ ବିଶ୍ଳେଷଣ ସାରଳା ମହାଭାରତ ଓ ଚଣ୍ଡୀପୁରାଣରେ ପ୍ରାୟ ନାହିଁ । କିନ୍ତୁ କ୍ୱଚିତ୍ ମିଶ୍ରାକ୍ଷର ପାଇଁ ଅନ୍ତିମ ସ୍ୱରର ବିଶ୍ଳେଷଣ ରହିଛି—

ସ୍ନାହାନ ଭୋଜନ ସାରି ମହାରାୟେ ।
ନିଅବକାଶ ମନ୍ଦିରେ ଯାଇ ବିଜୟେ କରଏ ।। (ଚଣ୍ଡୀପୁରାଣ)

× × ×

ସନ୍ୟବଳ ଦେଖି ମହିଷାସୁର ରାୟେ ।
ସାର୍ଦ୍ଦୁଳ ପିଠିରୁ ମୂଛାଗତ ପଡ଼ଏ ।। (ଚଣ୍ଡୀପୁରାଣ)

ବର୍ଣ୍ଣ ବିଶ୍ଳେଷଣ ପ୍ରକ୍ରିୟାର ପରିଣତି ସ୍ୱରୂପ ପ୍ରାଚୀନ ଓଡ଼ିଆର କ୍ରିୟାରୂପରେ ଅଇଲଇ, ଗଲଇ, ହୋଇବଇ, ଆସିଛଇ, ଛାଡ଼ିବଇ ଆଦି ମାତ୍ର ମିଳେ, ଯାହା ବିଚିତ୍ର ରାମାୟଣରେ ମଧ୍ୟ ସୁପ୍ରଚୁର । କେବଳ ସୀତା ଶବ୍ଦଟି ସୀତଆ ଦେଇ ସିତୟା ହୋଇ ଓଡ଼ିଆରେ ଦୀର୍ଘସ୍ଥାୟୀ ହୋଇଥିବା ମନେହୁଏ । ଉଲ୍ଲେଖନୀୟ ଯେ ଅନନ୍ତିମ ସ୍ୱର ବିଶ୍ଳେଷଣ ମଧ୍ୟ ପ୍ରାଚୀନ ସାହିତ୍ୟରେ ସୁଲଭ ଯାହା ବିଚିତ୍ର ରାମାୟଣରେ ମଧ୍ୟ ମିଳେ (ବିରାଗ ବଦଳେ ବଇରାଗ, ମିତ୍ର ବଦଳେ ମଇତ୍ର ଆଦି) ।

ବିଚିତ୍ର ରାମାୟଣରେ ବ୍ୟବହୃତ ଅଳ୍ପ କେତୋଟି ପ୍ରାଚୀନ ଶବ୍ଦକୁ ନିମ୍ନରେ ବର୍ଣ୍ଣାନୁକ୍ରମେ ଲେଖୁଛି (ଆବଶ୍ୟକ ସ୍ଥଳେ ପରବର୍ତ୍ତୀ ବନ୍ଧନୀ ମଧ୍ୟରେ ଅର୍ଥ ସହ) । ସାରଳା ମହାଭାରତ ଆଦିରେ ମଧ୍ୟ ଏହି ଶବ୍ଦଗୁଡ଼ିକର ବ୍ୟବହାର ରହିଛି । ମୋର ଦେଖିବାରେ ଏହି ତାଲିକାଭୁକ୍ତ ଅଳ୍ପ କେତୋଟି ଶବ୍ଦ ବିଚିତ୍ର ରାମାୟଣରେ ହିଁ ରହିଛି, ଯଥା— ଅନାଉୋଆ, ଆତରା, ଉପନେସ, ତ୍ରିପୁର, ପଇଲମ, ରାଛ, ରିତି ।

ଅକାଦ (ଅଗାଧ); ଅଗୁଳି (ଉଦ୍‌ବୃତ୍ତ); ଅଗ୍ର (ଅଗୁରୁ); ଅଚେବନ (ଅଚେତନ); ଅଣହିତ (ଅନାୟତ୍ତ, ଅଣହେତୁ ?); ଅନାଉୋଆ (ସଂ. ଅନାୟତ୍ତୟା); ଅନାସ୍ଥ,

ଅନାସ୍ତା (ଅନାଥ); ଅନାସ୍ତୁଣୀ (ଅନାଥିନୀ); ଅନୁଆନ (ଅନୁଯାନ); ଅନୁସରିବା (ଲୋଡ଼ିବା); ଅନେକ (କନକ); ଅପାଂଙ୍କ (ଅପାଂକ୍ତେୟ); ଅବିକ୍ଷଣ (ଅବିଚ୍ଛିନ୍ନ) ଅବିଳାଷ (ପ୍ରୀତି); ଅବିଳାଷୀ (ପ୍ରିୟବତୀ); ଅମ୍ବ (ମାତା); ଅମନାତ୍ୟ (ଅମାତ୍ୟ); ଅସ୍କନ୍ଦ (ଇନ୍ଦ୍ର)।

ଆଇ (ମାତା); ଆକ୍ରଶିବା (ଆକ୍ରୋଶ କରିବା); ଆଚୋବନ (ଆଚମନ); ଆଛାନ (ଆଖ୍ୟାନ> ଆକ୍ଷାନ); ଆତରା (ନିଆଁକୁଢ଼); ଆଦ୍ୟାନ (ଆଧାନ); ଆଧାର (ଆହାର); ଆନକୃତ (ଅନ୍ୟଥା); ଆରୋପଣ (ଆୟୋଜନ); ଆଶ୍ୱାସିବା (ଆଉଁଶିବା, ଆଶ୍ୱାସନା ଦେବା)।

ଉକତା (ବକ୍ତା); ଉତସଲ୍ୟ (ଆନନ୍ଦ); ଉପଗାର (ଉପକାର); ଉପନେସ (ଗୂଢ଼ କଥା, ଉପନିଷଦ୍); ଉପଲେଖିବା (ଉପଲକ୍ଷ୍ୟ କରିବା); ଉପୁଚିଆଇବା (କୁଢ଼ାଇବା)।

ଓହନିଶି (ଅହୋନିଶ); ଓହବଳ (ଉଭୟ ବଳ)।

କଏ (କରେ) କପୋଳ (କପାଳ); କହଣ ନ ଯାଇ (କହି ନ ହୁଏ); କାହା (କିପରି); କିକେ (କିପରି); କୁରୁଳି (ରଡ଼ି); କୃଡ଼ା (କ୍ରୀଡ଼ା); କୃତେ (ଯୋଗୁଁ); କେଉଣ, କେବଣ (କେଉଁ); କେନେ (କାହିଁକି); କେର୍ଣ୍ଣେ, କେସନେ, କେସନେକେ, କେହ୍ନେ (କିପରି); କୋଳ (କୁଳ); କ୍ଷୟାନ୍ତେକ (ଅନ୍ତକ); କ୍ଷେମ (କ୍ଷମା); କ୍ଷେଉଣୀ (ଅକ୍ଷୌହିଣୀ)।

ଖେଳାଉଳ (ଖେଳୁଆଡ଼); ଖୋଟ (କୋଠ)।

ଗଡ଼ଘାଲି (ଟଳି ଗଡ଼ିବା), ଗନ୍ଦମୂଳ (କନ୍ଦମୂଳ); ଗବନ (ଗମନ); ଗରୁହଂସୀ (ଗରୀୟାନ୍); ଗହଳି (ଗହନ କଥା); ଗାୟେଣ (ଗାୟକ)।

ଘୁମାଇବା (ଘର୍ମାକ୍ତ ହେବା)।

ଚଉ (ଚରୁ); ଚେ୍ବନ (ଚେତନ)।

ଜିଂଘାସ (ଧ୍ୱକ୍‌ଭାଷ = ଧ୍ୱଙ୍କାସ); ଜିଘ୍ନ (ଯଜ୍ଞ); ଜିଘ୍ନସେନୀ (ସୀତା, ଦ୍ରୌପଦୀ)।

ତଡ଼ତି (ଶୀଘ୍ର); ତଦ୍ୟାପି (ତଥାପି); ତଲୟ, ତଲ୍ୟ (ଲୟ); ତିଥି (ସ୍ଥିତି); ତିରଣ (ତୃଣ); ତୀକ୍ଷ (ତୀକ୍ଷ୍ଣ); ତେଜ (ରାଗ, ତରିଜା), ତୈବେସେ (ତେଣୁ କରି); ତେସନେ, ତେସନେକେ (ସେହିପରି); ତୋରଣ (ତରଣ, ଅଟକାଳି); ତ୍ରିପ୍ତୁଣେ (ତୃପ୍ତ)।

ଦକ୍ଷ (ଯକ୍ଷ); ଦଶ (ଯଶ); ଦହିଯ (ଦହ୍ୟ); ଦାତବ୍ୟ (ଦାନୀ); ଦୁସ୍ତ (ଦୁଃଖ); ଦୃଗତି (ଦୁର୍ଗତି); ଦୃଭାର (ଦୁର୍ବାର); ଦୃଷ୍ଟ (ଦୁଷ୍ଟ, ଧୃଷ୍ଟ); ଦେନ୍ତା (ଦାତା); ଦୋସାଧୁ (ଚାର) ଦ୍ରପଣ (ଦର୍ପଣ) ଦ୍ରଶନ (ଦର୍ଶନ); ଦ୍ରହସିତ (ଦରହସିତ); ଦ୍ରୋଛନା (କିରଣ)।

ଧାତି, ଧାତିକାରେ (ଶୀଘ୍ର); ଧ୍ୱଙ୍କାସ (ଧ୍ୱଜ୍‌ଭାକ୍ଷ); ଧ୍ୱରତି (ଧୃତି, ଧୀରତା); ଧୂନି (ଧ୍ୱନି); ଧୂର (ଦୂର); ଧୋନ୍ଦ (ଦ୍ୱନ୍ଦ୍ୱ)।

ନଉଚେତ (ନୋଚେତ୍); ନଡ଼ି (କଚଟି); ନାଡ଼କା (ଡଙ୍କ); ନାନ (ନନ୍ଦନ); ନାହା (ନାୟକ); ନିଗମ (ଅଗମ୍ୟ); ନିତ୍ୟାପତି (ପ୍ରତିନିତ୍ୟ); ନିମିତ୍ୟ (ନିମିତ୍ତ); ନିରହ (ନିଳୟ); ନିରାପକ୍ଷ ନିଷ୍ଠୁର); ନିର୍ଜ୍ଜିତା (ଅଜେୟ); ନିର୍ଝର (ନିଝାଡ଼); ନିର୍ବାଣ, ନିର୍ବାଣି (ନିର୍ମାଣ); ନିର୍ଭା (ନିର୍ବାହ); ନୁଆରିବା (ନ ପାରିବା); ନୋଇବା (ନ ଆସିବା)।

ପଇଲମ (ଥାଳି, ପଲମ); ପଉରୋଷ (ମର୍ଯ୍ୟାଦା); ପକୁ (ପକ୍ୱ); ପମନ୍ତ୍ରିବା (ପଠାଇବା); ପୟଡ଼ (ପଇଡ଼); ପୟାତ, ପୟାନ୍ତ (ପ୍ରୟାତ); ପରସ୍ତ (ପଶ୍ଚାତ୍); ପରିଣାମ, ପ୍ରଣମ୍ୟ (ପ୍ରଣାମ); ପରିମାଣ, ପରିମାଣି (ପ୍ରମାଣ); ପରିହରଣ (ପରିଧାନ); ପାଟୋଳି (ପଟ୍ଟବସ୍ତ୍ର); ପାଡ଼ିବା (ପକାଇବା); ପାଣିଦ୍ରବ୍ୟ (ସୁନା); ପାତାଙ୍ଗ (ପତାକା); ପାହାରୀ (ପ୍ରହରୀ); ପିଞ୍ଜାଇବା (କ୍ଷତବିକ୍ଷତ କରିବା); ପୁଣ୍ୟତୁଣୀ (ପୁଣ୍ୟବତୀ); ପୁରଇ; ପୁରୋଇ (ସ୍ଫୁରେ); ପ୍ରଜ୍ଞାଇତ (ପ୍ରଜ୍ଞାଦି); ପ୍ରତେ (ପ୍ରତ୍ୟୟ); ପ୍ରମାର୍ଥ (ପରମାର୍ଥ); ପ୍ରଶୁ (ପରଶୁ); ପ୍ରାସ (ବେଦନା); ପ୍ରୋହିତ (ପୁରୋହିତ)।

ଫୁଟିବା (କ୍ଲାନ୍ତ ହେବା)।

ବଇସୀ (ବୟସୀ); ବଖାଣ (ବକ୍ଷ୍ୟମାଣ, କଥନ); ବଖାଣିବା (କହିବା); ବୟାଣ, ବୟାନ (ବଚନ); ବରୁଣ (ବରଣ); ବଶାବୃତ (ବଶବର୍ତ୍ତୀ); ବସ୍ତ୍ର (ବସ୍ତ୍ର); ବହନି (ବହ୍ନି); ବହେଣୀ (ଭଉଣୀ); ବାଇବାଉଡ଼ (ବାୟାବାତୁଳ); ବାଣରାସୀ (ବାରାଣସୀ); ବିଘଂସିବା (ବିକଶିବା); ବିତପନ (ନିର୍ମଳ); ବିତକ୍ଷଣ (ବିଚକ୍ଷଣ); ବିଦୁଜ୍ଜନ, ବିଦ୍ୟୁଜ୍ଜନ (ବିଦ୍ୱଜ୍ଜନ); ବିଧାତ (ବିଧାତା); ବିଧଂସ, ବିଧ୍ୱଂସ (ବିଦୂସ); ବିନୋପି (ବିନୟ ସହ); ବିବର୍ଦ୍ଧିତି (ବିବର୍ଦ୍ଧମାନ); ବିରଙ୍ଗ (ବିରସତା); ବିରୋଳି (ସ୍ୱଷ୍ଟତଃ); ବିଶ୍ୱାସ କରିବା (ଗୋପନ କଥା କହିବା); ବିସରିବା (ସରିବା); ବୃଶାଳ (ବିଶାଳ); ବେଗ୍ର (ବ୍ୟଗ୍ର); ବେବସ୍ଥା, ବ୍ୟବସ୍ଥା (ପ୍ରସଙ୍ଗ); ବେଳ (ସୂର୍ଯ୍ୟ); ବେଳେ (ଦ୍ୱାରା); ବ୍ରତିବା, ବ୍ରତିବାକ (ବର୍ତ୍ତିବା); ବ୍ରିତି (ବୃତ୍ତି); ବ୍ରିଧିକ (ବୃଦ୍ଧିଯୁକ୍ତ)।

ଭଗତି (ଭକ୍ତ); ଭଗିବନ୍ତ (ବୈଷ୍ଣବ); ଭବାନୀ (ଭାବିନୀ); ଭୁକତି, ଭୁଗତି (ଭୋଗ); ଭୂମିଁ (ଭୂମି); ଭେବଳ (ବିହ୍ୱଳ); ଭ୍ରଥା (ଭର୍ତ୍ତା); ଭ୍ରାଥ (ଭ୍ରାତା)।

ମଞ୍ଚ (ମର୍ତ୍ତ୍ୟ); ମଞ୍ଜାଳିବା (ଅଙ୍ଗମର୍ଦ୍ଦିବା); ମଞ୍ଜାରି (ମାର୍ଜାର); ମଂଯୂର (ମୟୂର); ମଡ଼ିଆଳ (କ୍ଷୁଦ୍ରବସ୍ତ୍ର); ମଣୋହି (ଭୋଜନ); ମଦନମାତୃ (ବେଶ୍ୟା); ମୟେମତ୍ତ (ମଦମତ୍ତ); ମହତ୍ୱ (ଇଜ୍ଜତ); ମାଖି (ମକ୍ଷିକା); ମାଥ (ମଥା); ମାରୁତି (ମରୁତ); ମାହାଗ (ମାଘ); ମିଳିବା (ପହଞ୍ଚିବା); ମୁଖରାବ (ଜନାପବାଦ); ମୁନେହି

(ଦୂତ); ମୁନ୍ୟ (ମୁନି); ମୁରାଟ (ନିର୍ଭୟ); ମୁହାଂସ (ଲୋଭ); ମୃଛା (ମୂର୍ଚ୍ଛା); ମୃଧୁନି (ମୂର୍ଦ୍ଧନ୍); ମେଞ୍ଜନ (ବ୍ୟଞ୍ଜନ); ମେଳପକ୍ଷ (ସମାନ ହେବା); ମେଲିବା (ଭସାଇବା) ।

ଯିସ (ଯାହା); ଯୁଗତ (ଯୁକ୍ତିଯୁକ୍ତ); ଯୁଗତି (ହେତୁ); ଯୁଗତେ (ସହଜେ); ଯେବଣ (ଯେଉଁ); ଯେର୍ଣ୍ଣେ, ଯେସନ, ଯେସନେ, ଯେସନେକେ, ଯେହ୍ନେ (ଯେପରି); ଯୋ (ଯେଉଁ) ।

ରକ୍ଷନ୍ତା (ରକ୍ଷକ); ରୟଣୀ, ରହଣୀ (ରଜନୀ); ରସାଣ (ବିଷ); ରହୁବର (ରଥ); ରାଇ (ରାୟ); ରାଇବା (ଡାକିବା); ରାଇବାର (ଡଗର); ରାଛ (ରାସ୍ତା); ରାବାଏଣ (ରାମାୟଣ); ରିଷଭ (ବୃଷଭ); ରିତି (ଇତି); ରେଜୁ (ରଜ୍ଜୁ) ।

ଲୁଳିବା, ଲୋଳିବା (ଓହଳିବା); ଲେଛିବା (ତ୍ୟାଗ କରିବା) ।

ଶଂକୁନ୍ୟ (ଶକୁନ); ଶାସ୍ର (ଶାସ୍ତ୍ର); ଶିଷି (ଶିଷ୍ୟ, ପୁତ୍ର); ଶିଷ୍ଟି (ଶ୍ରେଷ୍ଠ); ଶେଯ୍ୟା (ଶଯ୍ୟା); ଶ୍ରିପତି, ତ୍ରିପତି (ତୃପ୍ତି); ଶ୍ରୀମୁଖ (ଆଜ୍ଞାପତ୍ର); ଶ୍ରିୟା (ଲକ୍ଷ୍ମୀ, ଶ୍ରୀମୟା) ।

ସଂଘରିବା (ସଂହରଣ କରିବା, ସଂଗ୍ରହଣ କରିବା); ସଂଚପି (ବିଶ୍ଳେଷଣ କରି); ସଂଜ୍ଞାତ (ସାଦୃଶ୍ୟ); ସଂଜ୍ଞାଳିବା (ଜ୍ଞାଳିବା); ସଂପ୍ରତେ (ବିଶ୍ୱାସ କରି); ସଂୟେ, ସୟେ (ସ୍ୱୟଂ); ସଂହାତେ (ନିଜହାତରେ); ସଚଇତ (ସଚେତ); ସମାଦ, ସମାଦି (କଥା, ସଂବାଦ); ସମାଦନ୍ତ (କଥାବାର୍ତ୍ତା); ସମାସ୍ୟା (ସଂଭାଷ୍ୟ); ସମ୍ଭାଇବା (ସମ୍ଭାବିବା); ସୟେନ୍ଦୁ (ସଦ୍ୟ); ସାକ୍ର (ଶାକର); ସାନ୍ଦ୍ରିଶ, ସାଦୃଶ (ସଦୃଶ); ସିମସ୍ଥାନ (ତକିଆ); ସୁତିବା (ଶୋଇବା; ସ୍ତୁତି କରିବା); ସୁଫଳ (ସଫଳ); ସମୃତି (ସ୍ମୃତି); ସୂନ (ସୂନୁ); ସୋହେଡ଼ ପଞ୍ଚାଣ (ସୌମ୍ୟ ବୀର= ସୌଷ୍ଠବ ପଞ୍ଚାନନ); ସ୍ୱରୂପ (ସତ୍ୟ) ।

ହନ୍ତି, ହୋନ୍ତି (ହୁଅନ୍ତି); ହାନ୍ଦେ (ନିଶ୍ଚୟ); ହାନ୍ଦୋଳ (ଚଳନ); ହୁଡ଼ି ପଡ଼ିବା (ଝୁଣ୍ଟିବା); ହେଟ (ତଳମୁହାଁ); ହେମ (ହିମ) ।

**ଶବ୍ଦାବଳୀର କେତେକ ବୈଶିଷ୍ଟ୍ୟ**

ପ୍ରାକୃତରେ ସଂସ୍କୃତର ବହୁବଚନ ପଦଟିକୁ ବିସର୍ଗ ବିନା ବହୁବଚନରେ ଚଳାଯାଇ ପାରୁଥିଲା । ଓଡ଼ିଆ ସାହିତ୍ୟର ପ୍ରାଥମିକ ସ୍ତରରେ ଏହି ନିୟମଟି ପ୍ରାକୃତାନୁରୂପ କ୍ୱଚିତ୍ ଚଳୁଥିବା ଜଣାଯାଏ । ଯେପରିକି, କପଟପାଶାରେ :— "ଆରେ ଆହ୍ମେ ପାଣ୍ଡବାରେ ବୋଲିଣ ଡାକେ ।" ସାରଳାଦାସ ମଧ୍ୟ ଏପରି ପ୍ରୟୋଗ କରିଛନ୍ତି । ବିଚିତ୍ର ରାମାୟଣରେ ବାୟସା, ଭ୍ରମରା, ଯାମଳା ଆଦି ଶବ୍ଦ ବହୁବଚନରେ ବ୍ୟବହୃତ । ଏହା ସୂଚାଉଛି ଯେ ଗ୍ରନ୍ଥଟି ପ୍ରାଚୀନ । କବି ବହୁବଚନରେ 'ନିତ୍ୟକର୍ମଣି' ଶବ୍ଦ ମଧ୍ୟ ଲେଖିଛନ୍ତି ।

ବିଚିତ୍ର ରାମାୟଣ ପୋଥିରେ କ୍ରୀଡ଼ା ଶବ୍ଦ କୃଡ଼ା ଭାବରେ ଠାଏଁ ଠାଏଁ ଲେଖା ରହିଛି ତ ଅନ୍ୟତ୍ର ବୃତ୍ତି ଲେଖା ହୋଇଛି ବ୍ରିତି ଭାବରେ । ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ

ବିଚିତ୍ର ରାମାୟଣ ରଚନା କାଳରେ ର କାରର ଉଚ୍ଚାରଣ ଥିଲା 'ରି' (ଆଧୁନିକ ଢଙ୍ଗର 'ରୁ' ନୁହେଁ) । ଋକାରର ରି ଉଚ୍ଚାରଣ ଉତ୍ତର ଭାରତରେ ଅଦ୍ୟାବଧି ରହିଛି । ପ୍ରାଚୀନ ଓଡ଼ିଆ ଭାଷାରେ ବ୍ୟବହୃତ ମିରିଗ, ତିରଣ, ରିତୁ, ରିଣ, ରିଷଭ ଆଦି ଅନେକ ଶବ୍ଦରେ ଋକାରର ରି ପରିଣତି ରହିଛି, ବିଚିତ୍ର ରାମାୟଣରେ ମଧ୍ୟ ଋକାରର ଉଚ୍ଚାରଣ ରି ହୋଇଛି । ତେଲୁଗୁ ଆଦି ଦକ୍ଷିଣ ଭାରତୀୟ ଭାଷାରେ ଋକାରର ଉଚ୍ଚାରଣ 'ରୁ' ଥିଲା ଓ ତେଲୁଗୁ ସଂଶ୍ରବରୁ ଓଡ଼ିଆରେ ମଧ୍ୟ ଋ କାରର ଉଚ୍ଚାରଣ ରି ବଦଳେ ରୁ ହେଲା । ମୋ ଦୃଷ୍ଟିରେ ପଡ଼ିଥିବା ସବୁ ତାଳପତ୍ର ପୋଥିରେ ରୁ ସ୍ଥାନରେ ଋ ଅକ୍ଷର ବିକଳ୍ପେ ଲେଖାଯାଏ, ଯଥା– ତଋଣ, ଋଷା, ଅଋଣ । କିନ୍ତୁ କୌଣସି ପୋଥିରେ ରି ସ୍ଥାନରେ ଋ ଲେଖା ହେବା ମୋ ଦୃଷ୍ଟିରେ ପଡ଼ି ନଥିଲା । ଏହା ବିଚିତ୍ର ରାମାୟଣରେ ଦେଖିଲି । କୃଡ଼ା ଶବ୍ଦଟି ପ୍ରମାଣିତ କରେ ଯେ ଗ୍ରନ୍ଥରଚନା ବେଳକୁ କ୍ରୀ ଓ କୃ ସମୋଚ୍ଚାରିତ ହେଉଥିଲା । ବିଚିତ୍ର ରାମାୟଣରେ ବ୍ୟବହୃତ ବ୍ରିତି (ବୃତ୍ତି), ଶ୍ରୀପତି (ତୃପ୍ତି), ସାଦ୍ରିଶ (ସଦୃଶ) ଆଦି ଶବ୍ଦ ପରି ରି ଉଚ୍ଚାରଣ ଗର୍ଭକ ଅନେକ ଶବ୍ଦ ସାରଳା ଦାସ ଆଦିଙ୍କ ରଚନାରେ ମଧ୍ୟ ମିଳେ । କିନ୍ତୁ, ଏ ପ୍ରକାର ଶବ୍ଦରୂପ କବିଙ୍କ ବେଳକୁ ଋ ର ଉଚ୍ଚାରଣ ରି ଥିବା ନିଶ୍ଚିତ ଭାବରେ ପ୍ରମାଣିତ କରେ ନାହିଁ । କବିଙ୍କ ପୂର୍ବରୁ ସେପରି ଉଚ୍ଚାରଣ ଚଳୁଥିଲେ ମଧ୍ୟ ସେହି ଶବ୍ଦଟିର ବନାନ ପରଂପରା କ୍ରମେ ସେପରି ରହି ଲାଗିଥିବା ଅସମ୍ଭବ ନୁହେଁ ।

ପୂର୍ବ ସ୍ୱର ଲୋପ କାରକ ପ୍ରାକୃତ ସନ୍ଧି ନିୟମାଗତ କେତେକ ଶବ୍ଦ ବିଚିତ୍ର ରାମାୟଣରେ ବ୍ୟବହୃତ ହୋଇଥିବା ଉଲ୍ଲେଖନୀୟ । ଉଦାହରଣ ସ୍ୱରୂପ ସେଥିରେ ବ୍ୟବହୃତ ଶ୍ରବନ୍ତେ, ଦିବସନ୍ତେ, ନରିନ୍ଦ୍ର ଶବ୍ଦକୁ ଦିଆଯାଇପାରେ । ଶ୍ରମ + ଅନ୍ତେ = ଶ୍ରବନ୍ତେ (ମ > ବ), ଯାହା ସଂସ୍କୃତ ସଂଧି ନିୟମ ଅନୁସାରେ ଶ୍ରମାନ୍ତେ ହୋଇଥାନ୍ତା । ଦିବସ + ଅନ୍ତେ = ଦିବସନ୍ତେ ଓ ନର + ଇନ୍ଦ୍ର = ନରିନ୍ଦ୍ର । ଓଡ଼ିଆ କଥିତ ଭାଷାର ମାସନ୍ତ, ଚାରଣା (ଚାରି + ଅଣା) ଆଦି ଓ ପ୍ରାଚୀନ ସାହିତ୍ୟର ଆରେକ, ମନିଚ୍ଛା, ଏକେକେ ଆଦି ଶବ୍ଦ ଏହି ପ୍ରାକୃତ ସନ୍ଧି ନିୟମାନୁସାରୀ ।

ବିଚିତ୍ର ରାମାୟଣର କେତୋଟି ଶବ୍ଦରେ ସଂସ୍କୃତରୁ ପ୍ରାକୃତ ଶବ୍ଦ ଗଠିତ ହେବା ନିୟମର ବୈପରୀତ୍ୟ ଲକ୍ଷ୍ୟ କରାଯାଇପାରେ । ଆହାର ଅର୍ଥରେ ବିଚିତ୍ର ରାମାୟଣରେ ଆଧାର ଶବ୍ଦ ବ୍ୟବହୃତ ହୋଇଛି । ସଂସ୍କୃତ ଧକାର ପ୍ରାକୃତରେ ହକାର ହେବା ସାଧାରଣ ନିୟମ (ତଦନୁସାରେ– ଦହି, ମହୁ, ବିହି, ବହୂ) କିନ୍ତୁ ଏହି ନିୟମର ବିପରୀତରେ ଆହାରରୁ ଆଧାର ଶବ୍ଦ ଜନ୍ମ ହୋଇଛି । ମୋ ଜାଣିବାରେ ଗଞ୍ଜାମର ଗାଉଁଲି ଲୋକେ ଆଧାର ଶବ୍ଦଟିକୁ ଆହାର ଅର୍ଥରେ ଅଦ୍ୟାବଧି ବ୍ୟବହାର କରୁଛନ୍ତି । ସାରଳା ଦାସ ମଧ୍ୟ ଆହାର ଅର୍ଥରେ ଆଧାର ଶବ୍ଦ (୨ ବନ ୩୨୬) ପ୍ରୟୋଗ କରିଛନ୍ତି ।

ସେହିପରି ପ୍ରାକୃତରେ ସଂସ୍କୃତର ବକାରର ମକାରରେ ପରିଣତି ସାହଜିକ । ଓଡ଼ିଆ ଦମନ (=ଯବନ), ମେଞ୍ଜନ (=ବ୍ୟଞ୍ଜନ), ମିନତି (ବିନତି) ଆଦି ବହୁ ଶବ୍ଦରେ ଏ ନିୟମର ଅନୁସରଣ ରହିଛି । ଏପରିକି ଖୋଦ୍ ସଂସ୍କୃତରେ ମଧ୍ୟ ବକାରର ମକାର ପରିଣତି ସାଳଗ୍ରାମ (=ସାରଗ୍ରାବ) ଶବ୍ଦରେ ଲକ୍ଷ୍ୟ କରାଯାଇପାରେ । ଓଡ଼ିଆରେ ବକାର ମକାର ଅଦଳବଦଳ ବହୁ କ୍ରିୟା ରୂପରେ ମିଳେ— ଶୁଣିମା, ଯିମି, ଧାମନ୍ତେ, କରିମି । ଏହାର ବିପରୀତରେ ଅର୍ଥାତ୍ ମକାର ବକାର ହୋଇ ଗଢ଼ା ହେବା ଶବ୍ଦ ବିଚିତ୍ର ରାମାୟଣରେ ବହୁତ ରହିଛି— ରାବାୟେଣ (ରାମାୟଣ), ଭୂବି (ଭୂମି), ନିର୍ବାଣ (ନିର୍ମାଣ), ଗବନ (ଗମନ), ଆଚୋବନ (ଆଚମନ) । ଓଡ଼ିଆ ଗୋବର (ଗୋମଳ), ବିବାନ (ବିମାନ), ବାବନ (ବାମନ), ଶାବନା (ଶ୍ୟାମଳ), ପାଟବଂଶୀ (ପଟ୍ଟମହିଷୀ) ଆଦି ବହୁତର ଶବ୍ଦରେ ମକାରର ବକାର ପରିଣତି ଦେଖି ହେଉଛି । ସାରଳାଦାସଙ୍କ ରଚନାରେ ବି ଭୂବି, ଆଚୋବନ, ଗବନ, ବିବାନ, ନିର୍ବାଣ, ବାବନ, ରାବାୟଣ ଆଦି ଶବ୍ଦର ପ୍ରୟୋଗ ରହିଛି । ଏ ଜାତୀୟ ଶବ୍ଦ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟବହୃତ ହେଉଥିଲା । କେହି କେହି ଗମନ ଅର୍ଥରେ 'ଗବଣ' ଶବ୍ଦ ଚର୍ଯ୍ୟାଗୀତରେ ଥିବା (ଅବଣା ଗବଣେ କାହ୍ନ ବିମନ ଭଇଲା) ଦର୍ଶାଇ ବିଚିତ୍ର ରାମାୟଣରେ ମକାରର ବକାର ପରିଣତି ଦେଖି ତାହାର କାଳ ଚର୍ଯ୍ୟାଗୀତର ନିକଟ ବୋଲି ମନେ କରିଛନ୍ତି, ଏ ମତ ଭ୍ରାନ୍ତ ।

ବିଶେଷ୍ୟ ଓ ବିଶେଷଣ ମଧ୍ୟରେ ପାର୍ଥକ୍ୟ ନ ଧରିବାର ଚଳଣି ଓଡ଼ିଆରେ ସୁପ୍ରଚୁର । ସେ ଜନ୍ମ ହେଲେ, ମୁଁ ଆନନ୍ଦ ହେଲି, ତୁ ସୁନ୍ଦର ଖୋଜିଲେ ଗୁଣ ପାଇବୁ ନାଇଁ, ଏସବୁ ଓଡ଼ିଆରେ ଶୁଦ୍ଧ ଭାଷା । ଦାନ ଅର୍ଥରେ ଦାତବ୍ୟ । ବାସସ୍ଥାନ ଅର୍ଥରେ ବାସ୍ତବ୍ୟ ଆଦି କେତେକ ଶବ୍ଦ ବିଚିତ୍ର ରାମାୟଣରେ ମିଳେ । ଏପରି ପ୍ରୟୋଗ ମାଦଳାପାଞ୍ଜିରେ ବି ଅଛି— ''ଶ୍ରୀ ପୁରୁଷୋତ୍ତମଙ୍କୁ ପାତାଳୀ କରି ସୁନୁପୁର ଆଡ଼େ କେଉଁଠାରେ ବିଜେ କରାଇଲେ ଜ୍ଞାତବ୍ୟ ନାହିଁ'' (ଜ୍ଞାତବ୍ୟ = ଜ୍ଞାନ) । ଆଧୁନିକ ଓଡ଼ିଆରେ ମଧ୍ୟ ଅନୁରୂପ ପ୍ରଚଳନ ରହିଛି— ପାଠକ୍ରମ ଅର୍ଥରେ ପାଠ୍ୟକ୍ରମ, ମତ ଦେଲେ ଅର୍ଥରେ ମନ୍ତବ୍ୟ ଦେଲେ, କର୍ମରେ ଯୋଗ ଦେଲେ ଅର୍ଥରେ କର୍ତ୍ତବ୍ୟରେ ଯୋଗ ଦେଲେ ଆଦି ।

### ପ୍ରାଚୀନ ବିଭକ୍ତି ପ୍ରତ୍ୟୟ

ସାରଳାଦାସ, ବଳରାମ ଦାସ ଆଦିଙ୍କ ରଚନାରେ ଏକ ବଚନର ଦ୍ୱିତୀୟା ଓ ଚତୁର୍ଥୀ ବିଭକ୍ତି ସୂଚକ କଇ ବା କହି ପ୍ରତ୍ୟୟର ସମଧିକ ବ୍ୟବହାର ରହିଛି । କିଇ ବିଭକ୍ତିଟି ଚତୁର୍ଦ୍ଦଶ ଶତାବ୍ଦୀର ଅନେକ ତାମ୍ରଶାସନରେ ମଧ୍ୟ ରହିଛି ଓ ଆହୁରି ପ୍ରାଚୀନ ଗଣ୍ଡିବେଡ଼ ଶିଳାଲିପିରେ ମଧ୍ୟ ରହିଛି । ଧରିବଇ, ଅଛଇ ଆଦି ଶବ୍ଦରେ ଅନ୍ତିମ ସ୍ୱରବର୍ଣ୍ଣର ବିଶ୍ଳେଷଣ ଘଟିଥିବା ପରି 'କି' ପ୍ରତ୍ୟୟ କଇରେ ପରିଣତ ହୋଇଥିବା ସମ୍ଭବ । 'କି' ପ୍ରତ୍ୟୟ ତେଲୁଗୁ ଭାଷାରେ ବି ଅଛି ଓ ତାହା ସମ୍ଭବତଃ ମୂଳତଃ ତେଲୁଗୁ ଅଞ୍ଚଳର । ଉଚ୍ଚାରଣ ସୌକର୍ଯ୍ୟ

ପାଇଁ କଇ ହୋଇଥିବ 'କହି' । ପ୍ରତ୍ୟୟଟିର ପ୍ରୟୋଗ ଷୋଡ଼ଶ ଶତାବ୍ଦୀ ପରେ ହ୍ରାସ ପାଇଲା । ଏହା ଜଗମୋହନ ରାମାୟଣଠାରୁ ସାରଳା ମହାଭାରତ ଓ ଚଣ୍ଡୀପୁରାଣରେ ଅଧିକ ପ୍ରଚୁର, ବିଚିତ୍ର ରାମାୟଣରେ ବୋଧହୁଏ ତଦପେକ୍ଷା ଅଧିକ । ଏଥିରୁ ବିଚିତ୍ର ରାମାୟଣର ରଚନା କାଳକୁ ସାରଳା-ମହାଭାରତର ପୂର୍ବ ବୋଲି ନିର୍ଣ୍ଣୟ କଲେ ଅଯୁକ୍ତିକର ହେବ ନାହିଁ । ନିମିତ୍ତାର୍ଥରେ 'କଇ'ର ବ୍ୟବହାର ମଧ୍ୟ ଥିଲା ଓ ବିଚିତ୍ର ରାମାୟଣରେ ରହିଛି–

ବେଶାନ୍ତ ହକାରି ଲୋମପାଦ ରାଜନ ।
ପୁରୁଷାର୍ଥକଇ ଦେଲା ଧନବସନ ଦାନ ।। (ପୃ. ୯୮)

ପ୍ରାକୃତ ରୀତିରେ ଷଷ୍ଠୀ ଓ ଚତୁର୍ଥୀ ବିଭକ୍ତି ମଧ୍ୟରେ ଭେଦରକ୍ଷା କରାଯାଉ ନଥିବାରୁ ଠାଏଁ ଠାଏଁ ଷଷ୍ଠୀ ବିଭକ୍ତିରେ ମଧ୍ୟ କଇ ପ୍ରଯୁକ୍ତ ହୋଇଛି–

ଏହା କଇ ଯେସନେକ ସନ୍ତତି ଉପୁଜଇ । (ପୃ. ୧୩୮)

ସାରଳା ମହାଭାରତ ଆଦିରେ ମଧ୍ୟ ଷଷ୍ଠୀ ଚତୁର୍ଥୀ ବିଭକ୍ତି ମଧ୍ୟର ଭେଦ ଅନେକତ୍ର ରହିନାହିଁ । ମୋର ଅର୍ଥରେ 'ମୋତେ'ର ବ୍ୟବହାର ପାଇଁ ଗୋପୀନାଥ ନନ୍ଦଙ୍କ ଶ୍ରୀ ଭାରତ ଦର୍ପଣ (ପୃ. ୨୨୬) ଦ୍ରଷ୍ଟବ୍ୟ ।

'କଇ' ପ୍ରତ୍ୟୟ ବିଷୟରେ ଗୋପୀନାଥ ନନ୍ଦେ ଭିନ୍ନ ମତ ପୋଷଣ କରି ସାରଳାଦାସଙ୍କ ଲେଖାରେ ତାହା ନଥିବା କହିଛନ୍ତି– ''ଏହି 'କଇ' ପ୍ରତ୍ୟୟର ବ୍ୟବହାର ଶ୍ରୀ ବଳରାମଦାସେ ନିଜ ରାମାୟଣରେ ସମଧିକ ଚଳାଇ ଅଛନ୍ତି । ବୋଧହୁଏ, ଏ ମହାଶୟ କେବଳ ଏହି ପ୍ରତ୍ୟୟର ସୃଷ୍ଟିକର୍ତ୍ତା'' (ଶ୍ରୀଭାରତ ଦର୍ପଣ, ପୃ. ୨୨୫) । ନନ୍ଦେ ଆଉ ମଧ୍ୟ କହିଛନ୍ତି– ''ଆମ୍ଭେ ଆମୂଳାନ୍ତ ସାରଳା ଭାରତ ଯତ୍‌କିଞ୍ଚିତ୍ ସାବଧାନତା ପୂର୍ବକ ପାଠ କରିଅଛୁଁ । ପ୍ରମାଣ ଉଲ୍ଲେଖ କରିବାକୁ କୁତ୍ରାପି କଇ ପ୍ରତ୍ୟୟାନ୍ତ ପଦ ପାଇ ପାରିନାହୁଁ ।'' ସାରଳା-ମହାଭାରତରେ କଇର ସୁପ୍ରଚୁର ବ୍ୟବହାର ଥିବା ସତ୍ତ୍ୱେ ନନ୍ଦଙ୍କ ଦୃଷ୍ଟିରେ ନ ପଡ଼ିବା ବିସ୍ମୟକର । ପାଠକେ ଆର୍ତ୍ତବାବୁଙ୍କ ଦ୍ୱାରା ସଂପାଦିତ ସାରଳା-ମହାଭାରତରେ କଇ ପ୍ରତ୍ୟୟାନ୍ତ ପଦ ଶତ ସଂଖ୍ୟାରେ ସର୍ବତ୍ର ପାଇବେ । ଆର୍ତ୍ତବାବୁ ଅନୁସ୍ୱାରଟିଏ ଯୋଗ କରି କଇ ସ୍ଥାନରେ କଇଂ କରିଛନ୍ତି କିନ୍ତୁ ତାଳପତ୍ର ପୋଥିରେ ତାହାର ରୂପ ସାଧାରଣ ଭାବରେ କଇ । କେତେକ ଲେଖନକାରଙ୍କର ଅନାବଶ୍ୟକ ଅନୁସ୍ୱାର ଯୋଗ କରିବା ଗୋଟିଏ ଖୋଇ ଥିଲା । ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବର ଆଦ୍ୟ ୧୫ ପୃଷ୍ଠାରେ ଥିବା କଇର ବ୍ୟବହାରର ପ୍ରମାଣ ଦେଉଛି –

୧. (୪ର୍ଥୀ) ପଣ୍ଡାୟେ ବୋଇଲେ ନିଅ ଯା ତୋହର ଘରକଇଂ (ପୃ. ୫) ।
୨. (୨ୟା) ଶୂଦ୍ରକଇଂ ବ୍ରାହ୍ମଣେ ଯେ ମାଗିବେ ତଳହାଥେ (ପୃ. ୯) ।
୩. (୬ଷ୍ଠୀ) ପିତାମାତା କଇଂ ନୋହିବ ଭଗତ (ପୃ.୧୦) ।

୪. (୨ୟା) ରାଜାକଇଂ ମାରିତେ ପାଞ୍ଚ କରିବେ ଅମନାତ୍ୟ (ପୃ.୧୧)।
୫. (୪ର୍ଥୀ) ତାହା କଇଂ ନ ମିଳିବ ଅନ୍ନବସ୍ତ୍ର ଧନ ଯେ ସନ୍ତାନ (ପୃ. ୧୧)।
୬. (୬ଷ୍ଠୀ) ଏହା ଉପେକ୍ଷିଲେ ଦେବ କୁଳକଇଂ ଦୂଷଣ (ପୃ. ୧୪)
୭. (୪ର୍ଥୀ) ବିଭାକଇଂ ଉଦିଯୋଗ କଲେକ ପରମ ସାନନ୍ଦ (ପୃ. ୧୫)।

ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ମଧ୍ୟ କଇର ବ୍ୟବହାର ଥିବାର ଅଭିଲିଖିତ ପ୍ରମାଣ ପ୍ରଚୁର ରହିଛି । ଖ୍ରୀ. ୧୨୯୫ର ଭୁବନେଶ୍ୱର ଶିଳାଲିପିରେ ଅଛି– 'ଦୁଗ୍‌ଗାଭଟ ଆଚାର୍ଯଂକୈ ବଂଧା କଲା ।'' ଖ୍ରୀ. ୧୩୩୦ର ଶ୍ରୀକୂର୍ମମ୍ ଶିଳାଲିପିରେ ବହୁବାର କଇର ପ୍ରୟୋଗ ରହିଛି, ଯଥା– 'ଭୋଗକୈ ଭାତୁ', 'ବୈଷ୍ଣବ ପ୍ରକରଣ କୈ ଭାତୁ' । ଖ୍ରୀ. ୧୩୮୪ର କେନ୍ଦୁଲି ତାମ୍ରଫଳକରେ '୯୦୦ ମାଢ଼କଇ', ଖ୍ରୀ. ୧୩୯୫ର ଶଙ୍କରାନନ୍ଦ ମଠ ତାମ୍ର ଫଳକରେ 'ତ୍ରିଂଶବାଟୀକୈ ସୀମା କଲା' ଓ ଖ୍ରୀ. ୧୪୦୩ର ଶ୍ରୀକୂର୍ମମ୍ ଶିଳାଲିପିରେ 'ବର୍ଷକୈ ଚାରି ମାଣ ଦଶ ପୁଟି' ରହିଛି । ଏହି ସବୁ ପ୍ରମାଣ ନନ୍ଦ ମହାଶୟଙ୍କ ମତକୁ ଅସିଦ୍ଧ କରୁଛି ।

ଅନ୍ତତଃ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁବଚନର ଦ୍ୱିତୀୟା ବିଭକ୍ତି ସୂଚକ ନ୍ତ ପ୍ରତ୍ୟୟ ଓଡ଼ିଆରେ ଚଳୁଥିଲା, ଏହା ଜଣାଶୁଣା । 'ମାନ୍ୟାର୍ଥେ ବହୁବଚନ ନ୍ୟାୟରେ ଏକବଚନର ଦ୍ୱିତୀୟା ବିଭକ୍ତିରେ ମଧ୍ୟ ନ୍ତର ପ୍ରୟୋଗ କ୍ୱଚିତ୍ ଥିଲା । ସପ୍ତଦଶ ଶତାବ୍ଦୀର ବିଷ୍ଣୁଦାସ ଓ ବିଶ୍ୱନାଥ ଖୁଣ୍ଟିଆଙ୍କ ରଚନାରେ 'ନ୍ତ'ର ବ୍ୟବହାର ଅଛି କିନ୍ତୁ ଅତ୍ୟଳ୍ପ । ବଳରାମ ଦାସ ସାରଳାଦାସଙ୍କ ଲେଖାରେ 'ନ୍ତ'ର ବ୍ୟବହାର ଅଧିକ ଓ ବୋଧହୁଏ ବିଚିତ୍ର ରାମାୟଣରେ ସର୍ବାଧିକ । ଏକବଚନରେ ମାନ୍ୟାର୍ଥେ 'ନ୍ତ' ପ୍ରତ୍ୟୟର ପ୍ରୟୋଗ ବିଚିତ୍ର ରାମାୟଣରେ ଅନେକତ୍ର ମିଳେ, ଯଥା– 'କଉଶୁଲ୍ୟା ଦେବୀନ୍ତ କୁମରଙ୍କୁ ଦେଖାଅ' । ଏକବଚନରେ 'ନ୍ତ'ର ପ୍ରୟୋଗ ସାରଳା-ମହାଭାରତର ମଧ୍ୟ ବିରଳତଃ ରହିଛି (ମଧ୍ୟ ୪୩୧)।

'ନ୍ତ'ର ଅତ୍ୟନ୍ତ ବିରଳ ପ୍ରୟୋଗ ବହୁବଚନର ପ୍ରଥମା ବିଭକ୍ତିରେ । ଯଥା ଚଣ୍ଡୀପୁରାଣରେ–

ମୁକୁଟ ବନ୍ଧା ଯୋଦ୍ଧାମାନେ ଅଟନ୍ତି ଏମାନନ୍ତ ।
ପଦାତି ସଇନି କେ କରିବାକ ଅନ୍ତ ।।

ବିଚିତ୍ର ରାମାୟଣରେ–

ତେଣୁ ସେ ତୋହର ପୁରକଇ ଅଇଲୁ ।
କୁମରନ୍ତ ହେବା ଶୁଣି ହରଷ ହୋଇଲୁ ।। (ପୃ. ୧୫୩)

ସାରଳା-ମହାଭାରତ (ସ୍ୱର୍ଗାରୋହଣ ପୃ. ୨୪)–

ଅର୍ଜୁନ ବୋଇଲେ ତୁମ୍ଭେ ଆମ୍ଭ ଶ୍ୱଶୁରନ୍ତ ।
ତୁମ୍ଭର ବୋଲେ ଫେଡ଼ିବା ୟେ ଯମଦେବତାନ୍ତ ।

## ବଚନ ବିଭ୍ରାଟ

ବହୁବଚନରେ ବହୁବଚନୋଚିତ କ୍ରିୟାରୂପକୁ ବ୍ୟବହାର ନ କରି ବିକଳ୍ପତଃ ଏକବଚନର କ୍ରିୟାରୂପକୁ ବ୍ୟବହାର କରିବା ଭାଷାର ପ୍ରାଚୀନତାର ଅନ୍ୟତମ ସଂକେତ । ଭାଷାର ଗଠନର ପ୍ରଥମାବସ୍ଥାରେ କ୍ରିୟାରୂପର ବଚନ ଭେଦରେ ରୂପଭେଦ ନ ରହିବା ଦୋଷ ସ୍ୱାଭାବିକ । ସାରଳାଦାସଙ୍କ ରଚନାରେ ମଧ୍ୟ ଏପରି ବ୍ୟବହାର ଅଳ୍ପଶଃ ଦେଖାଯାଏ । ଯେପରିକି ତାଳପତ୍ର ପୋଥିର ଚଣ୍ଡୀପୁରାଣରେ–

ଦୁର୍ଗା ବୋଇଲେ ଭ୍ରାନ୍ତି ନ କର ତୁମ୍ଭେ କିଛି ।
ତୁମ୍ଭେ ଭୋଗ କରିବ ଆଉରି ଅପାର ସନ୍ୟ ଆସୁଅଛି ।।

ଏଠାରେ ବହୁବଚନର 'ଅପାର ସନ୍ୟ' ଲାଗି ଏକବଚନର ଆସୁଅଛି କ୍ରିୟା ବ୍ୟବହୃତ ହୋଇଛି । ବିଚିତ୍ର ରାମାୟଣରେ ଏପରି ବ୍ୟବହାର ଅଧିକ ସଂଖ୍ୟାରେ ଦେଖାଯାଏ–

ସର୍ବ ସୁଲକ୍ଷଣ ତୋହର ଦୁଇ କୁମର ।
ମାହେନ୍ଦ୍ରବେଳେ ଯେ ହୋଇ ଅଛଇ ଅବତାର ।। (ପୃ. ୬୩)

× ×

ଶୁଣିଣ ଅଶ୍ୱଜା ଭୁଜ ସିଞ୍ଚାଡ଼ିଣ ଦେଲା ।
ଦଶବିଂଶ ଯୋଜନେ ଯାଇ ସହସ୍ର ମାଲ ପଡ଼ିଲା ।। (ପୃ. ୧୨୮)

× ×

ରାଜରଷି ସେ ଭୋଗ୍ୟବିଳାସ କରଇ ।
ସନିଧ୍ୟେଣ ଖଟି ତାହାର ଅନେକ ମୁନିବରଇ । (ପୃ. ୩୯)

× ×

ଅନେକ ସୁର ଏଥେ ଯୁଦ୍ଧରେ ପଡ଼ିଲା ।
ଶ୍ରୀରାମର ଭାଇ ଇନ୍ଦ୍ରଜିତ କଇ ମାଇଲା । (ପୃ. ୨୬୫)

ଅପର ପକ୍ଷରେ, ଏକବଚନରେ ମଧ୍ୟ ବହୁବଚନର କ୍ରିୟାର ପ୍ରଯୋଗ ରହିଛି–

ତେବେ ସେ ଶକତି ଘାଆ ଭଲ ହୋଇବେ ।। (ପୃ. ୨୭୧)

## ପ୍ରାଚୀନ କ୍ରିୟାରୂପ

ଭାଷାର ବିବର୍ତ୍ତନ କ୍ରମରେ ବିଚିତ୍ର ରାମାୟଣ ଯେ ପ୍ରାକୃତ ସ୍ତରର ନିକଟତର ତାହା ସେଥିରେ ବ୍ୟବହୃତ କତିପୟ କ୍ରିୟାରୂପରୁ ଜଣାପଡ଼େ । ଉଦାହରଣ ସ୍ୱରୂପ ବିଚିତ୍ର ରାମାୟଣରେ ଲେଖାଅଛି–

କେବଣ ଦିନେ ଚାଲଇ ଦୁଇ କୋଶ ।
ଯୋଜନେ ଗମନ୍ତେ ପାବଇ ସେହୁ ପ୍ରାସ ।। (ପୃ. ୨୮)

ପାବଇ ଅବିକୃତ ପ୍ରାକୃତ ରୂପ ଯାହା କ୍ରମେ ପାଅଇ ହୋଇ ଓଡ଼ିଆରେ ପାଇ ଓ ପାଏରେ ରୂପାନ୍ତରିତ ହୋଇଛି । ପ୍ରାକୃତ ଢଙ୍ଗର ଏପ୍ରକାର ଅନେକ କ୍ରିୟାରୂପ ବିଚିତ୍ର ରାମାୟଣରେ ମିଳେ– କଢ଼ାବନ୍ତି (କଢ଼ାନ୍ତି), ଗାବନ୍ତି (ଗାଆନ୍ତି); ଗୋଡ଼ାବନ୍ତି (ଗୋଡ଼ାନ୍ତି); ଦିଆବନ୍ତି (ଦିଆନ୍ତି); ଦେଖାବନ୍ତି (ଦେଖାନ୍ତି); ପକାବନ୍ତି (ପକାନ୍ତି); ପଳାବନ୍ତି (ପଳାନ୍ତି); ବନ୍ଧାବନ୍ତି (ବନ୍ଧାନ୍ତି); ବସାବନ୍ତି (ବସାନ୍ତି), ଲଗାବନ୍ତେ (ଲଗାନ୍ତେ), ଲମ୍ଭାବନ୍ତି (ଲମ୍ଭାନ୍ତି) ଆଦି । ସାରଳା ଦାସଙ୍କ ବିଭିନ୍ନ ରଚନାରେ ଓ ଅନ୍ୟାନ୍ୟ ପ୍ରାଚୀନ ରଚନାରେ ଏ ପ୍ରକାର ଶବ୍ଦରୂପ ନିତାନ୍ତ ବିରଳ ନୁହେଁ କିନ୍ତୁ ବିଚିତ୍ର ରାମାୟଣର 'ଦିଆବସି', 'ଅଣାବସି' ଭଳି କ୍ରିୟାରୂପ ଯାହା ଆଦେଶ/ଅନୁଜ୍ଞା ଜ୍ଞାପକ ସି ପ୍ରତ୍ୟୟ ଯୋଗେ ଗଠିତ ସାରଳା-ମହାଭାରତରେ ମଧ୍ୟ ଦୁର୍ଲଭ । ଏହି ବିଚାରରୁ ବିଚିତ୍ର ରାମାୟଣର ଭାଷାର ପ୍ରାଚୀନତରତା ସ୍ୱୀକାର୍ଯ୍ୟ ।

ଅଷ୍ଟାଦଶ (ଓ ଅତ୍ୟଳ୍ପ ମାତ୍ରାରେ ଊନବିଂଶ) ଶତାବ୍ଦୀ ଯାଏଁ ପ୍ରାଚୀନ ଓଡ଼ିଆରେ ଦ୍ୱିତୀୟ ପୁରୁଷର ଆଦେଶ ବା ଅନୁଜ୍ଞା ସ୍ଥଳେ କ୍ରିୟାରେ ସି ପ୍ରତ୍ୟୟଟିଏ ଲାଗୁଥିଲା । କରସି (କର), ଆସସି (ଆସ), ଯାଅସି (ଯାଅ) ଦେସି (ଦେ), ଦିଅସି (ଦିଅ), ଯାସି (ଯା) ଆଦି କ୍ରିୟାରୂପ ସାରଳା-ମହାଭାରତଠାରୁ ଦାଢ଼୍ୟତାଭକ୍ତି ଯାଏଁ ବହୁଳ ଭାବରେ ବ୍ୟବହୃତ ହୋଇଛି । ବିଚିତ୍ର ରାମାୟଣରେ ମଧ୍ୟ ଏହି ପ୍ରକାରର ସିଯୁକ୍ତ କ୍ରିୟାରୂପର ବିଶେଷ ବ୍ୟବହାର ରହିଛି, ସେଠାରେ ଅଧିକନ୍ତୁ ରହିଛି ଦିଆବସି, ଅଣାବସି ଭଳି ଶବ୍ଦ ଯାହା ଅନ୍ୟତ୍ର ଦୁର୍ଲଭ । ଅଧିକନ୍ତୁ, ଦ୍ୱିତୀୟ ପୁରୁଷର ଅନୁଜ୍ଞା ଭିନ୍ନ ଅନ୍ୟାନ୍ୟ କାଳରୂପରେ ତଥା ଦ୍ୱିତୀୟ ଭିନ୍ନ ଅନ୍ୟାନ୍ୟ ପୁରୁଷରେ ସି ପ୍ରତ୍ୟୟର ପ୍ରୟୋଗ ବିଚିତ୍ର ରାମାୟଣର ଏକ ଅନନ୍ୟ ସୁଲଭ ବିଶେଷତା, ସାରଳା-ମହାଭାରତରେ ମଧ୍ୟ ଏପରି ପ୍ରୟୋଗ ବିରଳ । ବିଚିତ୍ର ରାମାୟଣର ଏପରି ସ୍ୱତନ୍ତ୍ର ପ୍ରୟୋଗ ଦୃଷ୍ଟେ ଅନୁମାନ କରାଯାଇପାରେ ଯେ ପହିଲୁ ଏକ ନିରର୍ଥକ ପ୍ରୟୋଗ ଭାବରେ ସି ବିଭକ୍ତିଟି ବିଭିନ୍ନ କାଳରୂପର କ୍ରିୟାରେ ଲାଗୁଥିଲା କିନ୍ତୁ ପରେ କେବଳ ଦ୍ୱିତୀୟ ପୁରୁଷର ଅନୁଜ୍ଞାରେ ଲାଗିରହିଲା । ଚର୍ଯ୍ୟାଗୀତରେ 'ସି' ପ୍ରତ୍ୟୟର ପ୍ରୟୋଗ ରହିଛି (ଯାସି, ମାରେସି, ନିଲେସି, ପୁଛସି, ବୁଝସି, ଅଛସି ଆଦି ଶବ୍ଦରେ) ଓ ଅନୁଜ୍ଞା / ଆଦେଶ ନ ହୋଇ ମଧ୍ୟ ଅଛ ଅର୍ଥରେ ଅଛସି ଓ ନେଲା ଅର୍ଥରେ ନିଲେସି ଶବ୍ଦ ମିଳେ । ବିଚିତ୍ର ରାମାୟଣରେ 'ସି' ର ପ୍ରାଚୀନ ସ୍ତରର ବିଶେଷ ପ୍ରୟୋଗର କେତେକ ଦୃଷ୍ଟାନ୍ତ ଦିଆଯାଇପାରେ (ନିମ୍ନ ରେଖାଙ୍କିତ କ୍ରିୟା ପଦଗୁଡ଼ିକ ତାହାର ବିଶେଷତା କିନ୍ତୁ ରେଖାଙ୍କିତ ହୋଇନଥିବା ସି ବିଭକ୍ତିଯୁକ୍ତ କ୍ରିୟାରୂପ ପ୍ରାଚୀନ ସାହିତ୍ୟରେ ବିରଳ ନୁହେଁ)–

କିପାଂ ବିକଳେ ଗୋ ରୋଦନ କରସି
ଏ ସିଆଡ଼ି ଲତା ଦୁଇ କରେ ଦୃଢ଼ କରି ଧରସି ।। (ପୃ. ୩୦୭)

× ×

ନବର ଭିତରୁ ମୁହିଂ ଚାଉଳ ଦିଅସି ॥ (ପୃ. ୬୨)

× ×

ଏବେ ଆମ୍ଭର ପଦାର୍ଥକ୍ତ ଆଧାର କରସି ।

ଏହୁ ଭଲ ପଦାର୍ଥ ତୋତେ ଦିଆଇସି । (ପୃ. ୮୯)

ସଂସ୍କୃତ ଭାଷାର ବିଧିଲିଙ୍ ଭଳି Subjunctive moodରେ ଔଚିତ୍ୟ ସମ୍ଭାବନା ଆଦି ସୂଚାଇବା ଲାଗି ଏକ ନିର୍ଦ୍ଦିଷ୍ଟ କ୍ରିୟାରୂପ ପ୍ରାଚୀନ ସାହିତ୍ୟରେ ରହିଥିଲା । ତାହାର ପ୍ରଚଳନ ହୁଏତ ଅଷ୍ଟାଦଶ ଶତାବ୍ଦୀପରେ ଓଡ଼ିଆରୁ ଉଭେଇ ଯାଇଛି । ବିଚିତ୍ର ରାମାୟଣରେ ତାହାର ପ୍ରଚଳନର ଦୃଷ୍ଟାନ୍ତ—

ସେ କଇତବ ସ୍ତିରୀଙ୍କର ସଙ୍ଗତେ ନ ଯିବା ।

ମୋହର ଆଶ୍ରମ ବାବୁ ତୁଚ୍ଛା ନ କରିବା ॥ (ପୃ. ୯୬)

ଏଠାରେ 'ଯିବା କର୍ମଟି ହେଉ' ଅର୍ଥରେ 'ଯିବା' ବ୍ୟବହୃତ । ସେହିପରି 'କରିବା' 'ବସିବା' ଆଦି କ୍ରିୟାର ବ୍ୟବହାର ରହିଛି । ଏପରି ପ୍ରୟୋଗର ଅବଶେଷ 'ବସିବା ହୁଅନ୍ତୁ', 'ବସିବା ହେଉ', 'କହିବା ହେବେ' ପ୍ରୟୋଗରେ ଅନୁସନ୍ଧାନ କରାଯାଇପାରେ । ଆହୁରି ମଧ୍ୟ, ସେହି Subjunctive moodରେ ଅଧିକ 'କ' ପ୍ରତ୍ୟୟ ଯୁକ୍ତ ହୋଇ ବସିବାକ, ଯିବାକ ଭଳି ପଦମାନ ସିଦ୍ଧ ହୁଏ, ଯାହାର ବ୍ୟବହାର ବିଚିତ୍ର ରାମାୟଣରେ ଯେପରି ପ୍ରଚୁର ଅନ୍ୟାନ୍ୟ ପ୍ରାଚୀନ ରଚନାରେ ସେହିପରି । କ ପ୍ରତ୍ୟୟଟି ସଂବନ୍ଧ କାରକ (ଷଷ୍ଠୀ ବିଭକ୍ତି)ରେ ଅତି ପ୍ରାଚୀନ ଓଡ଼ିଆରେ ଥିଲା— ''ଆମ୍ଭକ ତାଳକ ବନକ ବାସୀ' (ଢମାଳି) । ମାନ୍ୟାର୍ଥେ ଅନୁସ୍ୱାର ଯୋଗରେ ତାହା 'ଙ୍କ' ହୋଇଅଛି । ଦକ୍ଷିଣ ଓଡ଼ିଶାରେ ସେହି ଷଷ୍ଠୀ ବିଭକ୍ତି ଚିହ୍ନ 'ର' ଯୋଗରେ 'ବସିବାର', 'ଯିବାର' ଆଦି ପଦ ବ୍ୟବହୃତ ହୁଏ, ଯଥା— ଫାଟି ପଡ଼ିବାର ନିକୁଞ୍ଜ— ସଞ୍ଚାର ଶ୍ରମୁ ମୋ ଚରଣ ତଳ (ଫ ଚମ୍ପୂ) ।

ନିମିତ୍ତ ଅର୍ଥରେ କ୍ରିୟା ପରେ ତ ପ୍ରତ୍ୟୟ ଲାଗି ପଦ ଗଠନ ପ୍ରାଚୀନତାର ଅନ୍ୟତମ ଲକ୍ଷଣ । ଗାଇବା ପାଇଁ ଅର୍ଥରେ 'ଗାଇତ', ଧରିବାକୁ ଅର୍ଥରେ 'ଧରିତ' ଭଳି ବହୁ ସଂଖ୍ୟକ ପଦ ବିଚିତ୍ର ରାମାୟଣରେ ରହିଛି [ଏହା ଉତ୍ତର ଓଡ଼ିଶାର ଗାଇତେ, ଧରିତେ ଠାରୁ ଭିନ୍ନ] । ବିଚିତ୍ର ରାମାୟଣରେ କ୍ୱଚିତ୍ ଦ୍ୱିତୀୟ ପୁରୁଷର ଆଦେଶାର୍ଥରେ 'ହ' ପ୍ରତ୍ୟୟ କ୍ରିୟାପଦରେ ଲାଗିଛି, ଯେପରିକି— ଭୁଞ୍ଜହ, ଲୋଡ଼ହ ।

''କାହିଂ ଅଛି ମଉଳା ମୋହର ବେଗେଣ ଲୋଡ଼ହ ।'' (ପୃ. ୨୮୧)

କିନ୍ତୁ ମନେହୁଏ, ଏହା କ୍ରିୟାରୂପର ସ୍ୱାତନ୍ତ୍ର୍ୟ ନୁହେ, ଉଚ୍ଚାରଣକୁ ଗାମ୍ଭୀର୍ଯ୍ୟ ଯୋଗାଇବା ଲକ୍ଷ୍ୟ ରଖି ହିଁ 'ହ' ଅକ୍ଷରକୁ ଯୋଗ କରାଯାଇଛି ।

## ବିଶିଷ୍ଟ ବ୍ୟବହାର

ବିଚିତ୍ର ରାମାୟଣର ଭାଷାରେ ଯେଉଁ କେତେକ ନିରର୍ଥକ ବା ସନ୍ଦେହାର୍ଥକ ବା ନିଶ୍ଚୟାର୍ଥକ ଏକାକ୍ଷରୀ ଅବ୍ୟୟ ବ୍ୟବହୃତ ହୋଇ ଗ୍ରନ୍ଥର ପ୍ରାଚୀନତାକୁ ଘୋଷିତ କରେ ତନ୍ମଧ୍ୟରେ ହି, ଇ, କ, ନା, ନି, ଣ ଓ ସେ ଉଲ୍ଲେଖନୀୟ । ଏହି ସବୁ ସାରଳା ମହାଭାରତ ଆଦି ପ୍ରାଚୀନ ରଚନାରେ ମଧ୍ୟ ମିଳେ କିନ୍ତୁ ବିଚିତ୍ର ରାମାୟଣରେ ଅଧିକ ମାତ୍ରାରେ ମିଳେ । ହି ଓ ଇ ଏହି ଦୁଇ ଅବ୍ୟୟ ବିଶେଷ୍ୟ ଓ ବିଶେଷଣ, ସର୍ବନାମ, କ୍ରିୟା ଓ ଅବ୍ୟୟ ପଦର ଅନ୍ତରେ ପଦ ଉପରେ ଜୋର୍ ଦେବା ଲକ୍ଷ୍ୟରେ ଲାଗେ । ଆଧୁନିକ କଥିତ ଭାଷାରେ ଉଭୟର ସ୍ଥିତି ରହିଛି ମୁହିଁ, ତୁଇ, ସେଇ, ଏହି ଆଦି ଶବ୍ଦରେ ତଥା ନିଶ୍ଚୟାର୍ଥକ ହିଁ ଅବ୍ୟୟରେ ('ମୋତେ ଯିବାକୁ ହିଁ ହେବ') । ନିରର୍ଥକ 'କ', ସନ୍ଦେହାର୍ଥକ 'ନା' ଓ ନିଶ୍ଚୟାର୍ଥକ 'ନି' ଅବ୍ୟୟମାନ ମୁଖ୍ୟତଃ କ୍ରିୟାପଦଲଗ୍ନ ହୁଏ, ଯେପରି କି– ଗଲାକ, ମିଳିଲାକ (ପହଞ୍ଚିଗଲା), ତେଜିବନା ଦୁଖ (ଦୁଃଖ ଛାଡ଼ିବ ପରା), ଚାଲିଲେନି (ଚାଲିଲେଣି) । ସନ୍ଦେହ ଅର୍ଥରେ ଓ କେଉଁଟି ଅର୍ଥରେ ଏହା ଏବେ ବି ଚଳେ– 'କିଏ ବଡ଼ ? ରାମ ନା ଶ୍ୟାମ ?'; 'ରାମ ବଡ଼ ନା ?' । ପ୍ରାଚୀନ ନି ଆଜିର ଓଡ଼ିଆରେ 'ଣି' ହୋଇ ଚଳୁଛି । କ୍ରିୟା, ଅବ୍ୟୟ ଆଦି ଉପରେ ଜୋର୍ ଦେବା ଲକ୍ଷ୍ୟରେ 'ଣ' ବ୍ୟବହୃତ ହେଉଥିଲା– ନିତ୍ୟେଣ, ବିକାଶିଣ, ସାବଧାନେଣ, ହୋଇଣ । ଏହିଟି ପ୍ରାଚୀନ ସାହିତ୍ୟରେ ସୁଲଭ କିନ୍ତୁ 'ସେ' ଅବ୍ୟୟ ଯୋଗ ବିଚିତ୍ର ରାମାୟଣରେ ଅଧିକ ପ୍ରଚୁର, ଦୃଷ୍ଟାନ୍ତ–

ତୁମ୍ଭର ଆସିବା ଯାଏ ଦ୍ୱାରେଣ ବସିଥିବି ।
ବାହୁଡ଼ି ଅଇଲେ ସେ ଭିତରେଣ ପଶିବି । (ପୃ.୬୧)

ଅନୁମିତ ହୋଇପାରେ ଯେ 'ସେ' କ୍ରମଶଃ 'ଯେ' ଦ୍ୱାରା ଅପସାରିତ ହୋଇଗଲା ।

ଭାଷା ଓ ଶୈଳୀ ଦୃଷ୍ଟିରୁ ବିଚିତ୍ର ରାମାୟଣ ସାରଳା-ମହାଭାରତର ପୂର୍ବକ ଭଳି ବୋଧହୁଏ କିନ୍ତୁ ଉଭୟ ଗ୍ରନ୍ଥର ଭାଷା ଓ ଶୈଳୀର ସାମ୍ୟର ମାତ୍ରା ଏତେଦୂର ଯେ ଉଭୟ ମଧ୍ୟର ସମୟ ବ୍ୟବଧାନ ଅର୍ଦ୍ଧଶତାବ୍ଦୀରୁ ଅଧିକ ବୋଲି ନିରୂପଣ କରିବା ସଙ୍ଗତ ହେବନାହିଁ । ଏହି ପ୍ରକାରେ ଅଦ୍ୟାବଧି ପ୍ରକାଶିତ ଓଡ଼ିଆ ସାହିତ୍ୟିକ ସୃଷ୍ଟି ମଧ୍ୟରେ ବିଚିତ୍ର ରାମାୟଣ ପ୍ରାଚୀନତମ ବୋଲି ସ୍ଥିର କରାଯାଉଛି ।

## କବିଙ୍କ ପରିଚୟ

ସିଦ୍ଧେଶ୍ୱର ଦାସ ବିଚିତ୍ର ରାମାୟଣ ମଧ୍ୟରେ ଆତ୍ମପରିଚୟ ବିଶେଷ ଦେଇନାହାନ୍ତି । ସେ ଶୂଦ୍ର ଥିବା କଥା ଜଣାଇଛନ୍ତି କିନ୍ତୁ ନିର୍ଦ୍ଦିଷ୍ଟ ଭାବରେ କେଉଁ ଜାତିର ଥିଲେ କହିନାହାନ୍ତି–

ଜନ୍ମେଣ ଶୂଦ୍ର ଚଞ୍ଚଳ ମୋହର ମତି ।
ପୂରୋଣି ଦେସି ନାରାୟେଣ ଅନନ୍ତ ମୂରତି ।। (ପୃ. ୧୧୦)

ଚଞ୍ଚଳ ମନୁଷ୍ୟ ମୁଁ ଶୂଦ୍ରକୁଳେ ଜାତ
ଅକ୍ରିୟା ଆଚାର ମନ କି ସଚଇତ ।। (ପୃ.୩୯୫)

ଓଡ଼ିଶାରେ ଶୂଦ୍ର କହିଲେ ଆର୍ଯ୍ୟାବର୍ତ୍ତରୁ ଆଗତ/ଆନୀତ ବ୍ରାହ୍ମଣ ଓ ଅଳ୍ପ କେତେକ ବାହୁବଳରେ ଜାତିଭେଦର ସିଡ଼ିରେ ଉପରକୁ ଉଠିଥିବା କଥା କଥିତ କ୍ଷତ୍ରିୟ (ଓ କେତେକ ବ୍ରାହ୍ମଣ)ଙ୍କୁ ଛାଡ଼ିଲେ ଅବଶିଷ୍ଟ ପ୍ରାକୃତ ଭାଷୀ ଜନସାଧାରଣ । ବ୍ରାହ୍ମଣମାନେ ଓ ଶାସକ କ୍ଷତ୍ରିୟମାନେ 'ଦେବ' ସଂଜ୍ଞାଧାରଣ କରୁଥିଲେ ଓ ସଂସ୍କୃତର ପକ୍ଷପାତୀ ଥିଲେ । ସଂସ୍କୃତର 'ଦେବଭାଷା' ନାମକରଣଟା' ସ୍ୱର୍ଲୋକର ଦେବତାଙ୍କ ଭାଷା ହେବା ଯୋଗୁଁ ନୁହେଁ, ତାହା ନରଦେବ (କ୍ଷତ୍ରିୟ) ଓ ଭୂଦେବ (ବ୍ରାହ୍ମଣ)ଙ୍କ ଭାଷା ହେବା ହେତୁ ହିଁ ହୋଇଛି । ଶୂଦ୍ରମୁନି ଆଖ୍ୟାର ତାତ୍ପର୍ଯ୍ୟ ବିଚାରବେଳେ ଏ ବିଷୟର ବିଶଦ ଆଲୋଚନା ହୋଇଛି । କବି ନିର୍ଦ୍ଦିଷ୍ଟ ଭାବରେ ନିଜର ଜାତିର ନାମ ନ ଜଣାଇ କେବଳ ମାତ୍ର ଶୂଦ୍ର ବୋଲି ଉଲ୍ଲେଖ କରିବା ତାତ୍କାଳିକ ପରିସ୍ଥିତି ଦୃଷ୍ଟେ ତାତ୍ପର୍ଯ୍ୟପୂର୍ଣ୍ଣ । ସବୁ ଅସ୍ପୃଶ୍ୟଙ୍କୁ ଏକତାପାଶରେ ବାନ୍ଧିବା ପାଇଁ ଗାନ୍ଧିଜୀ 'ହରିଜନ' ଶବ୍ଦ ପ୍ରୟୋଗ କରିବା ଭଳି ଏହି ଶୂଦ୍ର ଶବ୍ଦର ପ୍ରୟୋଗ, ଯାହା ସ୍ଥାନୀୟ ବିଭିନ୍ନ ଜାତିର ଓଡ଼ିଆ ଭାଷାଭାଷୀଙ୍କୁ ଏକୀଭୂତ କରିବା ପାଇଁ ଉଦ୍ଦିଷ୍ଟ ହେବା ମନେ ହୁଏ । ସିଦ୍ଧେଶ୍ୱର ଦାସ ଗ୍ରନ୍ଥ ମଧ୍ୟରେ ନିଜେ ଶୂଦ୍ର ବୋଲି ଦ୍ୱିବାର ଆତ୍ମପରିଚୟ ଦେଇଥିବା ସତ୍ତ୍ୱେ ଗ୍ରନ୍ଥର ପ୍ରଥମ ତେଲୁଗୁ ଅନୁବାଦକ ତୋଙ୍କାଡ଼ ଗୋପୀନାଥ ଗ୍ରନ୍ଥକର୍ତ୍ତାଙ୍କ ପରିଚୟ ଦେବାକୁ ଯାଇ "ଇ ପୁରାଣମ୍ମୁ ମାନୁଷ ଭବମ୍ମୁନା ଉତ୍ତର ଦେଶମ୍ମୁନା ନୁନା ସିଦ୍ଧେଶ୍ୱର ଦାସୁଣ୍ଡାନୁ ବିପ୍ରଯୋଗୀପୁଙ୍ଗବୁଣ୍ଡୁ ଓଡ୍ରଭାଷାନୁ ରଚିଞ୍ଚେ (ଅର୍ଥାତ୍, ଏହି ପୁରାଣଟି ନରଲୋକର ଉତ୍ତର ଦେଶବାସୀ ସିଦ୍ଧେଶ୍ୱର ଦାସ ନାମଧେୟ 'ବିପ୍ରଯୋଗୀପୁଙ୍ଗବ' ଓଡ଼ିଆ ଭାଷାରେ ରଚନା କରିଥିବାରୁ) ବୋଲି ଉଲ୍ଲେଖ କରିଥିବା ରହସ୍ୟପୂର୍ଣ୍ଣ । ଓଡ଼ିଆ ଗ୍ରନ୍ଥଟିକୁ ମୁଁ ଆବିଷ୍କାର କରିବା ପୂର୍ବେ ଶ୍ରୀ ପୁରୀପଣ୍ଡା ଅପ୍ପଲସ୍ୱାମୀ 'ସଂସ୍କୃତି' (୧୯୫୫ ଡିସେମ୍ବର) ଆଦି ତେଲୁଗୁ ପତ୍ରିକାରେ ସିଦ୍ଧେଶ୍ୱର ଦାସ ବ୍ରାହ୍ମଣ ଥିଲେ ବୋଲି ଆଲୋଚନା କରିଥିଲେ ଓ ପୂର୍ଣ୍ଣତଃ ତାହାଙ୍କ ମତ ଉପରେ ନିର୍ଭର କରି ପି.ଭି. ରତ୍ନମ୍ ଓଡ଼ିଆ 'କୋଣାର୍କ' ପତ୍ରିକାର ୧୯୬୪ ଡିସେମ୍ବର ସଂଖ୍ୟାରେ ଅନୁରୂପ ମତବ୍ୟକ୍ତ କରିଥିଲେ । ବର୍ତ୍ତମାନ ମୂଳ ଓଡ଼ିଆ ଗ୍ରନ୍ଥଟି ପ୍ରକାଶିତ ହୋଇଥିବାରୁ ଗୋପୀନାଥଙ୍କ ଉକ୍ତିର ପ୍ରମାଣ-ମୂଲ୍ୟ ହ୍ରାସ ପାଇଗଲା । ମୂଳ ଗ୍ରନ୍ଥରେ କବି ନିଜେ ଶୂଦ୍ର ବୋଲି ଲେଖିଥିବା ଦେଖିବା ପରେ ସ୍ୱୟଂ ଶ୍ରୀ ଅପ୍ପଲସ୍ୱାମୀ ମଧ୍ୟ ସ୍ୱୀକାର କରିଛନ୍ତି ଯେ ଗୋପୀନାଥ ଲେଖିଥିବା 'ବିପ୍ରଯୋଗୀ'ର ଅର୍ଥ ଜାତିନିରୂପକ ନ ହୋଇପାରେ ।

ଜଣେ ଶୂଦ୍ରକବିଙ୍କୁ 'ବିପ୍ରଯୋଗୀପୁଙ୍ଗବ' ବୋଲି ଅଭିହିତ କରିବା ପଛରେ କି ଉଦ୍ଦେଶ୍ୟ ଥାଇପାରେ, ସେ ବିଷୟରେ ବର୍ତ୍ତମାନ ଅନୁମାନ କରାଯାଇପାରେ ।

ଇତିପୂର୍ବେ ଦର୍ଶାଇଛି ମୂଳ ରାମାୟଣର ଚରିତ ବିଚିତ୍ର ରାମାୟଣରେ କିପରି ଛଦ୍ରେଛଦ୍ରେ ରୂପାନ୍ତରିତ ଓ ପରିବର୍ତ୍ତିତ ହୋଇଛି । ଏପରି ବିସଂବାଦକୁ ସଂସ୍କୃତରେ 'ବିପ୍ରୟୋଗ' କୁହାଯାଏ (ବି+ପ୍ରୟୋଗ) । ତେଲୁଗୁ, ଓଡ଼ିଆ ଆଦି ଭାଷାରେ ତତ୍ସମ ଶବ୍ଦ ଭାବରେ 'ବିପ୍ରୟୋଗ'ର ଏହି ଅର୍ଥ ସାହଜିକ । ଓଡ଼ିଆରେ ଓ ତେଲୁଗୁରେ ୟ ସ୍ଥଳେ ବିକଳ୍ପେ ଯ ବ୍ୟବହୃତ ହୋଇ ହୁଏ ବିପ୍ରଯୋଗ । ପୂର୍ବରୁ ଗୋଟିଏ କଥାର ପ୍ରୟୋଗ ଥିଲା, ପରେ ତାହାର ବିରୋଧ/ପରିବର୍ତ୍ତନ କରାଗଲେ 'ବିପ୍ରଯୋଗ' ଘଟେ । ସଂସ୍କୃତ ଅଭିଧାନ ଅନୁସାରେ ବିପ୍ରଯୋଗର ଅର୍ଥ quarrel (ବିବାଦ), disagreement (ବିମତ)* । ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ ଅନୁସାରେ 'ବିପ୍ରଯୋଗ'ର ଅର୍ଥ– "ବି. (ବି-ପ୍ର-ଯୋଗ) ବିରହ, ବିରୋଧ ।" ଓଡ଼ିଆ ପ୍ରମୋଦ ଅଭିଧାନରେ ପ୍ରଦତ୍ତ ବିପ୍ରଯୋଗର ଅର୍ଥ ମଧ୍ୟରେ ବିରୋଧ, ବିସଂବାଦ ସ୍ଥାନ ପାଇଛି । ସୁବିଦିତ ରାମାୟଣ ଚରିତର ବିପ୍ରଯୋଗ (ଅର୍ଥାତ୍ ବିସଂବାଦ) ବିଚିତ୍ର ରାମାୟଣ ମଧ୍ୟରେ ଆମୂଳାନ୍ତ ରହିଥିବା ହେତୁରୁ ଓ ଏପରି ବିପ୍ରଯୋଗ କରିବାରେ ସିଦ୍ଧେଶ୍ୱର ନିପୁଣ ଥିବାରୁ ତାଙ୍କର 'ବିପ୍ରଯୋଗୀପୁଙ୍ଗବ' (ଅର୍ଥତ୍ ଶ୍ରେଷ୍ଠ ବିସଂବାଦୀ) ଆଖ୍ୟା ଉପଯୁକ୍ତ ଅଟେ । ତୋଙ୍କାଡ଼ ଗୋପୀନାଥ ଯେ ସିଦ୍ଧେଶ୍ୱର ଶୂଦ୍ର ବୋଲି ଜାଣି ନଥିଲେ ତାହା ନୁହେଁ, କିନ୍ତୁ ସାମାଜିକ ବିଚାରରେ ଶୂଦ୍ରର ଅପ୍ରତିଷ୍ଠା ଦୃଷ୍ଟେ ଅନୁବାଦିତ 'ବିଚିତ୍ର ରାମାୟଣମୁ' ଗ୍ରନ୍ଥଟି ସମାଜର ସମାଦର ନ ପାଇବା ଆଶଙ୍କାରେ ମୂଳ ଗ୍ରନ୍ଥପ୍ରଣେତାଙ୍କର ଶୂଦ୍ର ଜାତିକୁ ପ୍ରକଟ ନ କରି ତାହାଙ୍କୁ ଛଳରେ 'ବିପ୍ରଯୋଗୀପୁଙ୍ଗବ' ଆଖ୍ୟା ଦେଲେ । ଏତଦ୍ୱାରା ଗୋପୀନାଥ ଅଶ୍ୱତ୍ଥାମା ହତ ନ୍ୟାୟରେ ମିଥ୍ୟାବାଦୀ ନ ହୋଇ ମଧ୍ୟ ପାଠକ/ଶ୍ରୋତା ମନରେ ସିଦ୍ଧେଶ୍ୱରଙ୍କ ଜାତି ନେଇ ମିଥ୍ୟା ଧାରଣା ସୃଷ୍ଟି କରିପାରିଲେ । କାରଣ, ସାଧାରଣ ଲୋକ 'ବିପ୍ରଯୋଗୀପୁଙ୍ଗବ'କୁ ବ୍ରାହ୍ମଣ ଓ ଯୋଗୀଶ୍ରେଷ୍ଠ ଅର୍ଥରେ ଗ୍ରହଣ କରିଥିଲା । ଛଳୋକ୍ତିର ଏହା ଦୁଷ୍କୃତି ।

ଗୋପୀନାଥଙ୍କ ଗଦ୍ୟାତ୍ମକ ବିଚିତ୍ରରାମାୟଣମୁକୁ ସେହି ତେଲୁଗୁରେ ଗଦ୍ୟପଦ୍ୟାତ୍ମକ ରୂପ ଦେଇଥିଲେ ଯେଉଁ ନରସିଂହ ଦେବର ବେଙ୍କଟ ଶାସ୍ତ୍ରୀ, ସେ ଓଡ଼ିଆ ଜାଣି ନଥିଲେ । ଓଡ଼ିଆ ଗ୍ରନ୍ଥ ପଢ଼ି ନ ଥିବା ବିଷୟ ସେ ସ୍ୱୀକାର କରିଛନ୍ତି । ସେ ଗୋପୀନାଥଙ୍କ ଗଦ୍ୟାନୁବାଦ ଉପରେ ହିଁ ନିର୍ଭର କରି 'ବିପ୍ରୟୋଗୀପୁଙ୍ଗବ'ର ଛଳୋକ୍ତିକୁ ପ୍ରକୃତ ଅର୍ଥ ବୋଲି ଭ୍ରମବଶତଃ ଗ୍ରହଣ କଲେ ଓ ସିଦ୍ଧେଶ୍ୱର ଦାସ ବ୍ରାହ୍ମଣୋତ୍ତମ ବୋଲି ଲେଖିଗଲେ । ସିଦ୍ଧେଶ୍ୱର ଦାସ କବିତ୍ୱ-ବର ଲାଭ କରିବା ସମ୍ପର୍କରେ ଗୋଟିଏ ଉପାଖ୍ୟାନ ସେ ଲେଖିଛନ୍ତି– ଉତ୍ତରଦେଶର ଜନୈକ ଶ୍ରେଷ୍ଠ ବ୍ରାହ୍ମଣ ହରିଦ୍ୱାର କ୍ଷେତ୍ରରେ ତପସ୍ୟା

---

* ସର୍ ମନିଏର୍ ୱିଲିଅଂସ୍‌ଙ୍କ Sanskrit-English Dictionary ଓ ଆପ୍ଟେଙ୍କ Sanskrit-English Dictionary ଦ୍ରଷ୍ଟବ୍ୟ ।

କରୁଥିଲେ । ଏକଦା ଦୈବଯୋଗବଶତଃ ତାହାଙ୍କର ତପସ୍ୟାରେ ତୁଷ୍ଟ ହୋଇ ଯଜ୍ଞଦତ୍ତ ସେହି ବ୍ରାହ୍ମଣଙ୍କୁ ତାଙ୍କର କୁଳ ଗୋତ୍ର ପଚାରିଲେ । ବ୍ରାହ୍ମଣ ଜଣାଇଲେ– ''ମୋ ନାମ ସିଦ୍ଧେଶ୍ୱର ଦାସ, ମୁଁ ବ୍ରାହ୍ମଣତ୍ୱ ମଧ୍ୟ ଲାଭ କରିଅଛି ।'' ଯଜ୍ଞଦତ୍ତ ସିଦ୍ଧେଶ୍ୱରଙ୍କୁ ନାଗରାକ୍ଷରରେ ଲିଖିତ ବିଚିତ୍ର ରାମାୟଣ ଗ୍ରନ୍ଥ ଦେଲେ, ଯାହାକୁ ସିଦ୍ଧେଶ୍ୱର ଓଡ଼ିଆ ଭାଷାରେ ରଚନା କଲେ । ପାଠକ ମନରେ କଥାବସ୍ତୁର ଏତାଦୃଶ ବୈସାଦୃଶ୍ୟ ପ୍ରତି ଜାତ ହେବା ସଂଶୟର ସମାଧାନ କଳ୍ପେ ପ୍ରଦତ୍ତ ଉପାଖ୍ୟାନଟି ବେଙ୍କଟଶାସ୍ତ୍ରୀଙ୍କ କପୋଳକଳ୍ପନା-ପ୍ରସୂତ ବୋଲି ମାନିବାକୁ ହେବ । କାରଣ, ସେ ଗୋପୀନାଥଙ୍କ ବିଚିତ୍ରରାମାୟଣମୁ ମାତ୍ର ପାଠ କରିଥିଲେ ଓ ସେଥିରେ ଏପରି କୌଣସି ଉପାଖ୍ୟାନର ବର୍ଣ୍ଣନା ନାହିଁ । ଗୋପୀନାଥ ଲେଖିଛନ୍ତି ଯେ ସିଦ୍ଧେଶ୍ୱର ଦାସ ଉତ୍ତର ଦେଶବାସୀ । ଗୋପୀନାଥ ଓଡ଼ିଶାର ଦକ୍ଷିଣ-ଉପାନ୍ତ ଅଞ୍ଚଳ ବଚ୍‌ବିଲିର ଓଡ଼ିଆ । ଉତ୍ତର ଓଡ଼ିଶାର ଲୋକେ ଦକ୍ଷିଣ ଓଡ଼ିଶାର ଲୋକଙ୍କୁ ଦକ୍ଷିଣୀ (ଆଖ୍ୟାଟି ଏବେ ବି ପୁରୀରେ ସୁପ୍ରଚଳିତ) କହିଲା ପରି ସେ ଉତ୍ତର ଓଡ଼ିଶାର ସିଦ୍ଧେଶ୍ୱର ଦାସଙ୍କୁ ଉତ୍ତରଁ ଦେଶବାସୀ ବୋଲି କହିଛନ୍ତି ।* ଓଡ଼ିଆଙ୍କ ମଧ୍ୟରେ ଏହି ଦକ୍ଷିଣୀ-ଉତ୍ତରୀ ଆଖ୍ୟା ସହିତ ଅପରିଚିତ ତେଲୁଗୁ ବେଙ୍କଟଶାସ୍ତ୍ରୀ ଉତ୍ତର ଦେଶର ଅର୍ଥ ଭାରତର ଉତ୍ତରସ୍ଥ ଗଙ୍ଗାର ହିମାଳୟରୁ ଅବତରଣ କରିବା କ୍ଷେତ୍ର ବୋଲି ବୁଝିଲେ ଓ ବିପ୍ରଯୋଗୀପୁଙ୍ଗବକୁ ବ୍ରାହ୍ମଣ ଜାତିର ଯୋଗୀଶ୍ରେଷ୍ଠ ବୋଲି ବିଚାରି ସିଦ୍ଧେଶ୍ୱର ଦାସଙ୍କୁ 'ବ୍ରାହ୍ମଣୋତ୍ତମ' କରି ହରଦ୍ୱାର ତୀର୍ଥରେ ତପସ୍ୟାରତ କରାଇଦେଲେ ଓ ତପସ୍ୟାର ସ୍ୱାଭାବିକ ପରିଣତି ସ୍ୱରୂପ ଗ୍ରନ୍ଥରଚନା ଲାଗି ବରପ୍ରାପ୍ତ କରାଇଲେ । କିନ୍ତୁ, କୌଣସି ସୁବିଦିତ ଦେବତାଙ୍କୁ ବରଦାତା ଭାବରେ ଉଭା ନ କରାଇ ଯଜ୍ଞଦତ୍ତଙ୍କୁ କି କାରଣରୁ ଉଭା କରାଇଲେ ତାହା ଏକ ରହସ୍ୟ । ସଂସ୍କୃତ ସାହିତ୍ୟରେ ଯଜ୍ଞଦତ୍ତ ନାମଟି ଜଣାନଥିବା କିନ୍ତୁ ବର୍ଣ୍ଣନା ପାଇଁ ଯାହା କିଛି ଗୋଟେ ନାମ ଦେବା ଆବଶ୍ୟକ ହେଉଥିବା ଲୋକର ନାମ ଭାବରେ ହିଁ ଲେଖାଯାଇଥାଏ । ଏହି ଦୃଷ୍ଟିରୁ ବିଚାର କଲେ ବେଙ୍କଟଶାସ୍ତ୍ରୀଙ୍କ ବର୍ଣ୍ଣିତ ଉପାଖ୍ୟାନଟି କଳ୍ପନାପ୍ରସୂତ ଓ ଐତିହାସିକ ମୂଲ୍ୟବିବର୍ଜିତ ଅଟେ ।

## ଦେବୀପ୍ରସାଦ

କବିମାନେ ସ୍ୱଭାବତଃ ଆତ୍ମପରିଚୟ ଦେଇ ନଥାନ୍ତି; କବିର ଶ୍ରେଷ୍ଠ ପରିଚିତ କବିତା । ଆଧୁନିକ ସମାଜରେ ଅନ୍ୟମାନେ କବିମାନଙ୍କର ପରିଚୟ ଦେଇଥାନ୍ତି, କିନ୍ତୁ ପ୍ରାଚୀନ କାଳରେ ଜୀବନୀ ରଚନା ନଥିଲା । କ୍ୱଚିତ୍ କବି ଅତ୍ୟଳ୍ପ ଆତ୍ମ ପରିଚୟ ଦିଅନ୍ତି

* ଅନ୍ୟ ଏକ ମତରେ 'ଉତ୍'ର ଅର୍ଥ ଉତ୍ତର (ଯହିଁରୁ ଉତ୍କଳ ଓ ଉଡ୍ର ଶବ୍ଦ ଜାତ) ଓ 'ତେନ୍'ର ଅର୍ଥ ଦକ୍ଷିଣ (ଯହିଁରୁ ତେନୁଗୁ, ତେଲୁଗୁ ଶବ୍ଦ ଜାତ ।) ଉଭୟ କଳିଙ୍ଗର ଦିଗସୂଚକ ।

ବିନୟପ୍ରକାଶର ଅଂଶ ଭାବରେ । ସିଦ୍ଧେଶ୍ୱର ଦାସ ଏହି ନିୟମର ବ୍ୟତିକ୍ରମ ନଥିଲେ । ତାହାଙ୍କ ନାମଟି ଥିଲା ସିଦ୍ଧେଶ୍ୱର ଓ ସେ ଏକେତ ବୈଷ୍ଣବ କବି ଭାବରେ ଦାସ ସଂଜ୍ଞକ ଥିଲେ (ବୈଷ୍ଣବ ମାତ୍ରେ ଦାସ୍ୟଭାବ ହେତୁ ଦାସ ବୋଲାଉଥିଲେ) ଅଥବା ତାଙ୍କର ମୌଳିକ ସଂଜ୍ଞା ଶୂଦ୍ରକୁଳରେ ସୁପ୍ରଚଳିତ ଦାସ ହୋଇଥାଇପାରେ । ସାରଳାଦାସ ବିଷ୍ଣୁଭକ୍ତ ହୋଇ ମଧ୍ୟ ସାରଳାଦାସ ବୋଲାଇବାର ତାତ୍ପର୍ଯ୍ୟ ଅନ୍ୟତ୍ର ଆଲୋଚନା କରିଛି । ସିଦ୍ଧେଶ୍ୱର ଦାସ ସିଦ୍ଧେଶ୍ୱର ଅର୍ଥାତ୍ ଶିବଙ୍କର ଭକ୍ତ ଥିବାରୁ ସେପରି ନାମ ଗ୍ରହଣ କରିଥିଲେ ବୋଲି କୁହାଯାଇ ପାରିବ ନାହିଁ । ସେ ସ୍ପଷ୍ଟତଃ ବିଷ୍ଣୁଭକ୍ତ ଥିଲେ—

ବାସୁଦେବ ଚରଣେ ସେବା ସିଦ୍ଧେଶ୍ୱର ଦାସଇ ।। (ପୃ. ୩)

× ×

ମଧୁସୋଦନ ନାମ ସୁମରି ନିତି । (ପୃ. ୫୫)

× ×

ମାଧେବ ମାଧେବ ମୁହିଁ ସୁମରଇ ନିତି । (ପୃ. ୬୯)

× ×

ମାଧବ ସୁମରି କହଇ ରାମାୟେଣ ।
ସିଦ୍ଧେଶ୍ୱର ଦାସ ନିତ୍ୟେ ମାଧବ ଚରଣେ ଶରଣ ।। (ପୃ. ୬୯)

× ×

ନାରାୟେଣ ପୟରେ ମୁହିଁ ଜନ୍ମେ ଜନ୍ମେ ଦାସ ।। (ପୃ. ୧୧୦)

ଗ୍ରନ୍ଥର ଆରମ୍ଭରେ, ଶେଷରେ ଓ ମଝିରେ ମଝିରେ ବିଷୟବସ୍ତୁ ସହିତ ଅସଂପୃକ୍ତ ଭାବରେ କବି ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି କରି ଭକ୍ତି ଜଣାଇଛନ୍ତି । ଏପରି ଅସଂପୃକ୍ତ ଦେବସ୍ତୁତି ସହିତ ସାରଳା-ମହାଭାରତ ଓ ଚଣ୍ଡୀପୁରଣର ପାଠକମାନେ ପରିଚିତ । ବଳରାମ ଦାସ ମଧ୍ୟ ମଝିରେ ମଝିରେ ଦେବସ୍ତୁତି କରିଛନ୍ତି କିନ୍ତୁ ତାହା ବିଚିତ୍ର ରାମାୟଣ, ସାରଳା ମହାଭାରତ ଓ ଚଣ୍ଡୀପୁରାଣ ପରି ବିଶେଷ ସଂଖ୍ୟାରେ ନୁହେଁ । ବିଚିତ୍ର ରାମାୟଣର ଆରମ୍ଭରେ ଗଣେଶଙ୍କ ବନ୍ଦନା ରହିଛି; ହିନ୍ଦୁମତରେ ସବୁ କାର୍ଯ୍ୟରେ ଅଗ୍ରପୂଜ୍ୟ ହେଉଛନ୍ତି ଗଣେଶ । ଗ୍ରନ୍ଥର ଶେଷ ଆଡ଼କୁ ସୀତାଙ୍କ ପାତାଳ ପ୍ରବେଶ ବେଳେ ପ୍ରସଙ୍ଗତଃ ସୀତାଙ୍କର ସ୍ତୁତି ରହିଛି ଓ ଗ୍ରନ୍ଥର ଶେଷକୁ ଗ୍ରନ୍ଥର ନାୟକ ରାମଙ୍କର ସ୍ତୁତି ପ୍ରତ୍ୟାଶିତ ଭାବରେ ରହିଛି । ଏହି ତିନୋଟି ସ୍ତୁତି ପ୍ରାସଙ୍ଗିକ । କିନ୍ତୁ ଗ୍ରନ୍ଥର ମଝିରେ ମଝିରେ ପ୍ରସଙ୍ଗ ନ ଥାଇ ଆଉ ନଅଟି ଦେବସ୍ତୁତି ରହିଛି । ସ୍ତୁତିଗୁଡ଼ିକର କ୍ରମ ହେଲା— ବାସୁଦେବ (ପୃ.୩), ଶ୍ରୀଧର (ପୃ. ୧୯), ମଧୁସୂଦନ (ପୃ. ୫୫), ମାଧବ (ପୃ. ୬୯), ନାରାୟଣ (ପୃ. ୧୧୦), ହରି (ପୃ. ୧୫୭), ଧବଳେଶ୍ୱର (ପୃ. ୨୦୦), ବିଷ୍ଣୁନାଥ (ପୃ. ୨୨୮) ଓ ଗୋପୀନାଥ କୃଷ୍ଣ (ପୃ. ୩୩୩) । ପ୍ରତ୍ୟେକ ସ୍ତୁତି ଶେଷକୁ କବିଙ୍କର ନାମ ଉଲ୍ଲେଖ

କରୁଥିବା ଭଣତି ରହିଛି; ନାମଟି ମୋଟ ୧୩ ସ୍ଥାନରେ ରହିଛି । ତାହା ସବୁଠାରେ 'ସିଦ୍ଧେଶ୍ୱର ଦାସ', ଗୋଟିଏ ସ୍ଥାନରେ ସୁଦ୍ଧା ସାଦା 'ସିଦ୍ଧେଶ୍ୱର' ନାହିଁ ।

ଧବଳେଶ୍ୱର, ଗଣେଶ ଓ ସୀତାଙ୍କ ସ୍ତୁତି ଛଡ଼ା ଅନ୍ୟଗୁଡ଼ିକ ବିଷ୍ଣୁଙ୍କ ସ୍ତୁତି । କବି ସ୍ଥାନ ଭେଦରେ ବିଷ୍ଣୁଙ୍କର ପ୍ରସିଦ୍ଧ ନାମଗୁଡ଼ିକ ମଧ୍ୟରୁ ୮ଟିକୁ ବାଛି ସ୍ତୁତି କରିଥିଲେ ହେଁ ଉପାସ୍ୟ ତତ୍ତ୍ୱ ଏକ ଓ ଅଭିନ୍ନ ବୈକୁଣ୍ଠବାସୀ ଲକ୍ଷ୍ମୀପତି ବିଷ୍ଣୁ । କବି ଠାଏଁ ଉମାପତି ଧବଳେଶ୍ୱର ଶିବଙ୍କ ସ୍ତବ ଗାନ କରିଥିବା ତାତ୍ପର୍ଯ୍ୟପୂର୍ଣ୍ଣ । କବି ବୈଷ୍ଣବ ହେଲେ ହେଁ ଦାକ୍ଷିଣାତ୍ୟ ଶୈବବିଦ୍ୱେଷୀ ବୀରବୈଷ୍ଣବମାନଙ୍କ ପରି ସାଂପ୍ରଦାୟିକ ମନୋଭାବ ପୋଷଣ କରୁ ନଥିଲେ । କୈଳାସର ଦ୍ୱାରରକ୍ଷକ ନନ୍ଦୀ ଓ ଭୃକୁଟି (ନାମାନ୍ତର ମହାକାଳ) ରାବଣ ଆଗରେ ଆତ୍ମ ପରିଚୟ ଦେଇ କହିଛନ୍ତି ଯେ ସେମାନେ ଶିବସେବକ ହେଲେ ହେଁ ବୈଷ୍ଣବ– "ବଇଷ୍ଣବ ପଣେ ଶିବଙ୍କୁ ସେବା କରୁ" (ପୃ. ୧୯୪) । ଉଲ୍ଲେଖନୀୟ ଯେ ସାରଳାଦାସ ବିଷ୍ଣୁଭକ୍ତ ହେଲେ ହେଁ ପୂର୍ବଜନ୍ମରେ ନନ୍ଦୀ ଥିବା ଆଖ୍ୟାନ ମହାଭାରତରେ ଦେଇଛନ୍ତି । ସାରଳାଦାସ ବଳରାମ ଦାସ ଆଦି ପ୍ରାଚୀନ କବିମାନଙ୍କ ପରି ବିଚିତ୍ର ରାମାୟଣର ରଚୟିତା ଥିଲେ ସମନ୍ୱୟ-ବାଦୀ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ସବୁଗୁଡ଼ିକ ଦେବ ଏକ ଓ ଅଭିନ୍ନ ବ୍ରହ୍ମର ପ୍ରକାଶ ମାତ୍ର ବୋଲି ସେମାନେ ବିଚାର କରୁଥିଲେ । ଏପରି ଅଦ୍ୱୟବାଦ ଭାରତର ସୁପ୍ରାଚୀନ ତଥା ସମାଦୃତ ବିଚାର ।

ଏକମ୍ ସଦ୍ ବିପ୍ରା ବହୁଧା ବଦନ୍ତି (ଋକ୍ ୧-୧୬୪-୪୬), ମହଦ୍ଦେବାନାମ୍ ଅସୁରତ୍ୱମ୍ ଏକମ୍ (ଋକ୍ ୩-୫୫-୧) ଆଦି ବୈଦିକ ବଚନର ସମର୍ଥନ ବିଚିତ୍ର ରାମାୟଣରେ ରହିଛି ଗ୍ରନ୍ଥ ଶେଷରେ–

ହରି, ହର, ବ୍ରହ୍ମା ଏ ନୁହନ୍ତି ଭିନ୍ନ ଭିନ୍ନ ।
ରାମାୟଣ ଗ୍ରନ୍ଥ ଏ ପ୍ରତ୍ୟକ୍ଷେ ବ୍ରହ୍ମଜ୍ଞାନ ।। (ପୃ. ୩୯୬)

ଅନୁମାନ କରାଯାଇପାରେ ଯେ କବି କୌଣସି ବିଷ୍ଣୁ ମନ୍ଦିର ମଧ୍ୟରେ ବସି ବିଚିତ୍ର ରାମାୟଣ ଗ୍ରନ୍ଥଟିକୁ ରଚନା କରିଥିଲେ, କାରଣ ଗ୍ରନ୍ଥର ସମାପ୍ତି 'ହରିର ପାଶ' ହେବା କଥା ସେ ଜଣାଇଛନ୍ତି–

ରାମାୟଣ ଶୁଣନ୍ତେ ଦୁରିତ ବିନାଶ ।
ସିଦ୍ଧ୍ୟେଶ୍ୱର ଦାସ ଗୀତେ ଗାଅନ୍ତି ହରିର ପାଶ ।।
ବିଚିତ୍ର ରାମାୟଣ ବାଲ୍ମିକ କଲା ଗ୍ରନ୍ଥ ।
ପୁସ୍ତକ ଲେଖନେ ହୋଇଲା ସମାପତ ।। (ପୃ. ୩୯୬)

ଗ୍ରନ୍ଥ ରଚନା କରିବା ବେଳକୁ କବି ଅଳ୍ପବୟସର ଥିବା ଅନୁମିତ ହୁଏ । ସେ ଅନେକତ୍ର ଜଣାଇଛନ୍ତି ଯେ ତାହାଙ୍କର ମନ ଚଞ୍ଚଳ ଓ ତାହା କୌଣସି ବିଷୟରେ ସ୍ଥିର ହୋଇ ରହୁନାହିଁ–

ଚଞ୍ଚଳ ମନିଷା ନୁହଇ ମୋହର ସ୍ଥିର ।
ପୂରଣ ଦେସି ମୋତେ ମାଧବ ଚକ୍ରଧର ।। (ପୃ. ୬୯)

× ×

ଚଞ୍ଚଳ ମନିଷା ଯେ ନୁଆରଇ ସ୍ଥିର କରି ।
ତେଣୁ ସେ ନାରାୟେଣ ନାମ ନୁଆରଇ ସୁମରି ।। (ପୃ. ୧୦୯)

× ×

ଜନ୍ମେଣ ଶୂଦ୍ର ଚଞ୍ଚଳ ମୋହର ମତି ।
ପୂରୋଣି ଦେସି ନାରାୟେଣ ଅନନ୍ତ ମୂରତି । (ପୃ. ୧୧୦)

× ×

ଚଞ୍ଚଳ ମନୁଷ୍ୟ ମୁଂ ଶୂଦ୍ରକୁଳେ ଜାତ ।
ଅକ୍ରିୟା ଆଚାର ମନ କି ସଚଇତ । (ପୃ. ୩୯୫) ।

ବିଷୟବସ୍ତୁର ପରିକଳ୍ପନା, ସଂଯୋଜନା ଓ ପରିବେଷଣରେ ମଧ୍ୟ ପୋଖତ ଲେଖନୀର ଛାପ ମିଳେ ନାହିଁ । ବର୍ଣ୍ଣନାରେ ସମତୁଳତାର ଅଭାବ ଅନେକତ୍ର ଦେଖି ହୁଏ । ସାଧାରଣତଃ ବର୍ଣ୍ଣନାଗୁଡ଼ିକ କ୍ଳୁପ୍ତ, ରସର ପୁଷ୍ଟିସାଧନ ପାଇଁ ଯତ୍ନ ନାହିଁ କହିଲେ ଚଳେ । ବିଷ୍ଣୁଙ୍କ ସୁପ୍ରସନ୍ନତା ଯୋଗେ ହିଁ ସେ ତାହାଙ୍କ ଗ୍ରନ୍ଥରଚନା ପୂରଣ କରିପାରୁଛନ୍ତି ବୋଲି ମଧ୍ୟ ସେ ଅନେକତ୍ର ଲେଖିଛନ୍ତି—

ନାରାୟେଣ ସୁମରି କହଇ ରାବାୟେଣ ।
ଜନ ପ୍ରବୋଧ ବାକ୍ୟ କରଇ ବଖାଣ ।। (ପୃ. ୧୧୦)
ବିର୍ଷ୍ଣୁନାଥର ପ୍ରସନେ କହଇ ସିଦ୍ଧେଶ୍ୱର ଦାସଇ ।। (ପୃ. ୨୨୮)
ମାଧବ ସୁମରି କହଇ ରାମାୟେଣ । (ପୃ. ୬୯)

ଅନେକ ପ୍ରାଚୀନ କବି ଦୈବୀପ୍ରସାଦ ଲାଭ କରି ଗ୍ରନ୍ଥ ରଚନା କରିଥିବା କଥା ଲେଖିଛନ୍ତି । ଏହାକୁ ଅଲୌକିକ ଦୈବଶକ୍ତିରେ ବିଶ୍ୱାସ କରୁଥିବା ଲୋକେ ସତ୍ୟ ଘଟନା ବୋଲି ଜ୍ଞାନ କରିଥାନ୍ତି । ଯୁକ୍ତିବାଦ ଦୃଷ୍ଟିରୁ ଦେବିପ୍ରସାଦ ପ୍ରାପ୍ତିର ତାତ୍ପର୍ଯ୍ୟ ଭିନ୍ନ ପ୍ରକାରର । ଆଳଂକାରିକମାନେ (ଯଥା— ରାଜଶେଖର) କବିମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରି ଉତ୍ତମ-ମଧ୍ୟମ-ଅଧମ ବିଚାର କରିଥାନ୍ତି । ରାଜଶେଖରି କହିଛନ୍ତି ଯେ କବିମାନେ ତିନି ପ୍ରକାରର— ୧. ସାରସ୍ୱତ ୨. ଆଭ୍ୟାସିକ ଓ ୩. ଔପଦେଶିକି । ସାରସ୍ୱତ କବିମାନଙ୍କର ବୁଦ୍ଧି ସ୍ୱତଃ ବିକଶିତ ହୁଏ, ଅନ୍ୟ କୌଣସି ବିଷୟିର ଅପେକ୍ଷା କରେ ନାହିଁ । ଏମାନେ ହେଲେ ସ୍ୱଭାବତଃ କବି, born poet । ଏମାନେ ଉତ୍ତମ ଶ୍ରେଣୀର କବି । ମଧ୍ୟମ ଶ୍ରେଣୀର ଆଭ୍ୟାସିକ କବିମାନେ ଆହାର୍ଯ୍ୟ-ବୁଦ୍ଧି, ଅର୍ଥାତ୍ ଏମାନଙ୍କ ବୁଦ୍ଧିର ବିକାଶ ଶାସ୍ତ୍ରାଭ୍ୟାସ, ମନୋହର ଦୃଶ୍ୟ ଦର୍ଶନ, ଅନୁଭୂତି ଆଦିକୁ ଅପେକ୍ଷା କରେ ।

ତେଣୁ ଏମାନେ ଅଭ୍ୟାସ-ନିର୍ଭର, ଆହରଣଶୀଳ ଅଟନ୍ତି । ସବୁଠାରୁ ନିକୃଷ୍ଟ ଶ୍ରେଣୀର କବି ହେଲେ ଔପଦେଶିକ । ଏହାଙ୍କର ବୁଦ୍ଧିର ଉଦୟ ସ୍ୱୟଂ ହୁଏ ନାହିଁ, ଶତ ଚେଷ୍ଟା ସତ୍ତ୍ୱେ ମଧ୍ୟ ହୋଇପାରେ ନାହିଁ । କବିତ୍ୱ ପ୍ରାପ୍ତି ପାଇଁ ଏମାନଙ୍କର ଏକମାତ୍ର ଭରସା ଦେବଦେବୀଙ୍କଠାରୁ ବରପ୍ରାପ୍ତି ଅଥବା ତନ୍ତ୍ରମନ୍ତ୍ରାଦି ଉପଦେଶ ବୋଲି ରାଜଶେଖର ସ୍ପଷ୍ଟ ଭାବରେ କହଛନ୍ତି । ପ୍ରାଚୀନ ଯୁଗର କବିମାନେ ନିଜକୁ ମୂର୍ଖ, ଅଜ୍ଞାନ ବୋଲି କହି ଦୈବୀପ୍ରସାଦ ବା ମନ୍ତ୍ରବଳରୁ କବି ହୋଇ ପାରିଥିବା ବର୍ଣ୍ଣନା କରିବାର ତାତ୍ପର୍ଯ୍ୟ ଏହି ଯେ ସେମାନେ ନମ୍ରତା ପ୍ରକାଶ କରି ନିଜକୁ ଅଧମ ଶ୍ରେଣୀର କବି ବୋଲି କହଛନ୍ତି । କବିତ୍ୱ ତାଙ୍କର ସହଜାତ ଗୁଣ ନୁହେଁ, ଅଧ୍ୟବସାୟ ଦ୍ୱାରା ଅର୍ଜିତ ଗୁଣ ମଧ୍ୟ ନୁହେଁ ବୋଲି ବିନୟ ସହକାରେ କହିଲେ ଦୈବୀପ୍ରସାଦ କଥାଟି କହିବାକୁ ହୁଏ, ଅନ୍ୟଥା ସେମାନେ କବି ହୁଅନ୍ତେ କିପରି ? ସାରଳାଦାସ ନିଜକୁ ନିରକ୍ଷର, ମୂର୍ଖ, ଅଜ୍ଞାନ ଆଦି ଭାବରେ ପ୍ରକାଶିତ କରାଇବାର ତାତ୍ପର୍ଯ୍ୟ ଅନ୍ୟତ୍ର ଆଲୋଚିତ ହୋଇଛି । ଅନ୍ୟାନ୍ୟ କବିମାନଙ୍କର ଦୈବୀପ୍ରସାଦ ପ୍ରାପ୍ତି ଦାବିର ଅସଲ ମର୍ମ ଯାହା ସିଦ୍ଧେଶ୍ୱର ଦାସ 'ବିର୍ଷ୍ଣୁନାଥର ପ୍ରସନେ କହଇ ସିଦ୍ଧେଶ୍ୱର ଦାସଇ' କହିବାର ମର୍ମ ମଧ୍ୟ ତାହା ।

ରାମାୟଣ ପରି ବିରାଟ ବିଷୟକୁ ବିଶ୍ଳେଷଣ କରି (ସଂଚପି) ପ୍ରକାଶ କରିବା ତାଙ୍କ ପରି ଲୋକ ପକ୍ଷେ ସମ୍ଭବ କି ନୁହେଁ, ଏହି ବିଷୟରେ କବି ସଂଦିଗ୍ଧଚିତ୍ତ ଥିଲେ । ସେ ସହଜେ ଶୂଦ୍ର, ଅଳ୍ପବୁଦ୍ଧି ଓ କ୍ରିୟାଚାର ବିହୀନ । ମନ ତାଙ୍କର ସଦା ଅସ୍ଥିର । ଶୂଦ୍ର ଜଣେ ଶାସ୍ତ୍ର ରଚନା କଲେ ସମାଜ ତାହାକୁ ଶୁଦ୍ଧ (ନିର୍ଦ୍ଦୋଷ, ପବିତ୍ର) ବୋଲି ଗ୍ରହଣ କରି ନ ପାରେ ବୋଲି ତାଙ୍କର ଆଶଙ୍କା ଥିଲା । ସେ ପୁଣି ରାମାୟଣ ଚରିତକୁ ଓଲଟପାଲଟ କରୁଥିବାରୁ ଉପହସିତ ହେବାର ଭୟ ତାଙ୍କ ମନରେ ଥିବା ସ୍ୱାଭାବିକ । ଏପରି ଗ୍ରନ୍ଥ ଲେଖିଲେ ପଣ୍ଡିତମାନେ ଉପହାସ କରିବେ ସିନା ବୋଲି ମନରେ ଆଶଂକା ଜନ୍ମିବା ସମୟରେ କୌଣସି ଅପରିଚିତ ଅଦ୍ଭୁତ* ପୁରୁଷ ସହିତ ତାହାଙ୍କର ଭେଟ ହେଲା ଓ ସେହି ଅଦ୍ଭୁତ ପୁରୁଷ ତାଙ୍କୁ ଗ୍ରନ୍ଥ ରଚନା କରିବାକୁ ଆଜ୍ଞା ଦେବାରୁ କବି ଗ୍ରନ୍ଥ ରଚନା କଲେ ତେଣୁ ବିଜ୍ଞ ଲୋକେ ତାଙ୍କର ଦୋଷ ଧରିବେ ନାହିଁ ବୋଲି କବି ସବିନୟ ନିବେଦନ କରିଛନ୍ତି—

---

* କବି ଏହି ପ୍ରେରଣାଦାତାଙ୍କୁ 'କିମ୍ଭୂତ ପୁରୁଷ' କହିଛନ୍ତି । କିମ୍ଭୂତ ପୁରୁଷର ଅର୍ଥ କିଂପୁରୁଷ ମଧ୍ୟ ହୋଇପାରେ । କିଂପୁରୁଷମାନେ ଅଧା ମଣିଷ, ଅଧା ପଶୁ (ଅଶ୍ୱ/ବାନର) ଓ ସେମାନଙ୍କର ନିବାସ 'ହେମକୂଟ' ପର୍ବତର ସୀମାନ୍ତବର୍ତ୍ତୀ 'କିଂପୁରୁଷବର୍ଷ' ବୋଲି ପୌରାଣିକ ବର୍ଣ୍ଣନା ମିଳେ । ନରସିଂହ ଦେବରା ବେଙ୍କଟଶାସ୍ତ୍ରୀଙ୍କ ବର୍ଣ୍ଣନାର ହିମାଳୟ ପାର୍ଶ୍ୱସ୍ଥ ହରିଦ୍ୱାରର ଯଜ୍ଞଦତ୍ତ ପରିକଳ୍ପନା ସହିତ କିମ୍ଭୂତ ପୁରୁଷ ପରିକଳ୍ପନାର ସମଧର୍ମିତା କିଛି ଅଛି ।

ରାମାୟଣ ଚରିତ୍ର ଅଗାଧ ପୟୋଧି ।
ସଂଚପି କହିବାକୁ କିସ ମୋହର ବୁଧି ।।
ଚଞ୍ଚଳ ମନୁଷ୍ୟ ମୁଂ ଶୂଦ୍ରକୁଳେ ଜାତ ।
ଅକ୍ରିୟା ଆଚାର ମନ କି ସଚଇତ ।।
ମୋହର କହନ୍ତେ ଗ୍ରନ୍ଥ ଶୁଦ୍ଧ ହୋଇବ କାହିଂ ।
ରାମ ନାମ ସୁମରନ୍ତେ ପାପ ହୋଇ ଦହି ।।
ବ୍ରାହ୍ମଣ ବୈଷ୍ଣବ ମହତ ସୁଗ୍ୟଂ ଜନ ।
ପଣ୍ଡିତଜନମାନେ ମୋହର ଦୋଷ ନ ଘେନ ।।
ସିଦ୍ଧେଶ୍ୱର ଦାସ ମୁଂ ରାମାୟଣ ଗ୍ରନ୍ଥ କହିଲି ।
ଲବକୁଶଙ୍କର ଜନ୍ମ ମୁଂ ପ୍ରକାଶ କଲି ।।
ଉପହାସ୍ୟ କରିବେ ବୋଲି ମୁଂ ଭାଳଇ ମନେମନ ।
କିମ୍ଭୂତ ପୁରୁଷେ କହନ୍ତେ କରଇ ଲେଖନ ।।
ତେଣୁ ସେ ହୃଦଗତେ ଭାବନା କଲଇ ।
ଶୁଣ ହେ ସୁଜ୍ଞଲୋକେ ବିଚାରି କହିଲଇ ।।
(ପୃ. ୩୯୫-୩୯୬; ବିଚିତ୍ର ରାମାୟଣର ଶେଷ)

**ଜଗନ୍ମୋହନ ବିଚିତ୍ର ରାମାୟଣ**

ଜନସାଧାରଣଙ୍କର ବୋଧ ପାଇଁ କବି ଏହି ଗ୍ରନ୍ଥଟିକୁ ଲେଖିଥିବା କଥା ବାରଂବାର ଜଣାଇଛନ୍ତି—

ଲବକୁଶ ଜନ୍ମ ମୁହିଁ କଲଇ ବଖାଣ ।
ସୁଜନଜନ ପ୍ରବୋଧନ ଏ ବିଚିତ୍ର ରାମାୟେଣ । (ପୃ. ୬୯)
× ×
ନାରାୟେଣ ସୁମରି କହଇ ରାବାୟେଣ ।
ଜନ ପ୍ରବୋଧ ବାକ୍ୟ କରଇ ବଖାଣ । (ପୃ. ୧୧୦)
× ×
ସକଳ ଜନଙ୍କର ଜନ୍ମେ ଜନ୍ମେ ପ୍ରବୋଧ ଏହୁ ଗ୍ରନ୍ଥ ।
ମନେ ଯିସ ବିଘଂସଇ ସେ କଥା ହୁଅଇ ପ୍ରାପତ ।। (ପୃ. ୩୯୬)

'ସକଳଜନ' ଏହି ଗ୍ରନ୍ଥର ଅଭିଳଷିତ ପାଠକ/ଶ୍ରୋତା ବୋଲି କବି ଜଣାଇବାର ତାତ୍ପର୍ଯ୍ୟ ଏହି ଯେ ସେହି ସମୟରେ ସକଳଜନଙ୍କର ଭାଷାରେ ସାହିତ୍ୟ ରଚିତ ହେଉ ନଥିଲା । ସାହିତ୍ୟିକ ଭାଷା ଥିଲା ରାଜସଭାରେ ପରିପୋଷିତ ପଣ୍ଡିତମଣ୍ଡଳୀ ଦ୍ୱାରା ସେବିତ ସଂସ୍କୃତ ଭାଷା ଯାହା 'ଦେବଭାଷା' ରୂପେ ଅଖଣ୍ଡ ସମ୍ମାନ ଲାଭ କରୁଥିଲା ।

ଦେବଭାଷାର ଅର୍ଥ ମୁଖ୍ୟତଃ ଭୂଦେବ (ବ୍ରାହ୍ମଣ)ମାନଙ୍କର ଭାଷା । ସ୍ୱର୍ଲୋକର ଦେବମାନଙ୍କ ଭାଷା ବୋଲି ଗ୍ରହଣ କଲେ ଭାଷାର ମୂଳ ଭୂମିକା ବୁଝିହେବ ନାହିଁ । ଦେବତାମାନେ ଯଦି ଲୋକମୁଖର ଭାଷା ବୁଝି ନ ପାରନ୍ତି ତେବେ ପୂଜାର୍ଚ୍ଚନା, ଯାଗଯଜ୍ଞ, ସଂସ୍କାର ଆଦି ପାଇଁ ପୁରୋହିତ କର୍ମକର୍ମାଣିରେ ସଂସ୍କୃତ ଭାଷାକୁ ବ୍ୟବହାର କରାଯାଇ ପାରେ କିନ୍ତୁ ଦେବତାଙ୍କ ବୋଧ ପାଇଁ ଅଭିପ୍ରେତ ନଥିବା କ୍ଷେତ୍ରରେ (ଯଥା– କାବ୍ୟ, ପୁରାଣ, ନାଟକ, ସ୍ମୃତି, ନୀତିଶାସ୍ତ୍ର, ଜ୍ୟୋତିଃଶାସ୍ତ୍ର ଆଦି ସବୁ ପ୍ରକାର ସାହିତ୍ୟିକ ଓ ବୈଜ୍ଞାନିକ ଗ୍ରନ୍ଥରେ) ଦେବଭାଷାର ପ୍ରୟୋଜନୀୟତା କଣ ? ଏହା ଏକ ସାଂସ୍କୃତିକ ପ୍ରଶ୍ନ । ବିଚିତ୍ର ରାମାୟଣକାର ତେଣୁ ଜନସାଧାରଣଙ୍କ ବୋଧ (ଜନପ୍ରବୋଧ) ଗ୍ରନ୍ଥଟିକୁ ଲେଖିଛନ୍ତି ଯଦ୍ଦ୍ୱାରା ସଂସ୍କୃତଭାଷା ଜାଣି ନଥିବା ଲୋକେ କାବ୍ୟପୁରାଣର ମହତ୍ତ୍ୱ ଉପଲବ୍ଧି କରିବା ସୁଯୋଗ ପାଇପାରିବେ । ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ଆଦି ପ୍ରାଚୀନ କବିମାନେ ମଧ୍ୟ ସାମାଜିକ ଆବଶ୍ୟକତାର ପୂରଣ ଲକ୍ଷ୍ୟ ନେଇ 'ସଂସାର ଜନ ହିତେ', 'ସଂସାର କଲ୍ୟାଣେ' ଗ୍ରନ୍ଥ ରଚନା କରିଥିବା କଥା ଜଣାଇଛନ୍ତି । 'ଶୂଦ୍ରମୁନି' ପଦର ତାତ୍ପର୍ଯ୍ୟ ଆଲୋଚନା ପ୍ରସଙ୍ଗରେ ଏ ବିଷୟ ନେଇ ଅଧିକ ଆଲୋଚନା କରିଛି । ବିଚିତ୍ର ରାମାୟଣର ଶେଷକୁ ଲେଖାଥିବା ପୁଷ୍ପିକାରେ ମଧ୍ୟ ସେହି ଆଭିମୁଖ୍ୟର ସୂଚନ ମିଳେ । ପୁଷ୍ପିକାଟି ହେଲା– "ଶ୍ରୀ ଜଗନ୍ମୋହନ ବିଚିତ୍ର ରାମାୟଣ ସଦାଜୟେ ସଂପୂର୍ଣ୍ଣ । ଶ୍ରୀ ।। ଶ୍ରୀରାମ୍ ଚରଣେ ଶରଣ ।।" ଏଠାରେ ଗ୍ରନ୍ଥଟିକୁ ଜଗନ୍ମୋହନ କୁହାଯିବାର ଅର୍ଥ ଗ୍ରନ୍ଥଟି ଜଗତ୍‌କୁ ମୁଗ୍ଧ କରେ; ଜଗତ୍ ବୋଇଲେ କି ଶିଷ୍ଟ ସମାଜ କି ଅବଶିଷ୍ଟ ଜନତା ସମସ୍ତେ । ଏହା ବିଶେଷ ପ୍ରଚାରିତ ହୋଇ ନାହିଁ କିନ୍ତୁ ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ନିଜକୁ ଶୂଦ୍ରମୁନି ବୋଲାଇଛନ୍ତି ଓ ତାହାଙ୍କର ରଚିତ ରାମାୟଣର ନାମ 'ଜଗମୋହନ ରାମାୟଣ' । ଜଗନ୍ମୋହନର ଓଡ଼ିଆ ରୂପ ଜଗମୋହନ । କୁହାଯାଇଛି ଯେ ଶ୍ରୀକୃଷ୍ଣଙ୍କର ନାମାନ୍ତର ଜଗନ୍ମୋହନକୁ ଜଗନ୍ନାଥଙ୍କ ନାମ ଭାବରେ ଗ୍ରହଣ କରି, ବଳରାମ ଦାସ ତାହାଙ୍କର ଗ୍ରନ୍ଥଟିକୁ ଶ୍ରୀ ଜଗନ୍ନଥଙ୍କ ନାମରେ ଦେବାଙ୍କିତ* (ଅର୍ଥାତ୍ କର୍ତ୍ତୃତ୍ୱର ଉତ୍ସର୍ଗ) କରିଥିବାରୁ ଗ୍ରନ୍ଥଟିର ନାମ ଜଗମୋହନ ରାମାୟଣ ରହିଥିବାର ସୂଚନା ସେ ଦେଇଛନ୍ତି । କିନ୍ତୁ, ତାହା ଅସଲ କଥା ନୁହେଁ । ଦେବାଙ୍କିତ ଗ୍ରନ୍ଥ ସେହି ଦେବଙ୍କ ନାମରେ ନାମିତ କରିବା କଥା ହେଲେ– ଯେପରିକି ଦେବୀ ସାରଳାଙ୍କଠାରେ

* ବଳରାମ ଦାସ ତାଙ୍କ ରାମାୟଣର ଉତ୍ତର କାଣ୍ଡରେ କହିଛନ୍ତି–
"ଜଗମୋହନ ରାମାୟେଣ ନାମ ଏହୁ ଗ୍ରନ୍ଥ । ଏଥିର କବି ତ ଶ୍ରୀନୀଳଗିରି ଜଗନ୍ନାଥ ।
ସେ ହରି ମୋର ହୃଦେ ବିଜେ କରିଥାନ୍ତି । ଆପଣାର ଚରିତ ଆପଣେ ବଖାଣନ୍ତି ।"
କିନ୍ତୁ, ଜଗନ୍ନାଥ ହିଁ ଜଗ୍‌ମୋହନ ବୋଲି କବି କହିନାହାନ୍ତି ।

କର୍ତ୍ତୃହ ଆରୋପିତ ମହାଭାରତ ସାରଳା-ମହାଭାରତ ବୋଲାଏ— ତାହା ଜଗନ୍ନାଥ ରାମାୟଣ ବା ପୁରୁଷୋତ୍ତମ ରାମାୟଣ ବୋଲାଇବା ଅଧିକ ସଙ୍ଗତ ହୁଅନ୍ତା । ଜଗମୋହନ ନାମଟି ଜଗନ୍ନାଥଙ୍କର ଲୋକପ୍ରିୟ କି ସୁବିଦିତ ନାମ ନୁହେଁ । ଗୋଟିଏ ଅଳ୍ପଜ୍ଞାତ ନାମକୁ ସ୍ୱୀକାର କରିବାର କାରଣ କବି ପ୍ରକାଶ କରିନାହାନ୍ତି । ବିଚିତ୍ର ରାମାୟଣ ଗ୍ରନ୍ଥଟିର କର୍ତ୍ତୃତ୍ୱ ଜଗନ୍ନାଥଙ୍କୁ ଅର୍ପିତ ନ ହୋଇ ମଧ୍ୟ ତାହା ଜଗନ୍ମୋହନ ବିଚିତ୍ର ରାମାୟଣ ଆଖ୍ୟା ନେଇଛି । ତେଣୁ ଜଗମୋହନର ପ୍ରକୃତ ଅର୍ଥ ଜନସାଧାରଣଙ୍କ ପକ୍ଷେ ମୁଗ୍ଧକର, ଅର୍ଥାତ୍ ଲୌକିକ ପ୍ରାକୃତ ଭାଷାର ମନୋହର ରଚନା ହେବା ସଙ୍ଗତ ବୋଧହୁଏ ।

ଗ୍ରନ୍ଥଟି ନିରୋଳାରେ ବସି ନିଜେ ପଢ଼ି ନିଜେ ବୁଝିବା ପାଇଁ (ଅର୍ଥାତ୍ ନିଃସଙ୍ଗ ପାଠକ ପାଇଁ) ମୂଳତଃ ଅଭିପ୍ରେତ ନୁହେଁ । ଜଣେ ପଢ଼ିବ, ଅନେକେ ଏକାଠି ବସି ଶୁଣିବେ, ସେହି ଉଦ୍ଦେଶ୍ୟରେ ଏହା ଅଭିପ୍ରେତ ଥିବା ଜଣାପଡ଼େ । ସେଥି ସକାଶେ ଶ୍ରୋତାମାନଙ୍କୁ ମଝିରେ ମଝିରେ ସମ୍ବୋଧନ କରାଯାଇଚି ଓ ଆରମ୍ଭରୁ ଶେଷ ଯାଏଁ ସଂକଳ୍ପ ପୂର୍ବକ ଶୁଣିଲେ (ପଢ଼ିବା କଥା କୁହାଯାଇନାହିଁ) ଐହିକ-ପାରତ୍ରିକ ସର୍ବବିଧ ଅଭୀଷ୍ଟ ସିଦ୍ଧ ହେବ ବୋଲି ପ୍ରତିଶ୍ରୁତି ଦିଆଯାଇଛି—

ଏ ଆଖ୍ୟାନ ଶୁଣିଲେ ଦୁଷ୍କୃତ ହୋଏ ହତ ।। (ପୃ. ୫୪)

× ×

ଏ ଆଖ୍ୟାନ ଶୁଣଇ ଯେବଣ ଜନ ।
ସକଳ ପାତେକ ତାର ହୋଇବ ବିନାଶନ ।। (ପୃ. ୧୫୭)

× ×

ସଂକଳ୍ପି ଶୁଣନ୍ତେ ଲଭଇ ପୁଣ୍ୟଗତି ।
ବାଞ୍ଛା (ସିଦ୍ଧ) ମୁକତ ଅମରପୁରେ ସ୍ଥିତି ।। (ପୃ. ୬୯)

× ×

ଲବକୁଶ ଜନ୍ମ ଶ୍ରୀରାମ ସ୍ୱର୍ଗକୁ ଆରୋହଣ ।
ଏକ ଚିତ୍ତ ହୋଇ ସୁଜ୍ଞଜନେ ଶୁଣ ।। (ପୃ. ୩୯୬)

× ×

ରାମାୟଣ ଶୁଣନ୍ତେ ଦୁରିତ ବିନାଶ ।
ସିଦ୍ଧେଶ୍ୱର ଦାସେ ଗୀତେ ଗାଆନ୍ତି ହରିର ପାଶ ।। (ପୃ. ୩୯୬)

ସଂସ୍କୃତ ଭାଷା ବୁଝିପାରୁ ନଥିବା ସାଧାରଣ ଜନତାଙ୍କ ପାଖରେ ପୁରାଣାଦି ଧର୍ମଗ୍ରନ୍ଥକୁ ପହଞ୍ଚାଇବାର ମୁଖ୍ୟ ମାଧ୍ୟମ ଥିଲା ପୁରାଣ ସଭା ଓ ତାହାର ପ୍ରଚାରକ ଥିଲେ ପୁରାଣପଣ୍ଡା । ବିତ୍ତଶାଳୀ ଲୋକେ ପୁରାଣପଣ୍ଡାଙ୍କୁ ଘରକୁ ଡାକି ପୁରାଣ ଶୁଣିବା ପ୍ରଥା

ମଧ୍ୟ ଥିଲା କିନ୍ତୁ ପୁରାଣପଣ୍ଡାଙ୍କର ଆଶାନୁରୂପ ସମସ୍ତ ପ୍ରାପ୍ୟ (ଦାନଦକ୍ଷିଣାଦି) ଦେଇ ପାରିବା ସାମର୍ଥ୍ୟ ଥିବା ଲୋକଙ୍କ ସଂଖ୍ୟା ଅତ୍ୟଳ୍ପ ଥିବାରୁ ଘର ଭିତରେ ପୁରାଣ ପରିବେଷଣ କ୍ୱଚିତ୍ ହେଉଥିଲା । ସିଦ୍ଧେଶ୍ୱର ଦାସ ଏହି ପୁରାଣ ସଭା ଓ ପୁରାଣପଣ୍ଡାଙ୍କ ଦ୍ୱାରା ତାଙ୍କ ଗ୍ରନ୍ଥର ପ୍ରଚାର ଆଶା ପୋଷଣ କରୁଥିଲେ । ଜନସାଧାରଣଙ୍କ ମଧ୍ୟରେ ସମଧିକ ନିରକ୍ଷରତା ଓ ଗୋଟିଏ ଗୋଟିଏ ତାଳପତ୍ର ପୋଥିର ଅତ୍ୟଧିକ ମୂଲ୍ୟ (ମୁଦ୍ରାଯନ୍ତ୍ରର ଅଭାବରେ ଅତିକଷ୍ଟରେ ଥରକେ ଗୋଟିଏ ମାତ୍ର ନକଲ ପ୍ରସ୍ତୁତ ହୋଇପାରୁଥିବାରୁ) ଏହି ଦୁଇ କାରଣରୁ ଜଣେ ପୁରାଣପଣ୍ଡାର ଆବଶ୍ୟକତା ଗ୍ରାମେ ଗ୍ରାମେ ରହିଥିଲା । ଏହି ପୁରାଣପଣ୍ଡାର ଅନୁସନ୍ଧାନ ନକଲେ ଗ୍ରନ୍ଥର ପ୍ରଚାର ହୋଇ ପାରବ ନାହିଁ ବୋଲି ଜାଣି ସିଦ୍ଧେଶ୍ୱର ଦାସ ପୁରାଣର ଶ୍ରୋତାମାନେ ପୁରାଣପଣ୍ଡାଙ୍କୁ ଉଚିତ ଦକ୍ଷିଣାଦାନ ରୂପେ ପାରିଶ୍ରମିକ ଦେବା ଲାଗି କହିଛନ୍ତି । ପୁରାଣ ଶ୍ରବଣର ଫଳ ପୁରାଣପଣ୍ଡାଙ୍କୁ ସନ୍ତୁଷ୍ଟ କରି ଦକ୍ଷିଣା ନ ଦେଲେ ମିଳିବ ନାହିଁ, ଭଗବାନ ଦକ୍ଷିଣା ଧନକୁ ବହୁଗୁଣିତ କରି ଦାତାକୁ ଦିଅନ୍ତି ଓ ଦକ୍ଷିଣା ନଦେବା ଲୋକ ଜନ୍ମାନ୍ତରରେ ଦରିଦ୍ର ହୁଏ, ଏ ପ୍ରକାର କଥା କବି ଲେଖିଛନ୍ତି—

ଶାସ୍ତ୍ର ଶୁଣି ଯେବେ ଦକ୍ଷିଣା ଦାନ ଦେନ୍ତି ।
ତେବେ ସେ ଶୁଣିବାର ପାଇବ ଫଳଶ୍ରୁତି ।।
ମନର ସନ୍ତୋଷେ ଯେ ଦକ୍ଷିଣା ଦାନ ଦେଇ ।
ତ୍ରିଭୁବନନାଥ ତାହାର ବାଞ୍ଛାସିଦ୍ଧ କରଇ ।।
ସକଳ ଦାନ ପୁନ୍ୟକୁ ସାଖୀ ଶ୍ରୀହରି ।
ସେ ଅକ୍ଷର ନିରଞ୍ଜନ ତାହାକୁ ଦିଅଇ ତ୍ରିବିଧି କରି ।। (ପୃ. ୬୫)

× × ×

ଦକ୍ଷିଣା ଦେଲେ ସେ ଫଳଶ୍ରୁତି ପାଇ । (ପୃ. ୩୯୨)

× × ×

ଯେ ଯାହାର ଅନରୂପେ ଦାନ ଦକ୍ଷିଣା ଦେବେ ।
ଶାସ୍ତ୍ର ଶୁଣିବାର ସଦଗତି ଲଭିବେ ।। (ପୃ. ୩୧୯)

× × ×

ଶାସ୍ତ୍ର ଶୁଣି ଯେ ଦାନ ଦକ୍ଷିଣା ନ ଦିଅଇ ।
ଆଗତ ଜନ୍ମେ ସେ ଦରିଦ୍ର ଘରେ ଜନ୍ମ ହୋଇ । (ପୃ. ୩୧୯)

ଅନ୍ୟତ୍ର ପୁରାଣସଭା ଅନୁଷ୍ଠାନ ବିଷୟରେ ଆଲୋଚନା ପ୍ରସଙ୍ଗରେ ସାରଳାଦାସ ଆଦି ପୁରାଣକର୍ତ୍ତା କବିମାନେ ପୁରାଣପଣ୍ଡାଙ୍କୁ ଦାନଦକ୍ଷିଣା ଦେବା ପାଇଁ କହିଥିବା କଥାର ଅଧିକ ଚର୍ଚ୍ଚା ରହିଛି ।

**କବିଙ୍କ ସମୟ**

କବି ତାହାଙ୍କର ସମୟ ସୂଚାଇ ନାହାନ୍ତି । ବିଚିତ୍ର ରାମାୟଣର ଶୈଳୀ ଓ ଭାଷାକୁ ସ୍ଥୂଳ ସମୟ-ସୂଚକ ଭାବରେ ଗ୍ରହଣ କଲେ ଗ୍ରନ୍ଥଟି ସାରଳା-ମହାଭାରତ ଅପେକ୍ଷା କିଞ୍ଚିତ୍ ପ୍ରାଚୀନତର ହେବ ବୋଲି କୁହାଯାଇପାରେ । ଦାଣ୍ଡୀ ପଦ୍ୟଶୈଳୀ, ଓକାରର ଉକାର ପରିଣତି, ଅନ୍ତିମ ସ୍ୱରର ବିଶ୍ଳେଷଣ, ମକାରର ବକାରରେ ପରିଣତି, କଇର ବ୍ୟବହାର-ପ୍ରାଚୁର୍ଯ୍ୟ, 'ନ୍ତ' 'ସି' ଆଦି ପ୍ରାଚୀନ ପ୍ରତ୍ୟୟର ବିଶେଷ ବ୍ୟବହାର, ବଚନ ବିଭ୍ରାଟ, କ୍ରିୟାରୂପର ସ୍ୱାତନ୍ତ୍ର୍ୟ ଆଦି ଲକ୍ଷଣ ଦେଖି ବିଚିତ୍ର ରାମାୟଣ ସାରଳା-ମହାଭାରତର ପୂର୍ବଭୂତ ହେବାର ସମ୍ଭାବନା କଥା ପୂର୍ବରୁ ଆଲୋଚିତ ହୋଇଛି । ମହାଭାରତର ଭାଷା ଓ ଶୈଳୀ ସହିତ ବିଚିତ୍ର ରାମାୟଣର ମେଳର ମାତ୍ରା ଦୃଷ୍ଟେ ଉଭୟ ମଧ୍ୟର ସମୟ ବ୍ୟବଧାନ ବିଶେଷ ହେବା ଜଣାପଡୁନାହିଁ । ତେବେ, ଏହି ଦୁଇ ଗ୍ରନ୍ଥ ମଧ୍ୟରେ ବିଚିତ୍ର ରାମାୟଣକୁ ପୂର୍ବକାଳୀନ ବିଚାର କରିବା ସମୀଚୀନ ବୋଧହୁଏ । ଦୁଇ ଗ୍ରନ୍ଥରେ ବର୍ଣ୍ଣିତ ରାମଚରିତର ତୁଳନା ବେଳେ ସୂଚାଇ ଦିଆଯାଇଛି ଯେ ମହାଭାରତର ବନପର୍ବରେ ବର୍ଣ୍ଣିତ ଦଶରଥ ଅପୁତ୍ରିକ ହେବା ପାଇଁ ଗୋମାତା କପିଳାଠାରୁ ଶାପ ଲଭିବା ଉପାଖ୍ୟାନଟି ବିଚିତ୍ର ରାମାୟଣୋକ୍ତ ସେହି ଉପାଖ୍ୟାନ ଅପେକ୍ଷା ଅଧିକ ପରିପୁଷ୍ଟ ଓ ଉନ୍ନତ । ଏହା ମଧ୍ୟ ବିଚିତ୍ର ରାମାୟଣର ପୂର୍ବବର୍ତ୍ତିତା ସୂଚିତ କରୁଛି ।

ବିଚିତ୍ର ରାମାୟଣରେ ଫରମାଣ ଓ ଫରମାସ ଏହି ଦୁଇ ଶବ୍ଦର ବ୍ୟବହାର ଠାଏଁ ଲେଖା ରହିଛି—

ଶ୍ରୀ ରାମ ଫରମାଣ ପାଇଲାକ ଯହୁଁ ।
ତତକ୍ଷଣେ ମଧୁକେଶୀ ରଥେ ବସିଲାକ ତହୁଁ ।। (ପୃ. ୩୬୬)

× ×

ପିତାର ଫରମାସ ପାଇଣ ଇନ୍ଦ୍ରଜିତ ।
ମାୟା ସୀତା କଲା ଜାନକୀର ସଂଜାତ ।। (କ ପୋଥି, ପୃ. ୨୬୦)

ଏହା ମଧ୍ୟରୁ ଫରମାସର ବ୍ୟବହାର ସଂପର୍କରେ ସନ୍ଦେହ ହୁଏ, କାରଣ ଖ ପୋଥିରେ ଫରମାସ ସ୍ଥାନରେ 'ଆଗ୍ୟାଂସେ' ଲେଖା ଅଛି । ଆଜିକାଲି ଫରମାଣର ବ୍ୟବହାର ନାହିଁ; ଫରମାସ୍, ଫରମାସିବା ଆଦିର ବ୍ୟବହାର ଚଳୁଛି । ପ୍ରାଚୀନ ସାହିତ୍ୟରେ ଫରମାଣ ଶବ୍ଦର ପ୍ରଚଳନ ମିଳେ । ସାରଳା ମହାଭାରତର କେତେକ ପୋଥିରେ ଓ କବି ବଂଶୀ ଦାସଙ୍କ ଗଉରା କଳସା (ବା କଳସା ଚଉତିଶା)ରେ ଫରମାଣ ପଦ ରହିଛି । ଶବ୍ଦଟି ରାଜାଜ୍ଞା ଅର୍ଥର ଫାର୍ଶି ଫର୍‌ମନ୍ ଶବ୍ଦରୁ ଜାତ (ଫରମାସ ସେହି ଫାର୍ଶି ଫର୍ମନ୍ ଶବ୍ଦଜ) । ଗୋଟିଏ ଫାର୍ଶି ଶବ୍ଦ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଆକୁ ଆସିଥିବା ସମ୍ଭବପର ମନେ ହେଉନାହିଁ । ଏହି ସମସ୍ତ ବିଚାରରୁ ବିଚିତ୍ର ରାମାୟଣର ରଚନା କାଳ

ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି ଅନୁମାନ କରାଯାଇପାରେ । ସାରଳା-ମହାଭାରତର ରଚନାର ଆରମ୍ଭ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ (ଅର୍ଥାତ୍ ଖ୍ରୀ. ୧୪୩୫ରୁ ୧୪୬୮ ମଧ୍ୟରେ) । ବିଚିତ୍ର ରାମାୟଣର ରଚନା କାଳ ମହାଭାରତ ରଚନାର ଅଳ୍ପ ପୂର୍ବବର୍ତ୍ତୀ ବୋଲି ନିରୂପଣ କରାଯାଇପାରେ । ପରବର୍ତ୍ତୀ ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀରେ ଫାର୍ଶି ଫର୍ମାନ୍‌କୁ ଓଡ଼ିଆ 'ପ୍ରମାଣ' ରୂପ ଦେବା ରାଜାଜ୍ଞା ଲେଖ ମିଳୁଛି ।

ମହାଭାରତ ପ୍ରଣେତା ସାରଳାଦାସଙ୍କ ପ୍ରଥମ ନାମ ସିଦ୍ଧେଶ୍ୱର ଥିଲା ବୋଲି ଜଗତ୍‌ସିଂହପୁର ଝଙ୍କଡ଼ ଅଞ୍ଚଳରେ କିଂବଦନ୍ତୀ ରହିଥିବା ବିଷୟ ସାରଳାଦାସଙ୍କ ଜୀବନବୃତ୍ତାନ୍ତ ପ୍ରଣେତା ମୃତ୍ୟୁଞ୍ଜୟ ରଥ ଜଣାଇଛନ୍ତି– ''କବିଙ୍କର ପୂର୍ବ ନାମ ସିଦ୍ଧେଶ୍ୱର ଥିଲା ବୋଲି କିଂବଦନ୍ତୀରୁ ପ୍ରକାଶ ପାଏ '(ମୁକୁର, ଭାଗ ୫, ପୃ. ୬୭) । ଏହା ନିଃସନ୍ଦେହ ଯେ ମହାଭାରତକାରଙ୍କ ମୌଳିକ ନାମ ସାରଳା ଦାସ ନଥିଲା; ସେ ଦେବୀ ସାରଳାଙ୍କ ଅନୁଗ୍ରହପ୍ରାପ୍ତ ଭକ୍ତ ଭାବରେ 'ସାରଳାଦାସ' ନାମ ନେଲେ । ଅନ୍ୟଥା ଜଣେ ପୁରୁଷର ନାମ 'ସାରଳା' ହେବା ସମ୍ଭବପର ମନେ ହେଉନାହିଁ । ଏହି ଦିଗରୁ ବିଚାର କଲେ ସିଦ୍ଧେଶ୍ୱର ଦାସ ବିଚିତ୍ର ରାମାୟଣ ରଚନା କରି ସାରିବା ପରେ ଦେବୀ ସାରଳା ଭକ୍ତ ହୋଇ ସାରଳାଦାସ ନାମ ଗ୍ରହଣ କରି ମହାଭାରତ ଓ ଚଣ୍ଡୀପୁରାଣ ଲେଖିଲେ ବୋଲି ନିର୍ଣ୍ଣୟ କରିବା ସହଜ ହୁଅନ୍ତା । କିନ୍ତୁ ବିଷୟଟିର ନିର୍ଣ୍ଣୟ ସହିତ ବହୁ ଆନୁଷଙ୍ଗିକ ତଥ୍ୟ ସଂପୃକ୍ତ ହୋଇଥିବାରୁ ନିର୍ଣ୍ଣୟ ତେତେ ସୁସାଧ୍ୟ ନୁହେଁ । ମହାଭାରତ ଓ ଚଣ୍ଡୀପୁରାଣ ମଧ୍ୟରେ କବିଙ୍କର ଆତ୍ମପରିଚୟ ଯେପରି ରହିଛି ତାହାର ବିଶଦ ଆଲୋଚନା ପରେ ହିଁ ଏହି ବିଷୟରେ କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ହେବ ।

## ବିଲଙ୍କା ରାମାୟଣ କେତୋଟି ?

ସିଦ୍ଧେଶ୍ୱର ପରେ ସାରଳାଦାସ ହେବା ନେଇ ସଂଗୃହୀତ କିଂବଦନ୍ତୀର ବିଶ୍ୱସନୀୟତା ପ୍ରଥମେ ବିଚାର୍ଯ୍ୟ । ପଞ୍ଚଦଶ ଶତାବ୍ଦୀର ଜଣେ ଗ୍ରାମ୍ୟ କବିଙ୍କର ଜୀବନ ସହିତ ସଂପୃକ୍ତ କୌଣସି ବିଷୟରେ ବିଂଶ ଶତାବ୍ଦୀରେ ପ୍ରଚଳିତ କୌଣସି କିଂବଦନ୍ତୀର ପ୍ରମାଣିକ ମୂଲ୍ୟ ବା କେତେ ? ମଝିରେ ୧୭/୧୮ ପୁରୁଷର ସୁଦୀର୍ଘ ବ୍ୟବଧାନ । କିଂବଦନ୍ତୀଗୁଡ଼ିକ ବିଶ୍ୱାସଭାଜନ ଅବସ୍ଥାରେ ପ୍ରକୃତ ବିଷୟକୁ ମୌଖିକ ଧରି ରଖି ଏତେ ଦୀର୍ଘ କାଳ ଗଡ଼ି ଆସିବା ସମ୍ଭବପର ମନେ ହୁଏ ନାହିଁ । ମୋର 'ସାଂସ୍କୃତିକ ସିଂହାବଲୋକନ' ପୁସ୍ତକର ଅନ୍ତର୍ଭୁକ୍ତ 'କିଂବଦନ୍ତୀର ମୂଲ୍ୟ ଓ ଓଡ଼ିଶାର କିଂବଦନ୍ତୀରେ ଅଶୋକ ଶୀର୍ଷକ ପ୍ରବନ୍ଧରେ କିଂବଦନ୍ତୀଗୁଡ଼ିକ ଇତିହାସ ଚର୍ଚ୍ଚା ପାଇଁ କିପରି ମୂଲ୍ୟହୀନ ତାହା ଦର୍ଶାଇଛି । କବି ବଳଦେବ ରଥଙ୍କ ଜୀବନୀ ସହିତ ସଂପୃକ୍ତ କିଂବଦନ୍ତୀମାନ ଖୋଦ୍ କବିଙ୍କ ପ୍ରପୌତ୍ରଙ୍କ ଜୀବଦ୍ଦଶାରେ ତାଙ୍କର ଘରୁ ସଂଗୃହୀତ ହୋଇ ମଧ୍ୟ ଗୁଡ଼ିଏ ଗାଳଗଳ୍ପ ସର୍ବସ୍ୱ ହୋଇପଡ଼ିଲା (ମୋର ବଳଦେବ ରଥ ଅଧ୍ୟୟନ,' ୧୯୮୧, ପୁସ୍ତକରେ ଏହା ସପ୍ରମାଣ ଦର୍ଶାଇଛି) ।

ପୁଣି, ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ କିଂବଦନ୍ତୀ ଯୋଗୁଁ ଭ୍ରମାତ୍ମକ ହେବା କଥା ଅତୀତର ବର୍ଣ୍ଣବୋଧ ପୁସ୍ତକରେ ଦର୍ଶାଇଛି ଅଥଚ କାହିଁ କେତେ ଦୂର ଅତୀତର ସାରଳାଦାସ ! ତାଙ୍କର କୁଳଗୋତ୍ର କେହି ଥିବା ନଥିବାର ସ୍ମୃତି ମହାକାଳ ସାଇତି ରଖି ନାହିଁ । କିଏ ତାଙ୍କର ପିତାମାତା ? ତାଙ୍କର ସନ୍ତାନସନ୍ତତି କେତୋଟି ? ତାଙ୍କର ଉପାସ୍ୟା ଦେବୀ ଝଙ୍କଡ଼ର ସିଂହ ସାରଳା ବୋଲି ଯେଉଁ କିଂବଦନ୍ତୀ ଚଳୁଛି ତାହା କିପରି ମିଥ୍ୟା କବିଙ୍କର ନିଜ ଉକ୍ତିରୁ ପ୍ରମାଣିତ ହେଉଛି ('ସିଦ୍ଧ ସାରୋଳ ଚଣ୍ଡୀ' ପ୍ରବନ୍ଧ ଦ୍ରଷ୍ଟବ୍ୟ) । ଜଣେ ସାହିତ୍ୟିକ ବୀରପୁରୁଷର ଶୌର୍ଯ୍ୟର କେତେ କେତେ କଥା ରହିଥିବ । ସେ ସବୁ ସଂପର୍କରେ ତୂଷ୍ଣୀଶୀଳ କିଂବଦନ୍ତୀ ଅନ୍ୟ ସବୁ କଥା ପାସୋରି ତାଙ୍କର ପ୍ରଥମ ନାମଟିକୁ ମନେ ରଖିବା ସମ୍ଭବପର ନୁହେଁ । କିନ୍ତୁ, ଏହି କିଂବଦନ୍ତୀଟି ମୁଦ୍ରିତ ବିଲଙ୍କା ରାମାୟଣ ପୁସ୍ତକ ଦ୍ୱାରା ଆଶ୍ଚର୍ଯ୍ୟଜନକ ଭାବରେ ସମର୍ଥିତ ହେଉଥିବାରୁ ବିଲଙ୍କା ରାମାୟଣରେ ପ୍ରଦତ୍ତ ତଥ୍ୟ ଆଲୋଚ୍ୟ ହୋଇପଡୁଛି ।

ବିଲଙ୍କା ରାମାୟଣ ନାମଧେୟ ରଚନା ଓଡ଼ିଆରେ ଅନେକ ରହିଥିବା ଜଣାଯାଏ । ଲଣ୍ଡନର ଇଣ୍ଡିଆ ଅଫିସ୍ ଗ୍ରନ୍ଥାଗାରରେ ଥିବା ପାଣ୍ଡୁଲେଖ ମଧ୍ୟରେ ଗୋଟିଏ ତାଳପତ୍ର ପୋଥି 'ବିଲଙ୍କା ରାମାୟଣ' ରହିଛି । ୧୯୨୪ରେ ମୁଦ୍ରିତ ସୂଚୀପୁସ୍ତିକାରେ ଭାଗୀରଥି ଦାସଙ୍କ ପୁତ୍ର ବଳରାମ ଦାସ ରଚିତ ଏହି ବିଲଙ୍କା ରାମାୟଣ ବିଷୟରେ ସଂପାଦକ ଜଣାଇଛନ୍ତି– "କାହାଣୀଟି ଲୋକପ୍ରିୟ ଥିବା ଜଣାଯାଏ, କାହିଁକି ନା ଏହାର ତ୍ରିବିଧ ରୂପ ମୁଦ୍ରିତ ହେଲାଣି । ଗୋଟିକର କବି ଓଡ଼ିଆ ମହାଭାରତ ପ୍ରଣେତା ସାରଳାଦାସ, ଦ୍ୱିତୀୟର କବି ବାରାନିଧି ଦାସ ଓ ତୃତୀୟର କବି ସିଦ୍ଧେଶ୍ୱର ଦାସ । ବଳରାମ ଦାସଙ୍କ ଦ୍ୱାରା ପ୍ରଣୀତ ଏହି ଗ୍ରନ୍ଥଟି ମୁଦ୍ରିତ ହୋଇଥିବା ଜଣାଯାଏ ନାହିଁ ।"* ଏହି ସୂଚୀପୁସ୍ତିକାରେ କବି ବଳରାମ ଦାସ ତାଙ୍କର ଆତ୍ମପରିଚୟ ଗ୍ରନ୍ଥ ଶେଷକୁ ନିମ୍ନ ରୂପରେ ଦେଇଥିବା ଉଦ୍ଧୃତ ହୋଇଛି–

ପିତା ମୋର ଭାଗୀରଥି ମାତା ମୋର ଶ୍ରୀୟା ।
କେବଳ ତାଙ୍କର ମୋତେ ହୋଇଲା କିଛି ଦୟା ।।

---

* Catalogue of the Oriya Manuscripts in the Library of the India Office, by the Late James Fuller Blumhardt, M.A. (Oxford University Press, 1924)ରେ ବିଲଙ୍କା ରାମାୟଣ (ପାଣ୍ଡୁଲେଖ ସଂ. ୨୦) ବିଷୟରେ ଲେଖାଅଛି– "x x x The story appears to be a popular one, as three versions have been printed; one by Saralā Dāsa, author of the Oriya Mahabharata, another by Baranidhi Dāsa, and the third by Siddhesvara Dāsa. The present work by Balarama Dasa does not appear to have been published."

ବାରାନିଧି ଦାସ ବିରଚିତ ବିଲଙ୍କା ରାମାୟଣର ନାମାନ୍ତର 'ରାମାୟଣ ବିଲଙ୍କା କାଣ୍ଡ' ବୋଲି ତାଳପତ୍ର ପୋଥିରେ ପ୍ରଦତ୍ତ । ଏହି ଗ୍ରନ୍ଥ ଶେଷକୁ ବାରାନିଧି ଦାସ ଆତ୍ମପରିଚୟ ଦେଇ ଲେଖିଛନ୍ତି–

ପିତା ମୋର ଭାଗ୍ୟରଥି ମାତା ମୋର ଶ୍ରୀୟା ।
କେବଳ ଏହାଙ୍କର ମୋତେ ହୋଇଲା ସୁଦୟା ।।

(ରାମାୟଣ ବିଲଙ୍କା କାଣ୍ଡ, ତାଳପତ୍ର ପୋଥି)

ଅତଏବ ଜଣାଯାଉଛି ଯେ ଲଣ୍ଡନ ପୋଥିର ଲେଖନକାର 'ବାରାନିଧି' ନାମଟିକୁ ବଦଳାଇ ବଳରାମ କରିଛି ସିନା ବଳରାମ ଦାସ ଭଣିତ ବିଲଙ୍କା ରାମାୟଣ ଓ ଓଡ଼ିଶାରେ ମିଳୁଥିବା ରାମାୟଣ ବିଲଙ୍କାକାଣ୍ଡ (ବାରାନିଧି ଦାସ ଭଣିତ) ଅଭିନ୍ନ ଗ୍ରନ୍ଥ ।

ସାରଳାଦାସଙ୍କ ଦ୍ୱାରା ରଚିତ ବିଲଙ୍କ ରାମାୟଣ ନାମରେ ଦୁଇଟି ପୁସ୍ତକ ମୁଦ୍ରିତ ହୋଇଛି । ତନ୍ମଧ୍ୟରୁ ଗୋଟିଏ ବିଲଙ୍କା ରାମାୟଣ ପୂର୍ବଖଣ୍ଡ ଓ ଅନ୍ୟତରଟି ବିଲଙ୍କା ରାମାୟଣ ଉତ୍ତରଖଣ୍ଡ ନାମ ଗ୍ରହଣ କରିଥିଲେ ହେଁ ପ୍ରକୃତରେ ପ୍ରତ୍ୟେକ ପୁସ୍ତକ ଏକ ଏକ ସ୍ୱୟଂସଂପୂର୍ଣ୍ଣ ରଚନା । କଥାବସ୍ତୁ ପରିବେଷଣ ଶୈଳୀ ଓ କାହାଣୀ ପ୍ରାୟ ଏକାପ୍ରକାରର ହେଲେ ହେଁ ପୁସ୍ତକ ଦୁଇଟି ପରସ୍ପରଠାରୁ ପୃଥକ୍ । ଦୁଇ ଗ୍ରନ୍ଥ ମଧ୍ୟରୁ ପୂର୍ବଖଣ୍ଡଟି ପ୍ରାଚୀନତର ଓ ତାହା ହିଁ ମୌଳିକ ସଂପୂର୍ଣ୍ଣ ବିଲଙ୍କା ରାମାୟଣ; ତାହାର ପୂର୍ବଖଣ୍ଡ ନାମଟି ମୁଦ୍ରିତ ପୁସ୍ତକର ମଲାଟରେ ଅଛି ସିନା ପୁସ୍ତକ ମଧ୍ୟରେ କୁତ୍ରାପି ନାହିଁ । ଏହି ପୁସ୍ତକ ମଧ୍ୟରେ ତାହା ଏକ ଖଣ୍ଡ ବୋଲି କଥିତ ନହୋଇ ସଂପୂର୍ଣ୍ଣ ଗ୍ରନ୍ଥ ହୋଇଥିବା ସୂଚନା ରହିଛି । ପୁସ୍ତକ ଶେଷର ପୁଷ୍ପିକାରେ ରହିଛି– ''ଇତି ଶ୍ରୀ ବିଲଙ୍କା ରାମାୟଣ ସଦାଜୟେ ସଂପୂର୍ଣ୍ଣ ।''

ପୁସ୍ତକ ଶେଷର ଭଣତିରେ ମଧ୍ୟ ତାହା ପୁସ୍ତକର ସମାପ୍ତି ହେବା ସୂଚନା ମିଳେ–

ଈଶ୍ୱର ବୋଲନ୍ତି ଦେବୀ ପାର୍ବତୀ ଗୋ ଶୁଣ ।
ଅପୂର୍ବ ଚରିତ ଏ ବିଲଙ୍କା ରାମାୟଣ ।।
ଜୟ ଜୟ ହିଙ୍ଗୁଳା ଗୋ ଜୟ ମାହେଶ୍ୱରୀ ।
ତୋହର ପ୍ରସାଦେ ସିନ୍ଧୁ ହେଲେ ଗଲି ତରି ।।

ଗ୍ରନ୍ଥର ପୂର୍ବ ଖଣ୍ଡଟି ମାତ୍ର ସରିବା କଥା ହେଲେ କବି ''ସିନ୍ଧୁ ହେଲେ ଗଲି ତରି'' ବୋଲି କହନ୍ତେ ନାହିଁ । ଉତ୍ତର ଖଣ୍ଡଟି ପରବର୍ତ୍ତୀ ସମୟରେ ଲେଖା ହୋଇ ସେଥିରେ ସଂଯୋଜିତ ହୋଇଛି । ଏହି ଉତ୍ତର ଖଣ୍ଡଟିର ପ୍ରକୃତ ପ୍ରଣେତା କଟକ ଜିଲ୍ଲା ଧୂଳୀଶ୍ୱର ନିବାସୀ ବାସୁଦେବ ଉପାଧ୍ୟାୟ ଥିବାର ପ୍ରମାଣ ସେହି ଉତ୍ତର ଖଣ୍ଡ (ବା ଉତ୍ତରାକାଣ୍ଡ) ମଧ୍ୟରେ ହିଁ ରହିଛି–

(କ) ଦୟାକର ଜଗନ୍ନାଥ ଏହି ନିବେଦନ ।
ପଦମାନ ଦୃଶ୍ୟ ହେଉ କରିବି ଲେଖନ ॥
ସାଧୁସନ୍ଥ କୋବିଦଙ୍କ ପାଦେ ଥାଉ ମତି ।
ଦୀନ ବାସୁଦେବ ମାଗେ ନିର୍ବାଣ ମୁକତି ॥

× × ×

(ଖ) ଦୀନ ବାସୁଦେବ ମନ ଥାଉ ଶ୍ରୀ ପୟର ।
ଉପାଧ୍ୟାୟ ବଂଶେ ଜାତ ଧୂଳୀଶ୍ୱରେ ଘର ॥

ବାସୁଦେବ ଉପାଧ୍ୟାୟ ରଚନା କରିଥିବା ବିଲଙ୍କା ରାମାୟଣ ଖଣ୍ଡରେ ସେ ସାରଳାଦାସଙ୍କ ଭଣିତି ଠାଏଁ ଠାଏଁ ଖଞ୍ଜିଥିଲେ ହେଁ ତାହାର ପିତୃତ୍ୱ ନେଇ ସନ୍ଦେହର ଅବକାଶ ନାହିଁ ଓ ସାରଳାଦାସଙ୍କ ବିଷୟରେ ଚର୍ଚ୍ଚା ପ୍ରସଙ୍ଗରେ ପୂର୍ବଖଣ୍ଡ ନାମରେ ମୁଦ୍ରିତ ବିଲଙ୍କା ରାମାୟଣ ହିଁ ବିଚାର୍ଯ୍ୟ ।

ମୁଦ୍ରିତ ବିଲଙ୍କା ରାମାୟଣ (ପୂର୍ବଖଣ୍ଡ)ରେ ମଧ୍ୟେ ମଧ୍ୟେ ଥିବା ନଅଗୋଟି ଭଣିତି ମଧ୍ୟରୁ ତୃତୀୟ, ଚତୁର୍ଥ ଓ ପଞ୍ଚମ ଭଣିତି ସିଦ୍ଧେଶ୍ୱର ଦାସ ନାମର ଓ ଅବଶିଷ୍ଟ ଭଣିତି ଗୁଡ଼ିକ ସାରଳାଦାସ ନାମର । ଗୋଟିଏ ଗ୍ରନ୍ଥରେ ଆରମ୍ଭରେ ଓ ଶେଷରେ ଗୋଟିଏ ନାମର ଭଣିତି ଓ ମଧ୍ୟରେ ଅନ୍ୟ ଗୋଟିଏ ନାମର ଭଣିତି ସୂଚାଇପାରେ ଯେ ଦୁଇଟି-ଯାକ ନାମ ଜଣେ ମାତ୍ର କବିଙ୍କର । ଏହି ପ୍ରକାରେ ସାରଳାଦାସ ହିଁ ସିଦ୍ଧେଶ୍ୱର ଦାସ ଥିଲେ ବୋଲି ଚଳୁଥିବା କିଂବଦନ୍ତୀର ସମର୍ଥନ ବିଲଙ୍କା ରାମାୟଣରେ ମିଳେ । କିନ୍ତୁ ବିଲଙ୍କା ରାମାୟଣର ଭଣିତିଗୁଡ଼ିକରେ ଓଲଟପାଲଟ କରାଯାଇଚି ବୋଲି ଅନୁମାନ କରିବା ଲାଗି ଅନେକ କାରଣ ରହିଛି । ପ୍ରଥମତଃ, କବିଙ୍କର ନାମ ମୂଳରେ ସିଦ୍ଧେଶ୍ୱର ଥିଲା କିନ୍ତୁ ସେ ପରେ ସାରଳାଦାସ ହେଲେ ବୋଲି ଧରିନେଲେ ବି ଗୋଟିଏ ଗ୍ରନ୍ଥରେ ଦୁଇଟିଯାକ ନାମ ଦେବାର କୌଣସି ଯୌକ୍ତିକତା ରହୁନାହିଁ । ଦ୍ୱିତୀୟତଃ, ପ୍ରାଚୀନ ତାଳପତ୍ର ପୋଥିରେ ଏପରି ଦ୍ୱିବିଧ ଭଣିତି ସଂଯୁକ୍ତ ଥିବା ଦେଖାଯାଉନାହିଁ । ପୋଥିରେ ଭଣିତି ମିଳୁଛି ଏକମାତ୍ର ସିଦ୍ଧେଶ୍ୱର ଦାସଙ୍କର । ବିଲଙ୍କା ରାମାୟଣକୁ ସାରଳାଦାସଙ୍କ ପ୍ରଥମ ରଚନା ମନେକରୁଥିବା ଡକ୍ଟର ବଂଶୀଧର ମହାନ୍ତି ସଂଗ୍ରହ କରିଥିବା ବିଲଙ୍କା ରାମାୟଣ ପୋଥି ସଂପର୍କରେ ଲେଖିଛନ୍ତି– "ଝଙ୍କଡ଼ ପ୍ରଗଣାରୁ ମିଳିଥିବା ବିଲଙ୍କା ରାମାୟଣ ପୋଥିରେ ଆଶ୍ଚର୍ଯ୍ୟର ସହିତ ପ୍ରତ୍ୟେକ ସ୍ଥାନରେ ସିଦ୍ଧେଶ୍ୱର ଦାସ ଏହି ଭଣତି ଦେଖିବାକୁ ମିଳିଲା । × × କିନ୍ତୁ ପ୍ରକାଶିତ ବିଲଙ୍କା ରାମାୟଣରେ କେବଳ ତିନୋଟି ସ୍ଥାନରେ ସିଦ୍ଧେଶ୍ୱର ଦାସ ଭଣତି ଛଡ଼ା ଶାରଳା ଦାସ ଏହି ନାମର ଭଣତି ରହିଛି" (ସାରଳା-ସ୍ମରଣିକା ପୃ. ୭୬-୭୭) ।

ଲଣ୍ଡନ ଗ୍ରନ୍ଥାଗାରର ସୂଚୀପୁସ୍ତିକାର ସଂପାଦକ ସାରଳାଦାସଙ୍କ ଦ୍ୱାରା ପ୍ରଣୀତ ଗୋଟିଏ ବିଲଙ୍କା ରାମାୟଣ ଓ ସିଦ୍ଧେଶ୍ୱର ଦାସଙ୍କ ଦ୍ୱାରା ପ୍ରଣୀତ ଆଉ ଗୋଟିଏ ବିଲଙ୍କା ରାମାୟଣ ମୁଦ୍ରିତ ହୋଇଥିବା କଥା ଜଣାଇଛନ୍ତି । କିନ୍ତୁ, ପ୍ରକୃତରେ ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ପୃଥକ୍ ପୃଥକ୍ ବିଲଙ୍କା ରାମାୟଣର ପ୍ରଣେତା ନୁହନ୍ତି । ସିଦ୍ଧେଶ୍ୱର ଦାସ ଭଣିତି ଉଠାଇ ସାରଳାଦାସ ଭଣିତି ଭର୍ତ୍ତି କରିବାରୁ ଦୁଇ କବିଙ୍କର ରଚନା ପୃଥକ୍ ବୋଲି ଭ୍ରମ ସୃଷ୍ଟି ହୋଇଛି । ଏହି ସମସ୍ତ ବିଚାରରୁ ବିଲଙ୍କା ରାମାୟଣଗୁଡ଼ିକର ସୃଷ୍ଟିକ୍ରମ ନିମ୍ନ ଲିଖିତ ଭାବରେ ହେବା ଅନୁମିତ ହୁଏ–

୧. ବାରାନିଧି ଦାସଙ୍କ 'ରାମାୟଣ ବିଲଙ୍କା କାଣ୍ଡ' । କବି 'ପଣ୍ଡିତ କୁଳରେ ମୁଂ ହୋଇଲଇ ଜାତ' ବୋଲି ଓ ତାଙ୍କର ମାତା ପିତାଙ୍କ ନାମ ଶ୍ରୀୟାଭାଗୀରଥି ବୋଲି ଜଣାଇଛନ୍ତି । ନିଜର ସମୟ ଜଣାଇ ନାହାନ୍ତି କିନ୍ତୁ ଭାଷା ବିଚାରରୁ ତାଙ୍କ ସମୟ ଷୋଡ଼ଶ ଶତାବ୍ଦୀର ଶେଷ ଭାଗ ବା ସପ୍ତଦଶ ଶତାବ୍ଦୀ ହୋଇପାରେ । ପଣ୍ଡିତ ଜାତିର ଲୋକେ ଅଦ୍ୟାବଧି ଗଞ୍ଜାମ ଅଞ୍ଚଳରେ ଅଛନ୍ତି, ଏମାନେ ଉତ୍ତର ଓଡ଼ିଶାର ଜ୍ୟୋତିଷ (ଗ୍ରହବିପ୍ର) ଜାତି ପରି ଖଡ଼ିକାର ଜାତି । ବଳରାମ ଦାସଙ୍କ ଜଗମୋହନ ରାମାୟଣ ପରି ଏହାର ବକ୍ତା ମହାଦେବ ଓ ଶ୍ରୋତା ପାର୍ବତୀ । ତେଣୁ ଜଗମୋହନ ରାମାୟଣ ପ୍ରଚାରିତ ହେବା ପରେ ତାହାର ସଂପ୍ରସାରଣ ରୂପେ 'ବିଲଙ୍କା କାଣ୍ଡ'ର ସୃଷ୍ଟି । ରାମଚନ୍ଦ୍ର ରାବଣକୁ ମାଣି ବିଭୀଷଣଙ୍କୁ ଲଙ୍କାରେ ରାଜା କରି ଅଯୋଧ୍ୟାକୁ ବାହୁଡ଼ିବା ବେଳେ ବିଭୀଷଣ ଭୟରେ କହିଲେ ଯେ ରାବଣ ସିନା ମଲା, ବିଲଙ୍କାରେ ସହସ୍ରଶିର ରାବଣ ବଞ୍ଚିଛି, ରାମ ଯିବା ପରେ ସେ ଲଙ୍କା ଆକ୍ରମଣ କରିବ । ରାମ ସହସ୍ରଶିର ରାବଣ କଥା ଶୁଣି ତା' ବିରୁଦ୍ଧରେ ଅଭିଯାନ କଲେ । ଘୋର ଯୁଦ୍ଧରେ ସହସ୍ରଶିର ରାମଲକ୍ଷ୍ମଣ ସମେତ ତାଙ୍କ ପଟର ସମସ୍ତ ସୈନ୍ୟଙ୍କୁ ଅଚେତ କରିବା ପରେ ସୀତାଙ୍କୁ ଦେଖିଲା ଓ ତାଙ୍କୁ ନେବାକୁ ହାତ ବଢ଼ାଇଲା । ସୀତା ତାଙ୍କ ହାତ ଛିଞ୍ଚାଡ଼ି ଦେବାରୁ ତାଙ୍କର ଦଶ ନଖ କୋଣରୁ ସୈନ୍ୟମାନେ ଜାତ ହୋଇ ସହସ୍ରଶିରକୁ ନିପାତ କଲେ । ଏଥିରେ ସୀତା ଲଙ୍ଗଳା ହୋଇ ସହସ୍ରଶିରକୁ କାମାସକ୍ତ କରାଇ ହତବୀର୍ଯ୍ୟ କରିବା କଳ୍ପନା ସ୍ଥାନ ପାଇ ନାହିଁ । ରାମାଦି ସମସ୍ତେ ଚେତା ପାଇଲେ । ରାମ ବୈବସ୍ୱତ ମନୁଙ୍କୁ ବିଲଙ୍କ ଦେଶର ରାଜା କରି ଅଯୋଧାକୁ ବାହୁଡ଼ିଲେ । ବୈବସ୍ୱତ ମନୁ ବିଲଙ୍କ ଦେଶର ରାଜା ଥିବା କଳ୍ପନାଟି ସାରଳାଦାସଙ୍କର । ବାରାନିଧିଙ୍କ ବିବରଣୀ ସାରଳା-ମହାଭାରତର ପରବର୍ତ୍ତୀ ହେବା ହିଁ ସମ୍ଭବପର । ବାରାନିଧିଙ୍କ କୃତିଟି 'ବିଲଙ୍କା ରାମାୟଣ' ବୋଲାଇଲା ବୋଧହୁଏ ସିଦ୍ଧେଶ୍ୱର ଦାସଙ୍କ 'ବିଲଙ୍କା ରାମାୟଣ' ସୁପ୍ରଚାରିତ ହେବା ପରେ ।

୨. ସିଦ୍ଧେଶ୍ୱର ଦାସ ପ୍ରଣୀତ 'ବିଲଙ୍କା ରାମାୟଣ' । ସିଦ୍ଧେଶ୍ୱର ଦାସ ଜଗତସିଂହପୁର ନିକଟ ଝଙ୍କଡ଼ର ଥିବା ଜଣାଯାଏ । ବିଲଙ୍କା ରାମାୟଣର ଆରମ୍ଭ ଓ ଶେଷରେ ଝଙ୍କଡ଼ର ଦେବୀଙ୍କ ସ୍ତୁତି ରହିଛି–

ଜୟ ଜୟ ଶାରଳା ଗୋ ଝଙ୍କଡ଼ ବାସିନୀ ।
ଜୟ ସିଦ୍ଧ ଚଣ୍ଡୀ ମାତ ଅଶୁଭ ନାଶିନୀ ।।
ଭୈରବ ମୂରତି ଧରି ଝଙ୍କଡ଼ ପୁରରେ ।
ଜନମିଲ ଆସି ସିଦ୍ଧ ସାରଳା ରୂପରେ ।। (ଆରମ୍ଭ)

× × ×

ଝଙ୍କଡ଼ବାସିନୀ ମାତ ଅଭୟା କୃପାରେ ।
ଜନହିତେ ଏ ଗ୍ରନ୍ଥକୁ କଲି ମୁଁ ଭାଷାରେ ।। (ଶେଷ)

ବାରାନିଧିଙ୍କ ବିଲଙ୍କା କାଣ୍ଡ ପରି ବିଲଙ୍କା ରାମାୟଣର ବକ୍ତା ମହାଦେବ ଓ ଶ୍ରୋତା ପାର୍ବତୀ । ସଂସ୍କୃତ ଅଦ୍ଭୁତ ରାମାୟଣର ଅନୁକରଣରେ ଏଥିରେ ଲେଖାଅଛି ରାମ ରାବଣକୁ ମାରି ଅଯୋଧ୍ୟାକୁ ଫେରିବା ପରେ ବସିଷ୍ଠଙ୍କ ଆଗରେ ସ୍ୱୀୟ ବୀରତ୍ୱ ବଖାଣୁଥିବା ଶୁଣି ସୀତା କହିଥିଲେ– ''ରାବଣକୁ ବଧ ତୁମେ କରିନାହଁ, ମୁଁ ବଧ କରି ନଥିଲେ ରାବଣ ମରିନଥାନ୍ତା । ଯଦି ତୁମେ ଭାବୁଛ ଯେ ତୁମର ସେପରି ସାମର୍ଥ୍ୟ ଅଛି, ତେବେ ବିଲଙ୍କାରେ ପ୍ରବଳ ପ୍ରତାପୀ ସହସ୍ରଶିର ରାବଣ ରହିଚି, ତାକୁ ମାରିଲ ଦେଖି ।'' ରାମ ଏହି ଆହ୍ୱାନ ଗ୍ରହଣ କରି ଲକ୍ଷ୍ମଣ, ହନୁମାନ ଓ ସୈନ୍ୟବଳଙ୍କୁ ଧରି ସହସ୍ରଶିର ବିରୁଦ୍ଧରେ ଅଭିଯାନ ଚଳାଇଲେ । ଘୋର ସମର ହେଲା କିନ୍ତୁ ରାମ ସହସ୍ରଶିରକୁ ବଧ କରି ପାରିଲେ ନାହିଁ । ଭୟାକୁଳ ଦେବତାମାନେ ପ୍ରାର୍ଥନା କରିବାରୁ ସୀତା ସହସ୍ରଶିରକୁ ମାରିବାକୁ ବାହାରିଲେ । ସୀତା ଦୁର୍ଗାଙ୍କଠାରୁ ପୁଷ୍ପଧନୁ ଓ ପଞ୍ଚଶର ନେଇ ଯୁଦ୍ଧ କ୍ଷେତକୁ ଗଲେ ଓ ସହସ୍ରଶିର ଆଗରେ ଉଭାହୋଇ ତାଙ୍କର 'ନବଯଉବନ' ଦେଖାଇ ଅସୁର ଉପରେ ଫୁଲଶର ଆଘାତ କଲେ । ଏତଦ୍ୱାରା ସହସ୍ରଶିର କାମାତୁର ହୋଇ ହତବୀର୍ଯ୍ୟ ଦୁର୍ବଳ ହେବାରୁ ରାମଲକ୍ଷ୍ମଣ ତାକୁ ବଧ କରିବାକୁ ସମର୍ଥ ହେଲେ । ଅଦ୍ଭୁତ ରାମାୟଣରେ 'ବିଲଙ୍କା ରାବଣ' ନାମ କି ଜଘନ ଦେଖାଇ ହତବୀର୍ଯ୍ୟ କରାଇବା କଥା ନାହିଁ । ଯୁବତୀ ନାରୀ ତାହାର ଯଉବନ (ଯୋନି) ଦେଖାଇ ପୁରୁଷକୁ କାମାତୁର କରିବା ଦ୍ୱାରା ହତବୀର୍ଯ୍ୟ କରିବା କାବ୍ୟିକ-କୌଶଳଟିକୁ ସାରଳାଦାସ ଚଣ୍ଡୀପୁରାଣରେ ମହିଷାସୁର ବଧ ପ୍ରସଙ୍ଗରେ ପ୍ରୟୋଗ କରିଛନ୍ତି । ତାହାର ପୁନରାବୃତ୍ତି କରୁଥିବା ବିଲଙ୍କା ରାମାୟଣର ରଚନା କାଳ ପ୍ରାୟ ଖ୍ରୀ. ୧୭୦୦ ନିକଟରେ ହୋଇପାରେ ।

୩. ବାସୁଦେବ ଉପାଧ୍ୟାୟ ସିଦ୍ଧେଶ୍ୱର ଦାସଙ୍କ ବିଲଙ୍କା ରାମାୟଣର ପରିବର୍ତ୍ତନ ଘଟାଇ 'ବିଲଙ୍କା ରାମାୟଣ ଉତ୍ତର ଖଣ୍ଡ' ଲେଖିଲେ ଓ ସେଥିରେ ଲକ୍ଷଶିର ରାବଣର ବଧ ଚରିତ ବର୍ଣ୍ଣନା କଲେ । ବାସୁଦେବ ସ୍ୱରଚିତ ଲେଖାଟିକୁ ସାରଳାଦାସଙ୍କ ନାମରେ ଭଣିତ କରିଛନ୍ତି । ସେ ଉତ୍ତର ଖଣ୍ଡ ପରିକଳ୍ପନା କରିଥିବାରୁ ଅନୁମିତି ହୁଏ ଯେ ସେ ହିଁ ମୂଳ ବିଲଙ୍କା ରାମାୟଣକୁ ପୂର୍ବ ଖଣ୍ଡ ନାମ ଦେଲେ ଓ ତାହାର ପୁନର୍ଲେଖନ ବେଳେ

ଠାଏଁ ଠାଏଁ ସିଦ୍ଧେଶ୍ୱର ଦାସ ଭଣିତି ସ୍ଥାନରେ ସାରଳାଦାସ ଭଣିତି ଭର୍ତ୍ତି କରିଥିଲେ । ସିଦ୍ଧେଶ୍ୱର ଦାସଙ୍କ ବାସସ୍ଥାନ ଝଙ୍କଡ଼ ଥିବାରୁ ଓ ତାଙ୍କ ରଚନାରେ ସାରଳାଦାସ ଭଣିତି ସଂଯୁକ୍ତ ହୋଇଥିବାରୁ ସାରଳାଦାସଙ୍କ ବାସସ୍ଥାନ ଝଙ୍କଡ଼ ଥିବାର ଜନଶ୍ରୁତିର ଉଦ୍ଭବ ହେଇଥିବା ସମ୍ଭବ ।

## ବିଲଙ୍କା ରାମାୟଣର ଅର୍ବାଚୀନତା

ବିଲଙ୍କା ରାମାୟଣର ରଚୟିତା ସାରଳାଦାସ ବୋଲି କୁହାଯାଉଛି । କିନ୍ତୁ, ତାହା ସାରଳାଦାସଙ୍କର ରଚନା ନୁହେଁ ବୋଲି ନିର୍ଣ୍ଣୟ କରିବା ପାଇଁ ଅନେକାନେକ ଯୁକ୍ତି ରହିଛି । ବିଲଙ୍କା ରାମାୟଣରେ ଶୂଦ୍ରମୁନି ଭଣିତି ନାହିଁ, ଯାହା ମହାଭାରତ ଓ ଚଣ୍ଡୀପୁରାଣରେ ରହିଛି । ଯଦି ତାହା ସାରଳାଦାସଙ୍କର ବୋଲି କୁହାଯିବ ତେବେ ତାହା ଶୂଦ୍ରମୁନି ଉପାଧି ଗ୍ରହଣ ପୂର୍ବର ଅର୍ଥାତ୍ ମହାଭାରତ ରଚନା ପୂର୍ବର ଲେଖା ବୋଲି କହିବାକୁ ହେବ, କିନ୍ତୁ ତାହା ସମ୍ଭବପର ନୁହେଁ । ଏଥିରେ ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ଉଭୟ ଭଣିତି ଥିବାରୁ ଜଣେ କବି ଏକ ସମୟରେ ଦୁଇଟି ନାମକୁ ସ୍ୱୀକାର କରୁଥିଲେ ବୋଲି ସ୍ଥିର କରିବାକୁ ହେବ, ଏପରି ନିର୍ଣ୍ଣୟ ଯୁକ୍ତିଯୁକ୍ତ ନୁହେଁ । ପୁଣି, ବିଲଙ୍କା ରାମାୟଣର ରଚନା ଶୈଳୀ ଓ ଭାଷା ମହାଭାରତ ଓ ଚଣ୍ଡୀପୁରାଣର ପରକାଳୀନ । ବିଲଙ୍କା ରାମାୟଣରେ ଦାଣ୍ଡୀ ଶୈଳୀ ନାହିଁ; ଅଛି ଚଉଦ ଅକ୍ଷରୀ ଛନ୍ଦ ଯାହା ଦାଣ୍ଡୀର ପରବର୍ତ୍ତୀକାଳୀନ । ତାହାର ଭାଷା ରୂପ ଏତେ ଅର୍ବାଚୀନ ଯେ ତାହା ମହାଭାରତର ରଚନାର ପୂର୍ବର ହେବା ତ ଦୂରର କଥା, ମହାଭାରତ ରଚନାର ପରବର୍ତ୍ତୀ ଦୁଇଶତାବ୍ଦୀ ମଧ୍ୟର ରଚନା ହେବା ମଧ୍ୟ ସମ୍ଭବ ବୋଲି ବୋଧ ହେଉ ନାହିଁ । ଏଥିରେ ବଜାର, ହଜାର, ପାଏଦାର ଭଳି ଯାବନିକ ଶବ୍ଦାବଳୀ ରହିଛି ଯାହା ମହାଭାରତ ବା ଚଣ୍ଡୀପୁରାଣରେ ବ୍ୟବହୃତ ହୋଇନାହିଁ; ଖ୍ରୀ. ସପ୍ତଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଆରେ ପ୍ରଚଳିତ ଥିବାର ପ୍ରମାଣ ମଧ୍ୟ ମିଳୁନାହିଁ । ବିଲଙ୍କା ରାମାୟଣର ପ୍ରକାଶ ଭଙ୍ଗୀରେ ଅନେକ ବିଶେଷତା ଅଛି ଯାହା ମହାଭାରତ-ଚଣ୍ଡୀପୁରାଣରେ ନାହିଁ, ଯଥା– କେ ବୋଲଇ, ଲୁହାମଇ ବୁଲାଇବା, ରାମରହୁ (ରାମରାୟ, ଅର୍ଥରେ) । ଏଥିରେ କବି ତାଙ୍କ ଉପାସ୍ୟା ଦେବୀ ଝଙ୍କଡ଼ରେ 'ଭୈରବ ମୂରତି ଧରି' ଜନ୍ମିବା କଥା ଲେଖିଛନ୍ତି କିନ୍ତୁ ସାରଳାଦାସଙ୍କ ଜଙ୍ଗେରପୁରବାସିନୀ ଦେବୀ ଭୈରବ ସହିତ ଥିବା କଥାର ବର୍ଣ୍ଣନା ନାହିଁ କି ସେ ନିଜେ ଭୈରବୀ ଥିବା ବର୍ଣ୍ଣନା ନାହିଁ । ସାରଳାଦାସଙ୍କ ଦେବୀଙ୍କର ବାଳୁତରୂପ ଥିଲା । ବିଲଙ୍କା ରାମାୟଣର ଆରମ୍ଭରେ କବି ଝଙ୍କଡ଼ ଶାରଳାଙ୍କର ସ୍ତୁତି ମଧ୍ୟରେ ଲେଖିଛନ୍ତି–

ମୂର୍ଖକୁ ହୋଇଲେ ସାହା ହୁଅଇ ପଣ୍ଡିତ ।
ସରସ୍ୱତୀ କର କୃପା ଜଳକୁ ଉଦିତ ।।

ସାରଳାଦାସଙ୍କ ଇତିହର କୃପାଜଳ ଋଷିଙ୍କ କନ୍ୟା ନର୍ମଦା ସରସ୍ୱତୀଙ୍କୁ କବି କୃପା ବାରିର ଉତ୍ସ ଭାବରେ ପ୍ରକାଶ କରିଛନ୍ତି । ସାରଳାଦାସଙ୍କ କୃପାଜଳର ଅର୍ଥ ସେ ବୁଝି ପାରିନଥିବା ଜଣାଯାଉଛି । କୃପାଜଳଙ୍କ ବିଷୟ ପ୍ରଥମ ଅଧ୍ୟାୟରେ ଦ୍ରଷ୍ଟବ୍ୟ ।

ବିଲଙ୍କା ରାମାୟଣ ବର୍ଣ୍ଣିତ ଆଖ୍ୟାନ ସାରଳାଦାସଙ୍କର ହୋଇ ନ ପାରେ ବୋଲି ଆଖ୍ୟାନର ଚରିତ ଦୃଷ୍ଟିରୁ ମଧ ନିର୍ଣ୍ଣୟ କରାଯାଇପାରେ । ତାହା ସାରଳାଦାସଙ୍କର ହୋଇଥିଲେ ସହସ୍ର ଆଖ୍ୟାନର ମହାଭଣ୍ଡାର ମହାଭାରତରେ ତାହାର କିଛି ନା କିଛି ସୂଚନା ତ ଅବଶ୍ୟ ମିଳନ୍ତା । ସେହି ଆଖ୍ୟାନର ସୂଚନା ତ ସାରଳାଦାସ ଲେଖି ନାହାନ୍ତି ତାହାର ବିରୋଧୀ ଭିନ୍ନ ପ୍ରକାରର ଆଖ୍ୟାନ ସେ ଲେଖିଛନ୍ତି ।* ସାରଳାଦାସ ମହାଭାରତ ଚରିତକୁ ଅଗସ୍ତ୍ୟ ଋଷି ବିଲଙ୍କ ଦେଶର ରାଜା ବୈବସ୍ୱତ ମନୁଙ୍କୁ କହିଥିବା ପରି ବର୍ଣ୍ଣନା କରିଛନ୍ତି । ବିଲଙ୍କା ସଂପର୍କରେ ସାରଳାଦାସ ସହସ୍ରଶିର ରାବଣର ବଧ ରୂପ ଆଖ୍ୟାନ କଳ୍ପନା କରିଥିଲେ ମହାଭାରତରେ ତାହାର ସୂଚନା ଦେବା ସ୍ୱାଭାବିକ ହୋଇଥାନ୍ତା । କୌତୂହଳର ବିଷୟ, ସାରଳାଦାସ ସହସ୍ରଶିର ରାବଣ ସଂପର୍କରେ ବିଲଙ୍କା ରାମାୟଣ ଠାରୁ ସଂପୂର୍ଣ୍ଣ ଭିନ୍ନ ରୂପର ଏକ ଉପାଖ୍ୟାନ ମହାଭାରତର ମୂଷଳୀପର୍ବରେ ଲେଖିଛନ୍ତି । ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ ଅତୀତର ମୁନିବ୍ରତ ନାମକ ସତ୍ୟଯୁଗରେ ରୁଦ୍ରପ୍ରଭା (ପାଠାନ୍ତର ରୁଦ୍ରଗର୍ଭ) ନାମଧେୟ ରାବଣ ଲଙ୍କାର (ବିଲଙ୍କାର ନୁହେଁ) ରାଜା ହୋଇଥିଲା । ବ୍ରହ୍ମାଙ୍କଠାରୁ ବର ପାଇ ଏହି ରାବଣର ସହସ୍ରଶିର ହୋଇଥିଲା । ଏହି ସହସ୍ରଶିର ରାବଣ ସତ୍ୟଯୁଗ ଭୋଗ ପରେ ତ୍ରେତା ଯୁଗରେ ରାମଙ୍କ ପତ୍ନୀ ଜନକକନ୍ୟା ସୀତାଙ୍କୁ ହରଣ କଲା । ରାମ ବାନରସେନାଙ୍କୁ ନେଇ ଲଙ୍କାକୁ ଅଭିଯାନ କଲେ । ବାନରମାନେ ସେତୁବନ୍ଧ ବାନ୍ଧିବା ପାଇଁ ବହୁସଂଖ୍ୟକ ପର୍ବତକୁ ସେଠାରେ ରୁଣ୍ଡ କଲେ । ରାମ ତନ୍ମଧ୍ୟରୁ ନୀଳସୁନ୍ଦର ଓ ନୀଳଗିରି ନାମକ ଦୁଇଟି ପର୍ବତକୁ ବାଛି ତାହା ବୈକୁଣ୍ଠ ସହିତ ସମାନ ବୋଲି ବିବେଚନା କରି ସେତୁବନ୍ଧ ପାଇଁ ବ୍ୟବହାର ନ କରି ସେଠାରେ ରଖିଲେ । ସେତୁବନ୍ଧ ନିର୍ମାଣ ବେଳେ ରାମ ନୀଳସୁନ୍ଦର ପର୍ବତ ଉପରେ ବସିଥିଲେ । ହନୁମାନ ରାମଙ୍କୁ କାନ୍ଧରେ ବସାଇ ନୀଳଗିରି ଉପରୁ ଲଙ୍କାକୁ ଲମ୍ଫ ଦେବା ବେଳେ ହନୁମାନର ପାଦର ଚାପରେ ନୀଳଗିରି ପୋତି ହୋଇ ଭୂମିରେ ମିଶିଗଲା । କିନ୍ତୁ, ସୁନ୍ଦରଗିରି ଅତ୍ୟୁଚ୍ଚ ଅବସ୍ଥାରେ ରହିଥିଲା ଓ ପରବର୍ତ୍ତୀ କାଳରେ ଋଷିଶାପରେ ଯଦୁକୁଳ ନାଶ ପାଇଁ ଜାତ ଲୋହମୂଷଳକୁ ନିଶ୍ଚିହ୍ନ କରିବା ଉଦ୍ଦେଶ୍ୟରେ ଭୀମ ତାହାକୁ ସୁନ୍ଦରଗିରିରେ ଘଷୁ ଘଷୁ ପର୍ବତଟି ଘୋରି ହୋଇ ନିଶ୍ଚିହ୍ନ ହୋଇଗଲା । ସାରଳାଦାସ ନୀଳସୁନ୍ଦର ପର୍ବତ ମୁଖରେ କୁହାଇଛନ୍ତି—

---

* ମହାଭାରତରେ (୨ ସଭା ୩୬୦) ବିଷ୍ଣୁ ବିଲଙ୍କର ଭଞ୍ଜନ ଓ ଅଭଞ୍ଜନ ନାମକ ଦୁଇଜଣ ଦୈତ୍ୟଙ୍କୁ ବଧ କରିବା ବର୍ଣ୍ଣିତ ।

ନୀଳ ସୁନ୍ଦର ପର୍ବତ କହଇ ଭାସ୍କର ଦେବତାର ଆଗେ ।
ମୁନିବ୍ରତ ବୋଲାଇ ଯେକଇ ସତ୍ୟଯୁଗେ ।।
ସୁବଳୟା ଗିରି ନାମେ ଲଂକାରେଣ ତ୍ରେତୟା ଯୁଗେଣ ।
ରୁଦ୍ରପ୍ରଭା ବୋଲି କରି ହୋଇଲା ଯେକଇ ରାବଣ ।।
ସହସ୍ରେକ ଶିର ତାର ବିରଞ୍ଚି ବରେଣ ।
ସତ୍ୟଯୁଗେଣ ସେହୁ ରାଜ୍ୟ କରୁଥିଲେ ସୁଖେଣ ।।
ସେହୁ ରାଜ୍ୟ ସତ୍ୟଯୁଗେଣ କରୁଥିଲା ।
ତ୍ରେତୟା ଯୁଗରୁ ସେ ସମୟେକ ଭୋଗ କଲା ।।
କାମେ ହରି ନେଲା ସେ ଜନେକ ଝିଅ ସୀତା ।
ବିଷମ କୃତ୍ୟ ସେ ରାମର ଅଟଇ ବନିତା ।।
ଅସ୍କନ୍ଦ ବନରେ ସେ ରହିଲେ ଶ୍ରୀରାମ ।
ହରିବଳ ସାଖା ଘେନି ଲଂକାକୁ କଲେକ ଗମନ ।।
ସମୁଦ୍ରେ ବନ୍ଧ ବାନ୍ଧି ଗଲେ ସେ ଲଙ୍କାକୁ ।
ପର୍ବତ ବହି ବାନରେ ଆଣିଲେ ଯେକ ଠାବକୁ ।।
ଅପାର କନ୍ଦର ଆଣି ରୁଣ୍ଡ କଲେ ।
ରଘୁନନ୍ଦନ ନୀଳସୁନ୍ଦର ନୀଳଗିରି ଦୁଇ ପର୍ବତ ବାଛିଲେ ।
ବଇକୁଣ୍ଠକୁ ସମାନ ଯେ ଦୁଇ ପର୍ବତ ହୋଇଲେ ।
ଶରଧା କରି ବେନି ପର୍ବତ ସେ ରଖିଲେ ।।

× ×

ନୀଳଗିରି ପର୍ବତ ମୋହୋରି ସଙ୍ଗେ ଥିଲା ।
ତାହାର ଉପରକୁ ହନୁମନ୍ତ ଡେଇଁଗଲା ।।
ହନୁମନ୍ତର ପାଦଭ୍ୟାରା ସେ ସହି ନୁଆରିଲା ।
ପାତାଳେ ପଶିଣ ସେ ଗୋପ୍ୟାନ ହୋଇଲା ।।

× ×

ସତ୍ୟଯୁଗେ ଯେ ସୁନ୍ଦର ପର୍ବତ ଲକ୍ଷେକ ଯୋଜନ ।
ଆଦିନ୍ୟର ଭୟେ ବପୁ ହୋୟେ କ୍ଷୀନ ।।

× ×

ଯେହାର ଉପରେ ଲୋହାର କପୋରା ସେ ଘୋରିଲା ଭୀମ ବୀରା ।।
ଘୋରନ୍ତେ ଛିଡ଼ିଲେ ସେ ପର୍ବତ ଆୟତନ ।

(ସାରଳା ମହାଭାରତ, ମୂଷଲୀ ୮୯-୯୦)

ଶ୍ରୀକ୍ଷେତ୍ରର ନୀଳଗିରିର ଲୋପ ସମ୍ପର୍କରେ ଏହା ହେଲା ସାରଳାଦାସଙ୍କ ଉପାଖ୍ୟାନ । ସେ ନିଜେ ବିଲଙ୍କା ରାମାୟଣର ପ୍ରଣେତା ହୋଇଥିଲେ ଏଠାରେ ସହସ୍ରଶିର ରାବଣ ଉପାଖ୍ୟାନଟିକୁ ଭିନ୍ନ ଭାବରେ ଲେଖି ନ ଥାନ୍ତେ । ବିଲଙ୍କା ରାମାୟଣ ଅନୁସାରେ ସହସ୍ରଶିର ରାବଣ ବିଲଙ୍କାର ରାଜା (ଲଙ୍କାର ନୁହେଁ), ସେ ସୀତାଙ୍କୁ ଅପହରଣ କରି ନଥିଲା କି ରାମ ସେତୁବନ୍ଧ ବାନ୍ଧି ତାହାକୁ ବଧ କରି ନଥିଲେ । ସାରଳା ଦାସଙ୍କ ସହସ୍ରଶିର ରାବଣ ବିଲଙ୍କା ରାମାୟଣର ସହସ୍ରଶିର ରାବଣ ଉପାଖ୍ୟାନ ମଧ୍ୟରେ କୌଣସି ସାମଞ୍ଜସ୍ୟ ନାହିଁ । ଅଧିକନ୍ତୁ, ବିଲଙ୍କା ରାମାୟଣରେ ବର୍ଣ୍ଣନା ରହିଛି ଯେ ବିଲଙ୍କା-ଯୁଦ୍ଧରେ ହନୁମାନ ନୀଳଗିରିକୁ ଆଣି ଯୁଦ୍ଧରେ ଶସ୍ତ୍ର ରୂପରେ ବ୍ୟବହାର କରିଥିଲା ଓ ଯୁଦ୍ଧବେଳେ ଅସୁର ହନୁମାନକୁ ନୀଳସୁନ୍ଦରଗିରି ଉପରେ କଚାଡ଼ି ଦେବାରୁ ତାହା ଚୂନା ହୋଇଗଲା ଓ କିଛି ସମୟ ପରେ ହନୁମାନ ଗୋଟିଏ ଅସୁରକୁ ସେହି ନୀଳସୁନ୍ଦର ଗିରି ଉପରେ କଚାଡ଼ି ଦେବାରୁ ତାହା (ପୁନର୍ବାର ?) ଚୂନା ହୋଇଗଲା । ବିଲଙ୍କା ରାମାୟଣରେ ଲେଖାଅଛି—

(କ) ନୀଳଗିରି ପାହାଡ଼କୁ ଯେ ଆଣିଲା ।
ସେ ପ୍ରତାପୀ ଦୈତ୍ୟ ପରେ ଆଣି କଚାଡ଼ିଲା ।। (ପୃ. ୩୨)

(ଖ) ନୀଳସୁନ୍ଦର ପର୍ବତେ କଚାଡ଼ିଲା ନେଇ ।।
ହନୁ ଦେହ ବାଜି ପରବତ ହେଲା ଚୂର୍ଣ୍ଣ । (ପୃ. ୫୦)

(ଗ) ନୀଳସୁନ୍ଦର ପର୍ବତେ କଚାଡ଼ିଲା ନେଇ ।
ଗିରିବର ଚୂର୍ଣ୍ଣ ହେଲା ବାଜି ତାର ଦେହି । (ପୃ. ୭୦)

ମହାଭାରତର ଉପାଖ୍ୟାନଠାରୁ ବିଲଙ୍କା ରାମାୟଣର ବୈସାଦୃଶ୍ୟରୁ ସ୍ପଷ୍ଟ ହୁଏ ଯେ ଦୁଇ ଉପାଖ୍ୟାନର ରଚୟିତା ଜଣେ ଲୋକ ହୋଇ ନ ପାରନ୍ତି । ପୁଣି ବିଚାର କରିବାକୁ ଗଲେ ଚଣ୍ଡୀପୁରାଣରେ କବି ମହିଷାସୁରକୁ ମାରିବା ପାଇଁ ତାହାକୁ ହତବୀର୍ଯ୍ୟ କରି ଦୁର୍ବଳ କରାଇବା ଲକ୍ଷ୍ୟରେ ଯେଉଁ ଉପାୟର ବ୍ୟବସ୍ଥା କରିଛନ୍ତି (ସେ ଦେବୀଙ୍କୁ ଉଲଗ୍ନ କରାଇ ଅସୁରକୁ ଭଗମାର୍ଗ ଦେଖାଇଛନ୍ତି, ଯାହାର କଳ୍ପନା ଓଡ଼ିଆରେ ଅଭିନବ, ସଂସ୍କୃତ ପୌରାଣିକ ବର୍ଣ୍ଣନାରେ ନାହିଁ) ବିଲଙ୍କା ରାମାୟଣରେ ସହସ୍ରଶିର ରାବଣକୁ ହତବୀର୍ଯ୍ୟ କରି ମାରିବା ପାଇଁ ଠିକ୍ ସେହି ଉପାୟ ଅବଲମ୍ବନ କରାଯାଇଛି (ଏଠାରେ ସୀତାଙ୍କ ଭଗମାର୍ଗକୁ ଦେଖାଇ ସହସ୍ରଶିରକୁ ହତବୀର୍ଯ୍ୟ କରାଯାଇଛି) । ଗୋଟିଏ କାବ୍ୟ କୌଶଳକୁ ଦୁଇଟି ଗ୍ରନ୍ଥରେ ଦୁଇଟି ପୃଥକ୍ ଘଟନାର ବର୍ଣ୍ଣନା ମଧ୍ୟରେ ପୁନରୁକ୍ତ କରିବା କୌଣସି ପ୍ରତିଭାବାନ୍ କାବ୍ୟଶିଳ୍ପୀର ଲକ୍ଷଣ ନୁହେଁ । ସାରଳାଦାସ ତାହା କରି ନ ପାରନ୍ତି ।

ବିଲଙ୍କା ରାମାୟଣର ଆରମ୍ଭରୁ ହିଁ ଜଣାପଡ଼େ ଯେ ତାହା ବଳରାମ ଦାସଙ୍କ ରାମାୟଣର ପରିପୂରକ ଭାବରେ ଲେଖାଯାଇଛି । ଏହାର ଚରିତର ଆରମ୍ଭଟି ହେଲା—

ଏଥୁ ଅନ୍ତେ ପାର୍ବତୀ ଯେ ଯୋଡ଼ି ବେନି କର ।
ଶୂଳପାଣି ପାଦତଳେ କଲେ ନମସ୍କାର ।।
ଆହେ ବିଶ୍ୱନାଥ ମୋତେ ହୋଇ ସୁପ୍ରସନ୍ନ ।
କହିବା ହୁଅନ୍ତୁ ଏ ବିଲଙ୍କା ରାମାୟଣ ।। (ପୃ. ୩)

ଚରିତ ପରିବେଷଣର ଏତାଦୃଶ ଆରମ୍ଭରୁ ଜଣାଯାଉଛି ଯେ ଶିବ ପାର୍ବତୀଙ୍କୁ ରାମାୟଣ କହୁଥିବା କଥା ପାଠକମାନେ ଜାଣନ୍ତି ବୋଲି କବି ଧରି ନେଇଛନ୍ତି । ତେଣୁ ସେ ଚରିତର ଆରମ୍ଭ 'ଏଥୁ ଅନ୍ତେ'ରେ କରୁଛନ୍ତି ଓ ପାର୍ବତୀ ପୂର୍ବରୁ ଶିବଙ୍କଠାରୁ ଅନେକ କଥା ଶୁଣି ସାରିଥିବା ଭଳି ଭାଷା ବ୍ୟବହୃତ ହୋଇଛି । ବଳରାମ ଦାସଙ୍କ ରାମାୟଣଟି ଶିବ-ପାର୍ବତୀ ସଂବାଦ ଭାବରେ ପରିବେଷିତ ହୋଇଛି । ତେଣୁ ଜଣାଯାଉଛି ବିଲଙ୍କା ରାମାୟଣ ବଳରାମ ଦାସଙ୍କ ଜଗମୋହନ ରାମାୟଣ ଲୋକରେ ସୁପ୍ରଚାରିତ ହେବା ପରେ ରଚିତ ହୋଇଛି । ବଳରାମ ଦାସ ପ୍ରତାପରୁଦ୍ରଙ୍କ ସମୟର କବି ଅଥଚ ସାରଳାଦାସ ପ୍ରତାପରୁଦ୍ରଙ୍କ ପିତାମହ କପିଳେନ୍ଦ୍ରଙ୍କ ସମୟର । ବଳରାମ ଦାସଙ୍କ ପରବର୍ତ୍ତୀ ସମୟର ରଚନା ହୋଇଥିବାରୁ ବିଲଙ୍କା ରାମାୟଣ ସାରଳାଦାସଙ୍କର ରଚନା ହୋଇନପାରେ ।

ବିଲଙ୍କା ରାମାୟଣର ରଚନା ସାରଳାଦାସଙ୍କଠାରେ ଆରୋପିତ ହେବା ମୂଳରେ ବାସୁଦେବ ଉପାଧ୍ୟାୟ ଥିବା ସମ୍ଭାବନା କଥା ପୂର୍ବରୁ ସୂଚାଇ ଦିଆଯାଇଛି । ଝଙ୍କଡ଼ର ସିଦ୍ଧେଶ୍ୱର ଦାସ ବିଲଙ୍କା ରାମାୟଣ ଲେଖିବା ପରେ ବାସୁଦେବ ତାହାକୁ ପରିବର୍ଦ୍ଧିତ କରାଇ ସିଦ୍ଧେଶ୍ୱରଙ୍କ ରଚନାକୁ ବିଲଙ୍କା ରାମାୟଣ ପୂର୍ବଖଣ୍ଡ ଓ ନିଜର ରଚନାକୁ ଉତ୍ତର ଖଣ୍ଡ ନାମ ଦେଲେ । ବାସୁଦେବ ତାଙ୍କ ରଚନାର ଭଣିତି ସାରଳାଦାସଙ୍କ ନାମରେ କଲେ । ତେଣୁ ହୁଏତ ନିଜେ ବାସୁଦେବ ଅଥବା କେହି ଅନୁଲେଖକ ଉଭୟଖଣ୍ଡକୁ ଉତାରିବା ବେଳେ କେତେକ ସ୍ଥାନରେ ସିଦ୍ଧେଶ୍ୱର ଦାସ ଭଣିତି ଉଠାଇ ସାରଳାଦାସ ଭଣିତି ଯୋଡ଼ିଛନ୍ତି । ତେଣୁ ଅନେକ ତାଳପତ୍ର ପୋଥିରେ ସାରଳାଦାସ ଭଣିତି ନଥାଇ କେବଳ ସିଦ୍ଧେଶ୍ୱର ଦାସ ଭଣିତି ରହିଛି ଓ ତାହା ସଂପୂର୍ଣ୍ଣ ବିଲଙ୍କା ରାମାୟଣ (ପୂର୍ବଖଣ୍ଡ ନୁହେଁ) ଭାବରେ ବ୍ୟକ୍ତ ହୋଇଛି । ସଂସ୍କୃତରେ ଯେତେ ଯାହା ପୁରାଣ ଲେଖା ହେଲା ସବୁଗୁଡ଼ିକର କର୍ତ୍ତୃତ୍ୱ ବ୍ୟାସଦେବଙ୍କଠାରେ ଆରୋପିତ ହେବା ନ୍ୟାୟରେ ଗ୍ରନ୍ଥର ଅଧିକତର ପ୍ରସାରଲୋଭରେ ଓଡ଼ିଆ ବ୍ୟାସଦେବଙ୍କ ନାମରେ ଗୋଟାକେତେ ମୌଳିକ ଓଡ଼ିଆ ପୁରାଣ ଲେଖା ହୋଇଥିବା କିଛି ବିଚିତ୍ର ନୁହେଁ । ସାରଳାଦାସ ମହାଭାରତର ଅଙ୍ଗ ରୂପେ ଅଳ୍ପ କେତୋଟି 'ହରଣ' ରଚନା କରିଥିଲେ କିନ୍ତୁ ପରବର୍ତ୍ତୀ କାଳରେ ତାହାଙ୍କ ନାମକୁ ବ୍ୟବହାର କରି ମହାଭାରତଠାରୁ ସ୍ୱତନ୍ତ୍ର ହୋଇ ଅନେକ ଗୁଡ଼ିଏ ହରଣ (ଯଥା—ଚନ୍ଦ୍ରାବତୀ ହରଣ) ଚରିତ ଲେଖା ହୋଇ ଗଞ୍ଜାମରେ ଦାସକାଠିଆ ଦଳମାନଙ୍କ ଦ୍ୱାରା ଖୁବ୍ ପ୍ରଚାରିତ

ହେବା ଦେଖାଯାଉଛି । ଏହା 'ଅବିଦିତ ଗୁଣେଽପି ସତ୍କବି ଭଣିତି କର୍ଣ୍ଣେଷୁ ବମତି ମଧୁଧାରା' ବିଚାରର ପରିଣାମ ।

ଏହି ପ୍ରକାରେ ବିଲଙ୍କା ରାମାୟଣର ରଚୟିତା ସିଦ୍ଧେଶ୍ୱର ଦାସ ଜଣେ ଅର୍ବାଚୀନ ବ୍ୟକ୍ତି, ଯେ ସାରଳାଦାସ ନୁହନ୍ତି କି ବିଚିତ୍ର ରାମାୟଣର ରଚୟିତା ସିଦ୍ଧେଶ୍ୱର ଦାସ ନୁହନ୍ତି । ତାହାଙ୍କୁ ସିଦ୍ଧେଶ୍ୱର ଦାସ (ଦ୍ୱିତୀୟ) ରୂପେ ଚିହ୍ନିତ କରାଯାଇପାରେ । ଏହାଙ୍କ କବିତ୍ୱ ଶକ୍ତି ମାମୁଲି ଧରଣର । କେତେକ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ନାନା ସ୍ଥଳରେ ବାରଂବାର ପୁନରୁକ୍ତ କରିବା ଭିତରେ ତାହାଙ୍କର ବର୍ଣ୍ଣନା ଗଡ଼ି ଚାଲେ । କବିଙ୍କର ଶବ୍ଦ ଭଣ୍ଡାର ଅପ୍ରତୁଳ । 'ପଶିଲା' ସଙ୍ଗେ 'ମାରିଲା', 'ଅଇଲା' ସଙ୍ଗେ 'ଦେଖିଲା' ଏହିପରି କ୍ରିୟାପଦର ପ୍ରାନ୍ତ ଲା ସଙ୍ଗେ ଲାର ମିତ୍ରାକ୍ଷର ହେଉଥିବା ପଦସଂଖ୍ୟା ଗ୍ରନ୍ଥର ଏକ ଦଶମାଂଶ; ସେହିପରି କ୍ରିୟା ଲେ ସଙ୍ଗେ ଲେର ମିତ୍ରାକ୍ଷର ହେଉଥିବା ପଦସଂଖ୍ୟା ଗ୍ରନ୍ଥର ଶତକଡ଼ା ସାଢ଼େ ସାତ ଭାଗ । ଅନୁମିତ ହୁଏ, ସିଦ୍ଧେଶ୍ୱର ଦାସ (ଦ୍ୱିତୀୟ) ବାରାନିଧି ଦାସଙ୍କର 'ରାମାୟଣ ବିଲଙ୍କା କାଣ୍ଡ' ପଢ଼ିବା ପରେ ଏହାକୁ ଲେଖିଛନ୍ତି । କହିବା ଅନାବଶ୍ୟକ ଯେ ବାରାନିଧିଙ୍କ ଭାଷା ବିଲଙ୍କା ରାମାୟଣର ଭାଷା ଅପେକ୍ଷା ପ୍ରାଚୀନତର ।

ବିଲଙ୍କା ରାମାୟଣକୁ ଛାଡ଼ିଲେ ସାରଳା ଦାସଙ୍କ ନାମ ପ୍ରଥମେ ସିଦ୍ଧେଶ୍ୱର ଦାସ ଥିବା ନେଇ କଥିତ କିଂବଦନ୍ତୀର ଆଉ କିଛି ମୂଲ୍ୟ ନାହିଁ । ସିଦ୍ଧେଶ୍ୱର ଦାସ ଭଣିତିକୁ ସାରଳାଦାସ କରାଯିବା ପରବର୍ତ୍ତୀ ସମୟରେ ଉଭୟ ନାମ ଗୋଟିଏ ଗ୍ରନ୍ଥରେ ଥିବା ଦେଖି କୌଣସି ଲୋକ କିଂବଦନ୍ତୀଟିକୁ ସୃଷ୍ଟି କରିଥିବା ସମ୍ଭବପର । ପୁଣି, କିଂବଦନ୍ତୀଟି ହେଉଛି ଜଗତସିଂହପୁର ଜିଲ୍ଲା ଝଙ୍କଡ଼ ଅଞ୍ଚଳର, ଯାହା କଦାପି ସାରଳାଦାସଙ୍କ ବାସସ୍ଥାନ ନୁହେଁ । ସାରଳାଦାସଙ୍କ ବାସସ୍ଥାନ ନିରୂପଣ ପ୍ରସଙ୍ଗରେ ଏହାର ଅକାଟ୍ୟ ପ୍ରମାଣ ଉପସ୍ଥାପିତ ହୋଇସାରିଛି । ଏହି ସମସ୍ତ ବିଚାରରୁ ସାରଳାଦାସଙ୍କ ମୂଳ ନାମ ସିଦ୍ଧେଶ୍ୱର ଥିବା କିଂବଦନ୍ତୀଟି କୌଣସି ଯୁକ୍ତିଯୁକ୍ତ ପ୍ରମାଣ ଉପରେ ପ୍ରତିଷ୍ଠିତ ନୁହେଁ ବୋଲି ନିଷ୍କର୍ଷ କରାଯାଉଛି ।

### ପ୍ରଥମେ ରାମାୟଣ

ସାରଳାଦାସଙ୍କ ଜୀବନୀ ଲେଖକମାନେ ବିଲଙ୍କା ରାମାୟଣର ଅର୍ବାଚୀନତା ବିଷୟ ଆଲୋଚନା ନକରି କହିଆସୁଛନ୍ତି ଯେ ସାରଳାଦାସ ନିଜେ ପ୍ରଥମେ ରାମାୟଣ ଗ୍ରନ୍ଥ ଲେଖାଥିବା କଥା ଜଣାଇଛନ୍ତି ଓ ସେହି ରାମାୟଣଟି ବିଲଙ୍କା ରାମାୟଣ । ଏଥିପାଇଁ ସେମାନେ ଚଣ୍ଡୀପୁରାଣର ପ୍ରସଙ୍ଗ ବିବର୍ଜିତ ନିମ୍ନ ପଦଟିକୁ ଉଦ୍ଧାର କରିଥାନ୍ତି—

ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ ।
ତୃତୀୟେ ଲିଖନ କଲି ଶିରୀ ଭାଗବତ ॥

ସାରଳାଦାସ ମହାଭାରତ ଲେଖିବା ପରେ ଯେ ଚଣ୍ଡୀପୁରାଣ ଲେଖିଥିଲେ, ଏହା ପ୍ରମାଣସିଦ୍ଧ । ମହାଭାରତ ଲେଖିବା ଆରମ୍ଭ କରିବା ବେଳକୁ ସେ ଥିଲେ ଯୁବକ, କେତୋଟି ପର୍ବ ଲେଖିବା ପରେ ଲେଖା ବନ୍ଦ ରଖିଲେ ଓ ବୃଦ୍ଧ ବୟସରେ ସେ ମହାଭାରତର ଶେଷ ପର୍ବଗୁଡ଼ିକୁ ସାରିଲେ । ମହାଭାରତ ଲେଖିସାରି ସେ ଚଣ୍ଡୀପୁରାଣ ଲେଖିଥିଲେ । ସାରଳାଦାସଙ୍କ ଉପରେ ବୟସର ପ୍ରଭାବ ଆଲୋଚନା ପ୍ରସଙ୍ଗରେ ଏହି ବିଷୟକ ପ୍ରମାଣ ଦିଆଯିବ । ଓଡ଼ିଶା ଜଗନ୍ନାଥ କମ୍ପାନୀ ଦ୍ୱାରା ପ୍ରକାଶିତ ଚଣ୍ଡୀପୁରାଣର ପାଠରେ ସାରଳାଦାସ ତାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ନିମ୍ନଲିଖିତ ରୂପରେ ଦେଇଥିବା ଜଣାଯାଏ– ମୁଁ ପୂର୍ବେ ଥିଲି ବ୍ରହ୍ମାଙ୍କ ପୁତ୍ର ମନୁ । ବିଷ୍ଣୁଙ୍କ ଦ୍ୱାରପାଳଦ୍ୱୟଙ୍କୁ ଶାପ ଦେବାରୁ ବିଷ୍ଣୁ ମୋ ଉପରେ ରାଗିଯାଇ 'ତୁ ମନୁଷ୍ୟ ଜନ୍ମ ପାଇବୁ' ବୋଲି ମୋତେ ଶାପ ଦେଲେ । ମୁଁ ବିନୀତ ହୋଇ ଶାପରୁ ମୁକ୍ତି ପାଇବା ପାଇଁ ଉପାୟ ଭିକ୍ଷା କରିବାରୁ ବିଷ୍ଣୁ କହିଲେ 'ତୁ ମନୁଷ୍ୟ ହୋଇ ମୋ ଲୀଳା ବର୍ଣ୍ଣନା କରି ପୁଣି ବୈକୁଣ୍ଠକୁ ଫେରିବୁ ।' ତଦନୁସାରେ ସାରଳାଦାସ ଜନ୍ମ ଗ୍ରହଣ କଲେ–

ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ସେ ଜନ୍ମରେ ବିଷ୍ଣୁଲୀଳା କଲି ପରକାଶ ।।
କାଳେ ସୁପ୍ରସନ୍ନ ମୋତେ ହୋଇଲେ ଅଙ୍ଗିରା
ବିଷ୍ଣୁ ଚରିତ କଥନେ ମତି ମୋର ତ୍ୱରା ।।
ଦ୍ୱିତୀୟ ଜନ୍ମରେ ମହାକାଳୀ ନାମେ କବି ।
ପଙ୍କଜବଦନୀ ସୁପ୍ରସନ୍ନା ବାକ୍ୟଦେବୀ ।।
ତୃତୀୟ ଜନ୍ମରେ ହେଲି ଶ୍ରୀ ସାରଳାଦାସ ।
ଶ୍ରୀ ବିଷ୍ଣୁଲୀଳାକୁ ମୁଖେ କରିଲି ଅଭ୍ୟାସ ।।
ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ ।
ତୃତୀୟେ ଲିଖନ କଲି ଶିରୀଭାଗବତ ।।

ଚଣ୍ଡୀପୁରାଣର ଏହି ପୂର୍ବଜନ୍ମ ବିବରଣ ('ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ, ତୃତୀୟେ ଲିଖନ କଲି ଶିରୀ ଭାଗବତ' ସମେତ) କେତେକ ତାଳପତ୍ର ପୋଥିରେ ଲେଖା ନଥିବା ମୁଁ ଦେଖିଛି । ଏପରି ଜାତିସ୍ମରଣ ରହସ୍ୟ ଓ ତାତ୍ପର୍ଯ୍ୟ ବିଷୟ ଅନ୍ୟତ୍ର ଚର୍ଚ୍ଚା କରିଛି । ସାରଳାଦାସ ମହାଭାରତରେ ମଧ୍ୟ ଜାତିସ୍ମରଣ ବିବରଣ ଦେଇଛନ୍ତି, ମହାଭାରତ ଅନୁସାରେ କବି ମୂଳରେ ଥିଲେ ଶିବଙ୍କ ଆସ୍ଥାନ କୈଳାସର ଦ୍ୱାରପାଳ ନନ୍ଦୀ । ମହାଭାରତତୋକ୍ତ ଜାତିସ୍ମରଣ ବିବରଣ ସହିତ ଚଣ୍ଡୀପୁରାଣର ବିବରଣର ମେଳ ନ ଥିବା ଦେଖି ଜାତିସ୍ମରଣର ନିଗୂଢ଼ ତାତ୍ପର୍ଯ୍ୟ ବୁଝିନଥିବା କୌଣସି ଅନୁଲେଖକ ଚଣ୍ଡୀପୁରାଣରୁ ତାହାକୁ ଉଠାଇ ଦେଇଥିବା ଅନୁମିତ ହୁଏ ।

କୌତୂହଳର ବିଷୟ ଅଷ୍ଟାଦଶ ଶତାବ୍ଦୀର କବି ପୀତାମ୍ବର ଦାସ ତାହାଙ୍କର ନୃସିଂହ ପୁରାଣରେ ସେ ନିଜେ ପୂର୍ବଜନ୍ମରେ ସାରଳାଦାସ ଭାବରେ ଜନ୍ମ ଗ୍ରହଣ କରି ପ୍ରଥମେ ମହାଭାରତ, ଦ୍ୱିତୀୟରେ ଚଣ୍ଡୀପୁରାଣ ଓ ଶେଷରେ ବିଲଙ୍କା ରାମାୟଣ ରଚନା କରିଥିବା ଲେଖିଥିବା କଥା ନୃସିଂହ ପୁରାଣର ମୁଦ୍ରିତ ପାଠରୁ ଜଣାଯାଏ । ଏହି ମୁଦ୍ରିତ ପାଠ ଅନୁସାରେ ପୀତାମ୍ବର ଦାସ ମୂଳରେ ଥିଲେ ବ୍ରହ୍ମାଙ୍କ ପୁତ୍ର ମହର୍ଷି ମନୁ । ମନୁ ବିଷ୍ଣୁଙ୍କ ଦ୍ୱାରପାଳଦ୍ୱୟଙ୍କୁ ଶାପ ଦେବାରୁ ବିଷ୍ଣୁ ରାଗିଯାଇ ମନୁ ମନୁଷ୍ୟ ଜନ୍ମ ପାଇବେ ବୋଲି ଶାପ ଦେଲେ । ଶାପଗ୍ରସ୍ତ ମନୁ ପ୍ରଥମ ଜନ୍ମରେ କାଳିଦାସ, ଦ୍ୱିତୀୟ ଜନ୍ମରେ ଜଗନ୍ନାଥ ଦାସ, ତୃତୀୟ ଜନ୍ମରେ ବଳରାମ ଦାସ, ଚତୁର୍ଥ ଜନ୍ମରେ ନାରାୟଣ ଦାସ ହୋଇ ପଞ୍ଚମ ଜନ୍ମରେ ସାରଳାଦାସ ହେଲେ (ପୀତାମ୍ବର ଦାସଙ୍କ ପୂର୍ବଜନ୍ମ ବିବରଣର ତାତ୍ପର୍ଯ୍ୟର ଆଲୋଚନା ମୋର 'ପୀତାମ୍ବର ଦାସ ଅଧ୍ୟୟନ', ୨୦୦୦, ପୁସ୍ତକରେ ସବିଶେଷ ରହିଛି)–

ତହିଁ ଉତ୍ତରେ ପଞ୍ଚମ ଜନ୍ମେ ଯାଇ ପୁଣ ।
ଶ୍ରୀ ସାରଳାଦାସ କବି ହେଲି ଜଗତେଣ ।।
ଶ୍ରୀ ମହାଭାରତ ଯାକ ବାନ୍ଧିଲି ପ୍ରାକୃତେ ।
ଅଠର ଖଣ୍ଡ ହୋଇଣ ରହିଲା ଜଗତେ ।।
ତହିଁ ଉତ୍ତାରୁ ବାନ୍ଧିଲି ଚଣ୍ଡିକା ପୁରାଣ ।
ତଦନ୍ତେ କଲି ବିଲଙ୍କା ନାମେ ରାମାୟଣ ।।

(ନୃସିଂହ ପୁରାଣ, ୨ୟ ରତ୍ନାକର, ପୃ. ୪୩)

ମୁଦ୍ରିତ ନୃସିଂହ ପୁରାଣର ଏହି ପାଠ ତାଳପତ୍ର ପୋଥିରେ ନାହିଁ । ତାଳପତ୍ର ପୋଥିରେ ଉଦ୍ଧୃତିର ଶେଷ ପାଦ ''ତଦନ୍ତେ କଲି ବିଲଙ୍କା ନାମେ ରାମାୟଣ'' ଲେଖା ନାହିଁ, ତାହା ବଦଳେ ଲେଖାଅଛି ''ସାଧୁଙ୍କ କୃପାରୁ ମୁଁ ଅଟଇ ବଡ଼ ଜଣ'' । ଗୋପୀନାଥ ନନ୍ଦେ ପୋଥିପାଠର ଉଦ୍ଧୃତି ତାହାଙ୍କ ପ୍ରଣୀତ 'ଶ୍ରୀ ଭାରତ ଦର୍ପଣ'ର ପୃ. ୩୦୧ରେ ଦେଇଛନ୍ତି । ବିଲଙ୍କା ରାମାୟଣ ସାରଳାଦାସଙ୍କର ରଚନା ବୋଲି ବିଶ୍ୱାସ ସୃଷ୍ଟି ହେବା ପରେ କୌଣସି ଅନୁଲେଖକ ଲୋକବିଶ୍ୱାସ ଅନୁରୂପେ ଏହାକୁ ବଦଳାଇ ଦେଇଥିବା ସମ୍ଭବ । ତେଣୁ, ସାରଳାଦାସ ବିଲଙ୍କା ରାମାୟଣକୁ ଲେଖିଥିବା ନେଇ ମୁଦ୍ରିତ ନୃସିଂହ ପୁରାଣର ପାଠ ଗ୍ରହଣଯୋଗ୍ୟ ନୁହେଁ ।

ଚଣ୍ଡୀପୁରାଣର ''ପ୍ରଥମେ ଶ୍ରୀ ରାମାୟଣ...'' ପଦର ଅନ୍ୱୟଂକରି କବିଙ୍କ ଜୀବନୀ ଲେଖକମାନେ ସାରଳାଦାସ ସ୍ୱୟଂ ପ୍ରଥମେ ରାମାୟଣ, ତାହାପରେ ମହାଭାରତ ଓ ଶେଷରେ ଭାଗବତ (ଚଣ୍ଡୀପୁରାଣ) ଲେଖିଥିଲେ ବୋଲି ମତ ଦେଇଛନ୍ତି । କିନ୍ତୁ ଏପରି ଅର୍ଥ ଉଦ୍ଧୃତିରୁ ସ୍ପଷ୍ଟତଃ ବାହାରୁନାହିଁ । ଏଥିରେ ବ୍ୟବହୃତ ପ୍ରଥମେ, ଦ୍ୱିତୀୟେ ଓ ତୃତୀୟେ

ପଦଗୁଡ଼ିକ ଅବ୍ୟବହିତ ପୂର୍ବେ ବର୍ଣ୍ଣିତ ପ୍ରଥମ ଜନ୍ମ, ଦ୍ୱିତୀୟ ଜନ୍ମ ଓ ତୃତୀୟ ଜନ୍ମ ସହିତ ସଂପୃକ୍ତ ବୋଲି ଅର୍ଥ କରାଯାଇପାରେ । ଏକା ସାରଳା ଦାସ ତିନୋଟିଯାକ ଗ୍ରନ୍ଥ ରଚନା କରିବା କଥା ହେଲେ 'ପ୍ରଥମେ' ଆଦି ଶବ୍ଦ ପ୍ରୟୋଗ କରି ଅସମର୍ଥତା ନାମକ ଦୋଷକୁ ବରଣ କରାଯାଆନ୍ତା ନାହିଁ ଓ 'ଲିଖନ କଲି' ନ ଲେଖି 'ଲିଖନ କରୁଛି' ବୋଲି ଲେଖିବା ଯୁକ୍ତିଯୁକ୍ତ ହୁଅନ୍ତା । ଭାରତୀୟ ସାହିତ୍ୟିକ ପରଂପରାରେ କବିଙ୍କ ବେଳକୁ ପ୍ରଧାନ ଗ୍ରନ୍ଥ ତ୍ରୟ ହେଲେ ରାମାୟଣ, ମହାଭାରତ ଓ ଭାଗବତ । ପରଂପରା ଅନୁଯାୟୀ ପ୍ରଥମେ ରାମାୟଣ, ତାହାପରେ ମହାଭାରତ ଓ ଶେଷରେ ଭାଗବତ ରଚିତ ହୋଇଥିଲା । ତେଣୁ, ଗ୍ରନ୍ଥତ୍ରୟର ସୁବିଦିତ ସୃଷ୍ଟିକାଳ ଅନୁସାରେ କବି ଗ୍ରନ୍ଥଗୁଡ଼ିକର ନାମ ଦେଇ କହିଛନ୍ତି ଯେ ମୁଁ ସେ ସବୁ ଲେଖିଛି; ଏପରି ଅର୍ଥ ମଧ୍ୟ କରାଯାଇପାରେ । ଏପରି ଲେଖିଲାବେଳେ ସାରଳାଦାସ ଏ ଦେଶର ସୃଷ୍ଟିଶୀଳ କବିତ୍ୱ ପରଂପରା ସହିତ ଆପଣାକୁ ସାମିଲ୍ କରିଥାଇ ପାରନ୍ତି । କିନ୍ତୁ ପ୍ରଶ୍ନ କରାଯାଇପାରେ, ରାମାୟଣ ବାଲ୍ମୀକି କୃତ, ମହାଭାରତ ବ୍ୟାସକୃତ ବୋଲି ତ ସେ ଅବଶ୍ୟ ଜାଣିଥିଲେ, ନିଜକୁ ବାଲ୍ମୀକି ଓ ବ୍ୟାସ ସହିତ ଚିହ୍ନଟି ନ କରି କାଳିଦାସ ଓ କୌଣସି ମହାକାଳ (ବା ସେହିପରି ଆଉ କିଛି) ସହିତ ଚିହ୍ନଟ କଲେ କାହିଁକି ? ଏହି ପ୍ରଶ୍ନଟିର ବିଶଦ ବିଚାର ପୂର୍ବରୁ କରିଛି ଓ ନିର୍ଣ୍ଣୟ କରିଛି ଯେ ମହାଭାରତର କେତେକ ତାଳପତ୍ର ପୋଥିରେ ଲେଖାଥିବା ପୂର୍ବଜନ୍ମ ବିବରଣ ଅଂଶ ପ୍ରକ୍ଷିପ୍ତ ମାତ୍ର (ଜାତିସ୍ମରଣ ପ୍ରବନ୍ଧ ଦ୍ରଷ୍ଟବ୍ୟ) । 'ପ୍ରଥମେ ରାମାୟଣ' ପଦଟି କବିଙ୍କର ପୂର୍ବଜନ୍ମ ବିବରଣ ସହିତ ଯୋଡ଼ା ହୋଇଥିବାରୁ କୁହାଯାଇପାରେ ଯେ ସାରଳାଦାସ ମହାଭାରତ ଲେଖିବା ପୂର୍ବରୁ କିଛି ଲେଖିଥିବା ପ୍ରମାଣ ନିର୍ଭରଯୋଗ୍ୟ ଅବସ୍ଥାରେ ନାହିଁ ।

ସାରଳାଦାସଙ୍କ ପୂର୍ବ ନାମ ସିଦ୍ଧେଶ୍ୱର ଥିବା କିମ୍ୱା ସେ ମହାଭାରତ ଲେଖିବା ପୂର୍ବରୁ ରାମାୟଣ ଲେଖିଥିବା କଥା ଅନ୍ୟଥା ସିଦ୍ଧ ହେଉନଥିଲେ ହେଁ ସିଦ୍ଧେଶ୍ୱର ଦାସ ଭଣିତି ଯୁକ୍ତ ବିଚିତ୍ର ରାମାୟଣର ରଚୟିତା ସାରଳାଦାସ ହିଁ ହୋଇପାରନ୍ତି ବୋଲି ଅନୁମାନ କରିବା ଲାଗି ପର୍ଯ୍ୟାପ୍ତ କାରଣ ରହିଛି ।

## ଗ୍ରନ୍ଥାରମ୍ଭର ସାଦୃଶ୍ୟ

ସାରଳାଦାସଙ୍କର ମହାଭାରତ ଓ ଚଣ୍ଡୀପୁରାଣ ପରି ସିଦ୍ଧେଶ୍ୱର ଦାସଙ୍କର ବିଚିତ୍ର ରାମାୟଣ ମଧ୍ୟ ଗଣେଶଙ୍କ ସ୍ତୁତିରେ ଆରମ୍ଭ ହୋଇଛି । ମହାଭାରତ ଆରମ୍ଭର ଗଣେଶଙ୍କ ସ୍ତୁତି ଓ ବିଚିତ୍ର ରାମାୟଣ ଆରମ୍ଭର ଗଣେଶ ସ୍ତୁତି ମଧ୍ୟରେ ଆଶ୍ଚର୍ଯ୍ୟଜନକ ମେଳ ରହିଛି । ବିଚିତ୍ର ରାମାୟଣର ଏକ ତାଳପତ୍ର ପୋଥି (ମୋ ଦ୍ୱାରା ସଂପାଦିତ ବିଚିତ୍ର ରାମାୟଣର 'କ' ପୋଥି) ଆରମ୍ଭ ହୋଇଛି ଏହିପରି–

ଜୟ ତୁ ମଙ୍ଗଳ ଅଶେଷ ବିଘ୍ନରାଜ ।
ଯାହାର ପ୍ରସନ୍ନେ ସକଳ କାର୍ଯ୍ୟ ସିଦ୍ଧ ।।

ଜୟ ତୁ ବିଘ୍ନରାଜ ସର୍ବ ବିଘ୍ନ ବିନାଶନ ।
ଜୟ ତୁ ବିଘ୍ନରାଜ ଶାପ ବିମୋଚନ ।।
ମଙ୍ଗଳ ଯୋଗେ(ଶ୍ୱର)ତୁ ପରମ ଆନନ୍ଦ ।
ଜୟତୁ ବିଘ୍ନରାଜ ଅଗ୍ରଜ ଅସ୍କନ୍ଦ ।।
ଜୟ ତୁ ଗଜାନନ ବ୍ରହ୍ମସିନ୍ଦୂରେ ମୁଖମଣ୍ଡି ।
ଯମଦଣ୍ଡ ବିନାଶନ ସର୍ବ ଅପରାଧ ଖଣ୍ଡି ।।
ଜୟ ତୁ ଜୟତୁ ଦେବ ଶଶାଙ୍କ ଶିଖର ।
ଜୟ ତୁ ପ୍ରସନ୍ନ ସିଦ୍ଧ ଲମ୍ବୋଦର ।।
ଜୟ ତୁ ଜୟତୁ ଦେବ ଶରଣ ରକ୍ଷନ୍ତା ।
ଜୟ ତୁ ଜୟତୁ ଦେବ ପ୍ରତକ୍ଷେ ମତିଦେନ୍ତା ।।

ସାରଳାଦାସଙ୍କ ମହାଭାରତର ଆଦିପର୍ବ ଆରମ୍ଭର ଗଣେଶ ସ୍ତୁତିଟି ଓଡ଼ିଶା ମ୍ୟୁଜିଅମ୍‌ରେ ସଂରକ୍ଷିତ ପୁଇଁଚା ଆଢ଼େଣି ପୋଥିପାଠ ଅନୁସାରେ ଏହିପରି–

ଜୟ ତୁ ଦଧିମଙ୍ଗଳ ଜୟ ବିଘ୍ନରାଜ ।
ଯାହାର ପ୍ରସନ୍ନେ ସକଳ ହୋଏ କାର୍ଯ୍ୟ ।।
ମଙ୍ଗଳ ବିଘ୍ନନାଶନ ଜୟତୁ ଗଜାନନ ।
ମଙ୍ଗଳ ଯୋଗେଶ୍ୱର ପାର୍ବତୀ ନନ୍ଦନ ।।
ମଙ୍ଗଳ ଶଙ୍ଖ ଚକ୍ର ସରୋଜ ଦଧିମସ୍ତ ।
ମଙ୍ଗଳ ବରଦାତା ସର୍ବଜ୍ଞ ଯାର ଦନ୍ତ ।।
ମହା ବ୍ରହ୍ମ ଲୋଚନ ସିନ୍ଦୂରେ ମୁଖମଣ୍ଡି ।
ତୋତେ ସୁମରିଲେ ଅଶେଷ ପାପଖଣ୍ଡି ।
ଜୟ ଜୟ ଦେବ ଚନ୍ଦ୍ର ଯେ ଶେଖର ।
ଜୟ ତୁ ଜୟ ଦେବ ଲମ୍ବୋଦର ।।
ଜୟ ତୁ ଜୟ ଦେବ ସୁଭଗ ରଖନ୍ତା ।
ଜୟ ତୁ ଜୟ ଦେବ ପରମ ଗତି ଦ୍ୟନ୍ତା ।।

ପଦଗୁଡ଼ିକ ପରସ୍ପରର ଏତେ ନିକଟ ଯେ ଗୋଟିକର ସାହାଯ୍ୟରେ ଅପରସ୍ତୁତିର ପାଠର ଲେଖନକାରକୃତ ଭ୍ରମ ସଂଶୋଧନ କରିବା ସମ୍ଭବପର । ଗୋଟିଏ ପ୍ରାଚୀନ ଦାଣ୍ଡିରଚନାର ଦୁଇ ଦୂରବର୍ତ୍ତୀ ଅଞ୍ଚଳର ସଂଗୃହୀତ ତାଳପତ୍ର ପୋଥିର ପାଠ ମଧ୍ୟରେ ଯେତେଦୂର ପାଠଗତ ଅନ୍ତର ରହିଥାଏ, ଉଲ୍ଲିଖିତ ଦୁଇ ଗଣେଶ ସ୍ତୁତି ମଧ୍ୟର ଅନ୍ତର ତାହାଠାରୁ ଅଧିକ ନୁହେଁ । ଏହା କିପରି ସମ୍ଭବ ହୋଇ ପାରିଲା ? ଏହାର ସର୍ବମୋଟ ପାଞ୍ଚ ଗୋଟି ସମ୍ଭାବନା ଥାଇପାରେ–

୧. କୌଣସି ଲେଖନକାର ବିଚିତ୍ର ରାମାୟଣର ଆଦ୍ୟ ବନ୍ଦନାଟିକୁ ମହାଭାରତରରୁ ଉତାରିଛି ।

୨. କୌଣସି ଲେଖନକାର ମହାଭାରତର ଆଦ୍ୟ ବନ୍ଦନାଟିକୁ ବିଚିତ୍ର ରାମାୟଣରୁ ଉତାରିଛି ।

୩. ସିଦ୍ଧେଶ୍ୱର ଦାସ ଆଦ୍ୟ ବନ୍ଦନାଟିକୁ ସାରଳାଦାସଙ୍କ ମହାଭାରତରୁ ଚୋରି କରିଛନ୍ତି ।

୪. ସାରଳାଦାସ ଆଦ୍ୟ ବନ୍ଦନାଟିକୁ ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣରୁ ଚୋରି କରିଛନ୍ତି ।

୫. ସିଦ୍ଧେଶ୍ୱର ଦାସ ହିଁ ପରେ ସାରଳାଦାସ ହୋଇ ସ୍ୱରଚିତ ବନ୍ଦନାଟିକୁ ମହାଭାରତ ଆଦ୍ୟରେ ସ୍ଥାନ ଦେଇଛନ୍ତି ।

ପ୍ରତ୍ୟେକ ସମ୍ଭାବନାର ବିଚାର କରାଯାଇପାରେ । ମୁଁ ବିଚିତ୍ର ରାମାୟଣର ତାଳପତ୍ର ପୋଥି ଛତ୍ରପୁର (ଗଞ୍ଜାମ)ରୁ ପାଇବା ପରେ ଅଧ୍ୟାପକ ଶ୍ରୀ ରଘୁନାଥ ପାଢ଼ୀ ଶର୍ମାଙ୍କ ପ୍ରଯତ୍ନରେ ଶ୍ରୀକାକୁଲମ୍ (ଆନ୍ଧ୍ର ପ୍ରଦେଶ) ଜିଲାର ଟେକିଲିରୁ ବିଚିତ୍ର ରାମାୟଣର ଅନ୍ୟ ଏକ ତାଳପତ୍ର ପୋଥି ମିଳିଲା, ଯାହା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ତାଳପତ୍ର ଗ୍ରନ୍ଥାଗାରରେ ରହିଛି । ଏହା ମୁଁ ସଂପାଦନା କରିଥିବା ବିଚିତ୍ର ରାମାୟଣର 'ଖ' ପୋଥି । ଏହି ପୋଥିର ଆରମ୍ଭଟି ଏହିପରି—

ଜୟ ତୁ ପ୍ରସନ୍ନ ମଙ୍ଗଳ ବିଘ୍ନରାଜ ।
ଯାହାର ପ୍ରସନ୍ନେ ସକଳ ସିଧ୍ୟ କାର୍ଯ୍ୟ ।।
ମଙ୍ଗଳ ବିଘ୍ନରାଜ ବିଘ୍ନ ବିନାଶନ ।
ଭଗତ ଜନଙ୍କୁ ନାଥ ନିତ୍ୟେ ହେ ପ୍ରସନ୍ନ ।।
ମେରୁ ଯେସନେକେ ବିଦିତ ବେନି ଆଖି ।
ଅବହେଳେ ଚାହିଁଲେ କୋଟି ଯେ ବ୍ରହ୍ମାଣ୍ଡ ଦେଖି ।।
ମଙ୍ଗଳ ଯୋଗେଶ୍ୱର ତୁହି ସେ ପରମାନନ୍ଦ ।
ମଙ୍ଗଳ ପୁରୁଷ ଜୟ ତୁ ଆଦିକନ୍ଦ ।
ମଙ୍ଗଳ ସଂପଦ ପ୍ରତକ୍ଷେ ଦଧିମୁଖ ।
ମଙ୍ଗଳ ରଦ୍ଦୁଂ (?) ନାଏକ ସଦଏ ପ୍ରତକ୍ଷ ।।
ତୁଁହି ସେ ଆଦିକନ୍ଦ ସଂସାର ମନରକ୍ଷ ।
ନମସ୍ତେ ବିନାୟକ ସଂସାର ଜନରକ୍ଷ ।।
ମହା ବ୍ରହ୍ମଲୋକେ ସିନ୍ଦୂରେ ମୁଖମଣ୍ଡି ।
ଯମ୍ଦଣ୍ଡ × × × × × × ।।

ଜୟ ତୁ ଜୟ ତୁ ଦେବ ଶାଶାଙ୍ଗ ଶିଖର ।
ଜୟ ତୁ ଜୟ ତୁ ଦେବ ସିଦ୍ଧ ଲମ୍ବୋଦର ।।
ଜୟ ତୁ ଜୟ ତୁ ଦେବ ଶରଣ ରକ୍ଷଣ ।
ଜୟ ତୁ ଜୟ ତୁ ଦେବ × × × ।।

ଟେକିଲି ପୋଥିରେ ଛତ୍ରପୁର ପୋଥିଠାରୁ (ଓ ସାରଳା ମହାଭାରତଠାରୁ ମଧ୍ୟ) କେତୋଟି ପାଦ ଅଧିକ ଅଛି । ଅନୁମେୟ ଯେ ଟେକିଲି ପୋଥିର ପାଠ ମୂଳଠାରୁ ଅଧିକ ଦୂରକୁ ଚାଲିଯାଇଛି । ତଥାପି ମୋଟାମୋଟି ଭାବରେ ଦୁଇ ସ୍ତୁତି ମଧ୍ୟରେ ଶବ୍ଦ ଯୋଜନା ଓ ଅର୍ଥ ତଥା କ୍ରମଗତ ସାଦୃଶ୍ୟ ସୁସ୍ପଷ୍ଟ । ଦୁଇଟି ଭିନ୍ନ ଭିନ୍ନ ସ୍ଥାନରୁ ସଂଗୃହୀତ ଦୁଇଟି ବିଚିତ୍ର ରାମାୟଣ ପୋଥିର ଆଦ୍ୟ ବନ୍ଦନାର ସାମ୍ୟ ଦୃଷ୍ଟେ ଅବଧାରଣୀୟ ଯେ ଆଦ୍ୟସ୍ତୁତିଟିକୁ କୌଣସି ଲେଖନକାର ମହାଭାରତରୁ ଉଠାଇ ଆଣି ସଂଯୋଜିତ କରି ନାହିଁ, ଏହା ମୌଳିକ ରଚନା । ତେଣୁ ଉଲ୍ଲିଖିତ ପ୍ରଥମ ସମ୍ଭାବନା ସତ୍ୟ ନ ହୋଇପାରେ ।

ସାରଳାଦାସଙ୍କ କବିତ୍ୱ ଶକ୍ତି ପ୍ରାପ୍ତି ଆଖ୍ୟାନକୁ ବର୍ଣ୍ଣନା କରୁଥିବା ଦକ୍ଷିଣ ଓଡ଼ିଶାରୁ ପ୍ରାପ୍ତ କେତେକ ମହାଭାରତ ପୋଥିରେ ଆରମ୍ଭର ଗଣେଶ ବନ୍ଦନା ବଦଳେ ରହିଛି ନୃସିଂହ-ବନ୍ଦନା । ଏହାର ଭାଷା ନିଃସନ୍ଦେହ ଭାବରେ ପରବର୍ତ୍ତୀ ସମୟର । ଅନ୍ୟାନ୍ୟ ସବୁ ମହାଭାରତ ଆରମ୍ଭରେ ଗଣେଶ ବନ୍ଦନା ହିଁ ସ୍ଥାନ ପାଇଛି ଓ ତାହାର ରୂପ ଉଣା-ଅଧିକେ ଏକା ପରି । ତୁଳନା ପାଇଁ ଓଡ଼ିଶା ମ୍ୟୁଜିଅମ୍‌ରେ ସଂଚିତ ରଣପୁର ପୋଥିର ଆରମ୍ଭ ପଦଗୁଡ଼ିକୁ ନିମ୍ନରେ ଉଦ୍ଧାର କରୁଛି—

ଜୟ ତୁ ଦଧିମଙ୍ଗଳ ବିଘ୍ନରାଜ ।
ଯାହାର ଦର୍ଶନେ ସିଦ୍ଧ ସର୍ବ କାର୍ଯ୍ୟ ।।
ଜୟ ତୁ ବିଘ୍ନନାନ ମଙ୍ଗଳ ଗଜାନନ ।
ମଙ୍ଗଳ ଶୁଭ ତୁ ପାର୍ବତୀର ନନ୍ଦନ ।।
ମଙ୍ଗଳ ଶଙ୍ଖ ଚକ୍ର ସରୋଜ ଦଧିସାର ।
ମଙ୍ଗଳ ବରଦାଦ୍ର ନାଥ ସର୍ବଜ୍ଞ ପ୍ରତକ୍ଷର ।।
ମହା ବ୍ରହ୍ମଲୋକେ ସୁର ସୁନ୍ଦର ଗଜମୁଖ ମଣ୍ଡି ।
ଯମଦଣ୍ଡ ଅପ(ରାଧ) ସର୍ବ ଦୁଃଖ ଖଣ୍ଡି ।।
ଜୟ ତୁ ଜୟେ ତୁ ଚନ୍ଦ୍ର ଶଙ୍ଖ ଯେ ଶିଖର ।
ଜୟ ତୁ ଜୟ ତୁ ଦେବ ସିଦ୍ଧ ଲମ୍ବୋଦର ।।
ଜୟ ତୁ ଦେବ ସୁରଗଣ ରକ୍ଷନ୍ତା ।
ଜୟ ତୁ ଜୟ ଦେବ ପରମ ଗତି ଦ୍ୟନ୍ତା ।।

ବହୁସଂଖ୍ୟକ ତାଳପତ୍ର ପୋଥିକୁ ବ୍ୟବହାର କରି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସଂପାଦନା କରିଥିବା ସାରଳା ମହାଭାରତର ଆରମ୍ଭ ମଧ୍ୟ ଏହା ସହିତ ପ୍ରାୟ ସମାନ । ପାଠକମାନେ ସହଜରେ ତାହା ପାଇ ପାରିବେ । ତେଣୁ, ଗ୍ରନ୍ଥବିସ୍ତାର ଏଡ଼ିବାକୁ ତାହାର ଉଦ୍ଧୃତି ଏଠାରେ ଦେଉନାହିଁ । ଏଥିରୁ ଜଣାଯାଉଛି ଯେ ବିଚିତ୍ର ରାମାୟଣର ଆରମ୍ଭର ସ୍ତୁତି ପରି ମହାଭାରତ ଆରମ୍ଭର ସ୍ତୁତିଟି ମଧ୍ୟ ମୌଳିକ ଅଟେ; କୌଣସି ଲେଖନକାର ତାହାକୁ ବିଚିତ୍ର ରାମାୟଣରୁ ଉତାରି ଥୋଇବା ସମ୍ଭାବନା ନାହିଁ । ତେଣୁ, ଉଲ୍ଲିଖିତ ସଂଭାବନା ପଞ୍ଚକ ମଧ୍ୟରୁ ଦ୍ୱିତୀୟ ସଂଭାବନାଟି ମଧ୍ୟ ଅସମ୍ଭବ ।

ପୂର୍ବରୁ ନିର୍ଣ୍ଣିତ ହୋଇଛି ଯେ ବିଚିତ୍ର ରାମାୟଣର ଭାଷା ସାରଳା ମହାଭାରତ ଅପେକ୍ଷା ପ୍ରାଚୀନତର ଓ ମହାଭାରତର ଅନେକ ଉପାଖ୍ୟାନ ବିଚିତ୍ର ରାମାୟଣରେ ବର୍ଣ୍ଣିତ ଉପାଖ୍ୟାନର ପରିବର୍ଦ୍ଧିତ ବା ପରିପୁଷ୍ଟ ରୂପ । ଏହା ମହାଭାରତ ଲେଖା ହେବା ପୂର୍ବରୁ ବିଚିତ୍ର ରାମାୟଣ ରଚିତ ହୋଇସାରିଥିବା ସୂଚାଉଛି । ତେଣୁ ବିଚିତ୍ର ରାମାୟଣର କବି ଆରମ୍ଭର ବନ୍ଦନାଟିକୁ ମହାଭାରତରୁ ଆଣିବା ପ୍ରଶ୍ନ ଉଠୁନାହିଁ । ପୁଣି ବିଚାରିବାକୁ ଗଲେ, ସିଦ୍ଧେଶ୍ୱର ଦାସ ରାମାୟଣ ଚରିତଟିକୁ ଯେପରି ଭାବରେ ଯେତେଦୂର ପରିବର୍ତ୍ତିତ କରି ପାରିଛନ୍ତି ତହିଁରୁ ସେ ଜଣେ ଅସାଧାରଣ ମନୋବଳ ସମ୍ପନ୍ନ ବ୍ୟକ୍ତି ବୋଲି ନିରୂପଣ କରାଯାଇପାରେ । ଯେଉଁ ରାମକାହାଣୀ ଗଙ୍ଗାର ପାଣି ପରି ପବିତ୍ର ତାହାକୁ ରୂପାନ୍ତରିତ କରିବା ସାଧାରଣ ମଣିଷର କାମ ହୋଇ ନ ପାରେ । ସେପରି ଦୃଢ଼ ମନୋବଳ ଥିବା ଲୋକ ଅନ୍ୟର ରଚିତ ବନ୍ଦନାକୁ ନିଜ ଗ୍ରନ୍ଥର ଆରମ୍ଭରେ ସ୍ଥାନ ଦେବା ସମ୍ଭବ ନୁହେଁ । ତେଣୁ ତୃତୀୟ ସମ୍ଭାବନାର ପ୍ରଶ୍ନ ମଧ୍ୟ ଉଠୁନାହିଁ ।

ସିଦ୍ଧେଶ୍ୱର ଦାସଙ୍କ ପରି ସାରଳାଦାସ ମଧ୍ୟ ମୌଳିକ ପୁରାଣ ସ୍ରଷ୍ଟା ଓ ଅପୂର୍ବ ଆଖ୍ୟାନର ଉଦ୍‌ଭାବକ । ଅପରକୃତ ରଚାନାକୁ ଆତ୍ମସାତ୍ କରିବା ସିଦ୍ଧେଶ୍ୱର ଦାସଙ୍କ କ୍ଷେତ୍ରରେ ଯେପରି ଅସମ୍ଭବ, ସାରଳାଦାସଙ୍କ କ୍ଷେତ୍ରରେ ତତୋଽଧିକ ଅସମ୍ଭବ । ସାରଳାଦାସ ମହାଭାରତ ଲେଖା ଆରମ୍ଭ କରିବା ବେଳକୁ ନିଶ୍ଚୟ ଯୁବକ କିନ୍ତୁ ଚଣ୍ଡୀପୁରାଣ ଲେଖିବା ବେଳକୁ ପରିଣତ ବୟସ୍କ । ସେ ଚଣ୍ଡୀପୁରାଣର ଆରମ୍ଭରେ ମଧ୍ୟ ଗଣେଶଙ୍କୁ ହିଁ ସ୍ତୁତି କରିଛନ୍ତି ଓ ତାହାର ପଦମାନ ମହାଭାରତର ଆରମ୍ଭ ପଦର ଅନୁରୂପ ଥିବା ବିସ୍ମୟକର । ଓଡ଼ିଶା ଜଗନ୍ନାଥ କମ୍ପାନୀ ଦ୍ୱାରା ପ୍ରକାଶିତ ଚଣ୍ଡୀପୁରାଣର ପ୍ରଥମ ପଦଟି ହେଲା—

ଜୟ ଜୟ ଗଣେଶ୍ୱର ଜୟ ବିଘ୍ନରାଜ ।
ଦର୍ଶନେ ପ୍ରସନ୍ନେ ଯାର ସିଦ୍ଧ ହୁଏ କାର୍ଯ୍ୟ ।।

ଆମ ଘରେ ଥିବା (ବର୍ତ୍ତମାନ ନଷ୍ଟ) ତାଳପତ୍ର ପୋଥିର ପ୍ରଥମ ପଦଟି ହେଲା—

ଜୟ ତୁ ମହାବୁଧିଶ୍ୱର ବିଘ୍ନରାଜ ।
ଦର୍ଶନେ ପ୍ରସନ୍ନ ନାଥ ସିଦ୍ଧ ସକଳ କାର୍ଯ୍ୟ ।।

ଏଥିରେ ମଧ୍ୟ ସଂଶିତ ବିଚିତ୍ର ରାମାୟଣର ଆରମ୍ଭର ଗଣେଶ-ସ୍ତୁତିର ଅନୁରଣନ ସୁସ୍ପଷ୍ଟ । ସମଗ୍ର ମହାଭାରତକୁ ଏକା ଏକା ରଚନା କରିବା ପରେ ମଧ୍ୟ କବି ସେହି ସ୍ତୁତିକୁ ଭୁଲିନାହାନ୍ତି । ଏହା ତେଣୁ ଚୋରି ନୁହେଁ । ଫଳରେ ଚତୁର୍ଥ ସମ୍ଭାବନା ମଧ୍ୟ ଅସମ୍ଭବ । ମହାଭାରତ ଓ ବିଚିତ୍ର ରାମାୟଣର ଆରମ୍ଭ ସ୍ତୁତିର ସାଦୃଶ୍ୟ ପୂର୍ବତଥିତ ପଞ୍ଚମ ସମ୍ଭାବନାଟି ସତ୍ୟ ହେବା ସିଦ୍ଧ କରେ ।

ସ୍ୱପ୍ରଣୀତ ସ୍ତୁତିକୁ ପୁନରୁକ୍ତ କରିବା ଆଦତ୍ ଯେ ସାରଳାଦାସଙ୍କର ଥିଲା ତାହାର ପ୍ରମାଣ ମିଳେ । ଦୃଷ୍ଟାନ୍ତ ରୂପେ ମହାଭାରତର ଭୀଷ୍ମପର୍ବର ଆରମ୍ଭର ଗଣେଶ ସ୍ତୁତି ସହିତ ଚଣ୍ଡୀପୁରାଣର ଆରମ୍ଭର ଗଣେଶ ସ୍ତୁତିକୁ ତୁଳନା କରାଯାଇପାରେ । ଆମ ଘରେ ଥିବା ଚଣ୍ଡୀପୁରାଣ ତାଳପତ୍ର ପୋଥିର ଆରମ୍ଭର କେତେକ ପଦ ହେଲା (ପଦଗୁଡ଼ିକ ମୁଦ୍ରିତ ପୁସ୍ତକରେ ମଧ୍ୟ ରହିଛି)—

ଜୟ ତୁ ମହା ବୁଧିଶ୍ୱର ବିଘ୍ନରାଜ ।
ଦର୍ଶନେ ପ୍ରସନ୍ନ ନାଥ ସିଦ୍ଧ ସକଳ କାର୍ଯ୍ୟ ।
ସର୍ବଜ୍ଞ ପୁରୁଷ ନାଥ ଶ୍ରୀ ସର୍ବମଙ୍ଗଳେ ।
ମୁହିଂ ଭେଟିଲି ତୋତେ ନାଥ ଶ୍ୱେତଗଙ୍ଗା ନଦୀକୂଳେ ।।
ଆଦି ଅବତାରେ ମୁହିଂ ଶୂଦ୍ରେକ ନାମେ ବ୍ରହ୍ମା ।
ଅନନ୍ତ କଳ୍ପବାଞ୍ଛା ଯେବଣ ମହାତମା ।।
ସୁରବର ନାୟକ ଦେବ ନୃତ୍ୟ ରଙ୍ଗେ ଭୋଳା ।
ଯାହାର ପିଅର ତାଣ୍ଡେବ ରସେ ଭୋଳା ।।
ସିତ ପୀତ ବର୍ଣ୍ଣ ଯାହାର ଶିରରେ ଶୀତାଂଶୁ ।
ଦିନକର ତେଜର ଇ ଯାହାର ପରଶୁ ।।
ସ୍ୱାମି କାର୍ତ୍ତିକ ପ୍ରହାର କଲା ବାମ ପାଦ ଘାତେ ।
ଦକ୍ଷିଣ ଦନ୍ତ ଭଗ୍ନ ଗଲା ଅନୁଜ କୋପ ଚିତେ ।।
ସେ ଭଗ୍ନଦନ୍ତ ପଡ଼ନ୍ତେ ପୃଥ୍ୱୀର ଉପରେ ।
ରାସାତଳ ହୋଉଅଛି ପୃଥ୍ୱୀ ଦନ୍ତର ଭାରାରେ ।।

ଏହା ସହିତ ସାରଳା ମହାଭାରତର ଭୀଷ୍ମପର୍ବର ଆରମ୍ଭର ଗଣେଶସ୍ତୁତି ପ୍ରାୟ ମିଶିଯାଉଛି । ଭୀଷ୍ମପର୍ବର ଆରମ୍ଭ ଏହିପରି—

ଜୟ ତୁ ଦଧିମଙ୍ଗଳ ଜୟ ବିଘ୍ନରାଜ ।
ଦ୍ରଶନେ ମୁକତି ଯେ ପ୍ରସନ୍ନେ କରୁ ସିଦ୍ଧ ସର୍ବକାର୍ଯ୍ୟ ।।
ସଂସିଦ୍ଧ ପୁରୁଷ ତୁ ସର୍ବଦା ରସେ ଭୋଳ ।
ମୁହିଂ ତୋତେ ଭେଟିଲି ଶ୍ୱେତଗଙ୍ଗାର କୂଳ ।।

ଆଦି ଅବତାରେ ଶୂଦ୍ରକ ନାମେ ବ୍ରହ୍ମା ।
ଅନେକ କାଳ ବଞ୍ଚାଇଲା ଯେବଣ ମହାତମା ।।
ଭରହରସ ନାୟକ ନୃଥ୍ୟରସେ ଭେଲା ।
ମହାରସେ ରସିକ ନାଥ ତାଣ୍ଡବ ନୃତ୍ୟକଲା ।।
ସିତଂ ପୀତ କୁଂକୁମ ଯାର ଶିରରେ ସିତାଂଶୁ ।
ଦିନକର ତେଜ ହରଇ ଯାହାର ଶ୍ରୀଭୁଜେ ତିଖ ପରଶୁ ।।
ସ୍ୱାମୀ କାର୍ତ୍ତିକ ପ୍ରହାର ଯେ କଲେ ବାମ ପାଦଘାତେ ।
ଦକ୍ଷିଣ ଦନ୍ତ ଭଗ୍ନ ଗଲା ଅନୁଜର କୋପ ଚିତ୍ତେ ।।
ସେ ଭଗ୍ନଦନ୍ତ ପଡ଼ିଲା ଯହୁଁ ପୃଥିବୀ ଉପରେ ।
ରାସାଙ୍ଗତ ହୋଉଅଛି ପୃଥ୍ୱୀ ସେ ଭଗ୍ନଦନ୍ତ ଭରେ ।।

(ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଂପାଦିତ ପାଠ)

ଗ୍ରନ୍ଥ ବିସ୍ତାରକୁ ଏଡ଼ିବା ପାଇଁ ଅଧିକ ପଦ ଉଦ୍ଧାର କରୁ ନାହିଁ । କିନ୍ତୁ, ଦୁଇ ପୃଥକ୍ ଗ୍ରନ୍ଥର ଗଣେଶ ସ୍ତୁତିର ସମସ୍ତ ୩୦ ପଦ ଏହିପରି ଅନୁରୂପ । ସ୍ୱୀକାର କରିବାକୁ ହେବ, ଏହା ସାରଳାଦାସଙ୍କର ଏକ ଚିତ୍ତବୃତ୍ତିଗତ ବିଶେଷତ୍ୱ । ଏହା ସିଦ୍ଧ କରେ ଯେ ସାରଳାଦାସ ମହାଭାରତ ରଚନା କରିବା ପୂର୍ବେ ଥିଲେ ସିଦ୍ଧେଶ୍ୱର ଦାସ, ଯାହା ତାଙ୍କର ମୂଳ ନାମ । ସିଦ୍ଧେଶ୍ୱର ଦାସ ଥାଇ ସେ ବିଚିତ୍ର ରାମାୟଣ ରଚନା କରିଥିଲେ । ପରେ ସାରଳାଦାସ ନାମ ସ୍ୱୀକାର କରି, ଶୂଦ୍ରମୁନି ବୋଲାଇ ମହାଭାରତ ରଚନା କରିଥିଲେ । ସାରଳାଦାସ ନାମ ଗ୍ରହଣ କରିବାର ତାତ୍ପର୍ଯ୍ୟ ସିଦ୍ଧ ସାରୋଳ ଚଣ୍ଡୀ ଓ ଦୈବୀପ୍ରସାଦ ପ୍ରାପ୍ତି ପ୍ରବନ୍ଧ ଦ୍ୱୟରେ ବ୍ୟାଖ୍ୟାତ ହୋଇଛି ।

## ସିଦ୍ଧେଶ୍ୱର ଦାସ ହିଁ ସାରଳାଦାସ

ଏପରି ସିଦ୍ଧାନ୍ତର ସମର୍ଥନରେ ଅନ୍ୟାନ୍ୟ ବହୁତର ପ୍ରମାଣ ମଧ୍ୟ ଉପସ୍ଥାପନ କରାଯାଇପାରେ ।

**୧. ସ୍ଥାନ ଓ ସମୟ :—** ସାରଳାଦାସଙ୍କ ସ୍ଥାନ କୋଣାର୍କର ଅଦୂରବର୍ତ୍ତୀ ବିଲଙ୍କା ରାମାୟଣର ପ୍ରଥମ ତେଲୁଗୁ ଅନୁବାଦକ ଡୋଙ୍କାଡ଼ ଗୋପୀନାଥ ଜଣାଇଛନ୍ତି ଯେ ସିଦ୍ଧେଶ୍ୱର ଦାସ ଉତ୍ତରଦେଶବାସୀ । ପୁରୀ ଅଞ୍ଚଳରେ ଏବେ ବି ଗଞ୍ଜାମ, କୋରାପୁଟ ଆଦି ଜିଲାର ଅଧିବାସୀମାନଙ୍କୁ ଲୋକେ ଦକ୍ଷିଣୀ କହିଥାନ୍ତି । ପୁରୀରେ ଯାତ୍ରୀମାନଙ୍କ ସମ୍ପର୍କରେ ଦକ୍ଷିଣୀ ଶବ୍ଦ ସୁଦୂର ଦାକ୍ଷିଣାତ୍ୟର ଅଧିବାସୀମାନଙ୍କ ପ୍ରତି ପ୍ରଯୁକ୍ତ ନ ହୋଇ ଓଡ଼ିଶାର ଦକ୍ଷିଣାଂଶବାସୀଙ୍କ ପ୍ରତି ପ୍ରଯୁକ୍ତ ହେବା ଆଶ୍ଚର୍ଯ୍ୟକର ମନେ ହୋଇପାରେ । ଅନୁମେୟ ଯେ ଓଡ଼ିଶା ମଧ୍ୟରେ ଏପରି ଦକ୍ଷିଣୀ-ଉତ୍ତରୀ ଭେଦ ଅତୀତରେ ରହିଥିଲା । ମଧ୍ୟ ଯୁଗରେ ତୋଷଳୀ ରାଜ୍ୟର ଏପରି ଦକ୍ଷିଣ-ଉତ୍ତର ଭେଦ ଇତିହାସରେ ମିଳୁଛି ।

ସେତେବେଳେ ଆଧୁନିକ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ତୋଷଳୀ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ତାହା ଦୁଇଟି ରାଜନୀତି ବିଭାଗରେ ବିଭକ୍ତ ହୋଇଥିଲା— ଉତ୍ତର ତୋଷଳୀ ଓ ଦକ୍ଷିଣ ତୋଷଳୀ । ଏଣୁ ଓଡ଼ିଶାରେ ଦକ୍ଷିଣ ଶବ୍ଦ ପ୍ରାୟ ଦକ୍ଷିଣ ଓଡ଼ିଶାକୁ ଓ ଉତ୍ତର ଶବ୍ଦ ପୁରୀ ସମେତ ଉତ୍ତର ଓଡ଼ିଶାକୁ ବୁଝାଉଥିଲା । ଏହି ପ୍ରକାରେ ସିଦ୍ଧେଶ୍ୱର ଦାସଙ୍କ ଉତ୍ତର ଦେଶ ସାରଳାଦାସଙ୍କ ଉଡ୍ର ବା ଉତ୍କଳ ଦେଶ ହୋଇପାରେ । ଉତ୍କଳ ଶବ୍ଦର ଉତ୍ ଉତ୍ତର ଦିଗର ସୂଚକ, ତାହା କଳିଙ୍ଗର ଉତ୍ତର । ଡୋଙ୍କାଡ଼ ଗୋପୀନାଥ କଳିଙ୍ଗ ଦେଶବାସୀ ହେବାରୁ ଉତ୍କଳକୁ ଉତ୍ତରଦେଶ କହିବା ସମୀଚୀନ । ପୂର୍ବେ ବିଚିତ୍ର ରାମାୟଣର ଭାଷାର ରୂପ ଆଲୋଚନା ପ୍ରସଙ୍ଗରେ ସିଦ୍ଧେଶ୍ୱର ଦାସଙ୍କ ସମୟ ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି ନିରୂପଣ କରାଯାଇଛି । ସାରଳାଦାସ ମହାଭାରତ ରଚନା ଆରମ୍ଭ କରିଛନ୍ତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳରେ, ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ । ଏ ଦୃଷ୍ଟିରୁ ଉଭୟଙ୍କ ସମୟର ମେଳ ହେଉଛି ।

**୨. ଜାତି ବୟସ—** ସାରଳାଦାସ ଓ ସିଦ୍ଧେଶ୍ୱର ଦାସ ଉଭୟେ ଶୂଦ୍ର ଥିବା ସେମାନେ ଜଣାଇଛନ୍ତି । ସିଦ୍ଧେଶ୍ୱର ଦାସ ବିଚିତ୍ର ରାମାୟଣ ଲେଖିବା ବେଳକୁ ଯୁବକ (ଦୈବୀପ୍ରସାଦ ପ୍ରସଙ୍ଗ ଆଲୋଚନା ବେଳେ ଏହା ନିରୂପିତ ହୋଇଛି) । ସାରଳାଦାସ ମହାଭାରତ ଲେଖା ଆରମ୍ଭ କରିବା ବେଳକୁ ଯୁବକ ଥିବା ଜଣାଯାଏ (ସାରଳାଦାସଙ୍କ ବୟସର ଛାପ, ନବମ ଅଧ୍ୟାୟ, ପ୍ରବନ୍ଧ ପଠିତବ୍ୟ) । ବିଚିତ୍ର ରାମାୟଣ ଗୋଟିଏ କ୍ଷୁଦ୍ର ରଚନା; ମାତ୍ର ସାଢ଼େ ପାଞ୍ଚ ହଜାର ପଦ ସେଥିରେ ରହିଛି । ଏହାକୁ କବି ଦୁଇ ତିନି ବର୍ଷରେ ସାରିଥିବା ଅନୁମେୟ । ତାହାପରେ ସେ ସାରଳାଦାସ ନାମ ସ୍ୱୀକାର କରି ମହାଭାରତ ଲେଖିଥାଇ ପାରନ୍ତି । ତେଣୁ ଉଭୟଙ୍କର ଜାତି ଓ ବୟସର ମେଳ ମଧ୍ୟ ହେଉଛି । ଉଭୟେ ନିଜକୁ ଶୂଦ୍ର ବୋଲି ଆତ୍ମପରିଚୟ ଦେଲେ ହେଁ ନିର୍ଦ୍ଦିଷ୍ଟ ଭାବେ ସ୍ୱସ୍ୱ କୁଳ ନାମ ଦେଇନାହାନ୍ତି ।

**୩. ଭାଷା ଓ ଶୈଳୀ—** ଉଭୟଙ୍କ ଗ୍ରନ୍ଥ ଦାଣ୍ଡୀ ଶୈଳୀରେ ଲେଖାଯାଇଛି । ଉଭୟଙ୍କ ଭାଷା ଗ୍ରାମୀଣ, ପ୍ରାକୃତ ପ୍ରୟୋଗ ସମୃଦ୍ଧ । ମହାଭାରତ ଓ ଚଣ୍ଡୀପୁରାଣ ରଚନାରେ ଜଣେ ଅଧିକ କୁଶଳୀ ଓ ନିପୁଣ କବିର ସ୍ୱାକ୍ଷର ମିଳେ, କିନ୍ତୁ ତାହା ଅଭ୍ୟାସ ଓ ଅଭିଜ୍ଞତା ଫଳରେ ମଣିଷ ଦକ୍ଷତାର ବୃଦ୍ଧି ହେଲା ପରି ସ୍ୱାଭାବିକ କଥା, କାରଣ ମହାଭାରତ ଓ ଚଣ୍ଡୀପୁରାଣ ପରକାଳୀନ ।

**୪. ଧର୍ମ ବିଶ୍ୱାସ—** ପୂର୍ବରୁ ଦର୍ଶାଇ ଦିଆଯାଇଛି ଯେ ସିଦ୍ଧେଶ୍ୱର ବିଷ୍ଣୁଭକ୍ତ ଥିଲେ ଓ ଧାର୍ମିକ ଗୋଷ୍ଠୀଗତ ସଂକୀର୍ଣ୍ଣତା ତାଙ୍କଠାରେ ନଥିଲା । ଅନ୍ୟତ୍ର 'ସିଦ୍ଧ ସାରୋଳଚଣ୍ଡୀ' ପ୍ରବନ୍ଧରେ ପ୍ରତିପାଦନ କରାଯାଇଛି ଯେ ସାରଳାଦାସ ମଧ୍ୟ ବୈଷ୍ଣବ ଥିଲେ । ସେ ଶାକ୍ତ ଥିଲେ ବୋଲି ଯାହା କୁହାଯାଉଛି ତାହା ସତ୍ୟାଶ୍ରିତ ନୁହେଁ । ଆଉ ମଧ୍ୟ ଦେଖାଇ ଦିଆଯାଇଛି ଯେ ସାରଳାଦାସ ବୈଷ୍ଣବ, ଶୈବ, ଶାକ୍ତ ଆଦି ଧାର୍ମିକ ବିଚାର ମଧ୍ୟରେ

ସମନ୍ୱୟବାଦର ପୋଷକ ଥିଲେ । ସିଦ୍ଧେଶ୍ୱର ଦାସ ଯେପରି ବିଚିତ୍ର ରାମାୟଣ ମଧ୍ୟରେ ବର୍ଣ୍ଣିତ ଚରିତ ମଧ୍ୟରେ ଚରିତ ସହିତ ସଂପର୍କଶୂନ୍ୟ ଭାବରେ ନାନା ସ୍ଥାନରେ ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି କରିଛନ୍ତି ସାରଳାଦାସ ମଧ୍ୟ ଅନୁରୂପ ଭାବରେ ସ୍ତୁତି ଗାଇଛନ୍ତି । ଉଭୟେ ତାନ୍ତ୍ରିକ ପ୍ରକ୍ରିୟା ଉପରେ ଆସ୍ଥା ସ୍ଥାପନ କରୁଥିଲେ । ସେ ରାମାଦିଙ୍କ ଜନ୍ମ ପ୍ରସଙ୍ଗରେ ତାନ୍ତ୍ରିକ ଦେବୀ ଡାକିନୀମାନଙ୍କର କ୍ରିୟାକଳାପର ବିଚିତ୍ର ବିବରଣ ଦେଇଛନ୍ତି । ସାରଳାଦାସ ମଧ୍ୟ ତାନ୍ତ୍ରିକ ପ୍ରକ୍ରିୟାକୁ ବିଶ୍ୱାସ କରୁଥିବା କଥା ମହାଭାରତର ଅନେକ ଉପାଖ୍ୟାନରୁ ଜଣାଯାଏ ।

ଗୋରଖନାଥ ଜଣେ ଐତିହାସିକ ପୁରୁଷ, ସିଦ୍ଧମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ତାହାଙ୍କର ସମୟ ଦଶମ ଶତାବ୍ଦୀ ନିକଟତର । ଅଥଚ, ସାରଳାଦାସ ତାହାଙ୍କୁ ଚିରଞ୍ଜୀବୀ ସିଦ୍ଧ ଅବଧୂତ ଭାବରେ ନାନା ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି । ତାହାଙ୍କର ପୀଠ କଦଳୀବନ ଓ ନକୁଳ ଦକ୍ଷିଣ କୋଶଳ ଭ୍ରମଣ କରିବା ଅବସରରେ ତାହାଙ୍କୁ କଦଳୀବନରେ ଦର୍ଶନ କରିଥିଲେ ବୋଲି ସାରଳାଦାସ ମହଭାରତର ସଭାପର୍ବରେ ଲେଖିଛନ୍ତି । ସିଦ୍ଧେଶ୍ୱର ଦାସଙ୍କ ବର୍ଣ୍ଣନା ଅନୁସାରେ ମଧ୍ୟ ଗୋରଖନାଥ ଚିରଞ୍ଜୀବୀ । ସେ ରାମଚନ୍ଦ୍ରଙ୍କର ଲଙ୍କାରୁ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ହନୁମାନଙ୍କୁ ଜ୍ଞାନ ଶିକ୍ଷା ଦେଇ ନିଜର କଦଳୀବନ ଆସ୍ଥାନକୁ ନେଇଗଲେ ।

**୫. ଚରିତ ପରିବର୍ତ୍ତନ—** ମୂଳ ଆଖ୍ୟାନକୁ ପରିବର୍ତ୍ତିତ କରିବା ବିଷୟରେ ସିଦ୍ଧେଶ୍ୱର ଦାସଙ୍କ ଆଗ୍ରହ ଓ ସାମର୍ଥ୍ୟ କେଡ଼େ ବ୍ୟାପକ ତାହା ପୂର୍ବରୁ ଆଲୋଚିତ ହୋଇଛି । ଆଉ ମଧ୍ୟ ଦେଖାଇ ଦିଆଯାଇଛି ସାରଳାଦାସ ମହାଭାରତରେ ବର୍ଣ୍ଣନା କରିଥିବା ରାମୋପାଖ୍ୟାନ ସଙ୍ଗେ ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣର ସାମ୍ୟ ଅନେକଠାରେ ରହିଛି । ସିଦ୍ଧେଶ୍ୱର ଦାସଙ୍କ ପରି ସାରଳାଦାସ ମଧ୍ୟ ମୂଳ ଚରିତକୁ ପରିବର୍ତ୍ତିତ କରିବା ବିଷୟରେ ସୁଦକ୍ଷ । ସାରଳାଦାସ ବ୍ୟାସକୃତ କାହାଣୀକୁ ସ୍ୱଚ୍ଛନ୍ଦରେ ପରିବର୍ତ୍ତିତ କରିଯାଉଥିବା ସ୍ଥଳେ ସିଦ୍ଧେଶ୍ୱର ଦାସଙ୍କ ପରିବର୍ତ୍ତନଗୁଡ଼ିକୁ ସ୍ୱୀକାର କରିବା ଆଶ୍ଚର୍ଯ୍ୟଜନକ ମନେ ହେବ, ଯଦି ଉଭୟଙ୍କୁ ଏକ ବ୍ୟକ୍ତି ବୋଲି ସ୍ୱୀକାର କରାନଯାଏ । ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ପ୍ରକୃତରେ ଜଣେ ଲୋକର ଦୁଇ ନାମ ହୋଇଥିବାରୁ ହିଁ ବିଚିତ୍ର ରାମାୟଣରେ ଓ ମହାଭାରତରେ ଗୋମାତା କପିଳାଙ୍କ ଶାପ ଫଳରେ ଦଶରଥ ଅପୁତ୍ରିକ ହେବା ଉପାଖ୍ୟାନ, ପରଶୁରାମଙ୍କ ଭୟରେ ଶାନ୍ତା ବିବାହ କରିପାରିନଥିବା ବିଷୟ, ସମଗ୍ର ଅହଲ୍ୟା ଉପାଖ୍ୟାନ, ହନୁମାନ-ବାଳି-ସୁଗ୍ରୀବଙ୍କ ଜନ୍ମ ବୃତ୍ତାନ୍ତ, ମାୟା ମୃଗ ଦୁଇମୁଣ୍ଡିଆ ହୋଇଥିବା ବିଷୟ, ପର୍ଣ୍ଣକୁଟୀ ଆଗରେ ଲକ୍ଷ୍ମଣ ତିନିଟି ଗାର କାଟି ରାମଙ୍କ ଅନ୍ୱେଷଣରେ ଯିବା ଆଦି ବହୁ ପ୍ରସଙ୍ଗ ସମାନ ଭାବରେ ପରିବର୍ତ୍ତିତ ରୂପରେ ବର୍ଣ୍ଣିତ ହେବା ସମ୍ଭବପର ହୋଇଛି ।

**୬. କବିତ୍ୱ ଶକ୍ତି ଲାଭ—** ସାରଳାଦାସଙ୍କ ପରି ସିଦ୍ଧେଶ୍ୱର ଦାସ ମଧ୍ୟ ଚରିତ ବର୍ଣ୍ଣନା କରିବା ଭଳି ସାମର୍ଥ୍ୟ ନିଜର ନାହିଁ, କେବଳ ଦୈବୀକୃପାବଶତଃ ଗ୍ରନ୍ଥ ରଚନା କରି ପାରୁଛନ୍ତି ବୋଲି କହିଛନ୍ତି ଓ ଗ୍ରନ୍ଥରେ ଦୋଷ ଥିଲେ ସୁଧୀଜନମାନେ କ୍ଷମା ଦେବେ ବୋଲି ବିନୟ ପ୍ରକାଶ କରିଛନ୍ତି । ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ଏହି ଯେ ସିଦ୍ଧେଶ୍ୱର ବିଚିତ୍ର ରାମାୟଣରେ ''ବିଷ୍ଣୁନାଥର ପ୍ରସନ୍ନେ କହଇ ସିଦ୍ଧେଶ୍ୱର ଦାସଇ'' ଲେଖିଥିବା ସ୍ଥଳେ ସାରଳାଦାସ ମହାଭାରତରେ ''କୃପାଜଳ ନନ୍ଦିନୀ ଚରଣେ ଶରଣ ନିତ୍ୟେ, ତୁମ୍ଭ ପ୍ରସନ୍ନେ କହିବି ମହାଭାରତ ଗୀତେ'' ଲେଖିଛନ୍ତି । ସାରଳାଦାସ ବୈଷ୍ଣବ ହୋଇ ମଧ୍ୟ ଗ୍ରାମଦେବୀ ସାରୋଳାଙ୍କୁ ବରଦାତ୍ରୀ ରୂପରେ ଓ ବୈଷ୍ଣବୀ ଶକ୍ତି ସରସ୍ୱତୀ ରୂପରେ ପ୍ରକାଶ କରିବାର ତାତ୍ପର୍ଯ୍ୟ 'ସିଦ୍ଧ ସାରୋଳ ଚଣ୍ଡୀ' ପ୍ରବନ୍ଧରେ ଆଲୋଚିତ ହୋଇଛି ।

**୭. ରଚନାର ଆଭିମୁଖ୍ୟ—** ସାରଳା ଦାସ ଓ ସିଦ୍ଧେଶ୍ୱର ଦାସ ଗାଉଁଲି ଅଶିକ୍ଷିତ ସମାଜ ପାଇଁ ଗ୍ରନ୍ଥ ରଚନା କରୁଥିଲେ । ଉଭୟେ ଠାଏଁ ଠାଏଁ 'ସୁଜ୍ଞଜନ'ଙ୍କୁ ସମ୍ବୋଧନ କରି ଚରିତ କହୁଥିଲେ ହେଁ ରଚନା ଶିକ୍ଷିତ ଶିଷ୍ଟ ସମାଜ ପାଇଁ ଲେଖୁ ନଥିଲେ । ଉଭୟଙ୍କର ସାହିତ୍ୟିକ ଆଭିମୁଖ୍ୟ ଏକ ପ୍ରକାରର ବୋଲି ପୂର୍ବରୁ ଦର୍ଶାଇଛି । ଉଭୟେ ପୁରାଣପଣ୍ଡାଙ୍କୁ ଦକ୍ଷିଣା ଦେଇ ପୁରାଣ ଶୁଣିବା ପକ୍ଷରେ କହିଛନ୍ତି । ଲୋକେ ତିଥି-ବାର-ନକ୍ଷତ୍ରକୁ ଖୁବ୍ ମାନୁଥିବା ଯୋଗୁଁ ଉଭୟ କବି ଗ୍ରନ୍ଥ ମଧ୍ୟରେ ପ୍ରତ୍ୟେକ ପ୍ରଧାନ ପ୍ରଧାନ ଘଟଣାର ତିଥି-ବାର-ନକ୍ଷତ୍ରାଦି କପୋଳକଳ୍ପନାରୁ ଯୋଗାଇଛନ୍ତି । ମହାଭାରତରେ ସାରଳାଦାସ ଯେପରି ବ୍ୟାସଦେବଙ୍କ ଦ୍ୱାରା ନିର୍ଣ୍ଣିତ ସମୟକୁ ଯଦୃଚ୍ଛା ପରିବର୍ତ୍ତିତ କରିଛନ୍ତି, ସିଦ୍ଧେଶ୍ୱର ଦାସ ମଧ୍ୟ ବିଚିତ୍ର ରାମାୟଣରେ ସେହିପରି କରିଛନ୍ତି । ଉଦାହରଣ ସ୍ୱରୂପ ଲେଖାଯାଇ ପାରେ, ବିଚିତ୍ର ରାମାୟଣରେ କୁହାଯାଇଛି ଯେ ରାମ ଭାଦ୍ରମାସର ଶୁକ୍ଳ ଏକାଦଶୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ଏପରି ନିର୍ଣ୍ଣୟ ଅନ୍ୟତ୍ର କୁତ୍ରାପି ଦୃଷ୍ଟ ହୁଏ ନାହିଁ । ପଞ୍ଚଦଶ ଶତାବ୍ଦୀର ବହୁ ପୂର୍ବରୁ ରାମଙ୍କ ଜନ୍ମଦିବସ, ବାଲ୍ମୀକି ରାମାୟଣ ତଥା ଅନ୍ୟାନ୍ୟ ଗ୍ରନ୍ଥ ଅନୁସାରେ, ଅବିକଳ୍ପତଃ ଚୈତ୍ର ଶୁକ୍ଳ ନବମୀ (ରାମନବମୀ) ତିଥିରେ ସର୍ବତ୍ର ପାଳିତ ହୋଇ ଆସୁଛି । ରାମଙ୍କ ଜନ୍ମ ଦିବସକୁ ପାର୍ଶ୍ୱ ପରିବର୍ତ୍ତନ ତିଥିକୁ ପରିବର୍ତ୍ତିତ କରାଇବା ଉଦ୍ୟମ କବିଙ୍କର ପରିବର୍ତ୍ତନ-ପ୍ରବଣ ମନୋବୃତ୍ତିର ସୂଚକ ବୋଲି ହିଁ କୁହାଯାଇପାରେ । ଏପରି ମନୋବୃତ୍ତି ସାରଳାଦାସଙ୍କର ଥିଲା ।

**୮. ଗ୍ରନ୍ଥର ନାମକରଣ—** ସିଦ୍ଧେଶ୍ୱର ଦାସଙ୍କ ରଚନାଟିର ନାମ ତାଳପତ୍ର ପୋଥିର ଆରମ୍ଭରେ ଓ ଶେଷରେ 'ବିଚିତ୍ର ରାମାୟଣ' ବୋଲି ଲେଖାଅଛି । ଗ୍ରନ୍ଥ ମଧ୍ୟରେ ନାମଟି କେଉଁଠି ବିଚିତ୍ର ରାମାୟଣ ତ କେଉଁଠି କେବଳ ରାମାୟଣ । ସାରଳାଦାସଙ୍କ ରଚିତ ମହାଭାରତ 'ସାରଳା-ମହାଭାରତ' । ତାହାର ନାମ ବିଚିତ୍ର ମହାଭାରତ ବୋଲି ମଧ୍ୟ ଲେଖା ଅଛି—

ସ୍ୱାମୀ ଅଭୟେ ବାରାନିଧି ପ୍ରତକ୍ଷେ ଦିଅ ମୋତେ ବୁଦ୍ଧି ।
ବିଚିତ୍ର ମହାଭାରଥ ଯେ ଅମୂଲ୍ୟ ବାରାନିଧି ।। (ବିରାଟ ୪୫୪)

ଉଭୟେ ଗ୍ରନ୍ଥର ନାମକରଣରେ ବିଚିତ୍ର ଶବ୍ଦ ଖଞ୍ଜିଥିବା ଯୋଗୁଁ ଉଭୟେ ଜଣେ ବ୍ୟକ୍ତି ହେବା ।

**୯. ଆଦ୍ୟ ବନ୍ଦନା–** ସାରଳାଦାସଙ୍କ ମହାଭାରତର ଆଦ୍ୟବନ୍ଦନା ସଙ୍ଗେ ଚଣ୍ଡୀପୁରାଣର ଆଦ୍ୟବନ୍ଦନାର ଆଶ୍ଚର୍ଯ୍ୟଜନକ ସାଦୃଶ୍ୟ ଦେଖାଇ ଦିଆଯାଇଛି । ଏଥିରୁ ଜଣାପଡୁଛି ରାଜାମାନେ ତାଙ୍କ ଅଭିଲେଖଗୁଡ଼ିକର ଆରମ୍ଭକୁ ସର୍ବତ୍ର ସମାନ ରଖୁଥିବା ପରଂପରାକୁ ଧରି ସାରଳାଦାସ ତାଙ୍କ ଗ୍ରନ୍ଥଗୁଡ଼ିକର ଆରମ୍ଭକୁ ଅଭିନ୍ନ ରୂପ ଦେଇଛନ୍ତି । ମହାଭାରତ ଓ ଚଣ୍ଡୀପୁରାଣର ଆଦ୍ୟ ବନ୍ଦନା ସହିତ ବିଚିତ୍ର ରାମାୟଣର ଆଦ୍ୟ ବନ୍ଦନାର ସମାନତା ଦେଖାଇ ଦିଆଯାଇଛି । ତେଣୁ ସନ୍ଦେହ ରହୁନାହିଁ ଯେ ସିଦ୍ଧେଶ୍ୱର ଦାସ ଓ ସାରଳାଦାସ ଜଣେ ଲୋକ ।

ସବୁ ଦିଗରୁ ବିଚାର କଲେ କବିଙ୍କର ମୂଳ ନାମ ସିଦ୍ଧେଶ୍ୱର ଦାସ ଥିଲା ଓ ସେ ବିଚିତ୍ର ରାମାୟଣ ରଚନା ପରେ ସାରଳାଦାସ ନାମ ଗ୍ରହଣ କରିଥିଲେ ବୋଲି ନିର୍ଦ୍ଧାରଣ କରିବା ଯୁକ୍ତିଯୁକ୍ତ । ଏପରି ନିର୍ଦ୍ଧାରଣ ବିରୋଧରେ କୁହାଯାଇପାରେ ଯେ ତେବେ ସେ ପୂର୍ବ ନାମ ଓ କୃତିର ସୂଚନା ମହାଭାରତରେ ଦେଇନାହାନ୍ତି କାହିଁକି ? ନ ଦେବାର କାରଣ ସ୍ପଷ୍ଟ । ମୁଁ ସିଦ୍ଧେଶ୍ୱର ଦାସ ଥିଲି ଓ ବିଚିତ୍ର ରାମାୟଣ ଲେଖିଥିଲି ବୋଲି ଜଣାଇଲେ ଦେବୀ ସାରୋଳାଙ୍କଠାରୁ ବରଲାଭ କରି ସେ କବି ହୋଇଥିବା କଥାଟି ମିଥ୍ୟା ବୋଲି ଧରାପଡ଼ିଯିବ ନାହିଁକି ? ପ୍ରଥମ ଅଧ୍ୟାୟରେ ଦେଖାଇ ଦିଆଯାଇଛି ଯେ ସାରଳାଦାସ ନିଜ ଭିତରେ ବୈଷ୍ଣବ, ଶାକ୍ତ ଓ ଶୈବ ତ୍ରିବିଧ ମତର ସମନ୍ୱୟ ପ୍ରତିଷ୍ଠା କରିଛନ୍ତି ଦେବୀ ସାରୋଳାଙ୍କ ବରଲାଭ ମାଧ୍ୟମରେ । ସେ ସାରଳାଦାସ ନାମ ସ୍ୱୀକାର କରିବା ପରେ ସିଦ୍ଧେଶ୍ୱର ଦାସ ନାମରେ ଲେଖିଥିବା ଗ୍ରନ୍ଥଟିକୁ ନିଜର ବୋଲି କହିବା ଦ୍ୱାରା ନିଜ କଥାକୁ ନିଜେ କାଟିବା ଭଳି ହେବ ସିନା । ବୋଧହୁଏ, ଏହି କାରଣରୁ ସାରଳାଦାସ ବିଚିତ୍ର ରାମାୟଣର ପ୍ରସାର ପ୍ରତି ମନୋଯୋଗୀ ହୋଇନାହାନ୍ତି । ଫଳତଃ ବିଚିତ୍ର ରାମାୟଣର ନକଲ ବିରଳ ହୋଇଯାଇଛି । ସ୍ରଷ୍ଟା ତା' ସୃଷ୍ଟିକୁ ଅସ୍ୱୀକାର କରିବାର ପ୍ରୟୋଜନ ବେଳେବେଳେ ପଡ଼େ ।

—

# ନବମ ଅଧ୍ୟାୟ

## ସାରଳାଦାସଙ୍କ ବୟସର ଛାପ

ସାରଳା ଦାସ ଆଦ୍ୟ ଜୀବନରେ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ରଚନା କରିବା ପରେ ନିଜର ନାମ ସାରଳାଦାସ ରଖି ମହାଭାରତ ରଚନା କରିଥିବା ବିଷୟ ଇତିପୂର୍ବେ ନିର୍ଣ୍ଣୀତ ହୋଇଛି ।

ସାରଳାଦାସ ଲେଖିଥିବା ମହାଭାରତ ଗ୍ରନ୍ଥଟି ବ୍ୟାସକୃତ ମୂଳ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ଏହି ଦୁଇ ଗ୍ରନ୍ଥ ମଧ୍ୟରେ ଚରିତ, ଘଟନାକ୍ରମ, ଚରିତ୍ର-ଚିତ୍ରଣ ଓ କାବ୍ୟିକ ଆଦର୍ଶ ଦୃଷ୍ଟିରୁ ପାର୍ଥକ୍ୟ ବିଚାର କଲେ ମଧ୍ୟ ସାରଳାଦାସଙ୍କ ରଚନାଟିକୁ ସଂସ୍କୃତ ମହାଭାରତର ଅବଲମ୍ବନ କି ଅନୁସୃଷ୍ଟି କହିଲେ ମଧ୍ୟ ସାରଳାଦାସଙ୍କ ମୌଳିକତାର ଉଚିତ ମୂଲ୍ୟାଙ୍କନ ହେବ ନାହିଁ । ସାରଳାଦାସଙ୍କ ସୃଷ୍ଟିଟିର ବହୁଳାଂଶ ମୌଳିକ, ଦୁଇଗ୍ରନ୍ଥ ମଧ୍ୟରେ ଯାହା ସମାନତା ରହିଛି ତାହାର ବେଶିଭାଗ ଚରିତ୍ରଗୁଡ଼ିକର ନାମ ଓ ତାଙ୍କ ବଂଶାବଳୀ ସଂପର୍କରେ ଓ କମ୍ ଭାଗ କଥାବସ୍ତୁର କଂକାଳ ସଂପର୍କରେ । ସାରଳାଦାସ ମୂଳ ମହାଭାରତ ବର୍ଣ୍ଣିତ ବହୁତ ବିଷୟ ସଂପୂର୍ଣ୍ଣ ତ୍ୟାଗ କରିଛନ୍ତି ଓ ମୂଳରେ ଲେଖା ନଥିବା ଅନେକ ଆଖ୍ୟାନର ସଂଯୋଗ କରିଛନ୍ତି । ଏପରିକି ସେ ମୂଳରେ ନଥିବା ଦୁଇଟି ପର୍ବ (୧. ମଧ୍ୟପର୍ବ ଓ ୨. ଗଦାପର୍ବ) ଯୋଗ କରିଛନ୍ତି ଓ ମୂଳରେ ଥିବା ଦୁଇଟି ପର୍ବ (୧. ଅନୁଶାସନ ଓ ୨. ମହାପ୍ରସ୍ଥାନିକ)କୁ ଲୋପ କରି ପର୍ବ ସଂଖ୍ୟା ୧୮ ଅପରିବର୍ତ୍ତିତ ରଖିଛନ୍ତି । ମହାଭାରତ ପାଇଁ ୧୮ ସଂଖ୍ୟାର ବିଶେଷ ତାତ୍ପର୍ଯ୍ୟ ଥିବା ଯୋଗେ ସାରଳାଦାସଙ୍କୁ ପର୍ବ ସଂଖ୍ୟା ୧୮ରେ ସ୍ଥିର ରଖିବାକୁ ହେଲା । ମହାଭାରତ ଯୁଦ୍ଧ ୧୮ ଦିନ ଚାଲିଥିଲା ଓ ସେଥିରେ ମୋଟ ୧୮ ଅକ୍ଷୌହିଣୀ ସୈନ୍ୟ (କୌରବ ପକ୍ଷର ୧୧ ଓ ପାଣ୍ଡବ ପକ୍ଷର ୭) ଲଢ଼ିଥିଲେ । ମହାଭାରତର ପର୍ବ ସଂଖ୍ୟା ୧୮ ହେବା ପରି ଭଗବଦ୍‌ଗୀତାର ଅଧ୍ୟାୟ ସଂଖ୍ୟା ମଧ୍ୟ ୧୮ । କେତେକ ପଣ୍ଡିତ ମତ ଦେଇଛନ୍ତି ଯେ ମହାଭାରତ କ୍ରମଶଃ ବଢ଼ି ବଢ଼ି ବର୍ତ୍ତମାନ ଅବସ୍ଥାକୁ ଆସିଛି । ଏହା ପୂର୍ବରୁ ତାହା କ୍ଷୁଦ୍ରାକାର ଭାରତ କାବ୍ୟ ଥିଲା ଓ ଆହୁରି ପୂର୍ବରୁ ତାହା ଏକ ଛୋଟିଆ କାବ୍ୟ ଥିଲା, ଯାହାର ନାମ ଥିଲା 'ଜୟ' । ମହାଭାରତର ଆରମ୍ଭରେ ଲିଖିତ ଶ୍ଲୋକରେ 'ଜୟ' କୁହାଯିବା କଥା ରହିଛି—

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ୍ ।।

ସଂଖ୍ୟାଗଣନା ପାଇଁ ଗୋଟିଏ ଗୂଢ଼ ସୂତ୍ରର ନାମ 'କଟପୟାଦି ସୂତ୍ର' । ଏହି ସୂତ୍ର ଅନୁସାରେ କ,ଟ, ପ ଓ ୟରୁ ଗଣିଲେ ଅକ୍ଷରର ସ୍ଥାନ ସଂଖ୍ୟା ଯାହା ପଡ଼ିବ ସେହି ଅକ୍ଷର ସେହି ସଂଖ୍ୟାର ବାଚକ । 'ଜୟ' ଶବ୍ଦର ଜର ସଂଖ୍ୟା ପାଇଁ 'କ'ରୁ ଗଣିବାକୁ ହେବ ଓ ଜ ହେବ ଅଷ୍ଟମ ଅକ୍ଷର । ତେଣୁ 'ଜ'ର ସଂଖ୍ୟା ମୂଲ୍ୟ ୮ । 'ୟ'ର ସଂଖ୍ୟା ମୂଲ୍ୟ ୧ । ତେଣୁ ଜୟ ହେଲା ୮୧, ଅଙ୍କ ଗଣନା ବାମରୁ କରାଯାଏ 'ଅଙ୍କାନାଂ ବାମତୋ ଗତିଃ' ତେଣୁ ଜୟର ଅର୍ଥ ୧୮ ହେଉଛି । ସାରଳାଦାସ ୧୮ ସଂଖ୍ୟାର ଏ ରହସ୍ୟ ଜାଣନ୍ତୁ ବା ନଜାଣନ୍ତୁ ମହାଭାରତ ପାଇଁ ୧୮ ସଂଖ୍ୟା ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ଜାଣି ପର୍ବ ସଂଖ୍ୟାକୁ ସେ ବଦଳାଇ ନଥିବା ଅନୁମିତ ହୁଏ ।

ସାରଳାଦାସ ଦୁଇଟି ପର୍ବକୁ ଯୋଗ କରି ମୂଳର ଦୁଇଟି ପର୍ବକୁ ଲୋପ କରିବାର କାରଣ ପ୍ରକାଶ କରି ନାହାନ୍ତି, କୌଣସି ଆଲୋଚକ ମଧ୍ୟ ସେ ବିଷୟ ପ୍ରତି ଦୃଷ୍ଟି ଦେଇ ନାହାନ୍ତି । ସେହି ବିଷୟ ନେଇ ଅନୁମାନ କରାଯାଇପାରେ । ସାରଳାଦାସ ୧୮ ସଂଖ୍ୟାକୁ ତିନି ଭାଗ କରି ସତ୍ତ୍ୱ, ରଜଃ ଓ ତମଃ ଏହି ତ୍ରିଗୁଣ ମଧ୍ୟରେ ବାଣ୍ଟିଛନ୍ତି । ସଂସ୍କୃତ ମହାଭାରତର ଆରମ୍ଭର ପାଞ୍ଚୋଟି ପର୍ବ ମଧ୍ୟରେ ରଜୋଗୁଣର ପ୍ରାଧାନ୍ୟ ଥିଲା । ସାରଳାଦାସ ରଜୋଗୁଣକୁ ଛଅଟି ପର୍ବ ଦେବା ଲକ୍ଷ୍ୟରେ 'ମଧ୍ୟ ପର୍ବ' ନାମରେ ଏକ ନୂତନ ପର୍ବକୁ ଯୋଡ଼ିଛନ୍ତି । ସଂସ୍କୃତ ମହାଭାରତର ପରବର୍ତ୍ତୀ ପାଞ୍ଚୋଟି ପର୍ବରେ ତମୋଗୁଣ ପ୍ରଧାନ ଯୁଦ୍ଧର ବିବରଣ ରହିଛି– ୧. ଭୀଷ୍ମ, ୨. ଦ୍ରୋଣ, ୩. କର୍ଣ୍ଣ, ୪. ଶଲ୍ୟ ଓ ୫. ସୌପ୍ତିକ । ସାରଳାଦାସ ତମୋଗୁଣକୁ ଛ'ଟି ପର୍ବ ଦେବା ଲକ୍ଷ୍ୟରେ ଶଲ୍ୟ ପର୍ବକୁ ଦୁଇ ଭାଗରେ କରି ନୂତନ ଗଦା ପର୍ବ ସୃଷ୍ଟି କରିଛନ୍ତି । ସଂସ୍କୃତ ମହାଭାରତର ଶେଷ ଆଠୋଟି ପର୍ବ ସତ୍ତ୍ୱଗୁଣପ୍ରଧାନ । ସାରଳାଦାସ ଏହାକୁ ୬ ପର୍ବ କରିବା ପାଇଁ ଅନୁଶାସନ ଓ ମହାପ୍ରସ୍ଥାନିକ ପର୍ବ ଦ୍ୱୟକୁ ଉଠାଇଦେଇଛନ୍ତି । ସାରଳାଦାସ ମହାଭାରତ ରଚନାରେ ହାତ ଦେବା ବେଳରୁ ପର୍ବ ବିଭାଗ ସ୍ଥିର କରି ସାରିଥିଲେ ବୋଲି ଅନୁମିତ ହୁଏ, କାରଣ ଆଦିପର୍ବ ରଚନା ପରେ ପରେ ସେ ମଧ୍ୟ ପର୍ବ ରଚନା କରିଛନ୍ତି ।*

---

* ବ୍ରଜ ସୁନ୍ଦର ମହାରଥୀ ପାତ୍ର ସାରଳାଦାସଙ୍କ ୧୮ ପର୍ବର କ୍ରମକୁ ଗ୍ରହଣ କରି ସାରଳା-ମହାଭାରତର ଚରିତକୁ ୪୬୪ଟି ଅଧ୍ୟାୟରେ (ପ୍ରତ୍ୟେକ ଅଧ୍ୟାୟରେ ନବାକ୍ଷରୀ ବୃତ୍ତରେ ୧୨୦ ପଦ) ପ୍ରକାଶ କରି ତାହାକୁ 'ତ୍ରିଗୁଣ ମହାଭାରତ' ବୋଲି ନାମିତ କରିଛନ୍ତି । ଏହାର ରଚନା କାଳ ଖ୍ରୀ. ୧୮୩୧ । ସେ ଜଣାଇଛନ୍ତି–

''ସେପରି ଆଦି ଉଦ୍‌ଯୋଗ । ପର୍ଯ୍ୟନ୍ତେ ରାଜସ ସମ୍ଭବ । ଭୀଷ୍ମରୁ ଗଦାପର୍ବ ଯାଏଁ ।
ପ୍ରଧାନ ତାମସ ଏ ହୋଏ ।। ତହିଁ ଉତ୍ତାରୁ ଷଡ଼ପର୍ବ । କେବଳ ସାତ୍ତ୍ୱିକ ଏ ଭାବ ।।
××× ଏଣୁ ଏ ତ୍ରିଗୁଣ ଭାରତ । ବୋଲି ତା' ନାମ ହେଲା ଖ୍ୟାତ ।।''

ସାରଳାଦାସଙ୍କ ବିରଚିତ ମହାଭାରତର ପର୍ବଗୁଡ଼ିକର ବିସ୍ତାର ସଙ୍ଗେ ସଂସ୍କୃତ ମହାଭାରତର ତତ୍‌ତତ୍ ପର୍ବର ବିସ୍ତାରର ତୁଳନା କଲେ ଓଡ଼ିଆ ମହାଭାରତର ଆରମ୍ଭର କେତୋଟି ପର୍ବର ପୃଥୁଳତା, ମଧ୍ୟର ପର୍ବଗୁଡ଼ିକର ଶୀର୍ଣ୍ଣତା ଓ ଶେଷ ଦୁଇଟି ପର୍ବର ଅପେକ୍ଷାକୃତ ଅଧିକ ପ୍ରସାର ସ୍ପଷ୍ଟ ଦେଖାଯାଏ । ଖିଳ ହରିବଂଶକୁ ମିଶାଇ ସଂସ୍କୃତ ମହାଭାରତର ମୋଟ ଏକ ଲକ୍ଷ ଶ୍ଳୋକ ମଧ୍ୟରୁ ଅଷ୍ଟାଦଶ ପର୍ବର ଶ୍ଳୋକ ସଂଖ୍ୟା ୮୮ ହଜାର । ମହାଭାରତର ଆରମ୍ଭରେ ଥିବା ପର୍ବସଂଗ୍ରହାଧ୍ୟାୟରେ କେଉଁ ପର୍ବରେ ମୋଟ କେତେ ଶ୍ଳୋକ ରହିଛି ଜଣାଇ ଦିଆଯାଇଛି । କୃଷ୍ଣ ସିଂହ ପ୍ରଣୀତ ସଂସ୍କୃତ ମହାଭାରତର ଅନୁବାଦର ପର୍ବ ସଂଗ୍ରହାଧ୍ୟାୟରେ ଓଡ଼ିଶାରେ ପ୍ରଚଳିତ ସଂସ୍କୃତ ମହାଭାରତର ପର୍ବ ଗୁଡ଼ିକର ଶ୍ଳୋକ ସଂଖ୍ୟା ପ୍ରଦତ୍ତ ହୋଇଛି । (ଅନ୍ୟ ପ୍ରଦେଶର ପାଠର ପର୍ବ ସଂଗ୍ରହାଧ୍ୟାୟର ଶ୍ଳୋକ ସଂଖ୍ୟାଠାରୁ ଏହାର ସାମାନ୍ୟ ପାର୍ଥକ୍ୟ ରହିଛି କିନ୍ତୁ ପାର୍ଥକ୍ୟ ନଗଣ୍ୟ) । ସେହି ସଂଖ୍ୟା ସହିତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ 'ସାରଳା-ମହାଭାରତ'ର ତତ୍‌ତତ୍ ପର୍ବର ପଦ ସଂଖ୍ୟା ନିମ୍ନରେ ପ୍ରଦତ୍ତ ହେଲା । ବନ୍ଧନୀ ମଧ୍ୟର ପର୍ବର ନାମ ଓ ପଦ ସଂଖ୍ୟା ସାରଳା ମହାଭାରତର ଓ ଯେଉଁଠାରେ ବନ୍ଧନୀ ମଧ୍ୟରେ ପର୍ବର ନାମ ଲେଖା ହୋଇନାହିଁ, ସେହି ନାମର ପର୍ବ ସାରଳା-ମହାଭାରତରେ ନାହିଁ ବୋଲି ଜଣାଯିବ । ପର୍ବର ନାମ ଆଗରେ କ୍ରମିକ ସଂଖ୍ୟା ଲେଖାଅଛି—

୧. ଆଦି; ୯,୯୮୪ (୧. ଆଦି; ୧୨,୮୩୯ ଓ ୨. ମଧ; ୧୩,୩୫୭)
୨. ସଭା; ୨,୫୧୧ (୩ ସଭା; ୧୫,୨୮୬)
୩. ଆରଣ୍ୟକ; ୧୩, ୬୬୪ (୪. ବନ; ୧୨, ୧୮୭)
୪. ବିରାଟ; ୨,୧୦୩ (୫. ବିରାଟ, ୮,୦୫୦)
୫. ଉଦ୍‌ଯୋଗ; ୬,୬୨୮ (୬. ଉଦ୍‌ଯୋଗ; ୪,୬୧୪)
୬. ଭୀଷ୍ମ; ୫,୮୮୪ (୭. ଭୀଷ୍ମ; ୩,୯୭୯)
୭. ଦ୍ରୋଣ; ୮,୯୦୯ (୮. ଦ୍ରୋଣ; ୫,୨୦୭)
୮. କର୍ଣ୍ଣ; ୪,୯୬୪ (୯. କର୍ଣ୍ଣ ୧,୮୦୨)
୯. ଶଲ୍ୟ; ୩,୨୨୦ (୧୦. ଶଲ୍ୟ; ୩୨୦; ୧୧. ଗଦା; ୧,୨୭୪)
୧୦. ସୌପ୍ତିକ; ୮୭୦ (୧୨. କାଇଁଶିକା; ୧,୨୦୨)
୧୧. ସ୍ତ୍ରୀ; ୭୮୫ (୧୩. ନାରୀ; ୨୫୯)
୧୨. ଶାନ୍ତି; ୧୫, ୬୦୫ ( ୧୪. ଶାନ୍ତି; ୪୦୭)
୧୩. ଅନୁଶାସନ; ୬,୬୦୦
୧୪. ଅଶ୍ୱମେଧ; ୪,୪୨୦ (୧୬. ଅଶ୍ୱମେଧ; ୧,୩୪୬)
୧୫. ଆଶ୍ରମବାସ; ୧,୫୦୬ (୧୫. ଆଶ୍ରମିକ; ୫୧୮)

୧୬. ମୂଷଳୀ; ୩୦୦ (୧୭. ମୂଷଳୀ; ୧,୩୭୧)
୧୭. ମହାପ୍ରସ୍ଥାନିକ; ୩୨୦
୧୮. ସ୍ୱର୍ଗାରୋହଣ; ୨୦୦ (୧୮ ସ୍ୱର୍ଗାରୋହଣ; ୧, ୧୬୫)

ମୋଟ ଶ୍ଳୋକ ସଂଖ୍ୟା; ୮୮୪୭୩ (ମୋଟ ପଦସଂଖ୍ୟା; ୮୫, ୧୮୩)। ସଂସ୍କୃତରେ ଅଶ୍ୱମେଧ ପର୍ବ ପରେ ଆଶ୍ରମବାସ ପର୍ବ କିନ୍ତୁ ସାରଳା ମହାଭାରତରେ ଅଶ୍ୱମେଧ ପର୍ବ ପୂର୍ବରୁ ଆଶ୍ରମିକ ପର୍ବ ।

ସଂସ୍କୃତର ମୋଟ ଶ୍ଳୋକ ସଂଖ୍ୟାଠାରୁ ଓଡ଼ିଆର ମୋଟ ପଦ ସଂଖ୍ୟା ବିଶେଷ କମ୍ ନୁହେଁ । କିନ୍ତୁ ଲକ୍ଷ୍ୟ କରାଯାଇପାରେ ଯେ ଆରମ୍ଭର ପର୍ବଗୁଡ଼ିକର ଶ୍ଳୋକ ସଂଖ୍ୟା ଅପେକ୍ଷା ପଦ ସଂଖ୍ୟା ବିଶେଷ ଅଧିକ ହେବା ସ୍ଥଳେ ମଧ୍ୟର ପର୍ବଗୁଡ଼ିକର ପଦ ସଂଖ୍ୟା ଖୁବ୍ କମ୍ । ବିରାଟ ପର୍ବ ପର୍ଯ୍ୟନ୍ତ ସାରଳା-ମହାଭାରତ ସଂସ୍କୃତ ତୁଳନାରେ ପୃଥୁଳତର ଓ ମୂଷଳୀ ପର୍ଯ୍ୟନ୍ତ ପର୍ବଗୁଡ଼ିକ ଶୀର୍ଣ୍ଣତର । ବିରାଟ ପର୍ଯ୍ୟନ୍ତ ପର୍ବଗୁଡ଼ିକର ଚରିତ ସଂସ୍କୃତରେ ୨୮,୨୬୨ ଶ୍ଳୋକ (ଏହା ମୋଟ ଶ୍ଳୋକ ସଂଖ୍ୟାର ଶତକଡ଼ା ୩୧ ମାତ୍ର) ମଧ୍ୟରେ କିନ୍ତୁ ଓଡ଼ିଆରେ୬୧, ୭୧୯ ପଦରେ (ଏହା ମୋଟ ପଦ ସଂଖ୍ୟାର ଶତକଡ଼ା ସାଢ଼େ ୭୨) ବର୍ଣ୍ଣିତ ହୋଇଛି ।

ସାରଳାଦାସ ଆରମ୍ଭର ପର୍ବଗୁଡ଼ିକର ଚରିତକୁ ଏତେ ମାତ୍ରାରେ ବର୍ଦ୍ଧିତ କରି ବର୍ଣ୍ଣନା କରିଥିବା ସ୍ଥଳେ ପରବର୍ତ୍ତୀ ପର୍ବଗୁଡ଼ିକୁ ଏପରି ସଂକୁଚିତ କଲେ କାହିଁକି ? ସଂକୋଚନର କେତେକ କାରଣ ଅନୁମାନ କରାଯାଇପାରେ—

୧. ସାରଳାଦାସ ଯେଉଁ ଅଶିକ୍ଷିତ ଗାଉଁଲି ଶ୍ରୋତାମାନଙ୍କ ପାଇଁ ମହାଭାରତ ଲେଖୁଥିଲେ ସେମାନେ ଧର୍ମ, ଦର୍ଶନ, ନୀତିଶାସ୍ତ୍ର ଆଦି ତାତ୍ତ୍ୱିକ ବିଷୟ ବୁଝିବା ପାଇଁ ଅସମର୍ଥ ହେଲେ ହେଁ ଚରିତ-ବର୍ଣ୍ଣନ, କାହାଣୀ, ଉପାଖ୍ୟାନ ଆଦି ସ୍ଥୂଳ ବିଷୟ ପ୍ରତି ଅଧିକ ଆଗ୍ରହୀ ହୋଇଥାନ୍ତି । ଏହି କାରଣରୁ ସାରଳାଦାସ ଆରମ୍ଭର ପର୍ବଗୁଡ଼ିକ ମଧ୍ୟରେ ସ୍ୱକଳ୍ପିତ ବହୁସଂଖ୍ୟକ 'ହରଣ', 'ମରଣ', ଶରଣ ଆଦି ଉପାଖ୍ୟାନ ଯୋଗ କରିଥିବା ଅନୁମାନ କରାଯାଇପାରେ ।* ସେହି କାରଣରୁ କବି ତାଙ୍କ ରଚନାରେ ଧର୍ମ, ଦର୍ଶନ,

---

* ଗଞ୍ଜାମ ଅଞ୍ଚଳର ଦାସକାଠିଆ ଦଳମାନେ ସାରଳାଦାସଙ୍କ 'ହରଣ', 'ମରଣ' ଆଦି ଆଖ୍ୟାନର ଲୋକପ୍ରିୟ ପ୍ରଚାରକ । ସେମାନେ କହନ୍ତି ସାରଳାଦାସେ ୧୮ଟି ହରଣ (ନୀଳେନ୍ଦୀ ହରଣ ଆଦି) ଓ ୧୮ଟି ମରଣ (ବୈରୋଚନ ମରଣ ଆଦି) ରଚନା କରିଥିଲେ । ଶରଣ (ଚିତ୍ରାଙ୍ଗୁର ଶରଣ ଆଦି)ର ସଂଖ୍ୟା ଅନିର୍ଦ୍ଦିଷ୍ଟ । ତାଳପତ୍ର ପୋଥିରେ ମହାଭାରତର ଅଙ୍ଗୀଭୂତ ହରଣ, ମରଣର ସଂଖ୍ୟା ୧୮ରୁ ବହୁତ କମ୍ । କେତେକ ପରବର୍ତ୍ତୀକାଳର କବି ସାରଳାଦାସଙ୍କ ଭଣିତି ଦେଇ ହରଣାଦି ରଚନା କରିଛନ୍ତି । ମହାଭାରତ ପ୍ରସଙ୍ଗରେ ୧୮ ସଂଖ୍ୟାର ତାତ୍ପର୍ଯ୍ୟ ସ୍ୱତନ୍ତ୍ର ।

ନୀତି ଆଦି ତତ୍ତ୍ୱକୁ ତ୍ୟାଗ କରିଛନ୍ତି । ଫଳରେ ମହାଭାରତ-ରତ୍ନାକରର ମହାର୍ଘ ରତ୍ନ ଭଗବଦ୍ ଗୀତାକୁ ସେ ଲେଖିନାହାନ୍ତି । ଶାନ୍ତି ଓ ଅନୁଶାସନ ପର୍ବର ରାଜଧର୍ମ, ଦାନ-ଧର୍ମ, ମୋକ୍ଷଧର୍ମ ଆଦି ବିଷୟକୁ ସେ ତାଙ୍କ ମହାଭାରତରେ ସ୍ଥାନ ଦେଇ ନାହାନ୍ତି ।

୨. ଉପନ୍ୟାସର ପାଠକ ମାତ୍ରେ ଜାଣନ୍ତି ଯେ ଉପନ୍ୟାସର ଉପକ୍ରମର ଚିତ୍ତାକର୍ଷକ ଆଟୋପ ଓ ବର୍ଣ୍ଣନାର ଯାଦୁକରୀ ପ୍ରସାରଣ ଉପସଂହାର ଆଡ଼କୁ ରହେ ନାହିଁ । ତାହା ବ୍ୟଗ୍ରଗାମୀ ଓ ଆଶୁସମାପ୍ତିକାମୀ ହୋଇପଡ଼େ; ଆରମ୍ଭ ଗୁର୍ବୀ କ୍ଷୟିଣୀ କ୍ରମେଣ । ଆରମ୍ଭର ପଚୋଦନା ଯେତେ ଶକ୍ତ ହେଲେ ହେଁ ତାହା କ୍ରମଶଃ ଶିଥିଳ ହେବା ଅନିବାର୍ଯ୍ୟ ହୋଇପଡ଼େ । ସବୁ ମଣିଷଙ୍କ ପରି ଲେଖକ ମଧ ଜଣେ କର୍ମରତ ମାନବ ଓ ଦୀର୍ଘକାଳ କର୍ମରତ ରହିବା ପରେ କର୍ମକ୍ଳାନ୍ତି ଯୋଗୁଁ ସେ କର୍ମସମାପ୍ତି ପାଇଁ ବ୍ୟଗ୍ର ହୋଇପଡ଼େ । ସାରଳାଦାସ କର୍ମସମାପ୍ତି ପାଇଁ ବ୍ୟଗ୍ର ହେବାରୁ ଶେଷର ପର୍ବଗୁଡ଼ିକୁ ସଂକ୍ଷିପ୍ତ କରିଥିଲେ ବୋଲି ଅନୁମାନ କରାଯାଇପାରେ ।

କଥିତ ଦୁଇଟିଯାକ କାରଣ ଯୋଗୁଁ ଆଦ୍ୟ ପର୍ବଗୁଡ଼ିକ ସ୍ଫୀତ ଓ ପ୍ରାନ୍ତ ପର୍ବଗୁଡ଼ିକ କ୍ଳୃପ୍ତ ହେବା ସମ୍ଭାବନା ନିଶ୍ଚୟ ରହିଛି । ସାରଳାଦାସଙ୍କ କ୍ଷେତ୍ରରେ ଏପରି ଘଟିବାର ଅଧିକ ବଳବାନ୍ କାରଣଟିଏ ରହିଛି; ତାହା ହେଉଛି ତାଙ୍କର ବୟସ ।

ସାରଳାଦାସ ଯୌବନରେ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ରଚନା କରିସାରିବା ପରେ ସାରଳାଦାସ ନାମ ନେଇ ମହାଭାରତ ରଚନା ଆରମ୍ଭ କରିଥିଲେ । ସେ ବିରାଟ ପର୍ବ ପର୍ଯ୍ୟନ୍ତ ଲେଖି ସାରିବା ପରେ ବିଶେଷ କାରଣବଶତଃ ଲେଖା ବନ୍ଦ ରଖିଥିଲେ । ଏହାର ବହୁ ବର୍ଷ ପରେ ବୃଦ୍ଧ ବୟସରେ ସେ ଉଦ୍‌ଯୋଗ ପର୍ବଠାରୁ ଅବଶିଷ୍ଟ ମହାଭାରତ ରଚନା କରିଥିଲେ । ଯୌବନରେ ଯେଉଁ ମହୋତ୍ସାହ ନେଇ ବର୍ଣ୍ଣନାକୁ ପୁଷ୍କଳ ଓ ପରିବର୍ଦ୍ଧିତ କରି ସେ ମୁକୁଳିତ କରୁଥିଲେ ତାହା ବାର୍ଦ୍ଧକ୍ୟରେ, ଅବିଶିଷ୍ଟ ଜୀବନକାଳ ଅକୁଳନ ହେବା ଆଶଙ୍କାରୁ, କିପରି ରଚନା ସରିବ ବୋଲି ଉଦ୍‌ବେଗରେ ପରିଣତ ହୋଇଗଲା । ଉଦ୍‌ଯୋଗାଦି ପର୍ବଗୁଡ଼ିକ ସଂକୁଚିତ ହେବାର ଏହା ମୁଖ୍ୟ କାରଣ ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଆଦିପର୍ବ (ପୃ. ୧୦୪୦)ରେ ଗୋଟିଏ ମାତ୍ର ପୋଥି ('ଦ' ପୋଥି)ର ପାଠ ଦେଇଛନ୍ତି, ଯେଉଁଠାରେ କବି ଅଳ୍ପବୟସ୍କ ଥିବା କଥା ଲେଖାଅଛି—

ଗୁରୁଙ୍କ ଦୟା ଯହୁଁ ମୋତେ ଯେତେକ ଅଛଇଁ ।
ଅଳପ ବୟସେ ମୋ ମନ ଭ୍ରମଣ ହୁଅଇ ॥

ଏହି ପାଠ ଅନ୍ୟ କୌଣସି ପୋଥିରେ ନାହିଁ, କିନ୍ତୁ ସେହିପର୍ବର ଅନ୍ୟତ୍ର କବି ଶିବଙ୍କୁ ସ୍ତୁତି କରି ଦୀର୍ଘଜୀବନ କାମନା କରିଛନ୍ତି । ଏହା ସାଧାରଣ ପାଠ ଓ ସେତେବେଳକୁ କବିଙ୍କ ବୟସ କମ୍ ଥିବାର ସୂଚକ ।

କରାଳୀବଲ୍ଲଭ ପଦ୍ମପାଦେ ମୋର ସେବା ।
ଶୂଦ୍ରମୁନି ସାରୋଳାଦାସକୁ ଚିର ଆୟୁଦେବା ।। (ଆଦି ୨୭୨)

କବି ମଧ୍ୟପର୍ବ ଆରମ୍ଭରେ ଅଳ୍ପ ବୟସ୍କ ଥିବା ବିଷୟ ଜଣାଇଛନ୍ତି—

କୁଷ୍ଠାନବାସୀ ମୁଁ ନୋହିଲି ବିପ୍ର ଗୋଷ୍ଠୀ ।
କଣକଳ୍ପ ବୁଦ୍ଧି ମୁଁ ହିଂ ବୟସ ଅଳପଟି ।। (ମଧ୍ୟ ୮)

ବନପର୍ବ ମଧ୍ୟରେ ଠାଏଁ କବି ନିଜେ 'କିଛୁ' ବୟସରେ ଜ୍ଞାନ ଲାଭ କରିଥିବା ସୂଚନା ଯାହା ଦେଇଛନ୍ତି ତାହା ତାଙ୍କର ବୟସ କମ୍ ଥିବା କଥା ବୁଝାଉଛି—

ଶିବର ସିଂହଦ୍ୱାରେ ଦ୍ୱାରପାଳ ମୁହିଂ ପୂର୍ବେ ।
କିଂଚିତ ପାତକେ ମୁଂ ମାନବଜନ୍ମ ଯେବେ ।।
କିଛୁ ବୟସେଣ ମୁଂ ପାଇଲି ଚେତନା ।
ହୃଦଗତେ ବିକାଶି ଉଦେକ କାମନା । (୨ ବନ ୩୪୯)

ଏହା ଲେଖିବାର ଅବ୍ୟବହିତ ପୂର୍ବେ କବି ରତିକୌଶଳ ଆଲୋଚନା କରି ନାରୀମାନେ ରତି ଦ୍ୱାରା ବଶୀଭୂତା ହୁଅନ୍ତି ବୋଲି ଜଣାଇ ନିଜେ ରତିସାଧନ କରିବା କାମନା ବ୍ୟକ୍ତ କରିଛନ୍ତି । ଏହା ନିଶ୍ଚୟ କବିଙ୍କର ଯୌବନ-ସୁଲଭ ମନୋଭାବ ।

ହେ ବୁଧ ଜନେ ଯେ ଆରଣ୍ୟକ ପର୍ବ ଶୁଣ ।
ଯେ ବିଧିରେ ସାଧି ପାରିଲେ ତିରିଙ୍କର* ଦର୍ପ ଜିଣ ।।
କିଛୁ ହିଂ ସାଧିବି ମୁଂ ଦେବୀ ପ୍ରସନ୍ନ ହୋଇଲେ ।
ଶୂଦ୍ରମୁନି ସାରୋଳଦାସ ରତିଶାହାସ୍ରେ ବୋଇଲେ ।। (୨ ବନ ୩୪୯)

[*ଅଧ୍ୟାପକ ମହାନ୍ତିଙ୍କ ଦ୍ୱାରା ଗୃହୀତ ପାଠରେ 'ତିରିଙ୍କର' ଶବ୍ଦଟି ବଦଳେ 'ଗିରିଙ୍କର' ମୁଦ୍ରିତ ହୋଇଚି । ଗିରିଙ୍କର ପାଠ ନିରର୍ଥକ ଓ ଅଶୁଦ୍ଧ । ସମ୍ଭବତଃ ମୁଦ୍ରାକର ପ୍ରମାଦ । ତାଳପତ୍ର ପୋଥିରେ ତିରିଙ୍କର ପାଠ ଥିବା ମୁଁ ଦେଖିଛି ।]

ବନପର୍ବର ପରବର୍ତ୍ତୀ ବିରାଟ ପର୍ବରେ କବି ନିଜ ବୟସ ସୂଚାଇଲା ଭଳି କିଛି ଲେଖିନଥିଲେ ହେଁ ଏହାର ସ୍ଥିତି ଓ ନୂତନ ଉପାଖ୍ୟାନ ସଂଯୋଜନ ଶୈଳୀ ପୂର୍ବ ପର୍ବଗୁଡ଼ିକର ଅନୁରୂପ ହୋଇଥିବାରୁ ତାହା ମଧ୍ୟ ସେହି ଯୌବନ କାଳର ରଚନା ହେବା ସମ୍ଭବ । କିନ୍ତୁ, ବିରାଟ ପର୍ବର ପରବର୍ତ୍ତୀ ଉଦ୍‌ଯୋଗ ପର୍ବ ଲେଖିବା ବେଳକୁ କବି ବୃଦ୍ଧ ହୋଇ ଜରାକ୍ଲେଶ ଭୋଗ କରୁଥିବା କଥା ଜଣାଇଛନ୍ତି । ଉଦ୍‌ଯୋଗ ପର୍ବର ଶେଷ ଆଡ଼କୁ ବିଷ୍ଣୁଙ୍କ ମୀନ ଅବତାରର ସ୍ତୁତି ମଧ୍ୟରେ କବି ନିଜର ବାର୍ଦ୍ଧକ୍ୟ କଥା ଲେଖିଛନ୍ତି—

ଦୁରାପଦ ଚାଣ୍ଡାଳ ଅଟଇ ଦୁଷ୍ଟ ମହାଜରା ।
ସଂସାର ସାଗରେ ପଶି କରଇ ମହାପୀଡ଼ା ।।

ଅସୁର ଚାଣ୍ଡାଳ ହୋଇ ମହାଭୀଷ୍ମ ରୂପୀ ।
ବିଷ୍ଣୁଲୋକକୁ କଟାଳି ଲୋଡ଼ଇ ମହାପାପୀ ।।
ଯେ ଦୁଷ୍ଟ ଦୁର୍ଗତିରୁ ତରିଲି ମୀନର ପରସନେ ।
ପରମଗତି ପାଇଲି ତୁମ୍ଭର ଦ୍ରଶନେ । (ଉଦ୍‌ଯୋଗ ୩୯୧)

'ବିଷ୍ଣୁଲୋକ' ଏଠାରେ ବୈଷ୍ଣବ ଲୋକ ଅର୍ଥରେ ବ୍ୟବହୃତ; କବିଥିଲେ ବୈଷ୍ଣବ । କବି 'ମହାଜରା' ଅର୍ଥାତ୍ ପୀଡ଼ାଦାୟକ ବାର୍ଦ୍ଧକ୍ୟରେ ସଡୁଥିଲେ; କିନ୍ତୁ ପରେ ସେଥିରୁ ଉଦ୍ଧାର ପାଇଲେ । ଏହା ବିରୋଧାଭାସ ଭଳି ପ୍ରତୀତ ହୁଏ । ବୟସ ତ କଦାପି କମେ ନାହିଁ । ଜରାରେ ଉପନୀତ କବି ଜରାରୁ ନିସ୍ତାର ପାଇବା କିପରି ସମ୍ଭବ ହେବ ? ଏ ରହସ୍ୟ ଗ୍ରନ୍ଥି କବି ସେହି ଉଦ୍‌ଯୋଗ ପର୍ବରେ ମୋଚନ କରି ଲେଖିଛନ୍ତି ଶିବଙ୍କ ସ୍ତୁତି ମଧ୍ୟରେ—

ସ୍ୱାମୀ ନାଶିଲି ରୋଗପୀଡ଼ା ତବ ନାମ ସଂକେତେ ।
ହରିଲି ସର୍ବରୋଗ ବଡ଼ ରାଉଳ ପରସାଦେ ।। (ଉଦ୍‌ଯୋଗ ୩୪୧)

ବଡ଼ ରାଉଳ 'ଦିଗାଂଗ ମେଖଳି' (ଦିଗମ୍ବର), ଶିରେଣ ସିତାଂଶୁ (ଚନ୍ଦ୍ରଚୂଡ଼), 'ତାଳୁରେ ଏକଜଟି' (ଶିବଙ୍କର ପାଞ୍ଚଟି ଜଟା ମଧ୍ୟରୁ ତାଳୁରେ ଗୋଟିଏ ଜଟା ଓ ମସ୍ତକର ଚାରିଦିଗରେ ଅନ୍ୟ ଚାରିଟି), 'ଚଉଦିଗ କରପଟି' (ଚତୁର୍ଦ୍ଦିଗ ଯାହାର ବସ୍ତ୍ରଖଣ୍ଡ, ଦିଗଦାସ) ବୋଲି କବି ବର୍ଣ୍ଣନା ଦେଇଥିବାରୁ ବଡ଼ ରାଉଳ ସ୍ୱୟଂ ଶିବ ଥିବା ଜଣାଯାଉଛି । ଦେବତାଙ୍କ ମଧ୍ୟରେ ରୋଗମୁକ୍ତିଦାୟକ ଭାବରେ ଶିବ ସର୍ବମାନ୍ୟ । ଶିବ ହେଉଛନ୍ତି ବୈଦ୍ୟନାଥ; ଲୋକେ ବିଭିନ୍ନ ରୋଗରୁ ଉଦ୍ଧାର ପାଇବା ପାଇଁ ଶିବଙ୍କ ଆଗରେ ହିଁ ଅଧିଆ ପଡ଼ିଥାନ୍ତି । ଜଣାଯାଉଛି ସାରଳାଦାସ ବିରାଟ ପର୍ବ ଲେଖି ସାରିବା ପରେ ଉଦ୍‌ଯୋଗ ପର୍ବ ଲେଖୁଥିବା ବେଳେ କୌଣସି ଅସାଧ୍ୟ ବ୍ୟାଧିଗ୍ରସ୍ତ ରହିବାରୁ ସେ ଶୀଘ୍ର ବାର୍ଦ୍ଧକ୍ୟରେ ଉପନୀତ ହେଲେ ଓ ଜରାକ୍ଲେଶ ଅଧିକ ଦୁଃସହ ହୋଇଥିଲା । ବୃଦ୍ଧାବସ୍ଥାରେ ସେ ବ୍ୟାଧିମୁକ୍ତ ହେବା ପରେ ଜରାର ପୀଡ଼ା କମିଲା ଓ ସେ ଉଦ୍‌ଯୋଗ ପର୍ବଠାରୁ ଅବଶିଷ୍ଟ ମହାଭାରତ ରଚନା କରିଥିଲେ । ଜରାର ଦୁର୍ଗତିରୁ ଅର୍ଥାତ୍ ଅତ୍ୟାଚାରରୁ କବି ରକ୍ଷା ପାଇଥିବା କଥା ଜଣାଇଛନ୍ତି । ତେଣୁ, କବିଙ୍କ ବୟସ ଅଧିକ ହେବା ସତ୍ତ୍ୱେ ସେ ସଂପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇଥିଲେ ବୋଲି ଅନୁମିତ ହୁଏ । ଭୀଷ୍ମପର୍ବ ଲେଖିବା ବେଳକୁ ବୃଦ୍ଧ ଥିବା ଜଣାଇଛନ୍ତି ।

ବଦୟନ୍ତି ବୃଦ୍ଧକାଳେ ସାରୋଳଚଣ୍ଡୀ ଦାସ ।
ଶୂଦ୍ରମୁନି ସାରୋଳଦାସ ଜନ୍ମେଜନ୍ମେ ଅଭ୍ୟାସ ।। (ଭୀଷ୍ମ ୧୨୨)

କବି ଯୌବନରେ ମହାଭାରତ ଲେଖିବା ଆରମ୍ଭ କଲେ । ରୋଗରେ ପଡ଼ିବାରୁ ଉଦ୍‌ଯୋଗ ପର୍ବଠାରେ ଲେଖା ବନ୍ଦ ରହିଲା । ଅନେକ ବର୍ଷପରେ ସେ ସୁସ୍ଥ ହେବା ପରେ

ଉଦ୍‌ଯୋଗ ପର୍ବଠାରୁ ଅବଶିଷ୍ଟ ମହାଭାରତ ଲେଖିଲେ । ସେତେବେଳକୁ ସେ ବୃଦ୍ଧ ହୋଇସାରିଥିବାରୁ ଅବଶିଷ୍ଟ ଚରିତକୁ ଅଧିକ ବିସ୍ତାରିତ ନ କରି ଲେଖିଥିଲେ ବୋଲି ଅନୁମିତ ହୁଏ । ଗ୍ରନ୍ଥ ରଚନା ସରି ଆସିବାବେଳେ ତାଙ୍କର ଜୀବଦ୍ଦଶା ମଧ୍ୟରେ ଲେଖା ସାରିପାରିବା ନେଇ ମନରେ ଆଉ ସନ୍ଦେହ ନ ରହିବାରୁ ସେ ମୂଷଳୀ ଓ ସ୍ୱର୍ଗାରୋହଣ ପର୍ବରେ ନୂତନ ଆଖ୍ୟାନମାନ ସଂଯୋଗ କରିଥିଲେ (ବିଶେଷତଃ ଉତ୍କଳ ଦେଶ ସହିତ ସଂପୃକ୍ତ ଶ୍ରୀମନ୍ଦିର ନିର୍ମାଣ ଓ ଜଗନ୍ନାଥଙ୍କ ପ୍ରତିଷ୍ଠା ଆଖ୍ୟାନ, ଯୁଧିଷ୍ଠିରଙ୍କ ସହିତ ସୁହାଣୀର ବିବାହ ଆଖ୍ୟାନ, ଏକାମ୍ର କ୍ଷେତ୍ର ପ୍ରତିଷ୍ଠା ବିବରଣ) ।

ସାରଳାଦାସ ମହାଭାରତ ରଚନା ସଂପୂର୍ଣ୍ଣ କରିବା ପରେ ଚଣ୍ଡୀପୁରାଣ ଲେଖିଥିବା ଜଣାଯାଉଛି । ଚଣ୍ଡୀପୁରାଣର କେତେକ ତାଳପତ୍ର ପୋଥିରେ ଲେଖାଅଛି– ''ମହାଭାରତ ନିର୍ଭା କଲି ସେ ଦେବୀର ନାମ ଭାବି ।'' ମୁଦ୍ରିତ ପୁସ୍ତକରେ ଏ ପାଠ ନାହିଁ । ତେବେ ବି ସେ ଅଳ୍ପ ବୟସରେ ମହାଭାରତ ଲେଖିବା ଆରମ୍ଭ କରି ଦୀର୍ଘକାଳ ପରେ ତାହାର ଶେଷାଂଶ ଲେଖିଥିବା ପ୍ରମାଣ ଦୃଷ୍ଟେ ଚଣ୍ଡୀପୁରାଣର ରଚନା ମହାଭାରତ ଲେଖା ସରିବା ପରେ ହିଁ ହୋଇଥିବା ସମ୍ଭବ । ପରବର୍ତ୍ତୀ 'ଚଣ୍ଡୀପୁରାଣ ବିମର୍ଶ' ଅଧ୍ୟାୟରେ ଏ ସମ୍ପର୍କରେ ବିଶଦ ଆଲୋଚନା କରାଯିବ ।

ସାରଳା-ମହାଭାରତର ପ୍ରଥମ ପାଞ୍ଚ ପର୍ବର ରଚନା ଓ ଅବଶିଷ୍ଟ ପର୍ବଗୁଡ଼ିକର ରଚନା ମଧ୍ୟରେ ସମୟର ସୁଦୀର୍ଘ ବ୍ୟବଧାନ ରହିଯିବା ହେତୁ ଯେଉଁସବୁ ଉପାଖ୍ୟାନ ବା ବିଷୟ ଶେଷ ଭାଗରେ ପୁନରୁକ୍ତ ହୋଇଛି ତାହାର ଆଦ୍ୟ ପର୍ବଗୁଡ଼ିକରେ ବର୍ଣ୍ଣିତ ଉପାଖ୍ୟାନ ବା ବିଷୟ ସଙ୍ଗେ ସାମଞ୍ଜସ୍ୟ ରକ୍ଷା ହୋଇପାରିନାହିଁ । ଅନୁମିତ ହୁଏ ଯେ କବି ଅନ୍ଦାଜ ୨୫ ବର୍ଷ ବୟସରେ ବିଚିତ୍ର ରାମାୟଣ ରଚନା ଆରମ୍ଭ କଲେ । ସେ ବିଚିତ୍ର ରାମାୟଣ ସାରିବାକୁ ୨/୩ ବର୍ଷ ଓ ବିରାଟ ପର୍ବ ଯାଏଁ ଲେଖିବାକୁ ଆଉ ୮ ବର୍ଷ ଖଣ୍ଡେ ନେଇଥାଇ ପାରନ୍ତି । ପ୍ରାୟ ୩୫ ବର୍ଷ ବୟଃକ୍ରମରେ ସେ ରୋଗରେ ପଡ଼ି ଲେଖାଲେଖି ଛାଡ଼ିଦେଲେ ଓ ପ୍ରାୟ ୬୦ ବର୍ଷ ବୟସରେ ରୋଗମୁକ୍ତ ହୋଇ ପୁଣି ଲେଖିଲେ । ମହାଭାରତର ଆଦ୍ୟ ଓ ଶେଷ ଭାଗ ମଧ୍ୟରେ ବହୁ ଚରିତଗତ ପାର୍ଥକ୍ୟ ରହିଛି, ଯଥା–

୧. ପ୍ରଥମେ ଓଡ଼ିଶାରେ ସୁବିଖ୍ୟାତ ଜଗନ୍ନାଥଙ୍କ ଆବିର୍ଭାବ ଓ ବଡ଼ଦେଉଳ ତୋଳା ଉପାଖ୍ୟାନଟି ବିଚାର୍ଯ୍ୟ । କବି ଏହାକୁ ପ୍ରଥମେ ବନପର୍ବରେ (ଦ୍ୱିତୀୟ ଖଣ୍ଡ ପୃ. ୧୮୦ରୁ୧୯୦) ଓ ପରେ ମୂଷଳୀ ପର୍ବରେ (ପୃ. ୨୮ରୁ୧୨୦) ବର୍ଣ୍ଣନା କରିଛନ୍ତି । ବନପର୍ବ ଅନୁସାରେ ଶାକଲ୍ୟ ଦ୍ୱୀପର ସୋମବଂଶୀ ରାଜା ଇନ୍ଦ୍ରଦ୍ୟୁମ୍ନ (ଏହାଙ୍କ ପିତା ଗାଲମାଧବ କିନ୍ତୁ ଉପାଖ୍ୟାନ ସହିତ ଗାଲମାଧବ ସଂପୃକ୍ତ ନୁହନ୍ତି) ବିଷ୍ଣୁ-ପ୍ରତିମାର ସନ୍ଧାନ ନେବା ଲକ୍ଷ୍ୟରେ ବସୁକର ନାମକ ବ୍ରାହ୍ମଣକୁ ପଠାଇଥିଲେ । ମୂଷଳୀପର୍ବୋକ୍ତ

ଉପାଖ୍ୟାନ ଅନୁସାରେ ମତ୍ସ୍ୟରାଜ ବିରାଟଙ୍କ ପ୍ରପୌତ୍ର ଇନ୍ଦ୍ରଦ୍ୟୁମ୍ନ ବଡ଼ ଦେଉଳ ତୋଳାଇଥିଲେ ହେଁ ତାଙ୍କ ସମୟର ବହୁପୂର୍ବ କାଳରେ କାଞ୍ଚୀର ହରିହର (ପାଠାନ୍ତର ହୈହୟ) ବଂଶୀୟ ରାଜା ଗାଲମାଧବ ବାସୁଦେବ ଦାସ (ପାଠାନ୍ତର ବସୁଦେବ) ନାମକ ବ୍ରାହ୍ମଣ ଦୂତକୁ ନିଯୁକ୍ତ କରି ବିଷ୍ଣୁ-ପ୍ରତିମାର ସନ୍ଧାନ ନେଇସାରିଥିଲେ । ବନପର୍ବ ଅନୁସାରେ ନୀଳମାଧବ ପୂଜକ ଶବରର ନାମ ଜାରା କିନ୍ତୁ ମୂଷଳୀପର୍ବ ଅନୁସାରେ ସେ ଥିଲା ଜାରାର ପୁତ୍ର ବସୁ । ଦୁଇ ପର୍ବ ବର୍ଣ୍ଣିତ ଉପାଖ୍ୟାନ ମଧ୍ୟରେ ଆହୁରି ବହୁତ ଗୁରୁତର ବୈସାଦୃଶ୍ୟ ରହିଛି । କବି ସ୍ଥାନୀୟ କିମ୍ବଦନ୍ତୀକୁ ଗ୍ରହଣ କରିଥିଲେ ଏପରି ଦ୍ୱିବିଧତା ରହିନଥାନ୍ତା । ସେ କଳ୍ପନାରୁ ଉପାଖ୍ୟାନ ସୃଷ୍ଟି କରୁଥିବାରୁ ବହୁ ବର୍ଷର ବ୍ୟବଧାନ ଫଳରେ ସ୍ମୃତିଭ୍ରଂଶ ଯୋଗୁଁ ବୈସାଦୃଶ୍ୟ ଦେଖାଦେଲା ।

୨. ସାରଳା ମହାଭାରତର ବନପର୍ବ (୨ୟ ଖଣ୍ଡ ପୃ. ୮୧ ରୁ ୮୯) ଓ ସ୍ୱର୍ଗାରୋହଣ ପର୍ବ (ପୃ. ୩୫ ରୁ ୩୮) ମଧ୍ୟରେ ଏକାମ୍ର କ୍ଷେତ୍ରର ଉପାଖ୍ୟାନ ମଧ ଦୁଇ ପ୍ରକାରେ ଲେଖାଅଛି । ବନପର୍ବ ଅନୁସାରେ କ୍ରିତି ଓ ବାସନ ନାମକ ଦୁଇ ଅସୁର ଭାଇ ଲିଙ୍ଗରାଜଙ୍କୁ ସନ୍ତୁଷ୍ଟ କରାଇ ଅମରବର ପାଇଥିଲେ ଓ ପ୍ରବଳ ପ୍ରତାପୀ ହୋଇ ସ୍ୱର୍ଣ୍ଣାଦ୍ରି ଗଢ଼ିଥିଲେ । ସ୍ୱର୍ଗାରୋହଣ ପର୍ବରେ ଅସୁର ଦୁଇ ଭାଇଙ୍କ ନାମ ଲେଖାଅଛି କୀର୍ତ୍ତନ ଓ ବାସନ । ସେମାନେ ଅମରବର ପାଇବା କଥା ସେଠି ଲେଖା ହୋଇନାହିଁ । ସେଠି ଲେଖାଅଛି ପାର୍ବତୀ ସେମାନଙ୍କୁ ମାରିବା ଉଦ୍ଦେଶ୍ୟରେ ଗୋପାଳୁଣୀ ହୋଇ ଦହିନଉତି ଧରି ଯାଇ ଦୁଇ ଅସୁରଙ୍କୁ ଦହି ଖୁଆଇଥିଲେ । ବନ ପର୍ବରେ ଗୋପାଳୁଣୀ ବେଶ କଥା ଅଛି କିନ୍ତୁ ଦହି ଖୁଆଇବା ଚରିତ ଲେଖା ହୋଇନାହିଁ । ସ୍ୱର୍ଗାରୋହଣ ପର୍ବରେ ଏହି ଦୁଇ ଭାଇଙ୍କର ଆରଡ଼ କ ନାମକ ଅନ୍ୟ ଜଣେ ଭାଇ ଥିବା କଥା ଓ ଆରଡ଼କକୁ ଭୀମ ମାରିଥିବା ଚରିତ (ପୃ. ୩୯ ରୁ୪୯) ବର୍ଣ୍ଣିତ ହୋଇଛି । ବନପର୍ବରେ ଆରଡ଼କ ଚରିତ ନାହିଁ ।

୩. ଅମ୍ୱାସୁର ବଧ ଉପାଖ୍ୟାନ ବିରାଟ ପର୍ବ (ପୃ. ୫୦୨ ରୁ ୫୦୯) ଓ ମୂଷଳୀ ପର୍ବ (ପୃ. ୨୦ ରୁ ୨୭) ) ମଧ୍ୟରେ ରହିଛି । କିନ୍ତୁ, ଦୁଇ ଉପାଖ୍ୟାନ ମଧ୍ୟରେ ସାମଞ୍ଜସ୍ୟ ନାହିଁ ।

୪. ବିରାଟ ପର୍ବରେ ଉତ୍ତରା ବିବାହର ବିବରଣ ମଧ୍ୟରେ ମଧୁଶଯ୍ୟାର ବର୍ଣ୍ଣନା (ପୃ. ୬୯୪) ରହିଛି । ଉଦ୍‌ଯୋଗ ପର୍ବ (ପୃ. ୩୧) ଅନୁସାରେ ଉତ୍ତରାର ବିବାହ ଥିଲା ବାଲ୍ୟ ବିବାହ ଓ ସେ ଯୁବତୀ ହେବା ପରେ ଯାଇ ମଧୁଶଯ୍ୟା ହୋଇଥିଲା ।

୫. ସଭାପର୍ବରେ (୨ ସଭା ୫୧୪) ସୂର୍ଯ୍ୟ ତାଙ୍କ ପୁତ୍ର ଶନିଙ୍କ ବିବାହ ସୋମଦାସ ଗନ୍ଧର୍ବଙ୍କ କନ୍ୟା ଲୋହିତା ସହିତ କରାଇବା କଥା ଲେଖାଅଛି । କର୍ଣ୍ଣପର୍ବରେ (ପୃ. ୧୦୯) ସୋମଦାସ ଗନ୍ଧର୍ବ ନାମ ବଦଳିଯାଇ ବିଦ୍ୟାବର ବ୍ରାହ୍ମଣ ନାମ ଲେଖାଯାଇଛି ।

ଏ ଧରଣର ପାର୍ଥକ୍ୟ ପ୍ରଚୁର ରହିଛି । ଆଦ୍ୟ ପର୍ବଗୁଡ଼ିକରେ ପ୍ରଦତ୍ତ ରାଜା ଓ ରାକ୍ଷସମାନଙ୍କର ବଂଶାବଳୀଠାରୁ ପ୍ରାନ୍ତ ପର୍ବଗୁଡ଼ିକରେ ପ୍ରଦତ୍ତ ବଂଶାବଳୀଗୁଡ଼ିକର

ବିଶେଷ ପାର୍ଥକ୍ୟ ରହିଛି । ଏପରିକି ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କର ନାମ ଆଦିପର୍ବ (ପୃ.୧୯୭) ଓ କର୍ଣ୍ଣପର୍ବ (ପୃ. ୩୦)ରେ ଭିନ୍ନ ଭିନ୍ନ ଭାବରେ ଦିଆଯାଯାଇଛି । ମହାଭାରତ ପରି ବିଶାଳ ଗ୍ରନ୍ଥରେ ନାନା ସ୍ଥାନରେ ଦତ୍ତ ଉପାଖ୍ୟାନଗୁଡ଼ିକ ମଧ୍ୟରେ ସଂପୂର୍ଣ୍ଣ ମେଳ ରହିବା ସୁସାଧ୍ୟ ନୁହେଁ (ସଂସ୍କୃତ ମହାଭାରତରେ ମଧ୍ୟ ବହୁ ଅମେଳ ଦୃଷ୍ଟି-ଗୋଚର ହୁଏ) । କିନ୍ତୁ ସାରଳାଦାସଙ୍କ ଓଡ଼ିଆ ମହାଭାରତର ଆଦ୍ୟଭାଗ ଓ ପ୍ରାନ୍ତ ଭାଗ ମଧ୍ୟରେ ଅମେଳର ମାତ୍ରା ଅଧିକ ଓ ଆଧିକ୍ୟର କାରଣ କବି ସାରଳାଦାସଙ୍କର ବୟସର ବ୍ୟବଧାନ । ଯୌବନରେ ସେ ଯାହା କହିଥିଲେ ବାର୍ଦ୍ଧକ୍ୟରେ ତାକୁ ଅବିକୃତ ସ୍ମରଣ କରିହେଲା ନାହିଁ । ଏ ବିଷୟଟି ଆଲୋଚକଙ୍କ ଦୃଷ୍ଟିରେ ପଡ଼ିନାହିଁ ।

—

## ଦଶମ ଅଧ୍ୟାୟ

# ଚଣ୍ଡୀପୁରାଣ ବିମର୍ଶ

ପୁରାଣ ପରିକଳ୍ପନାରେ ଓ ରଚନା-ଶୈଳୀରେ ସାରାଳାଦାସଙ୍କର ଏକାନ୍ତ ଅନୁଗାମୀ ଥିଲେ 'ନୃସିଂହ ପୁରାଣ'ର ପ୍ରଣେତା ପୀତାମ୍ବର ଦାସ । ସେ ତାଙ୍କ ଗ୍ରନ୍ଥର ଦ୍ୱିତୀୟ ରତ୍ନାକରରେ (ରଚନା-କାଳ ଖ୍ରୀ. ୧୭୬୭) ନିଜେ ପୂର୍ବ ଜନ୍ମରେ କବି ସାରଳାଦାସ ଥିବା କଥା ଲେଖିଛନ୍ତି—

'ତହିଂ ଉତ୍ତାରୁ ଯାଇ ପଞ୍ଚମ ଜନ୍ମେ ପୁଣ ।
ସାରଳାଦାସ କବି ହୋଇଛି ଜଗତେଣ ।।
ଶ୍ରୀ ମହାଭାରତ ବାନ୍ଧିଲି ପ୍ରାକୃତେ ।
ଅଠର ଖଣ୍ଡ ହୋଇଣ ରହିଲା ଜଗତେ ।।
ତହିଂ ଉତ୍ତାରୁ ବାନ୍ଧିଲି ଚଣ୍ଡିକା ପୁରାଣ ।
ସାଧୁଙ୍କ କଲ୍ୟାଣୁ ମୁଁ ଅଟଇ ବଡ଼ଜଣ ।

ପୀତାମ୍ବରଙ୍କ ଦ୍ୱାରା ନାମିତ ଚଣ୍ଡିକା ପୁରାଣ 'ଚଣ୍ଡୀପୁରାଣ' ନାମରେ ସୁବିଦିତ । ଚଣ୍ଡୀପୁରାଣର ପରିଶୁଦ୍ଧ ସଂପାଦନା ହୋଇପାରିନାହିଁ । ମୁଁ ପଢ଼ିଥିବା ତାଳପତ୍ର ପୋଥିରେ ଗ୍ରନ୍ଥାରମ୍ଭ ପୂର୍ବରୁ 'ଶ୍ରୀ ଚଣ୍ଡୀପୁରାଣ ଲେଖ୍ୟ' ନାମ ରହିଛି ଓ ଗ୍ରନ୍ଥର ଶେଷ ଆଡ଼କୁ ମାତ୍ର ଗୋଟିଏ ସ୍ଥାନରେ 'ଚଣ୍ଡୀପୁରାଣ' ନାମ ଲେଖାଅଛି—

ଶୁଣ ପରୀକ୍ଷ ରାଜା ବଦୟନ୍ତି ଶୁକ ବ୍ରହ୍ମା ।
ଚଣ୍ଡୀପୁରାଣ କଥା ଏସନେକ ମହିମା ।।

ଗ୍ରନ୍ଥ ମଧ୍ୟରେ ମୋଟ ୨୮ଟି ସ୍ଥାନରେ ଗ୍ରନ୍ଥର ନାମର ଓ ଚରିତର ସୂଚନା ରହିଛି, ଯଥା— ୧. ଚଣ୍ଡିକା ଶାସ୍ତ୍ର (୭ଟି ସ୍ଥାନରେ), ୨. ଚଣ୍ଡିଶାସ୍ତ୍ର (୪ଟି ସ୍ଥାନରେ), ୩. ଚଣ୍ଡିଯୁଦ୍ଧ (୨ଟି ସ୍ଥାନରେ), ୪. ଚଣ୍ଡିକା ଯୁଦ୍ଧ (୧ ସ୍ଥାନରେ), ୫. ଚଣ୍ଡି-ମହିମା (୧ ସ୍ଥାନରେ), ୬. ଦୁର୍ଗା ଚରିତ (୧ ସ୍ଥାନରେ), ୭. ମହିଷା (୧ ସ୍ଥାନରେ), ୮. ବିଷ୍ଣୁପୁରାଣ (୫ଟି ସ୍ଥାନରେ) ୯. ଭାଗବତ (୪ଟି ସ୍ଥାନରେ) ଓ ୧୦. ଚଣ୍ଡିପୁରାଣ (୧ ସ୍ଥାନରେ) ।

ସଂସ୍କୃତରେ 'ଚଣ୍ଡୀପୁରାଣ' ନାମରେ କୌଣସି ପୁରାଣ ନାହିଁ । ମାର୍କଣ୍ଡେୟ ପୁରାଣର ୧୩ ଅଧ୍ୟାୟ ବିଶିଷ୍ଟ 'ଦେବୀମାହାତ୍ମ୍ୟ' ଚଣ୍ଡୀ ନାମରେ ଖ୍ୟାତ ଓ ତାହାର ଉପଯୋଗ ଚଣ୍ଡୀପାଠରେ ହୁଏ । ଏହି ଶାକ୍ତ ରଚନାଟିକୁ ବୈଷ୍ଣବ ଭଗବଦ୍‌ଗୀତାର

ପ୍ରତିସ୍ପର୍ଦ୍ଧା କରାଇବା ଲକ୍ଷ୍ୟରେ କୃତ୍ରିମ ଉପାୟରେ (ଠାଏଁ ଠାଏଁ ଗୋଟିଏ ଶ୍ଳୋକକୁ ଚାରିଟି ଶ୍ଳୋକ ଭାବରେ ଗଣି) ତାକୁ ସପ୍ତଶତୀ କରାଇ ଦିଆଯାଇଛି ଓ ତାହାକୁ 'ଦୁର୍ଗା ସପ୍ତଶତୀ' ବୋଲାଯାଇଛି । ସାରଳାଦାସ ତାଙ୍କ ମହାଭାରତରେ ଏହି ଚଣ୍ଡୀକୁ ଚଣ୍ଡୀପୁରାଣ ବୋଲି ନାମିତ କରିଛନ୍ତି–

''ଶିଳା ଦେବତାଙ୍କୁ ଯେ ବିଧି ସ୍ନାହାନ ।
ଚଣ୍ଡୀପୁରାଣ ସଂହିତା ମାରକଣ୍ଡ ଆଧ୍ୟାନ ।। (ବିରାଟ, ୬୮୧)

କିନ୍ତୁ, ମାର୍କଣ୍ଡେୟ ପୁରାଣର 'ଚଣ୍ଡୀ' ଠାରୁ ସାରଳାଦାସଙ୍କ ଚଣ୍ଡୀପୁରାଣର ଚରିତ ଭିନ୍ନ । ଏହାର ବିଷୟବସ୍ତୁକୁ କବି ବିଭିନ୍ନ ପୁରାଣରୁ ଆହରଣ କରିଛନ୍ତି– ଅନୁବାଦ କରିନାହାନ୍ତି– ବୋଲି ଜଣାଇଛନ୍ତି ।

''ଅଷ୍ଟାଦଶ ପୁରାଣରୁ ଠିକ ଠିକ ବାଛି ।
ମୁହିଂ ତାହା ମାନବ ଲେଖନ କରୁଅଛି ।''

ସାରଳାଦାସ ଦେବଦେବୀଙ୍କ ଚରିତ ବିଷୟକ ସବୁ ଗ୍ରନ୍ଥକୁ ପୁରାଣ ନାମରେ ଅଭିହିତ କରିଛନ୍ତି । ପଞ୍ଚଲକ୍ଷଣ/ଦଶଲକ୍ଷଣକୁ ଧରି ସଂସ୍କୃତରେ ପୁରାଣ/ମହାପୁରାଣ ହେବା ବ୍ୟବସ୍ଥାକୁ ସେ ମାନି ନଥିବା କଥା ପୂର୍ବରୁ ଦେଖାଇ ଦିଆଯାଇଛି । ଏପରିକି ସଂସ୍କୃତର ଦୁଇ ମହାକାବ୍ୟ ମହାଭାରତ ଓ ରାମାୟଣ ତାଙ୍କ ବିଚାରରେ ପୁରାଣ । ସେହି ବିଚାରକୁ ନେଇ ଚଣ୍ଡୀପୁରାଣ ନାମକରଣ ହୋଇଛି ।

ମାର୍କଣ୍ଡେୟ ପୁରାଣର ଅନ୍ତର୍ଗତ ଚଣ୍ଡୀର ପରିକଳ୍ପନାରେ ଗୋଟିଏ ବିଶେଷତ୍ୱ ରହିଛି । ଏହା ମୋଟ ୧୩ ଅଧ୍ୟାୟ ବିଶିଷ୍ଟ । ଏହାର ପ୍ରଥମ ଅଧ୍ୟାୟରେ ଦେବୀ ମହାକାଳୀ ଆବିର୍ଭୂତ ହୋଇ ମଧୁ ଓ କୈଟଭ ନାମକ ଦାନବ ଦ୍ୱୟଙ୍କୁ ବଧ କରିବା ଚରିତ ରହିଛି । (ଏହି ଅଧ୍ୟାୟର ଶେଷ ଏକ-ତୃତୀୟାଂଶରେ ଦେବୀଙ୍କ ସ୍ତୁତି ରହିଛି) । ପରବର୍ତ୍ତୀ ତିନୋଟି ଅଧ୍ୟାୟରେ ଦେବୀ ମହାଲକ୍ଷ୍ମୀ ଆବିର୍ଭୂତ ହୋଇ ମହିଷାସୁରକୁ ନିହତ କରିବା ବିଷୟ ବର୍ଣ୍ଣିତ ହୋଇଛି (ଏହାର ଏକ-ତୃତୀୟାଂଶ ଅର୍ଥାତ୍ ସମଗ୍ର ଚତୁର୍ଥ ଅଧ୍ୟାୟରେ ଦେବୀଙ୍କ ସ୍ତୁତି ହିଁ ରହିଛି) । ଶେଷ ନଅଟି ଅଧ୍ୟାୟରେ ଦେବୀ ମହାସରସ୍ୱତୀ ଆବିର୍ଭୂତ ହୋଇ ଶୁମ୍ଭାସୁରକୁ ବଧ କରିବା ଆଖ୍ୟାନ ବର୍ଣ୍ଣିତ ହୋଇଛି (ଏହାର ଏକ-ତୃତୀୟାଂଶ ଅର୍ଥାତ୍ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟରେ ଦେବୀଙ୍କ ସ୍ତୁତି ହିଁ ରହିଛି) । ଚଣ୍ଡୀର ପରିକଳ୍ପନାରେ ତିନ୍ନି ସଂଖ୍ୟାର ପ୍ରାଧାନ୍ୟର ରହସ୍ୟ ନିଗୂଢ଼ । ଏଥିରେ ମୁଖ୍ୟ ଦେବୀ ମହାଲକ୍ଷ୍ମୀ । ମହାକାଳୀ ଓ ମହାସରସ୍ୱତୀ ମହାଲକ୍ଷ୍ମୀଙ୍କଠାରୁ ପ୍ରକଟ ହୋଇଥିବା ପରିକଳ୍ପନା ଏଥିରେ ଥିଲେ ହେଁ ଚଣ୍ଡୀର ପ୍ରାୟ ଶତକଡ଼ା ସତୁରି ଭାଗ (୯ଟି ଅଧ୍ୟାୟ) ମହାସରସ୍ୱତୀଙ୍କ ବିଷୟକ । ଏହାର ବର୍ଣ୍ଣନାରେ ଶୁମ୍ଭାସୁରର ଜଣେ ସେନାପତିର ନାମ ଚଣ୍ଡ ଓ ମହାସରସ୍ୱତୀ ଶୁମ୍ଭାସୁରକୁ ନିହତ କରିବା ପୂର୍ବେ ଚଣ୍ଡକୁ ବଧ କରିବା ପରେ

ଦେବୀ 'ଚଣ୍ଡୀ' ନାମ ଧାରଣ କରିଥିଲେ ବୋଲି କୁହାଯାଇଛି । ତେଣୁ, ମଧୁକୈଟଭ ଓ ମହିଷାସୁର ବଧ ସହିତ ଚଣ୍ଡବଧର ସଂପର୍କ ନଥିଲେ ହେଁ ସମଗ୍ର ଦେବୀ ମାହାତ୍ମ୍ୟ 'ଚଣ୍ଡୀ' ବୋଲାଇବା ଯୁକ୍ତିଯୁକ୍ତ ନୁହେଁ । ସାରଳାଦାସ ଚଣ୍ଡୀପୁରାଣରେ ଦେବୀମାହାତ୍ମ୍ୟ ପରିକଳ୍ପନାର ଏହି ଦୋଷକୁ ସୁଧାରିଛନ୍ତି ।

ଭିନ୍ନ ଭିନ୍ନ ପୁରାଣରେ ମହିଷାସୁର ବଧ ଚରିତ ସ୍ଥାନ ପାଇଛି କିନ୍ତୁ ବିଭିନ୍ନ ପୁରାଣରେ ଚରିତ ଭିନ୍ନ ଭିନ୍ନ ରୂପ ଗ୍ରହଣ କରିଛି, ଏପରିକି ଗୋଟିଏ ପୁରାଣରେ ମଧ୍ୟ ସ୍ଥାନ ଭେଦରେ ଚରିତ ବଦଳିବା ଦେଖିବାକୁ ମିଳେ ।

ଉଲ୍ଲେଖନୀୟ କଥା ଯେ ମହିଷାସୁର ଆଖ୍ୟାନର ପ୍ରାଚୀନ ରୂପରେ ଦେବୀ ସ୍ଥାନ ପାଇନଥିଲେ । ପୁରାଣଗୁଡ଼ିକ ଅପେକ୍ଷା ପ୍ରାଚୀନ ହେଉଛି ମହାଭାରତ । ସଂସ୍କୃତ ମହାଭାରତ ଅନୁସାରେ ମହିଷାସୁରକୁ ବଧ କରିଥିଲେ ଦେବ ସେନାପତି କାର୍ତ୍ତିକେୟ (ବନପର୍ବ, ୨୩୧ ଅଧ୍ୟାୟ) । ତଦନୁସାରେ କାର୍ତ୍ତିକେୟ ଜନ୍ମ ଲାଭ କରିବାର ଷଷ୍ଠ ଦିନରେ ('ଛ' ସଂଖ୍ୟାଟି ଷଣ୍ମୁଖ ଷଣ୍ମାତୁର କାର୍ତ୍ତିକେୟଙ୍କ ଏକ ବିଶେଷ ସଂଖ୍ୟା) ମହିଷାସୁର ବିପକ୍ଷରେ ଯୁଦ୍ଧ ଯାତ୍ରା କରି ତାକୁ ନିହତ କରିଥିଲେ । ପଦ୍ମପୁରାଣର ଆବନ୍ତ୍ୟଖଣ୍ଡ ଅନୁସାରେ ମହିଷାସୁର 'ଅମରକଣ୍ଟକ' (ଅର୍ଥାତ୍ ଦେବତାଙ୍କ ପ୍ରତିପକ୍ଷ) ବୋଲାଉଥିଲା ଓ ତାହାକୁ ବିନାଶ କରିଥିଲେ ଶିବ ବା ରୁଦ୍ରଗଣ । ତେଣୁ ମହିଷାସୁର ଆଖ୍ୟାନର ମୂଳ ବୀଜରେ ଦେବୀ ନଥିଲେ । ଋଗ୍‌ବେଦର ପ୍ରାଚୀନତର ଅଂଶରେ 'ମହିଷ' ଶବ୍ଦ ରହିଛି । ସେଠି ମହିଷର ଅର୍ଥ ପଶୁବିଶେଷ ନୁହେଁ କି ଅସୁରବିଶେଷ ନୁହେ । ସେଠି ମହିଷର ଅର୍ଥ ବିରାଟ, ପ୍ରଭୂତ ଶକ୍ତିଶାଳୀ (ଋଗ୍‌ବେଦ ୮/୧୨/୮) । ଏକ ମହାପରାକ୍ରମୀ ଅସୁର ଭାବରେ 'ମହିଷାସୁର' ନାମଟି ଆସିଥିଲା ଓ 'ମହିଷ'ର ଅନ୍ୟ ଅର୍ଥ ମଇଁଷି ହେବାରୁ ପଶୁ ମଇଁଷି ସହିତ ଆଖ୍ୟାନଟି ଯୋଡ଼ି ହୋଇଗଲା । ଆଖ୍ୟାନରେ ଦେବାସୁର ଯୁଦ୍ଧ କଥା ହିଁ ରହିଛି, ଯାହା ଅନ୍ୟାନ୍ୟ ବହୁ ପୌରାଣିକ ଆଖ୍ୟାନରେ ରହିଛି । ସବୁ ଆଖ୍ୟାନର ପରିଣତି ପରି ଏଠାରେ ମଧ୍ୟ ଦେବ ପକ୍ଷଙ୍କ ବିଜୟ ଓ ଅସୁର ପକ୍ଷଙ୍କ ପରାଜୟ ରହିଛି ।

ବିଖ୍ୟାତ ଐତିହାସିକ ଡି.ଡି. କୋଶମ୍ବୀ ତାଙ୍କ 'ପ୍ରାଚୀନ ଭାରତର ସଂସ୍କୃତି ଓ ସଭ୍ୟତା' (୧୯୬୫) ଗ୍ରନ୍ଥରେ ମହିଷକୁ ପଶୁପାଳକ ସମାଜର ଉପାସ୍ୟ ଦେବତା ଓ ଦେବୀଙ୍କୁ ପ୍ରାଚୀନତର ସଭ୍ୟତାର ଖାଦ୍ୟସଂଗ୍ରାହୀ ମାତୃଦେବୀ ପୂଜକ ସମାଜର ଉପାସ୍ୟ ବୋଲି ଗ୍ରହଣ କରି ଆଖ୍ୟାନରେ ଦୁଇ ସ୍ତରର ସଭ୍ୟତା ମଧ୍ୟର ସଂଘର୍ଷର କଳ୍ପନା କରିଛନ୍ତି । ସେ ପୁଣି ମହିଷ ଓ ମହେଶ ମଧ୍ୟରେ ସାମଞ୍ଜସ୍ୟ ଦେଖିଛନ୍ତି, ଦେବୀ (କାଳୀ) ମହେଶଙ୍କୁ ଭୂଶାୟିତ କରି ତାଙ୍କ ଉପରେ ଆରୂଢ଼ା ହେବା ସହିତ ମହିଷାସୁରକୁ ନିହତ କରିବା ଭିତରେ ସମଧର୍ମିତା ଲକ୍ଷ୍ୟ କରିଛନ୍ତି । କିନ୍ତୁ ତାଙ୍କ ବ୍ୟାଖ୍ୟାର ଦୁର୍ବଳତା ଦ୍ୱିବିଧ । ପ୍ରଥମ କଥା, ଦେବୀ ପ୍ରାଚୀନତର ଖାଦ୍ୟସଂଗ୍ରାହୀ ସଭ୍ୟତାର ପ୍ରତୀକ ଓ

ମହିଷ ପଶୁପାଳନ ସଭ୍ୟତାର ପ୍ରତୀକ ହେଲେ ଆଖ୍ୟାନରେ 'ମହିଷ' ବିଜୟୀ ହୋଇଥାନ୍ତା । ଦ୍ୱିତୀୟ କଥା, ମହିଷାସୁର ଆଖ୍ୟାନର ପ୍ରତ୍ନସ୍ତରରେ ଦେବୀଙ୍କର ଭୂମିକା ନଥିଲା ।

ସାରଳାଦାସ ମହାଭାରତ ରଚନା କରିଥିଲେ ହେଁ ସେ ସଂସ୍କୃତ ମହାଭାରତ ବର୍ଣ୍ଣିତ ମହିଷାସୁର ବଧ ଆଖ୍ୟାନକୁ ଗ୍ରହଣ କରିନାହାନ୍ତି । ପୁରାଣ ଚରିତରେ ମହିଷାସୁର ନିହନ୍ତ୍ରୀ ଦେବତାମାନଙ୍କ ସମ୍ମିଳିତ ତେଜୋପୁଞ୍ଜରୁ ଜାତ ଦେବୀ; ସେ ଅଗ୍ନିପୁତ୍ର କି ଶିବପୁତ୍ର କାର୍ତ୍ତିକେୟ ନୁହନ୍ତି । ବାମନ ପୁରାଣ ଓ ଦେବୀ ଭାଗବତ ଅନୁସାରେ ରମ୍ଭାସୁରର ପୁତ୍ର ମହିଷା ଥିଲା ଅଗ୍ନି ଉପାସକ ଓ ଅଗ୍ନିଙ୍କ ବର ପାଇ ଅତି ଦୃପ୍ତ । ବାମନ ପୁରାଣ ଅନୁଯାୟୀ ଗୋଟିଏ ମଇଁଷି ଓ ରମ୍ଭାସୁରର ମିଳନରୁ ମହିଷାସୁର ଜନ୍ମିଥିଲା, ଯାହାକୁ ବଧ କରିଥିଲେ କାତ୍ୟାୟନୀ; ଚଣ୍ଡୀ ନୁହନ୍ତି । ବରାହ ପୁରାଣ ଅନୁସାରେ ମହିଷାସୁର ଥିଲା ମାହିଷ୍ମତୀ ପୁରୀର ଅଧୀଶ୍ୱର । ମାହିଷ୍ମତୀ ସହସ୍ରାର୍ଜୁନ କାର୍ତ୍ତବୀର୍ଯ୍ୟଙ୍କ ରାଜଧାନୀ ଭାବରେ ସୁବିଦିତ । ଏହା ଆଧୁନିକ ମହିସୁର (ମହିଷପୁରର ରୂପାନ୍ତର) ବୋଲି କୁହାଯାଏ; କିନ୍ତୁ ତାହା ନର୍ମଦା ନଦୀ ତୀରସ୍ଥ ବୋଲି ମଧ୍ୟ ଚିହ୍ନଟ ହୁଏ । ଯାହାବା ହେଉ, ତାହା ଦାକ୍ଷିଣାତ୍ୟର । ଯମ ଦକ୍ଷିଣ ଦିଗର ଅଧିପତି ଓ ତାଙ୍କର ବାହନ ମଣିଷ । ସାରଳାଦାସ ଏହି ଖିଅ ଧରି ମହିଷାସୁରକୁ ଯମର ବାହନର ଔରସରୁ ଜାତ ଓ ତାହାର ଅଧିଷ୍ଠାନ ସିଂହଳ ବୋଲି ନିର୍ଣ୍ଣୟ କରିଛନ୍ତି । ବରାହ ପୁରାଣରେ ମହିଷାସୁର ସହିତ ବୈଷ୍ଣବୀ ଶକ୍ତି ବିଷ୍ଣୁମାୟା ଦଶହଜାର ବର୍ଷ ଯୁଦ୍ଧ କରି ତାକୁ ନିହତ କରିଥିବା କଥା ଲେଖାଅଛି । ଦୂର ଅତୀତର ସଂସ୍କୃତ ପୁରାଣକାରମାନଙ୍କ ପଦାନୁଗ ହୋଇ ସାରଳାଦାସ ମଧ୍ୟ ମହିଷାସୁର ଚରିତରେ ଅନେକ ପରିବର୍ତ୍ତନ ଆଣିଥିଲେ । ସେ ଘଟାଇଥିବା ପରିବର୍ତ୍ତନର ଆଭିମୁଖ୍ୟ କିଛି କିଛି ଅନୁମାନ କରି ହେଉଛି । ସାରଳାଦାସଙ୍କ ମହାଭାରତ ପରି ଚଣ୍ଡୀପୁରାଣ ମଧ୍ୟ ଏକ ମୌଳିକ ପୁରାଣ, କବିଙ୍କ ବିସ୍ମୟୋଦ୍ଦୀପକ କଳ୍ପନା-କୃଷ୍ଟିର ଉତ୍ପାଦନ, କମାରୁ ଅନୁବାଦ ନୁହେଁ ।

ମାର୍କଣ୍ଡେୟ ପୁରାଣ ପରେ ଦେବୀ-ଭାଗବତ ରଚିତ ହୋଇଛି । ଏଥିରେ ମଧ୍ୟ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କ ଆଖ୍ୟାନ ପୃଥକ୍ ପୃଥକ୍ ଭାବରେ ବର୍ଣ୍ଣିତ ହୋଇଛି, କିନ୍ତୁ ବର୍ଣ୍ଣନାର ବିସ୍ତାର ଦୃଷ୍ଟିରୁ ବିଚାର କଲେ ସେଥିରେ ମହିଷାସୁର-ନିହନ୍ତ୍ରୀ ମହାଲକ୍ଷ୍ମୀ ପ୍ରାଧାନ୍ୟ ପାଇଛନ୍ତି । ଦେବୀ-ଭାଗବତର ପଞ୍ଚମ ସ୍କନ୍ଧର ୩୫ଟି ଅଧ୍ୟାୟରେ ଦେବୀମାହାତ୍ମ୍ୟ ସ୍ଥାନ ପାଇଛି । ଏହାର ପ୍ରଥମ ଅଧ୍ୟାୟରେ ମହାକାଳୀଙ୍କ ଦ୍ୱାରା ମଧୁ କୈଟଭ ଦୈତ୍ୟଙ୍କ ବଧ ବିଷୟ ବର୍ଣ୍ଣିତ ହୋଇଛି । ପରବର୍ତ୍ତୀ ୧୯ଟି ଅଧ୍ୟାୟରେ ମହାଲକ୍ଷ୍ମୀଙ୍କ ଦ୍ୱାରା ମହିଷାସୁର ନିହତ ହେବା କଥା ରହିଛି ଓ ଅବଶିଷ୍ଟ ୧୫ ଅଧ୍ୟାୟରେ ମହାସରସ୍ୱତୀଙ୍କ ଦ୍ୱାରା ଶୁମ୍ଭ-ନିଶୁମ୍ଭ ଆଦିଙ୍କ ନିଧନ ରଚିତ ସ୍ଥାନ ପାଇଛି । ଜଣାଯାଉଛି

ସାରଳାଦାସ ଦେବୀଙ୍କ ତ୍ରିବିଧତାକୁ ପସନ୍ଦ ନ କରି ତାଙ୍କୁ ଏକମାତ୍ର ମହାଦେବୀରେ ପରିଣତ କରାଇଛନ୍ତି ଓ ମହିଷାସୁରକୁ ସବୁ ଅସୁରଙ୍କ ଅଧୀଶ୍ୱର କରାଇ (ଋଗ୍‌ବେଦୋକ୍ତ 'ମହିଷ' କରାଇ) ଦେବୀ ଓ ଅସୁର ମଧ୍ୟର ଯୁଦ୍ଧକୁ ଚୂଡ଼ାନ୍ତ କରାଇଛନ୍ତି । ପରିଣାମରେ ତାଙ୍କ ଦେବୀ ହୋଇଛନ୍ତି 'ଏକାନଂଶା', ଯେ କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ପୂଜା ପାଇବା ଚିତ୍ର ବରାହମିହିରଙ୍କ ବୃହତ୍ ସଂହିତାରେ ରହିଛି ।

ସାରଳାଦାସଙ୍କ ଚଣ୍ଡୀପୁରାଣ ଅନୁସାରେ ମହାଦେବୀ ୩୩ କୋଟି ଦେବତାଙ୍କର ସମ୍ମିଳିତ ରୋଷାଗ୍ନିରୁ ଜାତ ହୋଇ ମହିଷାସୁର ଓ ତାହାର ସେନାପତିମାନଙ୍କୁ (ଚଣ୍ଡ, ମୁଣ୍ଡ, ଶୁମ୍ଭ, ନିଶୁମ୍ଭ ଆଦିଙ୍କୁ) ବଧ କରିଥିଲେ । କିନ୍ତୁ, ମଧୁ-କୈଟଭଙ୍କୁ ନାରାୟଣ ଚକ୍ରରେ ନିହତ କରିଥିଲେ । ହରିଙ୍କ ମଧୁ-କୈଟଭ ବଧ ଚରିତ ପ୍ରାଚୀନତର ଓ ଅଧିକ ମାନ୍ୟତା ପ୍ରାପ୍ତ– ''ହରେ ମୁରାରେ ମଧୁକୈଟଭାରେ × × × ନିରାଶ୍ରୟୋ ମାଂ ଜଗଦୀଶ ରକ୍ଷ'' ।

ଚଣ୍ଡୀପୁରାଣର ଚରିତ ଅନୁସାରେ ବଜ୍ରସିଂହର ପୁତ୍ର କପିଳସିଂହର ରାଣୀକୁ ଯମର ବାହନ ମହିଷ ସମ୍ଭୋଗ କରି ଗର୍ଭବତୀ କରାଇଲା । ଫଳରେ ମହିଷମୁଣ୍ଡ ଥିବା ବଳବାନ୍ ପୁତ୍ରଟିଏ ଜାତ ହେଲା । ସେ ହେଲା ମହିଷାସୁର । ପତ୍ନୀ ଏକ ମହିଷମୁଣ୍ଡ ଥିବା ସନ୍ତାନ ପ୍ରସବ କରିବାରୁ ଲଜ୍ଜିତ ହୋଇ କପିଳ ସିଂହ ନିଜ ରାଜ୍ୟ ଛାଡ଼ି ସିଂହଳ ଦ୍ୱୀପକୁ ଯାଇ ଯୋଜନାବଳୀ ନଗର ପ୍ରତିଷ୍ଠା କରି ରହିଲା । ମହିଷାସୁର କଠୋର ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ପ୍ରସନ୍ନ କରାଇ ଚତୁର୍ଭୁଜ ପାଇଲା ଓ କୌଣସି ପୁରୁଷ ତାକୁ ମାରି ପାରିବ ନାହିଁ, ଯେଉଁ ନାରୀ ତାର 'ଜାନୁ-ଯଉବନ' ଦେଖାଇବ ସେ ହିଁ ମାରି ପାରିବ ବୋଲି ବର ପାଇ ଯୋଜନାବଳୀରେ ରହି ଅସୁରମାନଙ୍କୁ ନେତୃତ୍ୱ ଦେଇ ରାଜତ୍ୱ କଲା । ମହିଷାସୁର ଜମ୍ବୁଦ୍ୱୀପ ସମେତ ସପ୍ତ ଦ୍ୱୀପକୁ ଜିଣିଲା । ସେହି ସମୟରେ କୁଳାବଙ୍କୁ ପାଟଣାରେ ଶୁମ୍ଭ-ନିଶୁମ୍ଭ ଦୁଇ ଭାଇ ଦୈତ୍ୟ ଶାସନ କରୁଥିଲେ । ଏ ଦୁହେଁ ବ୍ରହ୍ମାଙ୍କୁ ପ୍ରସନ୍ନ କରାଇ ବର ପାଇଥିଲେ ଯେ ଏମାନେ ପରସ୍ପର ମୁଣ୍ଡରେ ହାତ ଥୋଇଲେ ହିଁ ମରିବେ, ଅନ୍ୟଥା ମରିବେ ନାହିଁ (ବିହ୍ଲଣଙ୍କ ବିକ୍ରମଦେବ ଚରିତରେ ଭସ୍ମାସୁର ଆଖ୍ୟାନ ଅଛି, ସେଠି ଭସ୍ମାସୁର ଶିବଙ୍କଠାରୁ ବର ପାଇଥିଲା ଯେ ସେ ଯାହା ମୁଣ୍ଡରେ ହାତ ଥୋଇବ ସେ ମରିବ । ସାରଳାଦାସ ମୃତ୍ୟୁପ୍ରାପ୍ତି ଉପାୟକୁ ଶୁମ୍ଭ-ନିଶୁମ୍ଭଙ୍କୁ ଦେଇ ଦୁଇଭାଇ ମଧ୍ୟର ପରସ୍ପର ନିର୍ଭରତାକୁ ଦୃଢ଼ କରିଛନ୍ତି ଓ ଶିବଙ୍କୁ ହଟହଟାରୁ ରକ୍ଷା କରିଛନ୍ତି) । ମହିଷାସୁର ଶୁମ୍ଭନିଶୁମ୍ଭଙ୍କୁ ପରାସ୍ତ କରି ନ ପାରି ସେମାନଙ୍କୁ ନିଜର ସେନାପତି କରାଇଲା ଓ ଐରାବତ, ଉଚ୍ଚୈଶ୍ରବା, ରମ୍ଭା (ଅପ୍‌ସରା) ଓ ପାରିଜାତ ପାଇବା ଉଦ୍ଦେଶ୍ୟରେ ସ୍ୱର୍ଗ ଉପରେ ଆକ୍ରମଣ କଲା । ଦେବତାମାନେ ଭୟାକୁଳ ହେବାରୁ ବ୍ରହ୍ମା ମହିଷାସୁର ଜଣେ ନାରୀ ଦ୍ୱାରା ହିଁ ମରିବ ବୋଲି ତାହାର ମୃତ୍ୟୁଭେଦ କହିଦେଲେ ।

ଦେବଗଣଙ୍କ ପ୍ରାର୍ଥନା ରକ୍ଷା କରି ସବୁ ଦେବତାଙ୍କ ସମ୍ମିଳିତ ରୋଷଜାତ ଅଗ୍ନିରୁ ସହସ୍ରଭୁଜା ମହାବୈଷ୍ଣବୀ ଦେବୀ ଆବିର୍ଭୂତ ହେଲେ । ସବୁ ଦେବ ତାଙ୍କୁ ସ୍ୱସ୍ୱ ଆୟୁଧ ଦେଲେ । ଦେବୀ ଯୋଜନାବଳୀ ନିକଟସ୍ଥ ରତ୍ନଗିରିକୁ ଯାଇ ନିଜ ସହସ୍ର ଭୁଜକୁ ଲୁଚାଇ ଜଣେ ମୋହିନୀ ନାରୀ ରୂପରେ ଉଭା ହେଲେ । ଚଣ୍ଡମୁଣ୍ଡ ମୋହିନୀଙ୍କୁ ଦେଖି ରୂପରେ ମୋହିତ ହୋଇ ମହିଷାସୁରକୁ ଯାଇ କହିଲେ । ମହିଷାସୁର ସେହି ସୁନ୍ଦରୀକୁ ଧରି ଆଣିବାକୁ ଚଣ୍ଡମୁଣ୍ଡଙ୍କୁ କହିବାରୁ ସେ ଦୁହେଁ ମୋହିନୀଙ୍କୁ ଟାଣିଲେ । ଦେବୀ ରୋଷାୟିତ ନେତ୍ରରେ ଚାହିଁବାରୁ ଅସୁର ଦୁହେଁ ମଲେ । ଦେବୀ ଅଷ୍ଟଭୁଜା ରୂପ ଧରି ଚଣ୍ଡମୁଣ୍ଡଙ୍କ ସହିତ ଆସିଥିବା ଅସୁରମାନଙ୍କୁ ନିପାତ କରି ପୁଣି ମୋହିନୀ ରୂପ ଧରିଲେ । ଚଣ୍ଡମୁଣ୍ଡ ନ ଫେରିବାରୁ ମହିଷାସୁର ଶୁମ୍ଭନିଶୁମ୍ଭଙ୍କୁ ପଠାଇଲା । ଶୁମ୍ଭନିଶୁମ୍ଭ ଅନ୍ୟଥା ମରିବେ ନାହିଁ ବୋଲି ଜାଣି ମୋହିନୀ ତାଙ୍କୁ ନୃତ୍ୟରଙ୍ଗରେ ଭୋଳ କରି ନଚାଇଲେ । ସେ ଦୁହେଁ ନୃତ୍ୟରେ ତନ୍ମୟ ହୋଇ ପରସ୍ପର ମୁଣ୍ଡରେ ହାତ ଦେବାରୁ ଉଭୟେ ମଲେ । ଶେଷରେ ମହିଷାସୁର ସସୈନ୍ୟ ଆସିଲା । ଦେବୀ ସ୍ୱଦେହରୁ ବିଭିନ୍ନ ଶକ୍ତି (କାତ୍ୟାୟନୀ, ଯୋଗିନୀ ଆଦିଙ୍କୁ) ସୃଷ୍ଟି କଲେ ଓ ଘୋର ଯୁଦ୍ଧ ପରେ ଶକ୍ତିମାନେ ସବୁ ଦୈତ୍ୟଙ୍କୁ ନିପାତ କଲେ । ପରିଶେଷରେ ଯୁଦ୍ଧର ଚତୁର୍ଦ୍ଦଶ ଦିବସରେ ଆଶ୍ୱିନ ଶୁକ୍ଳ ସପ୍ତମୀ ଦିନ ଦୁର୍ଗା ମହିଷାକୁ ମାଡ଼ି ବସିଲେ । ମହିଷା ଜାନୁ-ଯଉବନ ନ ଦେଖିଲେ ମରିବ ନାହିଁ ବୋଲି ସର୍ବମଙ୍ଗଳା ନବମୀ ଦିନ ଜଣାଇବାରୁ ଦୁର୍ଗା ଅନନ୍ୟୋପାୟ ହୋଇ ଅସୁରକୁ ଜାନୁ-ଯଉବନ ଦେଖାଇଲେ । ମହିଷାସୁର ମଲା ।

ସାରଳାଦାସ ନାରୀମାତ୍ରେ ଦେବୀ-ରୂପା ବୋଲି ବିଚାର ଚଣ୍ଡୀପୁରାଣରେ ପ୍ରକଟ କରିଛନ୍ତି—

"ଜାତ କାଳେ ଆମ୍ଭେ ବାଳୁତ ରୂପ ହେଉ ।
ଯୁବାକାଳେ ଭାରିଯା ରୂପେ ଶୃଙ୍ଗାର ଉପୁଜାଉ ।।
ଅନ୍ତକାଳେ ହୋଉ କାଳିକା ମୂରତି ।
ଶେଷକାଳେ ହୋଉ ଅନଳ ବହତି ।"

× × ×

ଆରେ ମାତା ରୂପ ହୋଇ ଜାତ କରାଉ ।
ଭାରିଯା ରୂପେ ପୁଣ ଶୃଙ୍ଗାରମାନ ଦେଉ ।
କାଳିକା ରୂପ ହୋଇ ପ୍ରାଣକୁ ଘେନି ଯାଉ ।
ଅଗ୍ନି ରୂପେଣ ଦହିଯ କରାଉ ।।

ସଂସ୍କୃତ ଦେବୀ ମାହାତ୍ମ୍ୟର ତ୍ରିବିଧ ଦେବୀଙ୍କୁ ଚଣ୍ଡୀପୁରାଣରେ ଏକୀଭୂତ କରିବା ସହ ନାରୀମାତ୍ରେ ଦେବୀ ସ୍ୱରୂପା— ମାତା, ଜାୟା, କନ୍ୟା ଅବସ୍ଥା ନିର୍ବିଶେଷରେ ନାରୀ

ଅଭିନ୍ନା— ବୋଲି ଯେଉଁ ଭାବ ସାରଳାଦାସ ବ୍ୟକ୍ତ କରିଛନ୍ତି ତାହା ତାଙ୍କର ସ୍ୱକୀୟ । ସେ ଲେଖିଛନ୍ତି— ଦେବୀମାନେ ହିଁ ''କରନ୍ତି ଗୃହବାସ ଏ ମନୁଷ୍ୟନ୍ତ ମୋହି ।'' ଏଥିରେ ନାରୀଜାତି ପ୍ରତି ଭୟମିଶ୍ରିତ ସମ୍ମାନ ପ୍ରକାଶ ପାଉଛି ।

ଜାତ କାଳେଣ ମାତା ରୂପ ହୁଅନ୍ତି ।
ରେତ କାଳେ ସେ ହୁଅନ୍ତି ପ୍ରିୟବତୀ ।।
ଅନ୍ତକାଳେ ରୂପ ହୁଅନ୍ତି କାଳିକା ।
ଶେଷକାଳେ ସେ ହୁଅନ୍ତି ହିଙ୍ଗୁଳା ଶିଖା ।

କାଳିକା ବା କାଳୀ ଶିବପତ୍ନୀ ହେଲେ ହେଁ ନଗ୍ନା ରୂପରେ ଭୂଶାୟିତ ଶିବଙ୍କ ଉପରେ ଦଣ୍ଡାୟମାନ ହେବା ତନ୍ତ୍ରୋକ୍ତ ବର୍ଣ୍ଣନାର ପ୍ରସାରଣ ଏଥିରେ ଥିବା ସମ୍ଭବ । ଯେତେ ସବୁ ଦେବୀ ମହିଷାସୁର ବଧ ବେଳେ ଅସୁରବର୍ଗ ନିପାତ ପାଇଁ ମହିଷାସୁରମର୍ଦ୍ଦିନୀଙ୍କ ଦ୍ୱାରା ସୃଷ୍ଟି ହୋଇଥିଲେ ସେମାନେ ଯୁଦ୍ଧ ପରେ—

ସମସ୍ତେ ହୋଇଲେ ଆସି ମାନବ ଜନ୍ମ ।।
ଯେତେକ ସ୍ତିରୀ ହୋଇଅଛନ୍ତି ଉତପନ ।
ଦେବୀମାନଙ୍କର ଅଂଶ ଅଟନ୍ତି ସେହି ଜାଣ ।।

ଚଣ୍ଡୀପୁରାଣ ଆମୂଳାନ୍ତ ହିଂସା, ବର୍ବରତା ଓ ଯୁଦ୍ଧର ବିଭୀଷିକାର ବର୍ଣ୍ଣନାରେ ଭରପୂର । ଦେବତାମାନେ ହୀନବଳ ଓ ଅସୁରମାନେ ଦୁର୍ଦ୍ଧର୍ଷ । ଦୁର୍ବଳର ରକ୍ଷା ପାଇଁ ଦେବୀ ଆବିର୍ଭୂତ ହୋଇ ସ୍ୱଶରୀରରୁ କୋଟି କୋଟି ଦେବୀଙ୍କୁ ଜାତ କରାଇ ଅସୁରବଳକୁ ନିପାତ କଲେ ।

ସାରଳାଦାସଙ୍କ ମହିଷାସୁର ପରିକଳ୍ପନାରେ ଏକ ଅପୂର୍ବ କଥା ଲକ୍ଷ୍ୟ କରାଯାଇପାରେ । ସଂଘର୍ଷ କେବଳ ଦୁଇ ପକ୍ଷ ମଧ୍ୟରେ ସୀମାବଦ୍ଧ ଥିଲା; ଗୋଟିଏ ପକ୍ଷ ଅସୁରମାନଙ୍କ ଶତ୍ରୁ ଦେବଗଣ ଓ ଅନ୍ୟ ପକ୍ଷ ଦେବଶତ୍ରୁ ଅସୁରଗଣ ।

ମହିଷାସୁର ମନୁଷ୍ୟମାନଙ୍କ ଶତ୍ରୁ ନଥିଲା, ବରଂ ନରଲୋକର ସୁଶାସକ ଥିଲା । ଏହି ଭାବବୀଜଟିକୁ ସେ ଦେବୀ-ଭାଗବତ ପଞ୍ଚମ ସ୍କନ୍ଦ ୩ୟ ଅଧ୍ୟାୟରୁ ନେଇଥିଲେ ହେଁ ତାହାକୁ ବିଶେଷ ଭାବରେ ପରିପୁଷ୍ଟ କରିଛନ୍ତି । ମହିଷାସୁର ଚକ୍ରବର୍ତ୍ତୀ ହୋଇ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରିବା ଉଲ୍ଲେଖ ଦେବୀ ଭାଗବତରେ ଅଛି । ସାରଳାଦାସ ବହୁଭାବରେ ଭାବବୀଜକୁ ଅଙ୍କୁରିତ କରିଛନ୍ତି । ଉପନିଷଦ୍ କାହାଣୀରେ ବୃହସ୍ପତି ନର, ଦେବ ଓ ଅସୁରମାନଙ୍କୁ ଉପଦେଶ ଛଳରେ ଗୋଟିଏ ମାତ୍ର ବର୍ଣ୍ଣ କହିଥିଲେ 'ଦ' । ଏହାର ମର୍ମ ନରମାନେ ବୁଝିଲେ 'ଦାନ କର', ଦେବତାମାନେ ବୁଝିଲେ 'ଦମନ କର' (ଅର୍ଥାତ୍ ଇନ୍ଦ୍ରିୟ ନିଗ୍ରହ କର) ଓ ଅସୁରମାନେ ବୁଝିଲେ 'ଦୟାକର' । ଯାହାର ଯାହା ଦୁର୍ବଳତା ସେହି ଅନୁସାରେ ସେ ଗୁରୁବଚନର ଅର୍ଥ କଲେ । ସାରଳାଦାସଙ୍କ

କଳ୍ପନାର ପ୍ରଚୋଦନା ଏ କାହାଣୀରେ ଅଛି । ସେ ଲେଖିଛନ୍ତି, ମହିଷାସୁରର ଦୁଇ ସେନାପତି ଶୁମ୍ଭ ଓ ନିଶୁମ୍ଭ ସ୍ୱର୍ଗ ଅଧିକାର କରିବା ପରେ ଦେବତାମାନେ ଅଶକ୍ତ ହୋଇପଡ଼ିଲେ । ଶୁମ୍ଭ ନିଶୁମ୍ଭ "ଅନୀତି ଅବିଧି ନାହିଁ ପାଳିଲେ ମେଦନୀ" । ଯମର ପ୍ରଭାବ ନ ରହିବାରୁ ଜରା-ମୃତ୍ୟୁ ଭୋଗ ହେଲା ନାହିଁ । ମେଘ ରାତିରେ ବରଷିଲା, ଦିନରେ ଖରା କାଟିଲା । ଶସ୍ୟ ଉତ୍ପାଦନ ବଢ଼ିଲା । ଶୁମ୍ଭ-ନିଶୁମ୍ଭକୁ ଡରି ଖରା-ବର୍ଷା-ପବନ ଆଦିର ପ୍ରାବଲ୍ୟଜନିତ ପୀଡ଼ା ରହିଲା ନାହିଁ । ଦେବତାମାନେ ସୀମା ଲଂଘନ ନକରି ଉଚିତ ଭାବରେ ସ୍ୱସ୍ୱ କର୍ତ୍ତବ୍ୟ ପାଳନ କଲେ । ଦୈତ୍ୟଦାନବମାନେ ଦେବଦ୍ୱେଷୀ ହେଲେ ସିନା ମାନବଙ୍କୁ ସୁଶାସନ ଦେଲେ । ଋଷିମୁନିମାନେ 'ସାଧୁ, ସାଧୁ' କହି ମହିଷାସୁରକୁ ଆଶୀର୍ବାଦ ଦେଲେ–

"ଦତ୍ୟଦାନବଙ୍କର ଉପଦ୍ରବ ନାହିଁ ।
ପରିପୂର୍ଣ୍ଣରେ ପୃଥ୍ୱୀକି ଫଳଦାନ ଦେଇ ।।
ଯାଗ୍ୟ ଯଜ୍ଞ ଯେ କରନ୍ତି ସର୍ବ ମୁନି ।
ମହିଷାସୁରକୁ ଶୁଭିଲା ସାଧୁ ସାଧୁ ଧୁନି ।।
ଯୁଗେ ଯୁଗେ ଜଗପତି ହୋଇଥା ରେ ମହିଷାସୁର ।
ସ୍ୱର୍ଗମର୍ତ୍ତ୍ୟ ପାତାଳ ଥୁଅରେ ତିନି ପୁର ।।"

ମନେହୁଏ, ଦେବତାମାନେ ହିଁ ଖଳନାୟକ, ଦମିତ ନୁହନ୍ତି । ଚଣ୍ଡୀପୁରାଣ ନାରୀଜାତିକୁ ପ୍ରାଧାନ୍ୟ ଦେବା ତାହାର ଆଉ ଏକ ବୈଶିଷ୍ଟ୍ୟ । ତାହାର ବକ୍ତବ୍ୟ ହେଉଛି ଆସୁରି ପ୍ରଭାବର ଉନ୍ମୂଳନ ପାଇଁ ନାରୀ ହିଁ ସମର୍ଥ । ଏହାର ପରିକଳ୍ପନାରେ ଶକ୍ତିର ଉତ୍ସ ଏକ ଓ ଅଖଣ୍ଡ (ଏକାନଂଶା), ତାହା ଅଗ୍ନିରୁ ସଂଭୂତ । ମହିଷାସୁରମର୍ଦ୍ଦିନୀ ସବୁ ଦେବତାଙ୍କ ରୋଷଜ ଅଗ୍ନିରୁ ଜାତ । ସେହି ସଦସ୍ରଭୁଜା ଶକ୍ତି (ଦୁର୍ଗା) ତତ୍ତ୍ୱତଃ ଏକ ହେଲେ ହେଁ ଅନ୍ୟ ରୂପ ମଧ୍ୟ ଗ୍ରହଣ କରିଥାନ୍ତି । ନାରୀଜାତି ଶକ୍ତିରୂପା, ସେମାନେ ତ୍ରିବିଧ ଉପାୟରେ ଆସୁରିଭାବକୁ ଲୋପକରି ପାରନ୍ତି– ୧. ଚାହାଣି ଦ୍ୱାରା (ଯଦ୍ଦ୍ୱାରା ଚଣ୍ଡମୁଣ୍ଡ ନିହତ ହେଲେ), ୨. ମୋହିନୀ ନୃତ୍ୟରଙ୍ଗ ଦ୍ୱରା (ଯଦ୍ଦ୍ୱାରା ଶୁମ୍ଭନିଶୁମ୍ଭ ନିହତ ହେଲେ) ଓ ୩. କାମାସକ୍ତ କରାଇବା ଦ୍ୱାରା (ଯଦ୍ଦ୍ୱାରା ମହିଷାସୁର ବିନଷ୍ଟ ହେଲା) । ଚଣ୍ଡୀପୁରାଣରେ ପ୍ରୀତିର ସ୍ଥାନ ନାହିଁ, କାମୁକତା ଯେଉଁଠି ବା ବର୍ଣ୍ଣିତ ହୋଇଛି ତାହା କାମୁକର କ୍ଷତି ହିଁ ଘଟାଇଛି । କପିଳ ସିଂହ 'ରତିଜିତା' ହେବାକୁ ବର ମାଗିଛି, କିନ୍ତୁ ତା'ର ପତ୍ନୀ ରତି ସହି ନପାରି ପଳାଇଛି । ପରିଣାମ ହୋଇଛି ଯମର ବାହନ ତାକୁ ସଙ୍ଗମ କରିଛି ଓ ସେ ଜନ୍ମ ଦେଇଛି ମହିଷମୁଣ୍ଡ ଥିବା ମହିଷାସୁରକୁ । କପିଳସିଂହ ଲଜ୍ଜାରେ ନିଜ ଦେଶ ଛାଡ଼ି ଚାଲିଯାଇଛି । ମହିଷାସୁରର ମୃତ୍ୟୁ ଘଟିଛି କାମାସକ୍ତି ଯୋଗୁଁ । ମୋହିନୀ

ସୃଷ୍ଟି କରିଥିବା ଦେବୀମାନେ ଅସୁରମାନଙ୍କୁ କାମାସକ୍ତ କରାଇ ରତିଦାନ କରି ମରାଇବା ବର୍ଣ୍ଣନା ଚଣ୍ଡୀପୁରାଣରେ ରହିଛି ।

ମାର୍କଣ୍ଡେୟ ପୁରାଣୋକ୍ତ ଚରିତ ଅନୁସାରେ ମହିଷାସୁରକୁ ବଧ କରିବା ଦେବୀ ଚଣ୍ଡୀ ନଥିଲେ, କାରଣ ପରବର୍ତ୍ତୀ ସମୟରେ ସେ ଚଣ୍ଡକୁ ବଧ କରିବାରୁ ଚଣ୍ଡୀ ବୋଲାଇଲେ । ସାରଳାଦାସ ଚଣ୍ଡବଧକୁ ପ୍ରଥମେ ଘଟାଇ ଦେବୀଙ୍କ ଚଣ୍ଡୀ ଆଖ୍ୟାକୁ ସାର୍ଥକ କରାଇଛନ୍ତି । ଚଣ୍ଡୀପୁରାଣର ଚଣ୍ଡିକାଶାସ୍ତ୍ର, ଚଣ୍ଡୀଶାସ୍ତ୍ର ଆଦି ନାମକରଣ ତେଣୁ ଯଥାର୍ଥ । ମହିଷାସୁର ନିହନ୍ତ୍ରୀ ଦୁର୍ଗା ସ୍ୱୟଂ ଭଗବତୀ, ତେଣୁ ତାଙ୍କ ମହିମା ପ୍ରଖ୍ୟାପକ ପୁରାଣର ନାମ ଭାଗବତ ଦିଆଯାଇଛି । ଏହି ବିଚାରରୁ ଦେବୀ-ଭାଗବତ ହିଁ ଅଷ୍ଟାଦଶ ମହାପୁରାଣର ଅନ୍ତର୍ଭୁକ୍ତ 'ଭାଗବତ' ବୋଲି ଶାକ୍ତମତ ରହିଛି । ଭାଗବତ ପୁରାଣ ଓ ଦେବୀ-ଭାଗବତ ପୁରାଣ ଅନୁରୂପେ ଚଣ୍ଡୀପୁରାଣ ମଧ ଶୁକ-ପରୀକ୍ଷିତ ସଂବାଦ (ବକ୍ତା-ଶ୍ରୋତା କଥୋପକଥନ) ଭାବରେ ବ୍ୟକ୍ତି ହୋଇଛି । କବି ତାହାକୁ ବିଷ୍ଣୁପୁରାଣ ବୋଲି ଅଭିହିତ କରିବାର ରହସ୍ୟ ନିଗୂଢ଼ । ବିବିଧ ସଂସ୍କୃତ ପୁରାଣରେ ମହିଷାସୁର-ମର୍ଦ୍ଦିନୀଙ୍କୁ ମହାଲକ୍ଷ୍ମୀ, ବିଷ୍ଣୁମାୟା ଆଦି ବୈଷ୍ଣବୀ ଆଖ୍ୟା ଦିଆଯାଇଚି । ମହିଷାସୁର ସଙ୍ଗେ ଯୁଦ୍ଧ କରିବା ପାଇଁ ଯିବା ପୂର୍ବରୁ ଦେବୀ ପରମ ବୈଷ୍ଣବୀ ରୂପେ ଯାଇଥିବା କଥା ସାରଳାଦାସ ଲେଖିଛନ୍ତି । ଏଥିରେ ଦେବୀମାହାତ୍ମ୍ୟ ଓ ଦେବୀ-ଭାଗବତର ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କ ଭୂମିକାର ଛାପ ସ୍ପଷ୍ଟ । ତେଣୁ ଏହା ବିଷ୍ଣୁ ପୁରାଣ ବୋଲାଇବା ଅସଙ୍ଗତ ବୋଧ ହୁଏନାହିଁ ।

ଚଣ୍ଡୀପୁରାଣରେ ମହିଷାସୁର-ବଧ ଚରିତ ଯେପରି ବର୍ଣ୍ଣିତ ହୋଇଛି ତାହାର ଅନେକାଂଶ ସାରଳାଦାସଙ୍କ ଚମତ୍କାରକ ଉଦ୍ଭାବନ ଶକ୍ତିର ପରିଚୟ ଦେଉଛି । ଲକ୍ଷ୍ୟ କରାଯାଇପାରେ ଯେ ସେ ଚରିତରେ ଯେଉଁ ସବୁ ଅପୂର୍ବତା ଆଣିଥିଲେ ତାହାର ବହୁଳାଂଶ ମହାଭାରତ ରଚନା ବେଳକୁ ସେ କଳ୍ପନା କରିସାରିଥିଲେଣି । ମହାଭାରତରେ ବ୍ୟକ୍ତ ହୋଇଛି—

୧. ମହିଷାସୁର ବ୍ରହ୍ମାଙ୍କଠାରୁ ବର ପାଇଥିଲା ଓ ଚଣ୍ଡମୁଣ୍ଡ, ଶୁମ୍ଭନିଶୁମ୍ଭ ଆଦି ସବୁ ଅସୁର ତାହାର ବଶବର୍ତ୍ତୀ ହୋଇଥିଲେ (ବିରାଟ, ୫୧୪) । ଏହା ଚଣ୍ଡୀପୁରାଣରେ ଅପରିବର୍ତ୍ତିତ ରହିଛି ।

୨. ମହିଷାସୁରର ରାଜଧାନୀ ଥିଲା ଜେନାବଳୀ ନଗ୍ର (୧ ମଧ୍ୟ ୧୬୯; ୨ ସଭା ୨୮୧; ବିରାଟ ୬୧୪) । ଚଣ୍ଡୀପୁରାଣରେ ଯୋଜନାବଳୀ ନଗ୍ର ନାମ ରହିଛି ଓ ତାହାର ନାମାନ୍ତର ଜେନାବଳୀନଗ୍ର ଥିବା ଲେଖା ଅଛି । ଏହାର ଅବସ୍ଥିତି ସିଂହଳ ଦ୍ୱୀପରେ ବୋଲି ଚଣ୍ଡୀପୁରାଣରେ ଅଛି କିନ୍ତୁ ସାରଳାଦାସଙ୍କ ମହାଭାରତରେ ନାହିଁ । ଏ ଦୃଷ୍ଟିରୁ ଚଣ୍ଡୀପୁରାଣ ମହାଭାରତର ପରିବର୍ଦ୍ଧିତ କଳ୍ପନା ।

୩. ଦେବୀ ସହସ୍ରଭୁଜା ହୋଇ ଅଗ୍ନିରୁ ଜାତ ହୋଇଥିଲେ (ବିରାଟ, ୫୧୪)। ଏକଥା ଚଣ୍ଡୀପୁରାଣରେ ମଧ୍ୟ ଲେଖାଅଛି।

୪. ଦେବୀ କଣୟ (୧ ସଭା ୮୮)/ହିରଣ୍ୟଗିରି (ବିରାଟ ୫୧୪) ଉପରେ ଭଙ୍ଗା ହୋଇ ଅସୁରମାନଙ୍କୁ ନିପାତ କରିଥିଲେ। କଣୟ (ଅର୍ଥାତ୍ କନକ) ଓ ହିରଣ୍ୟର ଅର୍ଥ ସୁନା। ଚଣ୍ଡୀପୁରାଣରେ କିନ୍ତୁ ସେହି ଗିରିର ନାମ ରହିଛି ରତ୍ନଗିରି। ଏହା ପରିବର୍ତ୍ତନ। ଏକାମ୍ରର ଏକ ନାମ ସ୍ୱର୍ଣ୍ଣାଦ୍ରି ବା ସୁବର୍ଣ୍ଣଗିରି। କବି ବିବରଣକୁ ସିଂହଳକୁ ସ୍ଥାନାନ୍ତରିତ କରିବା ସହ ପର୍ବତ ନାମକୁ ବଦଳାଇବା ଆବଶ୍ୟକ ବୋଧ କରିଥାଇ ପାରନ୍ତି। ରତ୍ନ ନଅଗୋଟି, ସୁନା ରତ୍ନ ନୁହେଁ। କୌଣସି ରତ୍ନ ଧାତୁ ନୁହେଁ।

୫. ଦେବୀ ପ୍ରଥମେ ଚଣ୍ଡମୁଣ୍ଡଙ୍କୁ ଦୃଷ୍ଟିପାତ କରି ନିହତ କରିଥିଲେ (ବିରାଟ ୫୧୪)। ଏକଥା ଚଣ୍ଡୀପୁରାଣରେ ମଧ୍ୟ ରହିଛି।

୬. ଚଣ୍ଡମୁଣ୍ଡ ବଧ ପରେ ଦେବୀ ଶୁମ୍ଭ ଓ ନିଶୁମ୍ଭଙ୍କୁ 'ଭରହରସ ନାଟେ' (୧ ସଭା ୫୮)/'ନୃତ୍ୟରଙ୍ଗ ଖେଡ଼େ' (୧ ସଭା ୪୨୫) ବିନାଶ କରିଥିଲେ। 'ଭରହରସ'ର ଅର୍ଥ ଭରତରସ ଅର୍ଥାତ୍ ଭରତମୁନି ପ୍ରଣୀତ ନାଟ୍ୟଶାସ୍ତ୍ରର ରସ। ଚଣ୍ଡୀପୁରାଣରେ ମଧ୍ୟ ତାହା ଲେଖାଅଛି।

୭. ଦେବୀ 'ଉଲଗ୍ନସାୟୀ' (୧ ସଭା ୬୧) ହୋଇ ମହିଷାସୁରକୁ ବଧ କରିଥିଲେ। ସାୟୀ ବା ସାହୀ ସହ୍ୟ ଶବ୍ଦଜ। ଅଙ୍ଗୀକାର କରିବା ଅର୍ଥରେ ସହି କରିବା ଏଥିରୁ ଜାତ। ଚଣ୍ଡୀପୁରାଣରେ ମଧ୍ୟ ଦେବୀ ଉଲଗ୍ନ ହେବା କଥା ରହିଛି।

୮. ଦେବୀ ଓ ମହିଷାସୁର ମଧ୍ୟର ଯୁଦ୍ଧ ସାତଦିନରେ ସରିଲା– 'ସପତ ଦିବସେ ଯେ ମଯେଂସା ନାଶ ଗଲା' (ବିରାଟ, ୫୧୮)। ଚଣ୍ଡୀପୁରାଣ ଏହି ଯୁଦ୍ଧ ୧୫ ଦିନ ଧରି ଚାଲିଥିବା ବର୍ଣ୍ଣନା ଦିଏ। ଚଣ୍ଡୀପୁରାଣର କଳ୍ପନା ମହାଭାରତର ସଂଶୋଧନ। ଦୁର୍ଗା ଭାଦ୍ରଶୁକ୍ଳାଷ୍ଟମୀରେ ଶୟନ କରନ୍ତି ୧୫ ଦିନ। ଆଶ୍ୱିନ କୃଷ୍ଣାଷ୍ଟମୀରେ ତାଙ୍କର ଉତ୍ଥାପନ ହୁଏ। ସେହି ଦିନରୁ ୧୫ ଦିନ ଶରତ୍କାଳୀନ ଦୁର୍ଗୋତ୍ସବ। ଗଦାଧର ପଦ୍ଧତି– ''ଶରତ୍କାଳୀନ ଦୁର୍ଗୋତ୍ସବ। ସ ଚ ଆଶ୍ୱିନ କୃଷ୍ଣାଷ୍ଟମୀମାରଭ୍ୟ ତଚ୍ଛୁକ୍ଳାଷ୍ଟମୀ ପର୍ଯ୍ୟନ୍ତ''। ଚରିତକୁ ଦୁର୍ଗୋତ୍ସବ ସହିତ ମିଳାଇବା ପାଇଁ ସଂଶୋଧନ ଆବଶ୍ୟକ ହୋଇଛି।

୯. ସାରଳାଦାସ ମହାଭାରତରେ ମହିଷାସୁରର ପିତା ମହୀସିଂହ ଓ ପିତାମହ କପିଳ ସିଂହ ବୋଲି ପ୍ରଥମେ ଲେଖିଥିଲେ (୧ ମଧ୍ୟ, ୧୬୯) କିନ୍ତୁ ପରେ ମହିଷାସୁରର ପିତାର ନାମ ରଖିଥିଲେ କପିଳ ସିଂହ (୧ ମଧ୍ୟ, ୪୩୦)। ଚଣ୍ଡୀପୁରାଣ ଅନୁସାରେ ମହିଷାସୁରର ପିତା କପିଳ ସିଂହ। ଏଥିରୁ ସଂକେତ ମିଳୁଛି ଯେ ଚଣ୍ଡୀପୁରାଣ ରଚନା ମହାଭାରତର ମଧ୍ୟପର୍ବ ଲେଖା ହେବା ପରେ ହୋଇଛି।

ମହିଷାସୁର କପିଳ ସିଂହର ପୌତ୍ର ହେବା କଳ୍ପନା ସ୍ଥାନରେ ପୁତ୍ର ହେବା କଳ୍ପନା ପ୍ରବର୍ତ୍ତନର କାରଣ ଦୁର୍ଜ୍ଞେୟ । ଗୋଟିଏ ଅନୁମାନ ହେଲା, ମହାଭାରତ ରଚନା ଆରମ୍ଭ କରିବା ବେଳକୁ ଓଡ଼ିଶାର ରାଜା ଥିଲେ କପିଳେଶ୍ୱର ଦେବ । ପରେ ତାଙ୍କର ପୁତ୍ର ପୁରୁଷୋତ୍ତମ ରାଜା ହେଲେ ଖ୍ରୀ. ୧୪୬୭ରେ । ପୁରୁଷୋତ୍ତମ ହେଉଛନ୍ତି ଜଗନ୍ନାଥ ବା ଜଗଦୀଶ । ଜଗଦୀଶର ଅର୍ଥ ମହୀଶ (ଜଗତ୍ = ମହୀ) । କିନ୍ତୁ, ଏପରି ଅନୁମାନ ସମର୍ଥନୀୟ ନୁହେଁ । ମହିଷାସୁର ମହୀଶ ଓ ମହୀଶ (ପୁରୁଷୋତ୍ତମ) କପିଳେଶ୍ୱର ବୋଲି ଅନୁମାନ କାକତାଳୀୟ । କପିଳେଶ୍ୱରଙ୍କ ଦେହାନ୍ତର ଅବ୍ୟହିତ ପୂର୍ବରୁ ହିଁ ପୁରୁଷୋତ୍ତମ ରାଜା ହେବା କଥା ସ୍ଥିର ହେଲା । କପିଳେଶ୍ୱରଙ୍କ ରାଜତ୍ୱ କାଳରେ ପୁରୁଷୋତ୍ତମ ରାଜା ହେବା ସମ୍ଭାବନା ନଥିଲା ଓ ମଧ୍ୟପର୍ବ ରଚନା ବେଳକୁ କପିଳେଶ୍ୱର ଦେବଙ୍କ ରାଜତ୍ୱର ମଧ୍ୟଭାଗ ଥିଲା ।

ଚଣ୍ଡୀପୁରାଣର ବର୍ଣ୍ଣନା ଅନୁସାରେ ମହିଷାସୁର ଚନ୍ଦ୍ରଦ୍ୱୀପର ରାଜା ଚନ୍ଦ୍ରନୌମିଙ୍କ କନ୍ୟା ଚନ୍ଦ୍ରାବତୀଙ୍କୁ ସ୍ୱୟଂବରରେ ବିବାହ କରିଥିଲା । ଏ ଚରିତ ସାରଳା-ମହାଭାରତରେ ନାହିଁ । ଆଶ୍ଚର୍ଯ୍ୟର ବିଷୟ ମାଦଳାପାଞ୍ଜିର ବର୍ଣ୍ଣନା ଅନୁସାରେ କପିଳେନ୍ଦ୍ରଦେବ ତାଙ୍କ ରାଜତ୍ୱର ୩୩ ଅଙ୍କ (ଅର୍ଥାତ୍ ଖ୍ରୀ. ୧୪୬୦-୬୧)ରେ ଦାକ୍ଷିଣାତ୍ୟକୁ ଅଭିଯାନ ଚଳାଇ 'ଚନ୍ଦ୍ରାବତୀ ଦେଈ' କି ବନ୍ଦୀ କରି ଆଣିଥିଲେ । ପ୍ରଥମ ମାଦଳାପାଞ୍ଜିରେ ଲେଖା ଅଛି– ''ରାଜା କୁଣ୍ଡମେରୁ ମାଇଲେ । ଚନ୍ଦ୍ରାବତୀ ଦେଈକି ବନ୍ଦୀ କରି ଆଣିଲେ । ନରସିଂହ ରାଏଙ୍କୁ ରାଜା ଆଣି କଲେ'' । ଦ୍ୱିତୀୟ ମାଦଳାପାଞ୍ଜି ଏହାଙ୍କୁ ପ୍ରାୟ ଉତାରିଛି– ''ରାଜା କୁଣ୍ଡଜୋରି ମାଇଲେ । ଚନ୍ଦ୍ରାବତୀ ଦେଈକି ବନ୍ଦୀ କରି ଆଣିଲେ । ନରସିଂହ ରାଏଙ୍କୁ ପରୀକ୍ଷା କରି ସେ ରାଜ୍ୟେ ସ୍ଥାପିଲେ ।'' ଚନ୍ଦ୍ରାବତୀ ଦେଈ କାହାର କନ୍ୟା କି ପତ୍ନୀ ସେ ବିଷୟ ଓ ସେ ବନ୍ଦୀ ହେବା ପରେ ତାଙ୍କର ଭବିଷ୍ୟତ୍ କଣ ହେଲା ସେ ବିଷୟ ମାଦଳାପାଞ୍ଜିରେ ଲେଖା ହୋଇନାହିଁ । ଇତିହାସ ଏ ବିଷୟରେ ନୀରବ । ଇତିହାସରୁ ଜଣାଯାଏ, ବିଜୟନଗରର ସମୁଦ୍ର ଉପକୂଳବର୍ତ୍ତୀ କର୍ଣ୍ଣାଟକର ଚନ୍ଦ୍ରଗିରିର ରାଜ୍ୟପାଳ ଥିଲେ ସାଲୁବ ନରସିଂହ । ସାଲୁବର ଅର୍ଥ ଶ୍ୟେନପକ୍ଷୀ, ଏ୍କ ଉପାଧିମାତ୍ର । ମାଦଳାପାଞ୍ଜିର କୁଣ୍ଡମେରୁ/କୁଣ୍ଡଜୋରି କୁଣ୍ଡବୀଡୁ ହୋଇପାରେ । କୁଣ୍ଡବୀଡୁ ଚନ୍ଦ୍ରଗିରି (ଯାହା କପିଳେଶ୍ୱରଙ୍କ ଉପାଧିରେ 'ନବକୋଟୀ କର୍ଣ୍ଣାଟ' ବୋଲାଇଛି)ର ଦୁର୍ଗ । ଖ୍ରୀ. ୧୪୬୧ ବେଳକୁ କପିଳେଶ୍ୱର ବୃଦ୍ଧ । ସେ ଚନ୍ଦ୍ରାବତୀଙ୍କୁ ଆଣି ସେତେବେଳକୁ ତାକର ଗେହ୍ଲା ଦୁଲାଳ ହୋଇଥିବା ସବା ସାନପୁଅ ପୁରୁଷୋତ୍ତମଙ୍କୁ ଦେଇଥିଲେ ? ନରସିଂହଙ୍କୁ ପ୍ରଥମେ ନବକୋଟୀ କର୍ଣ୍ଣାଟରେ ଅଧିକାର ଦେଇଥିଲେ କପିଳେଶ୍ୱର ? ପରେ ନରସିଂହ କପିଳେଶ୍ୱରଙ୍କ ମୃତ୍ୟୁ ନିକଟରେ ଆନୁଗତ୍ୟ ବଦଳାଇ ବିଜୟନଗର ପକ୍ଷରୁ ରାଜ୍ୟପାଳ ହେଲେ । ଏ ସବୁ ପ୍ରଶ୍ନର ସମାଧନା ପାଇଁ ଐତିହାସିକ ଉପାଦାନର ଅଭାବ ରହିଛି ।

ଚଣ୍ଡୀପୁରାଣ ରଚନା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ହୋଇଥିଲା । ସାରଳାଦାସ ତାଙ୍କର ବୃଦ୍ଧାବସ୍ଥାର ରଚନା ଏହି ଚଣ୍ଡୀପୁରାଣରେ ମଧ୍ୟ ଜଣାଇଛି ଯେ ତାଙ୍କ ଆରାଧ୍ୟା ଗ୍ରାମଦେବୀ ସାରୋଳାଚଣ୍ଡୀ ତାଙ୍କୁ ଏହି ପୁରାଣ ଲେଖିବା ପାଇଁ କହିଥିଲେ । ସେତେବେଳକୁ କବି ମହାଭାରତ ରଚନା ନିର୍ବାହ କରି ସାରିଥିଲେ–

ଆଦି ଅନ୍ନପୂର୍ଣ୍ଣା ଯେ ଯଖେରପୁର ବାସୀ ।
ସେ ମୋତେ ପ୍ରସନ୍ନେ ଯେ କହଇ ଅହନିଶି ।।
ସେ ମହାଦେବୀର ଆଜ୍ଞା ପ୍ରମାଣେ କରିବି ।
ମହାଭାରତ ନିର୍ଭା କଲି ସେ ଦେବୀର ନାମ ଭାବି ।।

ଏହା ତାଳପତ୍ର ପୋଥିର ଉଦ୍ଧୃତି । ମୁଦ୍ରିତ ପୁସ୍ତକରେ ଏହା ନାହିଁ । ତେବେ ବି ପୂର୍ବେ ଉପସ୍ଥାପିତ ଅନ୍ୟାନ୍ୟ ପ୍ରମାଣ ସିଦ୍ଧ କରୁଛି ଯେ ମହାଭାରତ ରଚନା ସଂପୂର୍ଣ୍ଣ ହେବା ପରେ ଚଣ୍ଡୀପୁରାଣ ରଚିତ ହୋଇଛି । ମୁଦ୍ରିତ ପୁସ୍ତକ ଅବିଚାରିତ ଭାବରେ ରଚନାକ୍ରମକୁ ଉଲ୍ଲେଖ କରିନାହିଁ । ସାରଳାମହାଭାରତରେ ଲିଖିତ ମହିଷାସୁର ବଧ ଚରିତ ସହିତ ଚଣ୍ଡୀପୁରାଣୋକ୍ତ ଚରିତର ସାମ୍ୟ ବୈଷମ୍ୟ ଚର୍ଚ୍ଚା ବେଳେ ଦର୍ଶାଇ ଦିଆଯାଇଛି ଚଣ୍ଡୀପୁରାଣର ଚରିତ ମହାଭାରତୋକ୍ତ ଚରିତର ସଂଶୋଧନ, ତେଣୁ ପରବର୍ତ୍ତୀ ।

ପୂର୍ବ ଅଧ୍ୟାୟରେ ଦର୍ଶାଇ ଦିଆଯାଇଛି ଯେ ସାରଳାଦାସ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ରଚନା କରିଥିଲେ ଆଦ୍ୟ ଜୀବନରେ, ଯୌବନରେ । ପରେ ପରେ ସେ ସାରଳାଦାସ ନାମ ଗ୍ରହଣ କରି ମହାଭାରତ ରଚନା ଆରମ୍ଭ କରିଥିଲେ, ସେହି ଯୌବନ ଅବସ୍ଥାରେ । ବିରାଟ ପର୍ବ ଯାଏଁ ରଚନା କରିବା ପରେ ସେ କୌଣସି ଜଟିଳ ବ୍ୟାଧିରେ ପଡ଼ି ମହାଭରତର ଲେଖା ବନ୍ଦ ରଖିଥିଲେ । ସେ ରୋଗମୁକ୍ତ ହୋଇ ଅବଶିଷ୍ଟ ମହାଭାରତ ଲେଖିବା ବେଳକୁ ସେ ବୃଦ୍ଧ ହୋଇଥିଲେଣି । କବି କପିଳେଶ୍ୱର ଦେବଙ୍କ ରାଜତ୍ୱ କାଳରେ ଯୁବକ ଅବସ୍ଥାରେ ମହାଭାରତ ଲେଖିବା ଆରମ୍ଭ କରିଥିବା ଯୋଗୁଁ ତାଙ୍କର ବାର୍ଦ୍ଧକ୍ୟରେ ମହାଭାରତ ଲେଖା ସରିବା ବେଳକୁ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳ ହୋଇଥିବା ନିଃସନ୍ଦେହ । ଚଣ୍ଡୀପୁରାଣ ରଚନା ମହାଭାରତ ରଚନା ପରେ ବୋଲି ସ୍ଥିର ନ କଲେ ତାହା ମହାଭାରତ ରଚନା ଆରମ୍ଭ କରିବା ପୂର୍ବର ବୋଲି କହିବାକୁ ହେବ । ସେ ଯୌବନରେ ହିଁ ମହାଭାରତ ରଚନା ଆରମ୍ଭ କରିଥିବା ଯୋଗୁଁ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ଲେଖିବା ଓ ସାରଳାଦାସ ନାମରେ ମହାଭାରତ ଲେଖିବା ମଧ୍ୟରେ ଚଣ୍ଡୀପୁରାଣ ରଚନା କରିବା ପାଇଁ ସମୟ ରହୁନାହିଁ । ପୁଣି, ମହାଭାରତ ଲେଖିବା ପୂର୍ବରୁ ଚଣ୍ଡୀପୁରାଣ ଲେଖିସାରିଥିଲେ ସେ ମଧ୍ୟପର୍ବ ଆରମ୍ଭରେ ମହିଷାସୁରର ପିତାମହର ନାମ କପିଳ ସିଂହ ବୋଲି ଲେଖି ନଥାନ୍ତେ ।

କବି ଚଣ୍ଡୀପୁରାଣର ରଚନା ମଧ୍ୟରେ ନିଜର ଅଭିଳାଷ ବ୍ୟକ୍ତ କରିଛନ୍ତି ଯେ ତାଙ୍କ ଲେଖନୀ ସର୍ବଦା ସକ୍ରିୟ ରହୁ, ଗ୍ରନ୍ଥରଚନା କରୁଥାଉ—

ଜନ୍ମେ ଜନ୍ମେ ସେବଇ ମୁଁ ସାରଳା ଚଣ୍ଡୀର ପଦାମ୍ବୁଜେ ।
ଲେଖନ ପଡ଼ିବାର ମୋତେ କେବେ ହେଁ ନଯାଉ ଯେ ।।

ମହାଭାରତର ବିରାଟ ପର୍ବ ଲେଖା ସରିବା ପରେ କବିଙ୍କ ଲେଖନୀ ସୁପ୍ତ ହୋଇଥିଲା । ସେ କଥା ଆଉ ଥରେ ନ ଘଟୁ ବୋଲି କବିଙ୍କର ଆନ୍ତରିକ ଅଭିଳାଷ ଏଥିରେ ନିହିତ ଥିବା ପରି ବୋଧ ହେଉଛି ।

କବି ସାରୋଳାଚଣ୍ଡୀଙ୍କ ନାମର ଆଦ୍ୟାଂଶକୁ ଧରି ନିଜର ନାମ ବଦଳାଇ ସାରଳାଦାସ ରଖିଥିଲେ ଓ ଶେଷାଂଶ ଚଣ୍ଡୀ ନାମକୁ ଧରି ଚଣ୍ଡୀପୁରାଣ ସୃଷ୍ଟି କଲେ । ସେ ତେଣୁ କହିଛନ୍ତି ''ସେ ଦେବୀର ଆଜ୍ଞାପ୍ରମାଣେ [ଗ୍ରନ୍ଥରଚନା] କରିବି'' ।

ବିଭିନ୍ନ ରାଜବଂଶ ତାଙ୍କ ତାମ୍ର ଅଭିଲେଖଗୁଡ଼ିକର ଆରମ୍ଭରେ ଥିବା ପ୍ରଶସ୍ତିବାଚକ ଅଂଶକୁ ବଦଳାନ୍ତି ନାହିଁ । ପରବର୍ତ୍ତୀ ବିଷୟବସ୍ତୁ ହିଁ ବଦଳେ । ଫଳରେ ତାମ୍ର ଅଭିଲେଖର ଆରମ୍ଭକୁ ଦେଖିଲେ ତାହା କେଉଁ ରାଜବଂଶର ହୋଇପାରେ ଧରାପଡ଼େ । ସାରଳାଦାସ ଏହି ରୀତିକୁ ତାଙ୍କ ରଚନାଗୁଡ଼ିକ ପାଇଁ ବ୍ୟବହାର କରିଛନ୍ତି । ପୂର୍ବେ ଅଷ୍ଟମ ଅଧ୍ୟାୟରେ ବିଚିତ୍ର ରାମାୟଣର ଆରମ୍ଭର ଗଣେଶ ସ୍ତୁତି ସହିତ ମହାଭାରତର ଆଦିପର୍ବର ଆରମ୍ଭର ଗଣେଶ ସ୍ତୁତି ସମରୂପତା ଦେଖାଇ ଦିଆଯାଇଛି । ସେହିଠାରେ ଆଉ ମଧ୍ୟ ଦେଖାଇ ଦିଆଯାଇଛି 'ଚଣ୍ଡୀପୁରାଣ' ପୋଥିର ଆରମ୍ଭ ପଦଗୁଡ଼ିକ ସହିତ ମହାଭାରତର ଭୀଷ୍ମ ପର୍ବର ଆରମ୍ଭର ପଦଗୁଡ଼ିକ କିପରି ପ୍ରାୟ ସମାନ । ସେଠାରେ ଅଳ୍ପ କେତୋଟି ପଦ ଦୃଷ୍ଟାନ୍ତ ରୂପେ ଦିଆଯାଇଛି । କିନ୍ତୁ, ଚଣ୍ଡୀପୁରାଣର ଆରମ୍ଭର ୩୦ ପଦ ଭୀଷ୍ମପର୍ବର ଆରମ୍ଭର ପଦଗୁଡ଼ିକର ଅନୁକାରୀ । ଏହି ସାମ୍ୟ ଆଉ ମଧ୍ୟ ସୂଚାଉଛି ଯେ ବିଚିତ୍ର ରାମାୟଣ ରଚନାର ଆରମ୍ଭ ଓ ମହାଭାରତ ରଚନାର ଆରମ୍ଭ ମଧ୍ୟରେ ସମୟ ବ୍ୟବଧାନ ବିଶେଷ ନଥିଲା ଓ ଭୀଷ୍ମପର୍ବର ରଚନାର ଆରମ୍ଭ ଓ ଚଣ୍ଡୀପୁରାଣର ରଚନାର ଆରମ୍ଭ ମଧ୍ୟରେ ସମୟ ବ୍ୟବଧାନ ସେହିପରି ବିଶେଷ ନଥିଲା । ଏ ଦୃଷ୍ଟିରୁ ମଧ୍ୟ କହିବାକୁ ହେଉଛି ଯେ ଚଣ୍ଡୀପୁରାଣ ରଚନା ମହାଭାରତ ରଚନା ପରେ ହୋଇଛି ।

ସାରଳା-ମହାଭାରତର ବହୁବିସ୍ତୀର୍ଣ୍ଣତା କ୍ଷୁଦ୍ର ଚଣ୍ଡୀପୁରାଣରେ ନଥିବା ସ୍ୱାଭାବିକ । ପୁରାଣଟି ତରତର ଲେଖା ହୋଇଥିବା ଅନୁମିତ ହୁଏ । କବି ଚରିତ୍ରଗୁଡ଼ିକର ବିକାଶ ଘଟାଇ ପାରି ନାହାନ୍ତି । ମହିଷାସୁରର ପାରିବାରିକ ଜୀବନର ଚିତ୍ର ନାହିଁ । ଏପରିକି ତା'ର ପୁଅ କିଏ ତାହା ସୁଦ୍ଧା ଲେଖା ହୋଇନାହିଁ । ଚରିତକୁ ଶାଖାପ୍ରଶାଖା ମେଲାଇ ପୁଷ୍ଟ କରିବାର ଶୈଳୀ ଚଣ୍ଡୀପୁରାଣରେ ଦୁର୍ବଳ । ଅନେକ କ୍ଷେତ୍ରରେ ଚଣ୍ଡୀପୁରାଣର ବକ୍ତବ୍ୟ ମଧ୍ୟରେ ଆତ୍ମବିରୋଧ ଲକ୍ଷ୍ୟ କରାଯାଇପାରେ । ବିଭିନ୍ନ ଦୈତ୍ୟମାନଙ୍କର

ବଂଶବୃକ୍ଷ ବହୁସ୍ଥାନରେ ଦିଆଯାଇଛି କିନ୍ତୁ ବିଭିନ୍ନ ବଂଶବୃକ୍ଷ ମଧ୍ୟରେ ମେଳ ନାହିଁ । ଦୃଷ୍ଟାନ୍ତ ରୂପେ ମହିଷାସୁରର ବଂଶବୃକ୍ଷଟିକୁ ନିଆଯାଇପାରେ । ପ୍ରଥମେ ଲେଖାଅଛି ଯେ ସୌଦାସର ପୁତ୍ର ଜଳତରଙ୍ଗ, ତା' ପୁତ୍ର ମେଧାସୁର, ତା' ପୁତ୍ର କୃତକେଶୀ, ତା' ପୁତ୍ର ଜଟାସୁର, ତା' ପୁତ୍ର ବଜ୍ରାଧିସିଂହ ବା ବଜ୍ରସିଂହ, ତା' ପୁତ୍ର କପିଳ ସିଂହ ଓ କପିଳ ସିଂହ ପୁତ୍ର ମହିଷାସୁର । ସ୍ଥାନାନ୍ତରେ କୁହାଯାଇଛି ଯେ ପ୍ରହ୍ଲାଦର ପୁତ୍ର ବୈଲୋଚନ, ତା' ପୁତ୍ର ବଳି, ତା' ପୁତ୍ର ବାଣାସୁର, ତା' ପୁତ୍ର ବଜ୍ରସିଂହ, ତା' ପୁତ୍ର କପିଳ ସିଂହ ଓ ତା' ପୁତ୍ର ମହିଷାସୁର । ଅନ୍ୟତ୍ର ବର୍ଣ୍ଣିତ ଅଛି ଯେ ଜମ୍ବୁଦୈତ୍ୟର ପୁତ୍ରମୟ, ତା' ପୁତ୍ର ବଜ୍ରାଧି, ତା' ପୁତ୍ର କପିଳସିଂହ ଓ ତା'ପୁତ୍ର ମହିଷାସୁର । ଏହା କବିଙ୍କର ବାର୍ଦ୍ଧକ୍ୟଜନିତ ସ୍ମୃତିଭ୍ରଂଶର ପରିଣାମ ହୋଇପାରେ । ତେଣୁ ଚଣ୍ଡୀପୁରାଣ ସାରଳାଦାସଙ୍କର ଅନ୍ତିମ ରଚନା ।

—

# ଏକାଦଶ ଅଧ୍ୟାୟ

## ଚଣ୍ଡୀପୁରାଣର ପଞ୍ଚାଙ୍ଗର ସମୀକ୍ଷା

ସାରଳାଦାସଙ୍କଠାରୁ ବଳଦେବ ରଥଙ୍କ ପର୍ଯ୍ୟନ୍ତ ପ୍ରାଚୀନ ଓଡ଼ିଆ କବିମାନେ ସ୍ୱସ୍ୱ ଗ୍ରନ୍ଥ ମଧ୍ୟରେ ପ୍ରଧାନ ପ୍ରଧାନ ଘଟନାକାଳର ଶୁଭାଶୁଭ ସୂଚାଇବା ପାଇଁ ପଞ୍ଚାଙ୍ଗ ଲେଖି ଯାଇଛନ୍ତି । ଜ୍ୟୋତିଃଶାସ୍ତ୍ରର ପରିଭାଷାରେ ପଞ୍ଚାଙ୍ଗ ପାଞ୍ଚୋଟି କାଳ-ପରିମାଣକୁ ବୁଝାଏ– ୧. ଶୁକ୍ଳ-କୃଷ୍ଣ ପକ୍ଷ ଭେଦରେ ତିଥି (ପକ୍ଷକେ ପ୍ରତିପଦାଦି ପନ୍ଦରଟି); ୨. ବାର (ସାବନ ଦିନ ମାପରେ ସପ୍ତାହର ସାତ ବାର); ୩. ନକ୍ଷତ୍ର (ଚନ୍ଦ୍ର ଭୋଗ କରୁଥିବା ଅଶ୍ୱିନ୍ୟାଦି ସତାଇଶି ନକ୍ଷତ୍ରପୁଞ୍ଜ); ୪. ଯୋଗ (ବିଷ୍କୁମ୍ଭାଦି ସତାଇଶିଟି ଯୋଗ) ଓ ୫. କରଣ (ବବାଦି ଏଗାରଟି କରଣ) । ଏ କଥା ସାଧାରଣତଃ ଧରି ନିଆଯାଏ ଯେ ପ୍ରାଚୀନ କବିମାନେ ଜ୍ୟୋତିର୍ବିଦ୍ୟାକୁଶଳ ଥିବା ହେତୁରୁ ପଞ୍ଚାଙ୍ଗର ବିବରଣ ଦେଇ ପାରିଛନ୍ତି । କିନ୍ତୁ ପ୍ରକୃତ କଥା ହେଉଛି, କବିମାନଙ୍କର ଜ୍ୟୋତିଷ-ଜ୍ଞାନର ଗଭୀରତା କଳିବା ପାଇଁ ପଞ୍ଚାଙ୍ଗର ନାମୋଲ୍ଲେଖ ମାତ୍ର ଯଥେଷ୍ଟ ନୁହେଁ । ଜଣେ ଅଳ୍ପଜ୍ଞ ଲୋକ ମଧ୍ୟ ଅନେକ ରାଗରାଗିଣୀର ନାମ, ଗୁଡ଼ିଏ ଔଷଧର ନାମ ବା ଶାସ୍ତ୍ରର ନାମ କହିଦେଇପାରିବ, କିନ୍ତୁ ସେହି କାରଣରୁ ସେ ଜଣେ ସୁଗାୟକ, ବୈଦ୍ୟ ବା ଶାସ୍ତ୍ରଜ୍ଞ ବୋଲି ବିବେଚିତ ହୋଇ ନପାରେ । ସେହିପରି ବାରମାସ, ଦୁଇପକ୍ଷ, ପନ୍ଦର ତିଥି, ସାତବାର, ସତାଇଶି ନକ୍ଷତ୍ର ଓ ଯୋଗ ଓ ଏଗାରଟି କରଣ ଜ୍ୟୋତିଷର ବିଷୟ ହୋଇଥିଲେ ହେଁ ସେ ସବୁ ନାମଗୁଡ଼ିକ ସାଧାରଣ-ଜ୍ଞାନର ପରିସରଭୁକ୍ତ । ତେଣୁ ସେ ସବୁ ନାମକୁ ହିଁ ଜାଣିଗଲେ କେହି ଜ୍ୟୋତିର୍ବିଦ୍ ହୋଇଯାଇ ନ ପାରେ । ଗୋଟିଏ ଦୃଷ୍ଟାନ୍ତ ଦେଲେ ଏକଥା ସ୍ପଷ୍ଟ ହୋଇଯିବ । ସଂସ୍କୃତ-ପାଣ୍ଡିତ୍ୟ ପାଇଁ ଖ୍ୟାତିମାନ୍ ବଳଦେବ ରଥ ତାହାଙ୍କର 'ଚନ୍ଦ୍ରକଳା' କାବ୍ୟର ଅଷ୍ଟମ ଛାନ୍ଦରେ ନାୟିକାର ପ୍ରଥମ ରଜ କାଳ ଲେଖିଛନ୍ତି–

''ଏଥି ଅନନ୍ତରେ ଶୁଣ ସରସେ । ବଇଶାଖ ମାସ ବିଧୁ ଦିବସେ ।।
ଶୁକ୍ଳ ପଞ୍ଚମୀ ଧନିଷ୍ଠାଖ୍ୟ ଋକ୍ଷ । ଶୁଭଚନ୍ଦ୍ର କରଣଗଣ ମୁଖ୍ୟ ।।''

ବୈଶାଖର ଶୁକ୍ଳ ପଞ୍ଚମୀ ବେଳକୁ ସୂର୍ଯ୍ୟ ମେଷର ପାଞ୍ଚ ଅଂଶଠାରୁ ବୃଷର ଚାରି ଅଂଶ ମଧ୍ୟଗତ ହେବ ଓ ଚନ୍ଦ୍ର ତାହାର ଆଗକୁ ୪୮ରୁ ୬୦ ଅଂଶ ମଧ୍ୟରେ ରହିବ । ସେ ଦିନର ନକ୍ଷତ୍ର ଧନିଷ୍ଠା ହେବା ସମ୍ଭବପର ନୁହେଁ । ଏଥିରୁ ସ୍ପଷ୍ଟ ହେଉଛି ଯେ ରଥେ

ତିଥି ସହିତ ନକ୍ଷତ୍ରର ସମ୍ପର୍କର ସୂତ୍ର ଜାଣି ନଥିଲେ । ଜ୍ୟୋତିଷର ଗଣନା ଜ୍ଞାନ ଥିଲେ ଏପରି ଭୁଲ୍ ହୁଅନ୍ତା ନାହିଁ । ମୁଁ ମୋର 'ଅତୀତର ବର୍ଣ୍ଣବୋଧ' ପୁସ୍ତକର ଅଷ୍ଟମ ଅଧ୍ୟାୟରେ ଦେଖାଇ ଦେଇଛି ଯେ ଉପେନ୍ଦ୍ର ଭଞ୍ଜଙ୍କର ମଧ ଗଣିତ-ଜ୍ୟୋତିଷ ଜ୍ଞାନ ନଥିଲା । ଏହି ପ୍ରକାରେ କବିମାନଙ୍କର ଜ୍ୟୋତିଷଜ୍ଞାନକୁ କଳନା କରିବାପାଇଁ ସେମାନେ ଯୋଗାଇଥିବା ଜ୍ୟୌତିଷିକ ତଥ୍ୟାବଳୀକୁ ପରୀକ୍ଷା କରାଯିବା ସର୍ବାଦୌ ଆବଶ୍ୟକ । ସେଥିପାଇଁ ସାରଳାଦାସଙ୍କ ଚଣ୍ଡୀପୁରାଣରେ ପ୍ରଦତ୍ତ ପଞ୍ଜାଙ୍ଗଗୁଡ଼ିକୁ ସମୀକ୍ଷଣ କରାଯାଇପାରେ ।

ସମୀକ୍ଷା ପାଇଁ ସାରଳାଦାସଙ୍କ ପ୍ରସିଦ୍ଧ ଓ ପ୍ରକାଣ୍ଡ ରଚନା ମହାଭାରତକୁ ନବାଛି ଚଣ୍ଡୀପୁରାଣକୁ ବାଛିବା ଲାଗି କେତେକ କାରଣ ରହିଛି । ପ୍ରଥମ କଥା ହେଲା ସାରଳାଦାସଙ୍କ ମହାଭାରତ ଆକାରରେ ଏଡ଼େ ବିଶାଳ ଓ ତହିଁରେ ପ୍ରଦତ୍ତ ପଞ୍ଜାଙ୍ଗର ଉଲ୍ଲେଖ ବିଶାଳତା ଅନୁପାତରେ ଏତେ ବହୁଳ ଯେ ସେ ସମସ୍ତଙ୍କୁ ସମଗ୍ର ଭାବରେ ବିଚାର କରି କୌଣସି ସିଦ୍ଧାନ୍ତରେ ଉପନୀତ ହେବା ସହଜସାଧ୍ୟ ନୁହେଁ । ଦ୍ୱିତୀୟ କଥା, ଚଣ୍ଡୀପୁରାଣର ପରିଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରିବା ପାଇଁ ମହାଭାରତର ପରିଶୋଧନ ସହିତ ତୁଳନୀୟ ଉଦ୍ୟମ ହୋଇନାହିଁ । ଓଡ଼ିଶା ଜଗନ୍ନାଥ କମ୍ପାନୀ ଆଦିଙ୍କ ଦ୍ୱାରା ପ୍ରକାଶିତ ଚଣ୍ଡୀପୁରାଣରେ ମୌଳିକ ଦାଣ୍ଡୀ-ଶୈଳୀର ଲେଶମାତ୍ର ନାହିଁ । ମୁଦ୍ରଣ ପାଇଁ ସୁବିଧା ହେବ ବୋଲି ଦାଣ୍ଡୀଶୈଳୀକୁ କାଟକସର କରି ଚଉଦ ଅକ୍ଷରୀବୃତ୍ତରେ ପରିଣତ କରିବା ଅବସରରେ ମୂଳ ପାଠକୁ କିଛି କିଛି ବଦଳାଇ ଦିଆଯାଇଛି । ଭବିଷ୍ୟତ୍‌ରେ ଚଣ୍ଡୀପୁରାଣର ପରିଶୁଦ୍ଧ ସଂସ୍କରଣ ପାଇଁ ପ୍ରଯତ୍ନ କରାଗଲେ ଏହି ଆଲୋଚନା ତାହାର ପଞ୍ଜାଙ୍ଗ ସଂପୃକ୍ତ ଅଂଶ ପାଇଁ ସହାୟକ ହୋଇପାରିବ ବୋଲି ଆଶା ରଖୁଛି । ଏପରି ଆଶା ପୋଷଣ କରିବା ପାଇଁ ବିଶେଷ କାରଣ ଏହି ଯେ ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇଥିବା ପଞ୍ଜାଙ୍ଗ ସ୍ଥାନଗୁଡ଼ିକୁ ବାଇକୋଳି ଜ୍ୟୋତିଷ-ବିଶାରଦଙ୍କ ଦ୍ୱାରା ପରିଶୁଦ୍ଧ କରାଇବା ଲକ୍ଷ୍ୟ ରଖି ପରିବର୍ତ୍ତିତ କରାଯାଇଥିବା କଥା ଶୁଣିବାକୁ ପାଇଲି । ଯଦି ତାହା ପ୍ରକୃତ କଥାହୁଏ ତେବେ ଏହି ତଥାକଥିତ ଶୁଦ୍ଧ ସଂସ୍କରଣର ପଞ୍ଜାଙ୍ଗଗୁଡ଼ିକୁ ସାରଳାଦାସଙ୍କର ବୋଲି ଆଉ କୁହାଯାଇପାରିବ ନାହିଁ । ତୃତୀୟ କଥା, ଚଣ୍ଡୀପୁରାଣଟି ମହାଭାରତ ପରେ ରଚିତ ହୋଇଥିବା ହେତୁ କବିଙ୍କର ପୋଖତ ବିଚାର ଓ ପରିପକ୍ୱ ଜ୍ଞାନ ଚଣ୍ଡୀପୁରାଣରେ ଖୋଜି ହେବ ।

ଚଣ୍ଡୀପୁରାଣର ଯେଉଁ ତାଳପତ୍ର ପୋଥିର ପାଠଉପରେ ମୁଖ୍ୟତଃ ଆଶ୍ରୟ କରି ଏଠାରେ ସମୀକ୍ଷା କରାଯାଉଛି ତାହା ଗଞ୍ଜାମ ଜିଲାର ଚିକିଟିଗଡ଼ରେ ଖ୍ରୀ. ୧୯୦୦ରେ ନକଲ କରାଯାଇଥିବା ପୋଥି । ମୁଦ୍ରିତ ପୁସ୍ତକରେ ଠାଏଁ ଠାଏଁ ହସ୍ତକ୍ଷେପ କରାଯାଇଛି ।

ହେଲେ ହେଁ ଅନ୍ୟାନ୍ୟ ତାଳପତ୍ର ପୋଥିଗୁଡ଼ିକୁ ବିଚାରକୁ ନେଲେ ମଧ୍ୟ ସିଦ୍ଧାନ୍ତଗୁଡ଼ିକର କୌଣସି ପରିବର୍ତ୍ତନ ହେବା ଆଶଙ୍କା ରଖୁନାହିଁ । ପ୍ରଥମେ ଚଣ୍ଡୀପୁରାଣରେ ଯେତେ ସବୁ ପଞ୍ଜାଙ୍ଗ ବିବରଣ ଦିଆଯାଇଛି ସେ ସବୁକୁ କ୍ରମାନୁସାରେ ଉଲ୍ଲେଖ କରୁଛି ଓ ଆଲୋଚନାର ସୁବିଧା ପାଇଁ ସଂଖ୍ୟାଙ୍କିତ କରୁଛି–

୧. "ଅସିଣ କୃଷ୍ଣପକ୍ଷ ଅମାବଇ ଦିନ । ରବିବାର ମଘା କ୍ଷେତ୍ର ବିଦ୍ୟମାନ ।"
[ଏହି ଦିନ କପିଳ ସିଂହର ରାଣୀକୁ ଯମର ବାହନ ରମଣ କରିବାରୁ ତତ୍‌କ୍ଷଣାତ୍ ମହିଷାସୁର ଜାତ ହେଲା । ଅମାବଇ = ଅମାବାସ୍ୟା ।]

୨. "ଅସିଣ ଶୁକଳ ଯେ ଅଷ୍ଟମୀର ଦିନ । ସେ ଦିନରେ ମୂଳା ନକ୍ଷତ୍ର ବିଦ୍ୟମାନ । ତୈତୁଲ୍ୟ ନାମେ କରଣ ହରଣ ନାମେ ଯୋଗ । ସେ ଦିନ ମଇଁଷା ଗମନ ଅମର ସ୍ୱର୍ଗ ।।"
[କରଣ ଓ ଯୋଗର ଶୁଦ୍ଧ ନାମ ତୈତିଳ ଓ ହର୍ଷଣ । ଏହି ବେଳରେ ଯାତ୍ରାରମ୍ଭ କରି ମହିଷାସୁର ସ୍ୱର୍ଗ ତ ଜିଣିପାରିଲା ନାହିଁ, ବାଟରେ ମେରୁଶୃଙ୍ଗ ରାଜା ସହିତ ଶହେ ବର୍ଷ ଯୁଦ୍ଧ କରି ସୁଦ୍ଧା ତାହାକୁ ପରାସ୍ତ କରିପାରିଲା ନାହିଁ ।]

୩. "ମୀନ ମାସ ଶୁକ୍ଳପକ୍ଷ ରେବତୀର ଦିନ । ପଣ୍ଡିତବାର ଯେ ନକ୍ଷତ୍ର ଚିତ୍ରାକନ୍ୟ ।। ବାୟବ ନାମେ କରଣ ଯେ ଶୁଭନାମେ ଯୋଗ । ସେ ଦିନ ମହେଷାସୁର ଜୟେ କଲା ସ୍ୱର୍ଗ ।।
[ଏଥିରେ ତିଥି ଲେଖା ହୋଇନାହିଁ । କିନ୍ତୁ, ସୂର୍ଯ୍ୟ ରେବତୀରେ ଓ ଚନ୍ଦ୍ର ଚିତ୍ରାରେ ଥିବାରୁ ପୂର୍ଣ୍ଣିମା ହୋଇପାରେ । ପୋଥିରେ ସର୍ବତ୍ର ବାଳବ କରଣକୁ ବାୟବ, ବାୟବ୍ୟ ବା ବାଇବ ଲେଖାଅଛି । ଏହି ସମୟରେ ଯାତ୍ରାରମ୍ଭ କରି ମହିଷାସୁର ସ୍ୱର୍ଗ ଜୟ କଲା ।]

୪. "ତୁଳ ଶୁକ୍ଳ ଯେ ପୌର୍ଣ୍ଣମୀ ଚନ୍ଦ୍ରବାର । ରୋହିଣୀ ନକ୍ଷତ୍ର ଅଟଇ ସେ ଦିନର ।। ବାଣିଜ୍ୟ ନାମେ କରଣ ଧୃତି ନାମେ ଯୋଗ । ଦଣ୍ଡ ସାଜି ମହେଷା ସାନନ୍ଦ ଉଦବେଗ ।।"
[ଏତେବେଳେ ଆରବ୍ଧ ହେବା କୁଶଦ୍ୱୀପକୁ ଯୁଦ୍ଧଯାତ୍ରା ଶେଷରେ ସନ୍ଧିରେ ସମାହିତ ହେଲା ।]

୫. "ମକରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ । ବୃହସ୍ପତିବାର ପୁଷ୍ୟା ନକ୍ଷତ୍ର ବିଦ୍ୟମାନ ।।
ବିଷ୍ଟି ନାମେ କରଣ ଯେ ଶୂଳ ନାମେ ଯୋଗ । ସେ ଦିନ ମହେଷାସୁର ବିଜୟେ ଦକ୍ଷିଣ ଦିଗ ।।"
[ଏହି ଯାତ୍ରାରେ ମହିଷାସୁର ସଫଳକାମ ହେଲା ।]

୬. ''ମେଷ ମାସ ଶୁକଳ ପଞ୍ଚମୀର ତିଥି । ସ୍ୱାତୀ ନକ୍ଷତ୍ର ଯେ ଭୃଗୁବାର ଯୁକତି ॥ ଗର ନାମେ କରଣ ବିଷ୍କୁମ୍ଭ ନାମେ ଯୋଗ । ତାର ବାର ଚନ୍ଦ୍ର ରୋହିଣୀ ଘର ଭୋଗ ॥''

[ଏହି ସମୟରେ ମହିଷାସୁର ବିବାହ କଲା ।]

୭. ''କୁମ୍ଭ ମାସ ଶୁକଳ ପକ୍ଷ ଦୁତୀଆର ଦିନ । ଅଶ୍ୱିନୀ ନକ୍ଷତ୍ର ସେ ଅଟଇ ସେହିଦିନ । ବାଳ (ବ) ନାମେ କରଣ ଯେ ଇନ୍ଦ୍ର ନାମେ ଯୋଗ । ମୀନ ସଂକ୍ରାନ୍ତିକି ଚବିଶି ଦିନ ଭୋଗ ॥''

[ଏହି ସମୟରେ ମହିଷାସୁର ମନ୍ତ୍ରୀଙ୍କ ପରାମର୍ଶ ନେଲା ।]

୮. ''ସଉରିବାର ସ୍ୱାତୀ ନକ୍ଷତ୍ର ଷଷ୍ଠୀ ତୁଲ୍ୟତ ନାମେ କରଣ । ବଷ୍କୁମ୍ଭ ନାମେ ଯୋଗ ସେ ଯେ କାରଣ ॥''

[କରଣର ପ୍ରକୃତ ନାମ ତୈତିଳ, ଯାହାକୁ ପୋଥିରେ ଅନ୍ୟତ୍ର ତୈତୁଲ୍ୟ ବୋଲି ଲେଖାଯାଇଛି । ଏହି ସମୟରେ ମହିଷାସୁରର ସେନାପତି ଶୁମ୍ଭ ଓ ନିଶୁମ୍ଭ ଅଳକାପୁରକୁ ଅଭିଯାନ କଲେ । ଅଭିଯାନ ସଫଳ ହେଲା ।]

୯. ''ଅଶିଣ କୃଷ୍ଣ ଯେ ଅଷ୍ଟମୀର ଦିନ । ଭୃଗୁବାର ମୂଳା ନକ୍ଷତ୍ର ସେ ଦିନ ବିଦ୍ୟମାନ ॥

ବାୟବ୍ୟ ନାମେ କରଣ ଯେ ଶୁଭ ନାମେ ଯୋଗ । ରାତ୍ର ପ୍ରହରକେ ଦେବତାଏ ଉଦବେଗ ॥''

[ଏହି ସମୟରେ ଦେବତାମାନେ ସମବେତ ହୋଇ ଦେବୀ ଦୁର୍ଗାଙ୍କୁ ଜ୍ଞାତ କରାଇଲେ ।]

୧୦. ''ମାର୍ଗଶିର କୃଷ୍ଣପକ୍ଷ ପ୍ରତିପଦା ଦିନ । ଅର୍କବାର ଯେ ରୋହିଣୀ ନକ୍ଷତ୍ର ବିଦ୍ୟମାନ ॥

ବାୟବ୍ୟ ନାମେ କରଣ ଯେ ବ୍ରହ୍ମା ନାମେ ଯୋଗ । ବିଛା ସଙ୍କରାନ୍ତିକି ପଚିଶ ଦିନ ଭୋଗ ॥''

[ବିଛା ସଂକ୍ରାନ୍ତି ନ ହୋଇ ତୁଳା ସଂକ୍ରାନ୍ତି ହେଲେ ଚାନ୍ଦ୍ରମାସ ସହ ସୌରମାସ ଖାପଖାଇବ । ଏହି ସମୟରେ ବଶିଷ୍ଠଙ୍କ ସହିତ ଅରୁନ୍ଧତୀଙ୍କ ବିବାହ ହେଲା ।]

୧୧. ''ଆଶୀନ ମାସ କୃଷ୍ଣପକ୍ଷ ଅଷ୍ଟମୀର ତିଥି । ବୁଧବାର ସେ ଦିନ ଆରଦ୍ରା ନକ୍ଷତ୍ର ସତି ॥

ବାଇବ୍ୟ ନାମେ କରଣ ପ୍ରତି ନାମେ ଯୋଗ । ବରଷା ରିତୁ ଅନ୍ତେ ଶରଦ କରେ ଭୋଗ ॥''

[ଯୋଗର ପ୍ରକୃତ ନାମ ପ୍ରୀତି । ଏହି ସମୟରେ ଦୁର୍ଗାଙ୍କ ଶରୀରରୁ ଦେବୀମାନେ ଜନ୍ମିଲେ ।]

୧୨. "କୁମ୍ଭମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଅର୍କବାର । ପୁଷ୍ୟ ନକ୍ଷତ୍ର ଅନ୍ତେ ଅଶ୍ଳେଷା ଦଣ୍ଡବାର ।
ତୈତୁଲ୍ୟ ନାମେ କରଣ ବ୍ରହ୍ମ ନାମେ ଯୋଗ । ମାଳତୀକି ବୈଲୋଚନ ଭେଟିଲା ବନମାର୍ଗ ।।"
[ଏହି ମାଳତୀ ରୂପରେ ବିଷ୍ଣୁ ବୈଲୋଚନ ଦୈତ୍ୟକୁ ନିପାତ କଲେ ।]

୧୩. "ମକର ମାସ ଶୁକ୍ଳପକ୍ଷ ପୌର୍ଣ୍ଣମୀ ଭୂମିବାର । ମଘା ନକ୍ଷତ୍ର ଅଟଇ ସେ ଦିନର ।
ତଇତୁଲ୍ୟ ନାମେ କରଣ ପ୍ରତି ନାମେ ଯୋଗ । ସେ ଦିନ ବିରଞ୍ଚି ନାରାୟଣ କଲେ ଅନୁରାଗ ।।"
[ଏହି ଦିନ ଭାସ୍କର-ଦୈତ୍ୟକୁ ସୂର୍ଯ୍ୟ ବର ଦେଲେ ।]

୧୪. "ଶୁଣ ହୋ ପରୀକ୍ଷ ରାଜା କନ୍ୟ ମାସ ଶୁକ୍ଳପକ୍ଷ ସପତମୀର ଦିନ ।
ଭୂମିବାର ଦିନ ସେ ନକ୍ଷତ୍ର ହସ୍ତା କନ୍ୟ ।
ଗରନାମେ କରଣ ଧୃତି ନାମେ ଯୋଗ ।
ଶିଶିର ରିତୁକୁ ହେଲାନି ଚତୁଦଶ ଦିନ ଭୋଗ ।।"
[ଏହି ଦିନ ଭାସ୍କର ଦୈତ୍ୟ ମଲା ।]

ଯେକୌଣସି ତିଥି, ନକ୍ଷତ୍ର, ଯୋଗ ବା କରଣ ଯେକୌଣସି ବାରରେ ଘଟିବା ସମ୍ଭବ । ତେଣୁ, ବାର ସହିତ ପଞ୍ଚାଙ୍ଗର ଅନ୍ୟାନ୍ୟ ବିଷୟର ମେଳ-ଅମେଳ ବିଚାର୍ଯ୍ୟ ନୁହେଁ । କିନ୍ତୁ, ତିଥି, ନକ୍ଷତ୍ର, ଯୋଗ ଓ କରଣ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ରାଶିଚକ୍ରରେ ଅବସ୍ଥିତି ଉପରେ ନିର୍ଭର କରୁଥିବା ହେତୁରୁ ସେସବୁ ମଧ୍ୟରେ ପାରସ୍ପରିକ ମେଳ ରହିବା ଆବଶ୍ୟକ ।

ତିଥି ସହିତ ନକ୍ଷତ୍ରର ସ୍ଥାୟୀ ସମ୍ପର୍କ ରହିଛି । ବର୍ଷର ବିଭିନ୍ନ ସମୟରେ ରାଶିଚକ୍ରର ସୂର୍ଯ୍ୟର ସ୍ଥିତି ବିଭିନ୍ନ ହୋଇଥାଏ ଓ ସୂର୍ଯ୍ୟଠାରୁ ଚନ୍ଦ୍ରର କୌଣିକ ଦୂରତ୍ୱ ହିଁ ତିଥିକୁ ନିରୂପଣ କରେ । ମାସ ଦ୍ୱାରା ସୂର୍ଯ୍ୟର ଅବସ୍ଥିତି ଓ ନକ୍ଷତ୍ର ଦ୍ୱାରା ଚନ୍ଦ୍ରର ଅବସ୍ଥିତି ସୂଚିତ ହେଉଥିବା ହେତୁରୁ ନିର୍ଦ୍ଦିଷ୍ଟ ମାସରେ ଚନ୍ଦ୍ର କେଉଁ ନକ୍ଷତ୍ରରେ ରହିଲେ ପ୍ରାୟ କେଉଁ ତିଥି ହେବ ଗଣନା କରାଯାଇପାରିବ (ଓଡ଼ିଆ ଜ୍ୟୋତିଷ ପତ୍ରିକା ନିୟତିର ୧୯୭୧ ଡିସେମ୍ବର ସଂଖ୍ୟାରେ ପ୍ରକାଶିତ ମୋର 'ପଞ୍ଚାଙ୍ଗ ପରିଚୟ' ପ୍ରବନ୍ଧରେ ମୁଁ ଗଣନାର ସୂତ୍ର ଦେଖାଇଛି) । ତିଥିରୁ ନକ୍ଷତ୍ର ବାହାର କରିବା ଲାଗି ସ୍ଥୂଳ ନିୟମଟି ହେଲା— ତିଥିଟି ପୂର୍ଣ୍ଣିମାଠାରୁ ଯେତେ ସଂଖ୍ୟକ ତିଥି ପୂର୍ବବର୍ତ୍ତୀ ନକ୍ଷତ୍ରଟି ମାସ ନାମାଙ୍କିତ ନକ୍ଷତ୍ରଠାରୁ ତେତେ ସଂଖ୍ୟକ ନକ୍ଷତ୍ର ପୂର୍ବବର୍ତ୍ତୀ । ଏହାକୁ ସୂତ୍ର ରୂପରେ କୁହାଯାଏ—

''ଯେଉଁମାସ ସେହି ନକ୍ଷତ୍ର ଧରି, ତହିଁରେ ତିଥିକୁ ମିଶାଇ କରି ।।
କୃଷ୍ଣେ ଚବିଶ ଶୁକ୍ଳେବାର, ସତାଇଶେ ହରି କର ବିଚାର ।।''

ମାସ ନାମାଙ୍କିତ ନକ୍ଷତ୍ର କହିଲେ ବୈଶାଖର ବିଶାଖା, ଜ୍ୟେଷ୍ଠର ଜ୍ୟେଷ୍ଠା ଇତ୍ୟାଦି (ପୂର୍ବ-ଉତ୍ତରା ଯୋଡ଼ି ନକ୍ଷତ୍ର ମଧ୍ୟରୁ ଉତ୍ତରାଟି ଗ୍ରାହ୍ୟ) ଏହା ସ୍ଥୂଳ ହିସାବ । ମଳମାସ ନିକଟରେ ଏପଟ ସେପଟ ଗୋଟିଏ ନକ୍ଷତ୍ରର ବ୍ୟବଧାନ ସମ୍ଭବ ହୁଏ । କିନ୍ତୁ, ବ୍ୟବଧାନ କଦାପି ଦୁଇ ନକ୍ଷତ୍ର ଟପିବନାହିଁ ।

ଚଣ୍ଡୀପୁରାଣରେ ପ୍ରଦତ୍ତ ପଞ୍ଜାଙ୍ଗଗୁଡ଼ିକୁ ପରୀକ୍ଷା କଲେ ଜଣାଯାଏ ଯେ ସାରଳାଦାସ ତିଥି ସହିତ ନକ୍ଷତ୍ରର ସଂପର୍କ ବିଷୟ ନିଶ୍ଚୟ ଜାଣିଥିଲେ । ଉଦ୍ଧୃତ ପଞ୍ଜାଙ୍ଗଗୁଡ଼ିକ ମଧ୍ୟରୁ ସଂ. ୨,୩,୪,୫,୧୦,୧୧ ଓ ୧୩ରେ ତିଥି ସହ ନକ୍ଷତ୍ରର ମେଳ ହେଉଛି । ପଞ୍ଜାଙ୍ଗ ସଂ.୧ର ଆଶ୍ୱିନ ମାସଟି ହୁଏତ ଅନୁଲେଖକର ଭ୍ରମ । ମୁଦ୍ରିତ ପୁସ୍ତକରେ ଏହା ସିଂହ ମାସ ବୋଲି ଲେଖାଅଛି ଓ ସିଂହ (ଭାଦ୍ରବ) ମାସ ହେଲେ ତିଥି ସହିତ ନକ୍ଷତ୍ର ମିଳୁଛି । ପଞ୍ଜାଙ୍ଗ ସଂ ୬ର ବିବାହ ଯୋଗରେ ମେଷ (ବୈଶାଖ) ଶୁକ୍ଳ ପଞ୍ଚମୀ ସ୍ୱାତୀ ନକ୍ଷତ୍ର ବୋଲି ଲେଖାଅଛି । କିନ୍ତୁ ସେହି ତିଥିରେ ନକ୍ଷତ୍ରଟି ଆର୍ଦ୍ରା ହେବା କଥା । ଆର୍ଦ୍ରାରେ ବିବାହ ଅକର୍ତ୍ତବ୍ୟ ବୋଲି ଜାଣି କୌଣସି ଅନୁଲେଖକ ଆର୍ଦ୍ରାକୁ ବଦଳାଇ ସ୍ୱାତୀ (ଏକ ବିବାହଯୋଗ୍ୟ ନକ୍ଷତ୍ର) କରିଥାଇପାରେ । ପଞ୍ଜାଙ୍ଗ ସଂ.୭ ମାସଟି କୁମ୍ଭ ନହୋଇ ମୀନ ହେବ, କାରଣ ମୀନ ସଂକ୍ରାନ୍ତିର ଚବିଶ ଦିନ ପରେ ଏହା ପଡୁଛି ବୋଲି ଲେଖାହୋଇଛି । ମାସଟି ମୀନ ହେଲେ ତିଥି ଓ ନକ୍ଷତ୍ର ମଧ୍ୟରେ ଅମେଳ ରହୁନାହିଁ । ପଞ୍ଜାଙ୍ଗ ସଂ.୮ରେ ମାସ ଓ ପକ୍ଷ ଜଣାଇ ଦିଆଯାଇ ନଥିବା ହେତୁରୁ ମେଳ-ଅମେଳ ବାରିବା ସମ୍ଭବପର ନୁହେଁ । ପଞ୍ଜାଙ୍ଗ ସଂ.୯ରେ ଆଶ୍ୱିନ କୃଷ୍ଣ ଅଷ୍ଟମୀ ତିଥିରେ ଆର୍ଦ୍ରା ନକ୍ଷତ୍ର ହେବା କଥା । ପଞ୍ଜାଙ୍ଗ ସଂ.୧୧ରେ ଠିକ୍ ଏହି ତିଥି ପାଇଁ କବି ଆର୍ଦ୍ରା ଲେଖିଥିବା ହେତୁରୁ ସଂ.୯ରେ ଘଟିଥିବା ନକ୍ଷତ୍ରର ଭୁଲ୍‌ଟି କବିଙ୍କର ହୋଇନପାରେ । ପଞ୍ଜାଙ୍ଗ ସଂ. ୧୨ରେ ପକ୍ଷଟି କୃଷ୍ଣ ନହୋଇ ଶୁକ୍ଳ ହେଲେ ନକ୍ଷତ୍ରଟି ଭୁଲ ହେବନାହିଁ ଓ ଦେଖାଯାଉଛି ମୁଦ୍ରିତ ପୁସ୍ତକରେ ଏହା ଶୁକ୍ଳପକ୍ଷର ବୋଲି ଲେଖାହୋଇଛି । ଏଥିରୁ ଜଣାଯାଉଛି ଯେ ମୋଟ ୧୩ଟି (ସଂ.୮କୁ ବାଦ୍ ଦେଇ) ପଞ୍ଜାଙ୍ଗ ମଧ୍ୟରୁ ସାତୋଟି କ୍ଷେତ୍ରରେ ତିଥି-ନକ୍ଷତ୍ର ମେଳ ପୂରାପୂରି ଠିକ୍ ଓ ଅବଶିଷ୍ଟ ଛଅଟି କ୍ଷେତ୍ରରେ କବି ନକ୍ଷତ୍ର/ତିଥିକୁ ଠିକ୍ ଭାବରେ ଲେଖିଥିଲେ ହେଁ ଅନୁଲେଖକ ଭୁଲ୍ କରିଥିବା ସମ୍ଭାବନା ରହିଛି । ତିଥି-ନକ୍ଷତ୍ର ସଂପର୍କ ନିରୂପକ ଜ୍ୟୋତିଷ-ଗଣନା ଜାଣିନଥିବା ଲୋକଟିଏ ଏପରି ପଞ୍ଜାଙ୍ଗ ଲେଖିବାକୁ ଗଲେ ପ୍ରତି ଆଠ ଥରରେ ସାତ ଥର ସେ ଭୁଲ୍ କରିବ; ଥରେ ହିଁ ଆକସ୍ମିକ ଠିକ୍ ହୋଇଯାଇପାରେ । ଚଣ୍ଡୀପୁରାଣରେ

ତିଥି-ନକ୍ଷତ୍ର ମେଳର ଶୁଦ୍ଧତାର ମାତ୍ରାକୁ ବିଚାର କଲେ ଜଣାଯାଉଛି ଯେ ସାରଳାଦାସ ଗଣିତ-ଜ୍ୟୋତିଷର ରାଶିଚକ୍ର, ତହିଁରେ ସୌର-ଚାନ୍ଦ୍ର ମାସ କ୍ରମରେ ସୂର୍ଯ୍ୟର ସ୍ଥିତିର ଭିନ୍ନତା ଓ ତିଥି ଭେଦରେ ସୂର୍ଯ୍ୟଠାରୁ ଚନ୍ଦ୍ରର କୌଣିକ ଦୂରତା ଆଦି ବିଷୟରେ ଜ୍ଞାନ ଅର୍ଜନ କରିଥିଲେ । ସେପରି ଜ୍ଞାନ ନଥିଲେ ଅଶୁଦ୍ଧିର ମାତ୍ରା ଅଧିକ ହୋଇଥାନ୍ତା ।

ତିଥି ସହ କରଣର ଦୃଢ଼ ସଂବନ୍ଧ । ତିଥିର ଅର୍ଦ୍ଧ କରଣ । ମୋଟ ୧୧ଟି କରଣ ମଧ୍ୟରୁ ବବ, ବାଳବ, କୌଳବ, ତୈତିଳ, ଗର, ବାଣିଜ୍ୟ ଓ ବିଷ୍ଟି ଏହି ସାତୋଟିକୁ ଚରକରଣ ଓ ଅବଶିଷ୍ଟ ଶକୁନି, ଚତୁଷ୍ପଦ, ନାଗ ଓ କିଂସ୍ତୁଘ୍ନ ଏହି ଚାରିଟିକୁ ସ୍ଥିରକରଣ କୁହାଯାଏ । ସ୍ଥିରକରଣ ଚାରିଟି ଅମାବାସ୍ୟାର ପୂର୍ବ ତିଥ୍ୟର୍ଦ୍ଧ (ଶକୁନି), ଅମାବାସ୍ୟାର ଆଦ୍ୟ ପ୍ରାନ୍ତ ଦୁଇ ତିଥ୍ୟର୍ଦ୍ଧ (ଚତୁଷ୍ପଦ ଓ ନାଗ) ଓ ଅମାବାସ୍ୟାର ପରବର୍ତ୍ତୀ ତିଥ୍ୟର୍ଦ୍ଧ (କିଂସ୍ତୁଘ୍ନ)ରେ ଘଟେ । ଶୁକ୍ଳ ପ୍ରତିପଦାଦି ଯେତେ ତିଥି ଗତ ହେଲାଣି ସେହି ସଂଖ୍ୟାକୁ ଦୁଇରେ ଗୁଣି ତହିଁରେ ଚଳିତ ତିଥିର ପ୍ରଥମାର୍ଦ୍ଧ ଚଳୁଥିଲେ ଶୂନ ଓ ଶେଷାର୍ଦ୍ଧ ଚଳୁଥିଲେ ୧ ମିଶାଇ ଯୋଗଫଳକୁ ସାତରେ ଭାଗ କଲେ ଭାଗଶେଷରୁ ବବାଦି ଚରକଟ.ଣ ସଂଖ୍ୟା ଆସିଯାଏ । ଉଲ୍ଲିଖିତ ୧୧ ଗୋଟି ପଞ୍ଜାଙ୍ଗ (ସଂ. ୧ରେ କରଣ ଲେଖା ହୋଇନାହିଁ, ସଂ. ୩ରେ ତିଥି ଲେଖା ହୋଇନାହିଁ ଓ ସଂ.୮ ରେ ମାସ ଓ ପକ୍ଷ ଲେଖାହୋଇନାହିଁ) ମଧ୍ୟରୁ ସଂ.୭, ୯, ୧୦, ୧୧ ଓ ୧୪ରେ ତିଥି ସହିତ କରଣ ମିଶୁଛି । ସଂ.୧୨ର ପକ୍ଷଟି କୃଷ୍ଣ ନହୋଇ ଶୁକ୍ଳ ହେବା ସମ୍ଭବ ବୋଲି ପୂର୍ବେ କାରଣ ଦର୍ଶାଇଛି ଓ ଶୁକ୍ଳ ହେଲେ କରଣଟି ମଧ ଠିକ୍ ହୋଇଯାଉଛି । ଏହିପରି ଭାବରେ ଦେଖିଲେ ସାରଳାଦାସ ଅଧିକାଂଶ ସ୍ଥଳେ ଠିକ୍ ଭାବରେ କରଣ ଲେଖିଛନ୍ତି । କବି ଅନ୍ୟ କେତେକ ସ୍ଥଳେ ମଧ କରଣ ଠିକ୍ ନିର୍ବାଚନ କରି ଥାଇ ପାରନ୍ତି, କିନ୍ତୁ ଅନୁଲେଖକ ତାକୁ ଅନ୍ୟଥା ଲେଖିଥାଇପାରେ । ସଂ.୩ରେ କରଣର ନାମ ବାୟବ ଲେଖାଅଛି; ଏହା ବାୟବ ନହୋଇ ବବ ହେଲେ ଅନୁମିତ ପୂର୍ଣ୍ଣିମା ତିଥି ସହ ମେଳ ହେଉଛି । ତିଥି ସହିତ କରଣର ସଂପର୍କ ବିଷୟ ଜାଣିନଥିବା ବ୍ୟକ୍ତି କରଣ ଲେଖିବାକୁ ଗଲେ ପ୍ରତି ସାତ ଥରରେ ମାତ୍ର ଦୁଇଥର କରଣଟି ଦୈବାତ୍ ଠିକ୍ ହୋଇଯାଇପାରେ । କିନ୍ତୁ ଚଣ୍ଡୀପୁରାଣରେ ଶୁଦ୍ଧିର ମାତ୍ରା ଅଧିକ ରହିଥିବାରୁ ଅନୁମାନ କରାଯାଇପାରେ ଯେ କବି କରଣ ନିର୍ଣ୍ଣୟ ହିସାବ ଜାଣିଥିବା ସମ୍ଭବ ।

ଚଣ୍ଡୀପୁରାଣକାର ତିଥି, ନକ୍ଷତ୍ର ଓ କରଣର ଜ୍ୟୋତିର୍ଷ ଗଣନା ଜାଣିଥିବା ଜଣା ପଡୁଥିଲେ ମଧ ଯୋଗ ବାହାର କରିବା ଗଣିତ ଜ୍ଞାନ ଅର୍ଜନ କରିଥିବା ଜଣାଯାଉନାହିଁ । ସେ ଯୋଗଗୁଡ଼ିକର ନାମ ମାତ୍ର ହିଁ ଜାଣିଥିଲେ ଓ ସେଗୁଡ଼ିକୁ ଯଦୃଚ୍ଛାକ୍ରମେ ଲେଖାଇଛନ୍ତି ବୋଲି ଅନୁମିତ ହୁଏ । ରବିସ୍ଫୁଟକୁ ଚନ୍ଦ୍ରସ୍ଫୁଟ ସହିତ ସରାଶି ମିଶାଇ ମିଶାଣଫଳକୁ ତେର ଅଂଶ କୋଡ଼ିଏ କଳାରେ ଭାଗକଲେ ଭାଗଫଳରୁ ଅତୀତ ହୋଇସାରିଥିବା ଯୋଗର କ୍ରମିକ ସଂଖ୍ୟା ଆସିଯାଏ । ଉଲ୍ଲିଖିତ ବାରଗୋଟି ପଞ୍ଜାଙ୍ଗ (ସଂ-୧ରେ ଯୋଗ ଲେଖା

ହୋଇନାହିଁ ଓ ସଂ.୮ର ବିବରଣ ଅପୂର୍ଣ୍ଣ) ମଧ୍ୟରୁ କେବଳ ସଂ. ୧୪ର କନ୍ୟା (ଆଶ୍ୱିନ) ଶୁକ୍ଳ ସପ୍ତମୀର ହସ୍ତାନକ୍ଷତ୍ରରେ ଧୃତି ଯୋଗ ଘଟିବାର ସମ୍ଭାବନା ରହିଛି । ସଂ.୭ର କୁମ୍ଭମାସକୁ ମୀନ ବୋଲି ସଂଶୋଧନ କଲେ ସେ ଦିନ ମଧ୍ୟ ଇନ୍ଦ୍ର ଯୋଗ ସମ୍ଭବପର । କିନ୍ତୁ, ଅନ୍ୟାନ୍ୟ ସବୁ ପଞ୍ଜାଙ୍ଗର ଯୋଗ ପ୍ରାମାଦିକ । ଯୋଗ ନିର୍ଣ୍ଣୟର ଜ୍ୟୋତିଷ-ସୂତ୍ର ଜାଣିଥିଲେ ସାରଳାଦାସ ଏତେ ସଂଖ୍ୟାରେ ଭୁଲ୍ କରିନଥାନ୍ତେ । ସେ ଏହି ହିସାବ ଜାଣିଥିଲେ ସୁଦ୍ଧା ସମୟର ଅପବ୍ୟୟ ହେବ ବୋଲି ଭାବି ଗ୍ରନ୍ଥ ଲେଖିଲାବେଳେ ଯୋଗ ହିସାବ ପ୍ରତି ଦୃଷ୍ଟି ଦେଇନାହାନ୍ତି ବୋଲି ଯୁକ୍ତି କରିହେଉନାହିଁ, କାରଣ ସେ ତିଥି ନକ୍ଷତ୍ର ଆଦି ଲେଖିବା ବେଳେ ସାବଧାନତା ଅବଲମ୍ବନ କରିଛନ୍ତି । ଜଣେ ଅଜ୍ଞ ଲୋକ ଯୋଗର କେତୋଟି ନାମକୁ ଜାଣି ପଞ୍ଜାଙ୍ଗର ଯୋଗ ଲେଖିବାକୁ ଗଲେ ପ୍ରତି ସତାଇଶି ଥରରେ ଚାରିଥର ଯୋଗଟି ତିଥି ନକ୍ଷତ୍ର ସହିତ ଦୈବାତ୍ ମିଳିଯିବା ସମ୍ଭବ । ଚଣ୍ଡୀପୁରାଣରେ ଯୋଗର ଶୁଦ୍ଧିର ମାତ୍ରା ତାହାଠାରୁ ଅଧିକ ନୁହେଁ ।

ଚଣ୍ଡୀପୁରାଣରେ (ତଥା ମହାଭାରତ କି ବିଚିତ୍ର ରାମାୟଣରେ) ପଞ୍ଜାଙ୍ଗର ବାରଂବାର ଉଲ୍ଲେଖର କାରଣ କଣ ? ମୁହୂର୍ତ୍ତ ବା କାଳର ଜ୍ୟୋତିଷ ସମ୍ମତ ଶୁଭାଶୁଭ ଉପରେ କବିଙ୍କର ଆସ୍ଥା ରହିଥିବା ହେତୁରୁ ସେ ବିଭିନ୍ନ ଘଟନାର ପଞ୍ଜାଙ୍ଗ ଦେଇଛନ୍ତି ବୋଲି ଧାରଣା ହଠାତ୍ ଜନ୍ମିପାରେ; କିନ୍ତୁ ଚଣ୍ଡୀପୁରାଣର ପଞ୍ଜାଙ୍ଗଗୁଡ଼ିକୁ ପରୀକ୍ଷା କଲେ ସ୍ପଷ୍ଟ ହୁଏ ଯେ ଫଳିତ ଜ୍ୟୋତିଷର ଭବିତବ୍ୟତା ଉପରେ ସାରଳାଦାସଙ୍କର ସେପରି ଆସ୍ଥା ନଥିଲା । ସାରଳାଦାସଙ୍କର ଫଳିତ ଜ୍ୟୋତିଷ ଉପରେ ଅନାସ୍ଥାର ଜ୍ୱଳନ୍ତ ଦୃଷ୍ଟାନ୍ତ ରୂପେ ପଞ୍ଜାଙ୍ଗ ସଂ. ୫ଟିକୁ ନିଆଯାଇପାରେ । ମୁଦ୍ରିତ ଚଣ୍ଡୀପୁରାଣରେ ମଧ୍ୟ ପଞ୍ଜାଙ୍ଗଟି ପୋଥିର ଅନୁରୂପ ରହିଥିବା ହେତୁରୁ ଏଠାରେ ଅନୁଲେଖକର ହସ୍ତକ୍ଷେପର ସମ୍ଭାବନା ରହୁନାହିଁ । ମୁଦ୍ରିତ ଚଣ୍ଡୀପୁରାଣର ପାଠ ହେଲା—

''ମକର ମାସ ଶୁକଳ ତ୍ରୟୋଦଶୀ ଦିନ । ବୃହସ୍ପତିବାର ପୁଷ୍ୟା ଋକ୍ଷ ବିଦ୍ୟମାନ ॥
ବିଷ୍ଟି ନାମରେ କରଣ ଶୁକ ନାମେ ଯୋଗ । ସେ ଦିନ ମହିଷାଚଳେ ଦକ୍ଷିଣ ଯେ ଦିଗ ॥''

ପୋଥିର ଶୂଳ ମୁଦ୍ରିତ ପୁସ୍ତକରେ ଶୁକ ହେଇଯାଇଛି । ଏହା ସମ୍ଭବତଃ ମୁଦ୍ରାକରପ୍ରମାଦ । ଶୁକ ନାମରେ କୌଣସି ଯୋଗ ନାହିଁ । ଏଥିରେ ଲେଖାଅଛି ଯେ ମହିଷାସୁର ମାଘ ଶୁକ୍ଳ ତ୍ରୟୋଦଶୀ, ଗୁରୁବାର, ବିଷ୍ଟିକରଣ ଓ ଶୂଳଯୋଗରେ ଦକ୍ଷିଣକୁ ଦିଗ୍‌ବିଜୟ ଆରମ୍ଭ କଲା । ତାହାର ଏହି ବିଜୟଯାତ୍ରା ବିଶେଷ ସଫଳତା ଲାଭ କରିଥିଲା । ଏଥିରେ ସେ ସିଂହଳ, କରଞ୍ଜ, କୁଶ ଆଦି ଦ୍ୱୀପକୁ ଜୟ କରିବା ସହ ଚନ୍ଦ୍ରଦ୍ୱୀପର ରାଜକନ୍ୟାକୁ ବିବାହ କରିଥିଲା । ଏତେଦୂର ସଫଳତା ସୂଚକ କୌଣସି ପଞ୍ଜାଙ୍ଗ କବି ଏଥିରେ ଲେଖି ନଥିବା ବିଶେଷ ପ୍ରଣିଧାନଯୋଗ୍ୟ । ପ୍ରଥମ କଥା ଯାତ୍ରା ପାଇଁ ଛଅମାସ ମଧ୍ୟରୁ ମାଘ ଗୋଟିଏ ନୁହେଁ । ତିଥି ମଧ୍ୟରେ ତ୍ରୟୋଦଶୀଟି ଦକ୍ଷିଣ ଯାତ୍ରାର ବିରୋଧୀ । ଏହି ତିଥିରେ ଯୋଗିନୀ ଦକ୍ଷିଣସ୍ଥ ଓ ସମ୍ମୁଖ ଯୋଗିନୀରେ ଯାତ୍ରା କଲେ ଚରମ ବିପର୍ଯ୍ୟୟ

ଘଟେ ବୋଲି ସବୁ ଫଳିତ ଜ୍ୟୋତିଷ ଗ୍ରନ୍ଥରେ ଲେଖାଅଛି । ପୁଣି, ସାତବାର ମଧ୍ୟରେ ଗୁରୁବାରଟି ଦକ୍ଷିଣ ଯାତ୍ରାର ପ୍ରତିକୂଳ, କାରଣ ଗୁରୁବାରରେ ଦକ୍ଷିଣକୁ ଦିକ୍‌ଶୂଳ ହୁଏ, ତେଣୁ 'ଯାମ୍ୟାଂ ଗୁରୌ ନ ବ୍ରଜେତ୍' । ପୁଷ୍ୟା ନକ୍ଷତ୍ର ମଧ୍ୟ ଦକ୍ଷିଣ-ଯାତ୍ରାର ବିରୋଧୀ, ଏହି ନକ୍ଷତ୍ରରେ ଶୂଳ ପଶ୍ଚିମସ୍ଥ ହୋଇଥିବାରୁ ପଶ୍ଚିମ ଓ ଦକ୍ଷିଣ ଅଗନ୍ତବ୍ୟ । ଯୋଗଟି ତାହାର ନାମାନୁରୂପେ ଅନୁତ୍ତମ, ଶୂଳର ଆଦ୍ୟ ସାତ ଦଣ୍ଡ ସମସ୍ତ ପ୍ରକାର କାର୍ଯ୍ୟ ପାଇଁ ବର୍ଜ୍ୟକାଳ । ସବୁଗୁଡ଼ିକ କରଣ ମଧ୍ୟରେ ଏକମାତ୍ର ବିଷ୍ଟି ହେଉଛି ଭୟଙ୍କର ଦୁର୍ଦ୍ଦାନ୍ତ । ତାହା ସର୍ବତୋଭାବରେ ଅନିଷ୍ଟକର ହେତୁ ସେଥିରେ କାର୍ଯ୍ୟାରମ୍ଭ କଲେ କାର୍ଯ୍ୟ ସମୂଳେ ଭ୍ରଷ୍ଟ ହୁଏ ବୋଲି କୁହାଯାଏ । ଅବଶ୍ୟ ଏଠାରେ ଦକ୍ଷିଣ ଯାତ୍ରା ନିଷେଧକ ବାର ଓ ନକ୍ଷତ୍ର ନେଲାବେଳେ ଗୁରୁବାରେ ପୁଷ୍ୟା ନକ୍ଷତ୍ର ଘଟିବାରୁ ଦୈବକ୍ରମେ ଅମୃତଯୋଗ ଘଟିଯାଇଛି, ଯାହା ଫଳରେ ଯୋଗ ଓ କରଣର ଅଶୁଭତ୍ୱ ହ୍ରାସ ପାଇବା କଥା । କିନ୍ତୁ, ବାର, ତିଥି ଓ ନକ୍ଷତ୍ର ଯେ ଦକ୍ଷିଣଯାତ୍ରାର ପ୍ରତିକୂଳ, ଏହା ନିଃସନ୍ଦେହ । ତଥାପି ସାରଳାଦାସ ଏହି ଯାତ୍ରାକୁ ବିଶେଷ ଭାବରେ ସଫଳ କରାଇଛନ୍ତି ।

କବି ଅକର୍ତ୍ତବ୍ୟ କାଳରେ ଅନ୍ୟାନ୍ୟ କର୍ମନିର୍ଦ୍ଦେଶ କରିଥିବା ମଧ୍ୟ କୌତୂହଳ ଜାତ କରାଏ । ପଞ୍ଜାଙ୍ଗ ସଂ.୧ ର ଅମାବାସ୍ୟା ରମଣ ପାଇଁ ଅନୁପଯୁକ୍ତ । ସଂ. ୮ର ଷଷ୍ଠୀ, ସଂ.୩, ୪ ଓ ୧୩ର ପୂର୍ଣ୍ଣିମା ଓ ସଂ. ୨, ୯ ଓ ୧୨ର ଅଷ୍ଟମୀ ଦୁଷ୍ଟା ତିଥି ହୋଇଥିବାରୁ କାର୍ଯ୍ୟାରମ୍ଭ ପାଇଁ ଅପ୍ରକୃଷ୍ଟ । ସଂ ୯ର ଦେବତାଙ୍କ ସମାବେଶ ଓ ଦୁର୍ଗାଙ୍କ ଆବିର୍ଭାବ ଓ ସଂ. ୧୧ରେ ଦେବୀମାନଙ୍କ ଜନ୍ମ ଏକ ମାସଦଗ୍ଧା ତିଥିରେ ଘଟିଛି । ଦଗ୍ଧା ତିଥି ମାସକେ ମାତ୍ର ଗୋଟିଏ, ଏଥିରେ ସମାହିତ କର୍ମ ନିଷ୍ଫଳ ହେବ ବୋଲି କୁହାଯାଏ । ଫଳିତ ଜ୍ୟୋତିଷ ଉପରେ ଲେଶମାତ୍ର ଆସ୍ଥା ଥିଲେ କବି ଅପ୍ରକୃଷ୍ଟ କାଳକୁ କର୍ମକାଳ ରୂପେ ନିର୍ଦ୍ଦିଷ୍ଟ କରିନଥାନ୍ତେ । ଏଥିରୁ ସାରଳାଦାସଙ୍କ ବିଚାର ଓ ଚରିତ୍ରର ଗୋଟିଏ ବିଶିଷ୍ଟ ଲକ୍ଷଣ ପ୍ରକାଶ ପାଉଛି, ଯେ ସେ ଭାଗ୍ୟବାଦୀ ନଥିଲେ; ଜ୍ୟୋତିଃଶାସ୍ତ୍ରର ଫଳଦାତୃତ୍ୱ ଉପରେ ତାଙ୍କର ଆସ୍ଥା ନଥିଲା । ପଞ୍ଜାଙ୍ଗ ସଂ.୫ର ଆଲୋଚନାରୁ ଆଉ ମଧ୍ୟ ସ୍ପଷ୍ଟ ଜଣାଯାଏ ଯେ କବି ମୁହୂର୍ତ୍ତାଦିର ଶୁଭାଶୁଭ ଜ୍ଞାପକ ନିୟମମାନ ଭଲ ଭାବରେ ଜାଣିଥିଲେ, ଅନ୍ୟଥା ଏପରି ବାଛି ବାଛି ପଞ୍ଜାଙ୍ଗ ଦେଇପାରି ନଥାନ୍ତେ ।

ଫଳିତ ଜ୍ୟୋତିଷ ପ୍ରତି ଏତାଦୃଶ ଅନାସ୍ଥା ସତ୍ତ୍ୱେ କବି ଜ୍ୟୋତିଷର ପଞ୍ଜାଙ୍ଗ ଆଦି ତଥ୍ୟାବଳୀକୁ ଏତେ ଅଧିକ ମାତ୍ରାରେ ଲେଖିଛନ୍ତି କାହିଁକି ? ଏହାର କାରଣ ଏହା ହୋଇପାରେ ଯେ କବି ନିଜ ପାଇଁ ଗ୍ରନ୍ଥ ଲେଖୁନଥିଲେ । ଯେଉଁ ଗ୍ରାମ୍ୟ ସମାଜରି ଅଶିକ୍ଷିତ/ ଅର୍ଦ୍ଧଶିକ୍ଷିତ ଲୋକଙ୍କ ମଧ୍ୟରେ ପ୍ରଚାର ଲକ୍ଷ୍ୟରେ ତାଙ୍କ ରଚନାଟି ଅଭିପ୍ରେତ ସେହି ସମାଜରେ ଜ୍ୟୋତିଷ ସମର୍ଥିତ ଅବଶ୍ୟମ୍ଭାବିତା ଉପରେ ପ୍ରବଳ ଆସ୍ଥା ଥିଲା, ଏତିକି ସ୍ୱୀକାର୍ଯ୍ୟ । ଜନସମାଜର ଗ୍ରହଣୀୟ ହେବା ଉଦ୍ଦେଶ୍ୟରେ ହିଁ କବି ପଞ୍ଜାଙ୍ଗକୁ ଦେଇଥାଇପାରନ୍ତି । କାରଣ, ଲୋକଚିତ୍ତର ସ୍ୱୀକୃତି ନ ପାଇଲେ ଓଡ଼ିଆ ସାହିତ୍ୟ-ଶିଶୁକୁ

ସମାଜ ଲାଳନପାଳନ କରିବାରେ ଅନାଗ୍ରହ ପ୍ରକାଶ କରିବା ଆଶଙ୍କା ଥିଲା । ଏହା ସତ୍ତ୍ୱେ ସୁଶିକ୍ଷିତ ବୁଧଜନଙ୍କ ପାଇଁ ପ୍ରତିକୂଳ ପଞ୍ଜାଙ୍ଗକୁ ବାଛି ବାଛି ଦେଇ ଜ୍ୟୋତିଷର ଅନିବାର୍ଯ୍ୟ ଭବିତବ୍ୟତା ଉପରେ ପ୍ରଚଣ୍ଡ ଆଘାତ ଦେଇପାରିଛନ୍ତି । ଚଣ୍ଡୀପୁରାଣର ପଞ୍ଜାଙ୍ଗଗୁଡ଼ିକରେ ପ୍ରକୃତରେ ଫଳିତ ଜ୍ୟୋତିଷ ପ୍ରତି ପ୍ରବଳ ଉପହାସ (satire) ରହିଛି । ଏହିଠାରେ ସେହି ମହାନ୍ ସାହିତ୍ୟ ସ୍ରଷ୍ଟାଙ୍କର ଅନନ୍ୟ ସୁଲଭ ନୈପୁଣ୍ୟ ନିହିତ ।

—

## ଦ୍ୱାଦଶ ଅଧ୍ୟାୟ

# ପାଠ୍ୟପୁସ୍ତକରେ ସାରଳାଦାସଙ୍କ ଦୁର୍ଗତି

ଭାଷା-ସାହିତ୍ୟ ଶିକ୍ଷାର ଗୁଣାତ୍ମକ ବିକାଶ ଲକ୍ଷ୍ୟରେ ଶିକ୍ଷାବିଦ୍‌ମାନେ ବହୁକାଳରୁ ନାନା ସମସ୍ୟା ନେଇ ଆଲୋଚନା କରିଆସୁଛନ୍ତି । ବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ପ୍ରଣୟନ ଓ ପରୀକ୍ଷା ଦାୟିତ୍ୱ ନେଇଥିବା ମାଧ୍ୟମିକ ଶିକ୍ଷାବୋର୍ଡ଼ ପାଠ୍ୟ ବିଷୟର ମାନ ନିର୍ଦ୍ଧାରଣ କରି ପ୍ରଚଳନ କରିଥାଏ । ଶିକ୍ଷକ ଗୋଷ୍ଠୀରେ ପାଠ୍ୟ ବିଷୟର ଗୁଣାଗୁଣ ବିଷୟରେ ଚର୍ଚ୍ଚା ଆଗେ ହେଉଥିଲା, ଏବେ ବି ହେଉଥାଇପାରେ । ମୁଁ ଶିକ୍ଷକ ନୁହେଁ, କିନ୍ତୁ ଶିକ୍ଷାବୋର୍ଡ଼ ପ୍ରଚଳନ କରୁଥିବା ପାଠ୍ୟପୁସ୍ତକ ଦେଖିବାକୁ ପାଉଛି ପିଲାମାନେ ପାଠ ପଢୁଥିବାରୁ । ଜଣେ ସାହିତ୍ୟିକ ଭାବରେ ମୁଁ ନିର୍ଦ୍ଦିଷ୍ଟ ପ୍ରସ୍ତାବଟିଏ ଏହି ପ୍ରସଙ୍ଗରେ ବାଢୁଛି । ପ୍ରସ୍ତାବଟି ହେଲା– ମହାବିଦ୍ୟାଳୟ ସ୍ତର ପୂର୍ବରୁ ଛାତ୍ରମାନଙ୍କୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ପଢ଼ାନଯାଉ । ଛାତ୍ରମାନଙ୍କର ହିତ, ଶିକ୍ଷକମାନଙ୍କର ସୁବିଧା ଓ ପ୍ରାଚୀନ ସାହିତ୍ୟର ସ୍ୱତନ୍ତ୍ର ମର୍ଯ୍ୟାଦା ଏହି ସବୁ ଦିଗରୁ ସଂପୃକ୍ତ ଶିକ୍ଷା-କର୍ତ୍ତୃପକ୍ଷ ମୋର ଏହି ପ୍ରସ୍ତାବଟିକୁ ଗୁରୁତ୍ୱଦେଇ ବିଚାର କରିବେ ବୋଲି ପ୍ରାର୍ଥନା କରୁଛି ।

ଏ ପ୍ରକାର ପ୍ରସ୍ତାବ ଦେବାପାଇଁ ବହୁତ କାରଣ ରହିଛି । ପ୍ରଥମ କଥା ହେଲା, ପ୍ରଚଳିତ ସାହିତ୍ୟିକ ଓ ଲୌକିକ ଭାଷାଠାରୁ ପ୍ରାଚୀନ ଭାଷାର ବିଶେଷ ତାରତମ୍ୟ ରହିଛି । ସାଂପ୍ରତିକ ଭାଷାର ଶବ୍ଦରୂପ ଓ ବନାନ ଅଧିକ ମାତ୍ରାରେ ସଂସ୍କୃତ ପ୍ରଭାବିତ କିନ୍ତୁ ପ୍ରାଚୀନ ଭାଷା ପ୍ରାକୃତର ନିକଟତର । ଛାତ୍ରମାନେ ଅଧ୍ୟୟନ କରୁଥିବା ବ୍ୟାକରଣ ଆଧୁନିକ ଭାଷା ପାଇଁ ଉଦ୍ଦିଷ୍ଟଥିବାରୁ ପ୍ରାଚୀନ ଭାଷାରେ ବହୁ ପ୍ରୟୋଗ ମିଳିବ ଯାହା ପ୍ରଚଳିତ ବ୍ୟାକରଣର ନିୟମ ଲଂଘନ କରୁଥିବ । ଏହି ଦୃଷ୍ଟିରୁ ଭାଷା ଓ ବ୍ୟାକରଣ ଆୟତ୍ତ କରିବାର ପ୍ରାଥମିକ ଅବସ୍ଥାରେ ଛାତ୍ରମାନଙ୍କୁ ଆଧୁନିକ ସାହିତ୍ୟିକ ଭାଷା (ସାହିତ୍ୟିକ ଭାଷା ଲେଖିବାର ଉଦ୍ଦେଶ୍ୟ ହେଲା ଲୌକିକ ଭାଷା ବା ପଣ୍ଡିତ ନୀଳକଣ୍ଠ ଦାସଙ୍କ ଘରୁଆ ଭାଷାକୁ ପ୍ରୋତ୍ସାହନ ଦେଲେ ଆଞ୍ଚଳିକତା ସମସ୍ୟା ଉଠିବ) ସହିତ ହିଁ ପରିଚିତ କରାଇବା ଆବଶ୍ୟକ । ପ୍ରଚଳିତ ସାହିତ୍ୟିକ ଭାଷା ସହିତ ପ୍ରାଚୀନ ସାହିତ୍ୟିକ ଭାଷାକୁ ଗୋଟିଏ ଭାଷା ନାମରେ ଯୁଗପତ୍ ଶିକ୍ଷା ଦେଲେ ଛାତ୍ର ଭ୍ରାନ୍ତିରେ ପଡ଼ିବା ସ୍ୱାଭାବିକ ହୋଇପଡ଼ିବ । ଛାତ୍ର ବିଦ୍ୟାଳୟ ମାଡ଼ିବା ପୂର୍ବରୁ ଲୌକିକ ଭାଷାରେ ମଣ ହୋଇସାରିଥାଏ; ସାହିତ୍ୟିକ ଭାଷା ଆୟତ୍ତ କରି ତାହାର ବ୍ୟାକରଣ ନିୟମ ଧରିବା

ତା' ପାଇଁ ନାନା ସମସ୍ୟା ସୃଷ୍ଟି କରେ । ସେଥିରେ ପୁଣି ପ୍ରାଚୀନ ଭାଷାର ସାହିତ୍ୟକୁ ତାକୁ ପଢ଼ାଇଲେ ତା'ର ଭାଷା ବିଭ୍ରାନ୍ତି ଖୁବ୍ ବଢ଼ିଯିବ ।

ଦ୍ୱିତୀୟ କଥା ହେଲା, ମୁଁ ଲକ୍ଷ୍ୟ କରିଛି ବହୁ ଶିକ୍ଷକ (ଏପରିକି ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକ) ପ୍ରାଚୀନ ସାହିତ୍ୟ ଠିକ୍ ଭାବରେ ବୁଝିପାରନ୍ତି ନାହିଁ, ପଢ଼ାଇବା ତ ଦୂରର କଥା । ବିଦ୍ୟାଳୟରେ ପ୍ରାଚୀନ ସାହିତ୍ୟ ପଢ଼ାଇବା ଲାଗି ପରିବେଶ ଓ ସାମର୍ଥ୍ୟର ଘୋର ଅଭାବ ରହିଥିବା ହେତୁ ପ୍ରାଚୀନ ସାହିତ୍ୟ ପଢ଼ାଇବା ଦ୍ୱାରା ଛାତ୍ରର ଉପକାର ତ ହେଉ ନାହିଁ, ପ୍ରାଚୀନ କବିମାନଙ୍କ ପକ୍ଷେ ସମ୍ମାନକର ମଧ୍ୟ ହେଉ ନାହିଁ। ଉପେନ୍ଦ୍ର ଭଞ୍ଜଙ୍କର 'ବୈଦେହୀଶ-ବିଳାସ'ର ପ୍ରସିଦ୍ଧ ଛାନ୍ଦଟି ନିମ୍ନ ରୂପରେ ପାଠ୍ୟପୁସ୍ତକରେ ସ୍ଥାନ ପାଇଛି–

''ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ ହରେ ସୁରବର ତାପ ଚାରୁଧାରା ସେ ।
ବହେ ମକର କେତନ × × × × × × × × ପୂରିତ ହୋଇଛି ଯେଣୁ ଅଶେଷ ରସେ ।।
ବିଦ୍ୟ ହୈମବତୀ ପଦରେ, ବିଷକଣ୍ଠ ତୋଷଦାନୀ ବେନି ମତରେ ।।

ଯଦି 'ଉତ୍ସୁକ ରତି ସମାନ' ଛାତ୍ରମାନଙ୍କୁ ପଢ଼ାଇ ହେବ ନାହିଁ ତେବେ ସମଗ୍ର ପଦଟି କୋମଳମତି ଛାତ୍ରଙ୍କ ପାଇଁ ବର୍ଜ୍ୟ । ରତିର ଅନୁପସ୍ଥିତିରେ ମକରକେତନ ତାତ୍ପର୍ଯ୍ୟହୀନ ହୋଇପଡୁଛି । ପୁଣି, 'ବିଦ୍ୟ' ମୁଦ୍ରିତ ପୁସ୍ତକରେ ଥିଲେ ହେଁ ଅଶୁଦ୍ଧ ପାଠ, ''ବିଦ୍ୟ' ଜମାରୁ ସଂସ୍କୃତ କି ଓଡ଼ିଆ ଶବ୍ଦ ନୁହେଁ । ଶୁଦ୍ଧ ଶବ୍ଦ ବଦ୍ୟ, ଅର୍ଥାତ୍ କହିବା ଯୋଗ୍ୟ; ଅବଦ୍ୟର ବିପରୀତ । ଭାଷା, ଭାବ ଓ ଛନ୍ଦ ଏ ପ୍ରକାର ତ୍ରିଦୋଷ ଯୁକ୍ତ ପାଠ୍ୟ ପଢ଼ାଇବା ଅପେକ୍ଷା ନ ପଢ଼ାଇବା ଶ୍ରେୟ ।

ମୋ ପ୍ରସ୍ତାବଟିକୁ ପ୍ରତିପାଦନ କରିବା ଲାଗି ଏଠାରେ ଆଉ ଗୋଟିଏ ଦୃଷ୍ଟାନ୍ତ ଦେଉଛି, ଏକା ସାକ୍ଷୀ ସାକ୍ଷୀ ନୁହେଁ ବୋଲି ଭାବି । ଦୃଷ୍ଟାନ୍ତଟି ବିଦ୍ୟାଳୟର ସର୍ବୋଚ୍ଚ ସ୍ତର ପାଇଁ ମାଧ୍ୟମିକ ଶିକ୍ଷା ବୋର୍ଡ଼ ଦ୍ୱାରା ପୂର୍ବେ ପ୍ରକାଶ କରାଯାଇଥିବା ''କବିତା ପ୍ରବେଶ'' ପୁସ୍ତକର ସର୍ବପ୍ରଥମ କବିତା । କବିତାଟି ସାରଳାଦାସଙ୍କ ମହାଭାରତରୁ ଉଦ୍ଧୃତ 'ବଡ଼ ଦେଉଳ ତୋଳା ।' ୧୯୭୨ରେ 'କବିତା ପ୍ରବେଶ' ପ୍ରକାଶ ପାଇବାର ଦୁଇ ବର୍ଷ ପୂର୍ବରୁ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ 'ସାରଳା-ମହାଭାରତ' ପ୍ରକାଶିତ ହୋଇ ସାରିଥିଲା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା । ପାଠ୍ୟପୁସ୍ତକ ପ୍ରସ୍ତୁତି ଦାୟିତ୍ୱ ନେଇଥିବା ବୋର୍ଡ଼ କର୍ତ୍ତୃପକ୍ଷ ଆର୍ତ୍ତବଲ୍ଲଭଙ୍କ ପାଠକୁ ଗ୍ରହଣ ନକରି କାହିଁକି ଯେ ବହୁତର ପ୍ରମାଦ ପରିପୂର୍ଣ୍ଣ ପାଠକୁ ସାରଳାଦାସଙ୍କ ରଚନା ବୋଲି ଆଦରିଲେ ତାହା ତାଙ୍କୁ ହିଁ ଜଣା । 'କବିତା ପ୍ରବେଶ'ର ମୁଖବନ୍ଧରେ ଜଣାଇ ଦିଆଯାଇଛି– ''ଶ୍ରେଣୀ ଉପଯୋଗୀ କରିବା ପାଇଁ କୌଣସି କୌଣସି ଲେଖାରେ ସ୍ଥାନେ ସ୍ଥାନେ ପରିବର୍ତ୍ତନ କରିବାକୁ ପଡ଼ିଛି ।'' ଲେଖକର ଅନୁମତି ନ-ନେଇ ତା' ଲେଖାକୁ ପରିବର୍ତ୍ତନ କରିବା ଏକ ଅନୈତିକ କାର୍ଯ୍ୟ

ଲେଖକୀୟ ସ୍ୱତ୍ୱାଧିକାର ଲେଖକର ମୃତ୍ୟୁର ଷାଠିଏ ବର୍ଷ ପର୍ଯ୍ୟନ୍ତ ରହେ । ସେହି ସମୟ ମଧ୍ୟରେ ଲେଖାରେ ପରିବର୍ତ୍ତନ ଆଣିବା ଦଣ୍ଡନୀୟ ମଧ୍ୟ । ପ୍ରାଚୀନ କବିମାନେ ତାଙ୍କ ଲେଖା ଶ୍ରେଣୀ-ଉପଯୋଗୀ ହେବ ବୋଲି ଲେଖି ନ ଥିଲେ । ତେଣୁ ତାଙ୍କ ଲେଖାକୁ ବଦଳାଇବା ଦଣ୍ଡନୀୟ ନ ହେଲେ ମଧ୍ୟ ଅନୈତିକ । ଶ୍ରେଣୀ-ଉପଯୋଗୀ କରିବା ପାଇଁ ପରିବର୍ତ୍ତନ କରାଯିବା କଥାରୁ ସ୍ପଷ୍ଟ ଯେ ପ୍ରାଚୀନ ସାହିତ୍ୟ ଯଥାବସ୍ଥିତ ଶ୍ରେଣୀ-ଉପଯୋଗୀ ନୁହେଁ ।

କୌତୁକର କଥା, 'ବଡ଼ ଦେଉଳ ତୋଳା'ରେ ଥିବା ପରିବର୍ତ୍ତନଗୁଡ଼ିକ ତାହାକୁ ଶ୍ରେଣୀର ଉପଯୋଗୀ କରିବା ପରିବର୍ତ୍ତେ ଅନୁପଯୋଗୀ କରାଇଛି । ହଯବରଲଙ୍କୁ କିପରି ପ୍ରାଚୀନ ସାହିତ୍ୟମାର୍କା ମାରି ଚଳାଯାଇପାରେ ତାହା ବଡ଼ଦେଉଳ ତୋଳା ସଙ୍ଗେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପାଠକୁ ମିଳାଇ ଦେଖିଲେ ସ୍ପଷ୍ଟ ହୋଇଯିବ ।

ବଡ଼ ଦେଉଳ ତୋଳା କବିତାର ପାଠଟି ଛତ୍ରେ ଛତ୍ରେ ପ୍ରମାଦପୂର୍ଣ୍ଣ । ଅନୁଲେଖକ ମଝିରେ ମଝିରେ କିଛି କିଛି ପଦ ଉତାରି ନାହିଁ । ଏହି କାରଣରୁ କବିତାଟିର ଅନେକ ଅଂଶ ସାର୍ଥକ ନୁହେଁ (ଯଥା– ୮, ୧୦, ୨୯, ୩୦, ୧୧୧ ଆଦି ପଦ) । ଏହି କବିତାରେ ସାରଳାଦାସଙ୍କର ମୌଳିକ ଦାଣ୍ଡୀ-ଶୈଳୀ ଜମାରୁ ନାହିଁ । ଏହାର ଭାଷା ମଧ୍ୟ ପ୍ରାୟଶଃ ଅର୍ବାଚୀନ । ସାରଳାଦାସଙ୍କ ପ୍ରାଚୀନ ଅଭିବ୍ୟକ୍ତିଗୁଡ଼ିକୁ ବଦଳାଇ ଆଧୁନିକ କରାଇ ନେବା ପାଇଁ ସବୁଠାରେ ଚେଷ୍ଟା କରାଯାଇଛି । ଏହାକୁ ସାରଳାଦାସଙ୍କ ରଚନା ବୋଲି ଛାତ୍ରଙ୍କୁ ପରିଚୟ ଦେବା ଅଯୁକ୍ତିକର ।

କବିତାଟି ମଧ୍ୟରେ ସାରଳାଦାସ ବର୍ଣ୍ଣନା କରିଥିବା ଆଖ୍ୟାନଟି ସ୍ପଷ୍ଟ ହେଉନାହିଁ । କାରଣ ମଧ୍ୟେ ମଧ୍ୟେ ସାରଳାଦାସ ଲେଖିଥିବା ଅନେକ ପଦକୁ କବିତାରେ ସ୍ଥାନ ଦିଆଯାଇନାହିଁ, ଯଥା– ଅତୀତରେ ଜଣେ ସହସ୍ର ଶିର ବିଶିଷ୍ଟ ରାବଣ ଥିବା ଓ ସେହି ସହସ୍ରଶିରା ରାବଣ ତ୍ରେତା ଯୁଗ ପର୍ଯ୍ୟନ୍ତ ରାଜତ୍ୱ କରୁଥିବା ବିଷୟ କବିତାର ୨୮ରୁ ୩୩ ପଦ ମଧ୍ୟରେ ବର୍ଣ୍ଣିତ ହେବା କଥା । କିନ୍ତୁ, ତାହା ଲେଖା ନଥାଇ ସେଠାରେ କେତେକ ଅପ୍ରାସଙ୍ଗିକ କଥା ଲେଖା ହୋଇଛି । ପରିଣାମରେ ୩୫ ପଦରେ ଉଲ୍ଲିଖିତ ରାକ୍ଷସଟି ଯେ ସହସ୍ରଶିରା ରାବଣ ଜାଣିବାର ଉପାୟ ନାହିଁ ।

କବିତାର ପାଠ ପ୍ରସ୍ତୁତିରେ ସମ୍ପାଦିତ ଭ୍ରାନ୍ତିର ତୁଙ୍ଗିମାକୁ କବିତାଟି ସଂପର୍କରେ ପ୍ରଦତ୍ତ ଟିପ୍ପଣୀ ବଳି ପଡ଼ିଛି । ଟିପ୍ପଣୀରେ ଜଣାଇ ଦିଆଯାଇଛି ''ମହାଭାରତର 'ଆଦିପର୍ବ'ରୁ ଜଗନ୍ନାଥଙ୍କ ବଡ଼ ଦେଉଳ ତୋଳା ସମ୍ପର୍କୀୟ ଅଂଶଟି ଉଦ୍ଧୃତ ହୋଇଛି ।'' ଏହା ଶୁଦ୍ଧ ମିଥ୍ୟା । ଯଦି ସଂପାଦକ କବିତାର ଠିକଣା ନ ଜାଣନ୍ତି ତାହା କ୍ଷମଣୀୟ କାରଣ ଆଧୁନିକ ପାଠୁଆ ଲୋକେ ପ୍ରାଚୀନ ସାହିତ୍ୟ ପ୍ରାୟ ସ୍ପର୍ଶ କରନ୍ତି ନାହିଁ; କିନ୍ତୁ ଠିକଣାଟି ସତେ କି ଜାଣିଥିବା ପରି ଛଳନା କରିବା ଅକ୍ଷମଣୀୟ । ଉଦ୍ଧୃତ ଅଂଶଟି ପ୍ରକୃତରେ ମୂଷଳୀ ପର୍ବର ।

କବିତାଟି ସାରଳା ଦାସଙ୍କ ରଚନାର ପରିବର୍ତ୍ତିତ ରୂପ ହେଲେ ହେଁ ଏଥିରେ ତଥାପି କେତେକ ପ୍ରାଚୀନ ଶବ୍ଦ/ଅଭିବ୍ୟକ୍ତି ରହିଯାଇଛି ଯାହାର ଟିପ୍ପଣୀ ଛାତ୍ର ତଥା ଶିକ୍ଷକଙ୍କ ଉପଯୋଗୀ ହୋଇପାରନ୍ତା । ଏଥିରେ ଲେଖା ଥିବା ବିଲଙ୍କ ଦେଶ, ମନୁରାଜା, ମେଲିବା, ଯମନିକ ତୀର୍ଥ, ଅମନାତ୍ୟ, ସିଦ୍ଧାନ୍ତ, ନୀଳସୁନ୍ଦର, ନାନ, ଏଥ, ନୀଳକଣ୍ଠବଟ, ଆକର୍ଷି, ଯୁଣ, କାଷ୍ଠା, ପରିମାଣି ଆଦି ଶବ୍ଦର ଅର୍ଥ ପ୍ରଦାନ ଆବଶ୍ୟକ । କିନ୍ତୁ, ବୋର୍ଡ଼ କର୍ତ୍ତୃପକ୍ଷ ଏସବୁ ଶବ୍ଦକୁ ନ ବୁଝାଇ ଅନ୍ୟ ଛଅଟି ଅଭିବ୍ୟକ୍ତିର ଅର୍ଥ ବୁଝାଇଛନ୍ତି । ବୋର୍ଡ଼ ବୁଝାଇଥିବା ୧. ଗାଲମାଧବ, ୨. ଭୀମ, ୩. ନୀଳକପି, ୪. ଆଦିତ୍ୟ ୫. ଅଷ୍ଟାବକ୍ର..... ମହାବଳ ଓ ୬. କଠୋରର ଅର୍ଥ ପ୍ରଦାନର ସାମର୍ଥ୍ୟ ବିଚାର କଲେ ସ୍ପଷ୍ଟ ହେବ ଯେ ବୋର୍ଡ଼ ଅନ୍ୟାନ୍ୟ ପ୍ରାଚୀନ ଶବ୍ଦର ଅର୍ଥ ପ୍ରଦାନ ନ କରି ଛାତ୍ରମାନଙ୍କର ଉପକାର କରିଛନ୍ତି ।

ବୋର୍ଡ଼ ବୁଝାଇଛନ୍ତି– ''ଗାଲମାଧବ ଜଣେ ପୁରାଣ ବର୍ଣ୍ଣିତ ରାଜା । ଇନ୍ଦ୍ରଦ୍ୟୁମ୍ନ ତୋଳାଇଥିବା ବଡ଼ ଦେଉଳ ପୋତି ହୋଇଯିବା ପରେ ଥରେ ମନ୍ଦିର ଚୂଡ଼ାରେ ଥିବା ଚକ୍ରରେ ତାଙ୍କ ଘୋଡ଼ାର ଖୁରା ବାଜିଗଲା । ତହିଁ ଉତ୍ତାରୁ ସେ ବାଲି ଖୋଳାଇ ମନ୍ଦିରଟିକୁ ଉଦ୍ଧାର କରିଥିଲେ ।'' ଗାଲମାଧବଙ୍କ ଏପରି ପରିଚୟ ଲେଖିଥିବା ବ୍ୟକ୍ତି ସାରଳା ଦାସଙ୍କ ମହାଭାରତ ତ ଦୂରର କଥା ଆଲୋଚ୍ୟ କବିତାଟିକୁ ମଧ ଥରେ ପାଠ କରିନାହାନ୍ତି । କେବଳ ଚଳଚ୍ଚିତ୍ର ଯୋଗେ ସୁପ୍ରଚାରିତ ଆଖ୍ୟାନ ଅନୁସାରେ ଟିପ୍ପଣୀଟିକୁ ଲେଖି ପାରିଶ୍ରମିକ ପକେଟସ୍ଥ କରିଛନ୍ତି । ଏହି ଟିପ୍ପଣୀ ସାରଳା ଦାସଙ୍କ ସମ୍ପର୍କରେ ଭ୍ରାନ୍ତି ସୃଷ୍ଟି କରୁଛି । ସାରଳା ଦାସଙ୍କ ଗାଲମାଧବ ଇନ୍ଦ୍ରଦ୍ୟୁମ୍ନଙ୍କ ପରବର୍ତ୍ତୀ କି ସମସାମୟିକ ରାଜା ନୁହନ୍ତି; ସେ ପୂର୍ବବର୍ତ୍ତୀ ରାଜା । ସ୍ୱୟଂ ଇନ୍ଦ୍ରଦ୍ୟୁମ୍ନ ଶୁକମୁନିଙ୍କ ମୁଖରୁ ପ୍ରାଚୀନ କାଳର ଗାଲମାଧବ ରାଜାଙ୍କ ଚରିତ ଶୁଣିଥିବା କଥା ଆଲୋଚ୍ୟ କବିତାର ୧୫ ଓ ୧୬ ପଦରେ ଲେଖାଅଛି । ବିଷ୍ଣୁ ଶାପ ଦେବା ହେତୁ ଗାଲମାଧବର ବଂଶ ଲୁପ୍ତ ହୋଇ ସାରିଥିବା ବିଷୟ ଏହି କବିତାର ୧୦ ପଦରେ ମଧ ଲେଖା ଅଛି– ''ବିଷ୍ଣୁ ଆଜ୍ଞାରେ ମାଧବ ବଂଶ ଗଲା କ୍ଷୟ'' । ଦେଉଳ ବାଲିରେ ପୋତି ହେବା ଓ ଘୋଡ଼ା ଖୁରା ବାଜିବାରୁ ବାଲି ତଳୁ ମନ୍ଦିରଟିକୁ ଖୋଳି କାଢ଼ିବା ବିଷୟ ସାରଳା ଦାସଙ୍କ ବର୍ଣ୍ଣନାରେ ନାହିଁ ।

ଟିପ୍ପଣୀରେ 'ଭୀମ' ଶବ୍ଦର ଅର୍ଥ ଦିଆଯାଇଛି– 'ଭୟଙ୍କର (ଏଠାରେ କ୍ରୁଦ୍ଧ)' । ଭୀମ ଶବ୍ଦ ଥିବା ସମଗ୍ର ପଦଟି ଅଶୁଦ୍ଧ ପାଠ । ଭୀମର ପ୍ରକୃତ ଅର୍ଥ ଏଠାରେ ଖଟୁ ନଥିବାରୁ ଟିପ୍ପଣୀକାର ଅନ୍ଦାଜି କରି କ୍ରୁଦ୍ଧ ଅର୍ଥ ଯୋଗାଇଛନ୍ତି । ଟିପ୍ପଣୀରେ 'ନୀଳକପି'ର ଅର୍ଥ ଦିଆଯାଇଛି– ହନୁମାନ । ପ୍ରକୃତ ପାଠଟି 'ନଳ କପି' ହେବ, ତାହା 'ନୀଳକପି' ନୁହେଁ । ବିଶ୍ୱକର୍ମାପୁତ୍ର ନଳ ନାମକ ବାନର ଦ୍ୱାରା ରାମ ସେତୁବନ୍ଧ ନିର୍ମାଣ କରାଇଥିବା ବିଷୟ ରାମାୟଣରେ ବର୍ଣ୍ଣିତ ହୋଇଛି ଓ ସାରଳା ଦାସ କବିତା ମଧରେ ତାହାହିଁ ସୂଚାଇଛନ୍ତି । ଟୀପ୍ପଣୀକାର ରାମାୟଣର ବିବରଣ ଜାଣି ଥିଲେ 'ନୀଳକପି' ପାଠକୁ ସଂଶୋଧନ

କରିପାରି ଥାଆନ୍ତେ । ନୀଳକପିର ଅର୍ଥ ହନୁମାନ ବୋଲି ଅନ୍ଦାଜି କରି ସେ ତାଙ୍କ ଅଜ୍ଞତାକୁ ଲୁଚାଇଦେଲେ, କିନ୍ତୁ ତଦ୍ୱାରା ହଜାର ହଜାର ଛାତ୍ରଙ୍କୁ ଭଣ୍ଡିଲେ । ସେହିପରି ସେ ଉଦ୍ଭାବନ କରିଛନ୍ତି ଯେ ଆଦିତ୍ୟର ଅର୍ଥ ଇନ୍ଦ୍ର; କିନ୍ତୁ ଇନ୍ଦ୍ର ଅର୍ଥରେ ଆଦିତ୍ୟ ଶବ୍ଦର ପ୍ରୟୋଗ ନାହିଁ ଓ ଏହି ଆଖ୍ୟାନରେ ଇନ୍ଦ୍ର ଅର୍ଥ ଜମାରୁ ପ୍ରାସଙ୍ଗିକ ନୁହେଁ । କବିତାରେ 'ଆଦିତ୍ୟ ଭୟରୁ ସେ ବପୁ କଲା କ୍ଷୀଣ' ବୋଲି ଲେଖା ହେବାର ଅବ୍ୟବହିତ ପୂର୍ବରୁ ଲେଖାଅଛି ଯେ ସୂର୍ଯ୍ୟ ହିଁ ଏହି ଭୟର କାରଣ । 'କଠୋର' ଶବ୍ଦର ଅର୍ଥ ପ୍ରସଙ୍ଗାନୁସାରେ କଷ୍ଟ ବୋଲି ଲେଖିବା ସମୀଚୀନ ହୋଇଥାଆନ୍ତା କିନ୍ତୁ ଟିପ୍ପଣୀକାର ଲେଖିଛନ୍ତି ଦୃଢ଼ତା । ଏହି ପ୍ରକାରେ ଟିପ୍ପଣୀକାର କବିତାଟିକୁ ନିଜେ ନପଢ଼ି ନବୁଝି ଅଜବ ଅର୍ଥ ଯୋଗାଇଛନ୍ତି ।

'କବିତା ପ୍ରବେଶ'ର ସଂପାଦନା ପାଇଁ ବୋର୍ଡ଼ ସର୍ବଶ୍ରୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ରାମକୃଷ୍ଣ ନନ୍ଦ ଓ ସୁଧାକର ଦାସଙ୍କୁ ନେଇ ଏକ ସଂପାଦନା ମଣ୍ଡଳୀ ଗଠନ କରିଥିଲେ । ଏ ବିଷୟ ପୁସ୍ତକର ମୁଖବନ୍ଧରେ ଜଣାଇ ଦିଆଯାଇଛି । ଯେଉଁଠି ବଛା ବଛା ଅଧ୍ୟାପକ/ଶିକ୍ଷକମାନେ ସାରଳାଦାସଙ୍କୁ ଏପରି କଦର୍ଯ୍ୟ ଓ କଦର୍ଥ କରୁଛନ୍ତି ସେହି ଦେଶରେ କୋମଳ ବୟସର ଛାତ୍ରମାନେ ପ୍ରାଚୀନ ସାହିତ୍ୟ ଅଧ୍ୟୟନ କରି ପାରିବେ ବୋଲି ଦୁରାଶା ପୋଷଣ କରା ନଯାଉ । ତେଣୁ, ମୁଁ ବିଷୟର ଗଭୀର ବିଚାର ପୂର୍ବକ ପ୍ରସ୍ତାବ ଦେଉଛି ଯେ ଉଚ୍ଚ ବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ସବୁ ସାହିତ୍ୟ ପାଠ୍ୟପୁସ୍ତକରୁ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ସଂପୂର୍ଣ୍ଣ ନିଷିଦ୍ଧ କରିଦିଆଯାଉ ।

—

# ତ୍ରୟୋଦଶ ଅଧ୍ୟାୟ

## ସାରଳାଦାସଙ୍କ ରଚନାରେ

## ହାସ୍ୟ

ସାହିତ୍ୟକୁ ସାଧାରଣ ଜନତାର ଆଦରଣୀୟ କରାଇବା ପାଇଁ ହାସ୍ୟର ପ୍ରୟୋଜନ ଅଛି । ସେହି ଗୋଟିଏ ମୁହଁ; ଟିକିଏ ହସ ଧରିଥିଲେ କେଡ଼େ ମନୋରମ, କେଡ଼େ ଆକର୍ଷଣୀୟ ଲାଗେ; ଅଥଚ ହସ ନଥିଲେ ତାହାଠାରୁ ଦୂରେଇ ଯିବାକୁ ଇଚ୍ଛା ହୁଏ । ସେହିପରି ଏ ସାହିତ୍ୟ । ଟିକେ ନାଁକୁ ହାସ୍ୟର ସଂଯୋଗ ସାହିତ୍ୟକୁ ଆହ୍ଲାଦକର ପ୍ରେମଣୀୟ କରାଏ ।

ହାସ୍ୟ ବାଢ଼ିବା ପାଇଁ ସାରଳାଦାସ ମହାଭାରତରେ ଯେଉଁ ଅଭିନବ କୌଶଳ ପ୍ରୟୋଗ କରିଛନ୍ତି ତାହାର ବିବେଚନାମୂଳକ ବିଚାର ହୋଇନାହିଁ । ସେ ଘଟନା ବା ବର୍ଣ୍ଣନାରେ ହାସ୍ୟକୁ ସୀମିତ ନ ରଖି ଚରିତ୍ରଗୁଡ଼ିକୁ ହାସ୍ୟର ଉତ୍ସ କରାଇ ଦେଇଛନ୍ତି । ତାଙ୍କର ପ୍ରାଥମିକ ସୃଷ୍ଟି ସିଦ୍ଧେଶ୍ୱର ଦାସ୍ ନାମରେ ଭଣିତ ବିଚିତ୍ର ରାମାୟଣରେ ହାସ୍ୟର ସାମାନ୍ୟ ପ୍ରୟୋଗ ଅଛି କିନ୍ତୁ ସେଥିରେ ବୈଚିତ୍ର୍ୟ ନାହିଁ । ସେ ଶେଷ ଜୀବନରେ ଲେଖିଥିବା 'ଚଣ୍ଡୀପୁରାଣ'ରେ ହାସ୍ୟ ନାହିଁ କହିଲେ ଚଳେ । ତାଙ୍କର ମହାଭାରତର ହାସ୍ୟ କିନ୍ତୁ ବିଲକ୍ଷଣ ଓ ଗଭୀର ।

ସାରଳାଦାସଙ୍କ ସୃଷ୍ଟ ସାହିତ୍ୟ ପଲ୍ଲୀରେ ଉଦ୍ଭୂତ, ପଲ୍ଲୀସମାଜ ପାଇଁ ଅଭିପ୍ରେତ ଓ ପଲ୍ଲୀରେ ଲାଳିତ । ତାହାର ଆଦର ପଲ୍ଲୀରେ (ଓ ପଲ୍ଲୀସମାଜ ସହିତ ଘନିଷ୍ଠ ସମ୍ପର୍କରେ ଆବଦ୍ଧ ନଗରର ପ୍ରାକୃତ ସମାଜରେ) ପ୍ରସାରିତ ହେବାର ଅର୍ଦ୍ଧଶତାବ୍ଦୀ ପରେ ହିଁ ପରଂପରାକ୍ରମେ ସମୃଦ୍ଧ ସଂସ୍କୃତ ସାହିତ୍ୟର ଗ୍ରାହକତା କରୁଥିବା ମୁଖ୍ୟତଃ ନଗରବାସୀ ବିଦଗ୍ଧ ସମାଜ ସେଥିପ୍ରତି ଆଗ୍ରହାନ୍ୱିତ ହେଲା । ଫଳରେ ସ୍ରବିଲା ଓଡ଼ିଆ ସାହିତ୍ୟର ଦ୍ୱିତୀୟ ଉତ୍ସ, ଯାହା ସଂସ୍କୃତ ସାହିତ୍ୟପ୍ରେମୀ ଲୋକଙ୍କୁ ଆଶ୍ରୟ କରିଥିଲା ଓ ରାଜକୀୟ ପୃଷ୍ଠପୋଷକତା ପାଇଁ ପାରୁଥିଲା । ସାହିତ୍ୟର ସ୍ୱଭାବ, ମଣିଷର ସ୍ୱଭାବ ପରି, ତାହାର ସୃଷ୍ଟି ଓ ପରିବେଶ ଦ୍ୱାରା ପ୍ରଭାବିତ ହୁଏ । ପଲ୍ଲୀର ପୁରାଣ ସଭାରେ ପ୍ରଚାରିତ ଓଡ଼ିଆ ରାମାୟଣ, ମହାଭାରତ ସମେତ ପୁରାଣଗୁଡ଼ିକରେ ପରିବେଷିତ ହାସ୍ୟ ଓ ନଗରର ରାଜସଭାରେ ପ୍ରଚାରିତ କାବ୍ୟ, କବିତା ଆଦିରେ ସ୍ଥାନିତ ହାସ୍ୟ ମଧ୍ୟରେ ବେଶ୍ କିଛି

ତାରତମ୍ୟ ରହିଛି । କାବ୍ୟଧାରାର ହାସ୍ୟ ମୋଟାମୋଟି ସଂସ୍କୃତ ସାହିତ୍ୟର ଛାଞ୍ଚରେ ଢଳା କିନ୍ତୁ ପୁରାଣ ଧାରାର ହାସ୍ୟରେ ଅଳଂକାରଶାସ୍ତ୍ରର ଫରମାସ ବିଷୟରେ ସଚେତନତା ନାହିଁ । ଏହି କଥାଟି ପ୍ରତି ଆଲୋଚକମାନେ ଦୃଷ୍ଟି ଦେଇ ନାହାନ୍ତି ।

ଏହି ପରିପ୍ରେକ୍ଷଣରେ ପ୍ରଥମେ ବିଚିତ୍ର ରାମାୟଣର ହାସ୍ୟ ବିଚାର୍ଯ୍ୟ । ଋଷି ବିଭାଣ୍ଡକଙ୍କ ପୁତ୍ର ଋଷ୍ୟଶୃଙ୍ଗ ବେଶ୍ୟାଙ୍କ ସଂସର୍ଗରେ ଆସି ଉଚ୍ଚାଟ ହୋଇ ପିତାଙ୍କୁ ନ ଜଣାଇ ଲୋମପାଦଙ୍କ ରାଜ୍ୟକୁ ଯାଇଥିବା ବିଷୟ ବାଲ୍ମୀକି ରାମାୟଣରେ ରହିଛି । ସିଦ୍ଧେଶ୍ୱର ଦାସ ଆଖ୍ୟାନଟିକୁ ଅଧିକ ପରିପୁଷ୍ଟ କରିଛନ୍ତି । ଋଷ୍ୟଶୃଙ୍ଗ ଜନ୍ମାବଧି କୌଣସି ନାରୀକୁ ଦେଖି ବି ନଥିଲେ । ଲୋମପାଦଙ୍କ ଦ୍ୱାରା ନିଯୁକ୍ତ ଜଣେ ଯୁବତୀ ବେଶ୍ୟା ଏହି ସରଳ ଋଷିପୁତ୍ରକୁ ଭଣ୍ଡାଇ, ତାହାର ଅଙ୍ଗରାଗ, ସୁମିଷ୍ଟ ଖାଦ୍ୟ ଆଦିକୁ ଶ୍ରେଷ୍ଠ ଯୋଗସାଧନର ବିଭୂତି ଓ ନୈବେଦ୍ୟ ବୋଲି ବିଶ୍ୱାସ ଜନ୍ମାଇ, କାମକ୍ରୀଡ଼ାକୁ ସେହି ଯୋଗସାଧନା ବୋଲି ବୁଝାଇ ଆକୃଷ୍ଟ କରିନେବାର ବିଶଦ ବର୍ଣ୍ଣନା ବିଚିତ୍ର ରାମାୟଣରେ ବେଶ୍ ଆମୋଦକର । ବେଶ୍ୟାଟିଏ ସରଳବିଶ୍ୱାସୀ ଯୁବକକୁ ଯୋଗମାର୍ଗ ବୋଲି କହି କାମାସକ୍ତ କରାଇବା ଓ ସାଧନା ବୋଲି ଜଣାଇ ସଙ୍ଗମ କରାଇବା ଚିତ୍ରଣ ନିଶ୍ଚୟ ହାସ୍ୟକର । ଅନ୍ୟକୁ ବୋକା ବନାଇବାର ପରିଣାମ ଯଦି ଶ୍ରୋତା/ପାଠକର ସନ୍ତୋଷ ବିଧାନ କରେ ତେବେ ପ୍ରତାରଣା ହାସ୍ୟକର ହୁଏ । ଅଳଂକାର ଶାସ୍ତ୍ରରେ ପ୍ରତାରଣା ହାସ୍ୟର କାରଣ ରୂପେ ପ୍ରାଧାନ୍ୟ ପାଇନାହିଁ; କିନ୍ତୁ ପୁରାଣରେ ଓ ଲୋକକାହାଣୀରେ ପାଇଛି । ସମୁଦ୍ର-ମନ୍ଥନ ବେଳେ ଅସୁରମାନେ ଠକିହୋଇଯିବା, ଭସ୍ମାସୁରକୁ ନୃତ୍ୟ ଶିଖାଇବା ଆଳରେ ମରାଇବା, ହନୁମାନ୍ 'ମଲାବେଳକୁ ସତ କହିବା' ଆଳରେ ଲଙ୍କା ପୋଡ଼ିବା, ଭୀମ ନାରୀବେଶରେ କୀଚକ ପାଖକୁ ଯାଇ ପ୍ରେମ କରିବା ଛଳରେ ମାରିବା ଆଦି ବହୁ ହାସ୍ୟକର ଆଖ୍ୟାନ ପୁରାଣରେ ରହିଛି । 'ମୁଁ ମିଇଁକା ମାଣିକରଜା' କାହାଣୀରେ ଛେଳିଟିଏ ବାଘକୁ ଠକିବା, ଠେକୁଆଟିଏ ସିଂହକୁ ଠକି କୂଅକୁ ଡିଆଁଇବା ଆଦି ଲୋକକଥାରେ ଦୁଷ୍ଟ ଚରିତ୍ରକୁ ବୋକା ବନାଇ ଶ୍ରୋତାଙ୍କୁ ହସାଇବା କୌଶଳର ପ୍ରୟୋଗ ରହିଛି । ଅନ୍ୟର ବେକାମିର ବର୍ଣ୍ଣନା ଶୁଣିଲେ ଶ୍ରୋତା, ନିଜକୁ ଚତୁର ସ୍ତରରେ ଥୋଇ, ଆତ୍ମପ୍ରସାଦ ପାଏ, ଯାହାର ପରିଣାମ ହୁଏ ହାସ୍ୟ । ଅର୍ବାଚୀନ 'ଠକପୁରାଣ' ପର୍ଯ୍ୟନ୍ତ ସାହିତ୍ୟରେ ଅନ୍ୟକୁ ଭଣ୍ଡିବା, ପ୍ରତାରିତ କରିବା ଦ୍ୱାରା ହାସ୍ୟ ସୃଷ୍ଟି କରାଯାଇଛି । କିନ୍ତୁ କାବ୍ୟ ସାହିତ୍ୟରେ ଏହି ବଳିଷ୍ଠ କୌଶଳର ଉପଯୋଗ ହୋଇନାହିଁ ।

କେହି କେହି ଆଲୋଚକ ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ପୂର୍ବରୁ ଓଡ଼ିଆ ସାହିତ୍ୟରେ ହାସ୍ୟରସର ପରଂପରା ନଥିଲା ବୋଲି କହିଛନ୍ତି (ଯଥା– 'ସାହିତ୍ୟ ସନ୍ଧାନ' ପୃ. ୧୬୮ରେ ଡଃ ଦାଶରଥି ଦାସ) । ନିରୋଳ ଭାବରେ ହାସ୍ୟଗର୍ଭକ ରଚନା ଚତୁର ବିନୋଦର ହାସବିନୋଦ ଭାଗର ପୂର୍ବରୁ ନଥିଲେ ହେଁ ଅନ୍ୟାନ୍ୟ ରସ ସହିତ ମିଳାମିଶା

ହୋଇଥିବା ହାସ୍ୟର ପ୍ରକାଶ ଅନେକତ୍ର ରହିଛି । ମୁଁ ସଂକଳନ କରିଥିବା 'ପ୍ରାଚୀନ ହାସ୍ୟ ସମୁଚ୍ଚୟ' (୧୯୮୦) ଗ୍ରନ୍ଥରେ ଖ୍ରୀ. ୧୫ଶ ରୁ ଆରମ୍ଭ କରି ୧୯ଶ ଶତାବ୍ଦୀ ମଧ୍ୟରେ ରଚିତ ଅନେକ ହାସ୍ୟକର ରଚନାକୁ ସ୍ଥାନିତ କରିଛି । ତନ୍ମଧ୍ୟରୁ ଅଧିକାଂଶ ଚତୁର ବିନୋଦ ଅପେକ୍ଷା ପ୍ରାଚୀନତର ରଚନା ।

ସାରଳାଦାସଙ୍କର ମହାଭାରତର ହାସ୍ୟର ଏକ ବିରଳ ବିଶେଷତ୍ୱ ହେଲା ସେଠାରେ ହାସ୍ୟ ଅନେକ ଚରିତ୍ରର ସ୍ୱଭାବରେ ପରିଣତ ହୋଇଯାଇଛି । ତାଙ୍କର କଳହଖୋର, ଲଗାଢୁଟା-ଧୁରନ୍ଧର, ଭଣ୍ଡନ-ପାରଙ୍ଗମ ନାରଦ ଚରିତ୍ରଟି ଏହାର ଉଦାହରଣ । ନାରଦଙ୍କ ଭଣ୍ଡାମିର ପରିଣାମ ସର୍ବଦା ଶ୍ରୋତା/ପାଠକର ସନ୍ତୋଷପ୍ରଦ ହେଉଥିବାରୁ ନାରଦ ହାସ୍ୟକାରୀ ଚରିତ୍ର । ନାରଦଙ୍କ ହାସ୍ୟର ମୂଲ୍ୟକୁ ତୁଙ୍ଗିମାକୁ ଉଠାଇ ସାରଳାଦାସ କହିଛନ୍ତି ଯେ ଅନନ୍ୟ ଭାବରେ ଭଣ୍ଡପଣକୁ ହିଁ ସାଧି ନାରଦ ଭଗବତ୍ ସିଦ୍ଧି ହାସଲ କରିଛନ୍ତି । ସାରଳାଦାସଙ୍କୁ ମାନିଲେ ଭକ୍ତି ଆଦି ବିବିଧ ଯୋଗମାର୍ଗ ପରି ଭଣ୍ଡାମି ମଧ ଏକ ସିଦ୍ଧିର ମାର୍ଗ ଓ ନାରଦ ଭଣ୍ଡାମିର ସାଧକ ଓ ସିଦ୍ଧ । ହାସ୍ୟ ବିଷୟରେ ସାରଳାଦାସଙ୍କର ଏପରି ବିଲକ୍ଷଣ ବିଚାର ବିସ୍ମୟକର ଓ ଏକାନ୍ତ ନିଜସ୍ୱ ।

କେଶ ବାସ ମୁକୁଳା କରିଣ ଉଲଗ୍ନ ଯେ ଶାୟୀ ।
ଭ୍ରୂକୁଟୀ ନୃତ୍ୟକୁ ବକ୍ର ନୟନରେ ଚାହିଁ ॥୮୯॥
ଭଣ୍ଡ ଗୀତ ଗାଇଣ ତୁ ଖତାଇଣ ନାଚି ।
ଜିଭ୍ୟା ହଲାଇଣ ତୁ ଉପର ହାଥ କରି ଯାଚି ॥୯୦॥
ଡକା ହକା କରିଣ ପୁଣ କ୍ଷଣକେ ପାରୁ ବୋବି ।
ଭଣ୍ଡ ତାଣ୍ଡବ କରିଣ ତୁ ଅଣାକାର ପୁରୁଷ ସେବି ॥୯୧॥

× × ×

ଅତିଅନ୍ତ ତପୀ ତୁ ଅଣାକାର ସାଧି ।
ମହା ଭଣ୍ଡପଣେ ତୁ କାର୍ଯ୍ୟ କଲୁ ସିଦ୍ଧି ॥୯୫॥

× × ×

ଯଦ୍ୟପି ଅମୃତ ଯୋଗାଡ଼ ତୋତେ ହୋଇବ ପ୍ରାପତି ।
କଳି ନ ପାଇଲେ ତୁହି ଯେ ନୋହିବୁ ତିପୁତି ॥୧୦୩॥
ଭଣ୍ଡପଣେ ତୋଷ କଲୁ ସବୁଙ୍କରି ଚିତ୍ତ ।
କଉତୁକ'ଉପୁଜାଇଲୁ ତୁ ତାଣ୍ଡବ ନୃତ୍ୟଗୀତ ॥୧୦୪
ଅମାର୍ଗେ ତପେ ନାଥ ସୁଦୟା କଲା ତୋତେ ।
କଳିଦ୍ୱନ୍ଦେ ବ୍ରତି ଅଛୁ ତିନିଯୁଗ ପରିଯନ୍ତେ ॥୧୦୫॥

(ମଧ୍ୟ ପୃ. ୩୪୮-୩୪୯)

ନାରଦ ଭଣ୍ଡପଣ ଦ୍ୱାରା ସମସ୍ତଙ୍କୁ ସନ୍ତୁଷ୍ଟ କରାଉଥିବା ଓ କୌତୁକ ଜାତ କରାଉଥିବା ଦାବିରୁ ସନ୍ଦେହ ରହୁନାହିଁ ଯେ ସାରଳାଦାସ ହାସ୍ୟ ସୃଷ୍ଟି ପାଇଁ ନାରଦ ଚରିତ୍ରଟିକୁ ରୂପାନ୍ତରିତ କରିଛନ୍ତି । କଳହ ସହିତ ସଂପୃକ୍ତ ନ ହେବା ଲୋକଙ୍କୁ, କଳହର ପରିଣାମ ପ୍ରତିକୂଳ ନ ହେଲେ, କଳହର ଦୃଶ୍ୟ ସୁଖ ଦିଏ । ହାସ୍ୟ ଜନ୍ମାଇବା ପାଇଁ କଳହର ଉପସ୍ଥାପନ ନାଟକାଦିରେ ବିଶେଷ ଭାବରେ ହୁଏ । ନାରଦ କଳହ ବୀଜ ବୁଣି କିପରି ହାସ୍ୟ ସୃଷ୍ଟି କରନ୍ତି ତାହା ଦାସକାଠିଆ ନାଟରେ ବିଭିନ୍ନ 'ହରଣ' (ଏଗୁଡ଼ିକର ମୂଳ ରୂପ ସାରଳାଦାସଙ୍କ ମହାଭାରତର ଅଂଶ) ପରିବେଷଣର ଦର୍ଶକଙ୍କ ଉପରେ ପଡ଼ିବା ପ୍ରଭାବରୁ ଦେଖିହେବ । କଳହ ମାଧ୍ୟମରେ ହାସ୍ୟ ବର୍ଣ୍ଣନାର ଦୃଷ୍ଟାନ୍ତ ରୂପେ ମହାଭାରତର ମଧ୍ୟପର୍ବର ଲକ୍ଷ୍ମୀ-ପାର୍ବତୀ ବୋଲାବୋଲି ଓ ସଭାପର୍ବର ହିଡ଼ମ୍ବିକୀ ଓ ଦ୍ରୌପଦୀ ମଧ୍ୟର ଦୁଇ ସଉତୁଣୀ କଳି ଉଲ୍ଲେଖନୀୟ ।

ବିଚିତ୍ର ରାମାୟଣରେ ମଧ୍ୟ କବି ବୃଥା କଳହକୁ ହାସ୍ୟକର ଘଟନା ରୂପେ ବର୍ଣ୍ଣନା କରିଛନ୍ତି । ଋଷ୍ୟଶୃଙ୍ଗ ଘରୁ ଲୁଚି ପଳାଇ ଦଶରଥଙ୍କ କନ୍ୟା ଶାନ୍ତାଙ୍କୁ ବିବାହ କରି ପାଇଥିବା ଯୌତୁକ ଗୋଧନକୁ ଗଉଡ଼ଙ୍କ ଦ୍ୱାରା ପିତା ବିଭାଣ୍ଡକଙ୍କ ଆଶ୍ରମକୁ ପଠାଇଲେ । ଗୋରୁପଲ ଆଶ୍ରମରେ ପଶିବାରୁ ବିଭାଣ୍ଡକ ଗଉଡ଼ଙ୍କ ଉପରେ ରାଗିଯାଇ ଠେଙ୍ଗାରେ ପିଟିବାକୁ ଉଦ୍ୟତ ହେଲେ । ଗଉଡ଼ମାନେ ଲଉଡ଼ି ଚଳାଇ ବିଭାଣ୍ଡକଙ୍କ ଆକ୍ରମଣକୁ ପ୍ରତିହତ କଲେ । ଋଷି ଲଣ୍ଡଭଣ୍ଡ ହୋଇ ଭୂଶାୟୀ ହେଲେ ଓ ମାଡ଼ ଖାଇଲେ । ପରେ ଗଉଡ଼ମାନେ ପ୍ରକୃତ କଥା ଜଣାଇବାରୁ ଋଷି ଶାନ୍ତ ହେଲେ । ଏ କଳହର ବର୍ଣ୍ଣନା ରାମ ଲବକୁଶଙ୍କ ମୁଖରୁ ଶୁଣି ହସିଲେ– ''ଏସନେକ କଥା ଶୁଣି ହଂସିଲେ ରଘୁନାଥ'' (ପୃ. ୧୩୬) । କିନ୍ତୁ ରସଶାସ୍ତ୍ରରେ ବୃଥା କଳହକୁ ହାସ୍ୟର ଉତ୍ସ ଭାବରେ ସ୍ୱୀକୃତି ଦିଆଯାଇନାହିଁ ।

ସାରଳାଦାସ ଭୀମ ଚରିତ୍ରଟିକୁ ମଧ୍ୟ ସମଧିକ ହାସ୍ୟୋଦ୍ଦୀପକ କରିଛନ୍ତି । ଭୀମଙ୍କ ବପୁ ମୋଟାସୋଟା (ମୋଟା ଲୋକ ସାଧାରଣତଃ ହାସଶୀଳ ଓ ହାସକର) ସେ ଉଦରମ୍ଭର, ହୁଣ୍ଡା, ଅଶାଳୀନ, ଅପରିଣାମଦର୍ଶୀ ଓ ବିବାଦକୁ ସବୁବେଳେ ଆଗଭର ଯଦିଚ ସେ ଯୁଦ୍ଧରେ କେବେହେଲେ ପ୍ରଥମେ ଜିଣି ପାରନ୍ତି ନାହିଁ । ମହାଭାରତର ବହୁ ହାସ୍ୟକର ଘଟନାରେ ଭୀମଙ୍କର ପ୍ରମୁଖ ଭୂମିକା ଥାଏ । ପ୍ରତ୍ୟେକ ଯୁଦ୍ଧରେ ଭୀମଙ୍କର ପ୍ରଥମେ ପରାଜୟ ଗ୍ଲାନି, ବକାସୁର ବଧ ଆଖ୍ୟାନରେ ଭୀମଙ୍କର ପେଟୁ ସ୍ୱଭାବ, ଗଣ୍ଡକୀ ନଦୀର ଶାଳଗ୍ରାମଶୀଳାଗୁଡ଼ିକୁ ଗୋଡ଼ରେ ଲାତ ମାରି କ୍ରୀଡ଼ା କରିବା ଆଖ୍ୟାନରେ ତାଙ୍କର ମୂଢ଼ତା, ହନୁମାନଙ୍କ ସହ ଭେଟ ଆଖ୍ୟାନରେ ତାଙ୍କର ହୁଣ୍ଡାପଣ, ଯଜ୍ଞ ପାଇଁ ବ୍ରାହ୍ମଣ ଖୋଜା ଆଖ୍ୟାନରେ ତାଙ୍କର କିଂକର୍ତ୍ତବ୍ୟମୂଢ଼ତା ଓ ଅପ୍ରତିଷ୍ଠା ଭୂମିକୁ ଯାଇ ଔଦ୍ଧତ୍ୟ ପ୍ରକାଶ ଆଖ୍ୟାନରେ ତାଙ୍କର ଦୁଷ୍ଟ ଅବୋଲକରାପଣ ଶ୍ରୋତା/ପାଠକଙ୍କୁ ଆହ୍ଲାଦିତ କରାଇବା ଉଦ୍ଦେଶ୍ୟରେ ହିଁ ପରିକଳ୍ପିତ । ଭୀମ ଚରିତ୍ରର ଏତାଦୃଶ ବୈଚିତ୍ର୍ୟକୁ ହାସ୍ୟ

ଦୃଷ୍ଟିରୁ ଦେଖି ପାରି ନଥିବା ଯୋଗୁଁ ହିଁ ଗୋପୀନାଥ ନନ୍ଦଶର୍ମା ତାଙ୍କର 'ଶ୍ରୀ ଭାରତ ଦର୍ପଣ'ର ପୃ.୩୩ରେ ସାରଳାଦାସଙ୍କ ଉପରେ କଶାଘାତ କରି ଲେଖିଛନ୍ତି– "ସାରଳାଦାସ ଅନେକ ସ୍ଥଳରେ ବହୁ ବିଷୟରେ ଭୀମସେନଙ୍କୁ ମନ୍ଦବୁଦ୍ଧି, ଦୁର୍ନୀତିପରାୟଣ କରି ଦୁର୍ଭାବନାରେ କଦର୍ଯ୍ୟ କରିଅଛନ୍ତି । ଭୀମଙ୍କ ପ୍ରତି ଏପରି ଦୁର୍ଭାବନାର ଆଭାସ ସୁଦ୍ଧା ମୂଳ ଗ୍ରନ୍ଥରେ ନାହିଁ । କି ପ୍ରମାଣ ପାଇ ଅବା ଭୀମଙ୍କ ପ୍ରକୃତି ଚିତ୍ରଣ ଅନେକ ସ୍ଥଳରେ ଦୁର୍ମତିବିଲକ୍ଷଣ ଓ ବାଳସ୍ୱଭାବସମ୍ପନ୍ନ କରିଦେଇ ଅଛନ୍ତି, ବୁଝାଯାଉନାହିଁ ।" ପୁରାଣ ସଭାରେ ସାରଳାଦାସଙ୍କ ମହାଭାରତ ବୋଲା ହେବା ବେଳେ ଭୀମଙ୍କ ଆଚରଣର ଏତାଦୃଶ ବର୍ଣ୍ଣନା ଯେ ସାଧାରଣ ଜନତାଙ୍କୁ ଖୁବ୍ ହସାଏ ତାହା ମୁଁ ପ୍ରତ୍ୟକ୍ଷ କରିଛି । ଅନୁମାନ କରୁଛି, ମାଲ ଆଦି ଭୁଶୁଣ୍ଡା ବଳୁଆ ଲୋକଙ୍କ ପ୍ରତି କବିଙ୍କର ଅବଜ୍ଞାମୂଳକ ଦୃଷ୍ଟି ହେତୁରୁ ଭୀମ ହାସ୍ୟୋଦ୍ଦୀପକ ହୋଇପଡ଼ିଛନ୍ତି ।

ସାରଳାଦାସ ମୂର୍ଖତାକୁ ମଧ୍ୟ ହାସ୍ୟର ଉପାଦାନ କରିଛନ୍ତି । ତାଙ୍କ ବର୍ଣ୍ଣନାରେ ଶ୍ରୀରାମଙ୍କୁ ଦୁଧ ବିକି ରତ୍ନମୁଦି ପାଇଥିବା ଗଉଡ଼େ ସେହି ମୁଦିର ମୂଲ୍ୟାଙ୍କନ ଏହିପରି କରିଛନ୍ତି–

ପଞ୍ଚ କୋଟି ରତ୍ନ ଯେଉଁଣ ମୁଦିରେ ଅଛି ଲାଗି ।
ମୂର୍ଖ ଗଉଡ଼ାଏ ଲୋଡ଼ନ୍ତି ତାହା ଭାଙ୍ଗି ।।୪୦୬।।
ନାସିକାୟେ ଶୁଂଘନ୍ତି ନୁହଇ ତ ଗଂଧ ।
ଚୋବାଇଣ ବୋଲନ୍ତି ନାହିଁ ତ ଏଥେ ସ୍ୱାଦ ।।୪୦୭।।
କର୍ଣ୍ଣର କତିରେ ବାବନ୍ତି ତାହା ନେଇ ।
ଶବଦ ନାହିଁ ବୋଲି ତାହା ହାଦେ ଦିଲେ ଫୋପଡ଼ାଇ ।।୪୦୮।।

(ମହାଭାରତ, ୨ ବନ ୩୩୩)

ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀରେ ପ୍ରାୟ ଅନୁରୂପ ମୂର୍ଖତା ବର୍ଣ୍ଣିଛନ୍ତି । କିନ୍ତୁ ସାରଳାଦାସ ହାସ୍ୟ ସୃଷ୍ଟି ପାଇଁ ବାଢ଼ିଥିବା ତ୍ରିବିଧ ଜ୍ଞାନେନ୍ଦ୍ରିୟ ଦ୍ୱାରା ନିର୍ଣ୍ଣୟାତ୍ମକ ପରୀକ୍ଷା ଅଭାବରେ ଭଞ୍ଜଙ୍କ ହାସ୍ୟର ଚିତ୍ରଣ ଫିକା ପଡ଼ିଛି । ବରଂ ତାହା ବିସ୍ମୟକର ଅଦ୍ଭୁତରସ ଆଡ଼କୁ ଢଳିଛି–

ଶବରୀ ଶର୍ବରୀ ଶେଷୁଁ ଅରଣ୍ୟକୁ ଯାଇ,
ହରି-ବିଦାରିତ କରି ମୋତି ପଡ଼ିଆଇ ଯେ ।।୯।।
ବଦରୀ ଆଦରେ ନେଇ ସରୋବରେ ଧୋଇ ।
ବିକାତ ନ ଯିବବୋଲି ଆସନ୍ତି ପକାଇ ।।୧୦।।

(ଲାବଣ୍ୟବତୀ, ୨ୟ ଛାନ୍ଦ)

ବୋଧହୁଏ ଚାଣକ୍ୟ ନୀତିର ନିମ୍ନୋକ୍ତ ଶ୍ଳୋକର ଭାବର ଏହା ରୂପାନ୍ତର—

ନ ବେତ୍ତି ଯୋ ଯସ୍ୟ ଗୁଣ ପ୍ରକର୍ଷଂ
ସ ତଂ ସଦା ନିନ୍ଦତି ନାତ୍ର ଚିତ୍ରମ୍ ।
ଯଥା କିରାତୀ କରିକୁମ୍ଭଲବ୍ଧାଂ
ମୁକ୍ତାଂ ପରିତ୍ୟଜ୍ୟ ବିଭର୍ତ୍ତି ଗୁଞ୍ଜାମ୍ ।।

ଅର୍ଥାତ୍, କୌଣସି ବିଷୟର ଗୁଣର ଉତ୍କର୍ଷ ନ ଜାଣିବା ଲୋକ ଯେ ତାହାର ନିନ୍ଦା କରେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ଯଥା— କିରତରମଣୀ ହାତୀର କୁମ୍ଭରୁ ଜାତ ମୁକ୍ତାକୁ ଛାଡ଼ି ତୁଚ୍ଛ ଗୁଞ୍ଜଫଳ ଗୋଟାଇ ମାଳା ଗୁନ୍ଥି ପିନ୍ଧେ । ଗୋଟିଏ ଅସ୍ୱାଭାବିକ ଆଚରଣରୁ ଚାଣକ୍ୟ ନୀତି ନିର୍ଦ୍ଧାରଣ କରିଛନ୍ତି କିନ୍ତୁ ସାରଳାଦାସ ହାସ୍ୟ ଫୁଟାଇଛନ୍ତି ।

ସାରଳାଦାସ କୃଷ୍ଣଙ୍କ ମୁହଁରେ କୌରବ ସଭା ବାବରପୁରୀ ତୁଲ୍ୟ ବୋଲି କୁହାଇଛନ୍ତି । ବର୍ବର ଶବ୍ଦଜ ବାବରର ଅର୍ଥ ଅସଭ୍ୟ । ବାବରପୁରୀ କଳ୍ପନା ସାରଳାଦାସଙ୍କ ନିଜସ୍ୱ । ତାହା ପଶ୍ଚିମ ସୌରାଷ୍ଟ୍ରର କୁରଳ ଦେଶର ରାଜଧାନୀ ।

ଭଣ୍ଡେଶ୍ୱର ବୋଲିଣ ଅଟେ ତହିଁର ରାଜା ।
ବାଇଭଣ୍ଡ ବୋଲି ମନ୍ତ୍ରୀ ରାଜାକୁ କରେ ପୂଜା ।।୨୫୫
ଦେବତା ଅଛଇ ତହିଁ ଅଣ୍ଡିଆ କ୍ଷେତ୍ରପାଳ ।
ଲଙ୍ଗଳା ଦେବତା ସେ କେଶ ତା ମୁକୁଳ ।।୨୫୬
ସେ ନଗ୍ର ଆୟତନ ତିନିଶ ଯୋଜନ ଖଳା ।
ତିରି ପୁରୁଷ ସମସ୍ତେ ଅଟନ୍ତି ସେ ଦେଶେ ଲଙ୍ଗଳା ।।୨୫୭
ଭଣ୍ଡଶାସ୍ତ୍ରମାନ ସର୍ବେ କରନ୍ତି ଅଭ୍ୟାସ ।
ମିଥ୍ୟା ବିନା ସତ୍ୟ କଥା ନାହିଁ ପରକାଶ ।।୨୫୮
ମିଥ୍ୟା କଥା ଯେ କହଇ ତାକୁ ଦ୍ୟନ୍ତି ଶାଢ଼ୀ ।
ସତ୍ୟ କହେ ଯେଉଁ ପ୍ରାଣୀ ତାହାକୁ ପ୍ରାଣେ ମାରି ।।୨୫୯
ଭଣ୍ଡଭାଷାଭକତେ ଯେ ମିଛ କହି ଯତ ।
ଭଣ୍ଡାରୁ ଧନ ତାକୁ ଦିଅନ୍ତି ବହୁତ ।।୨୬୦
ଦେବତା ବ୍ରାହ୍ମଣ ଯେବେ ସେ ଜନମାନ ଦେଖନ୍ତି ।
ଭୂମିରେ ପାଡ଼ି ତାହାର ଉପରେ ବସନ୍ତି ।।୨୬୧
ଶିରେ ବସନ ବାନ୍ଧନ୍ତି କଟିରେ କିଛି ନାହିଁ ।
ତିରୀପୁରୁଷେ ଚାଲନ୍ତି ଉପସ୍ଥ ଯୋନି ଦେଖାଇ ।।୨୬୩।

(ମହାଭାରତ, ଉଦ୍‌ଯୋଗ ୧୮୩)

ସାରଳାଦାସ ହାସ୍ୟ ସୃଷ୍ଟିପାଇଁ, ଅନନ୍ୟ କୌଶଳର ଅବଲମ୍ବନ ସହିତ ମଣିଷକୁ ଲଙ୍ଗଳା କରିଛନ୍ତି । କାବ୍ୟ ସାହିତ୍ୟରେ ଶୃଙ୍ଗାରରସ ପାଇଁ ବିବସନ ଚିତ୍ରଣ କମ୍ ନାହିଁ,

କିନ୍ତୁ ତାହା ରମଣୀୟ, ହାସ୍ୟକର ନୁହେଁ । ସାରଳାଦାସ ହାସ୍ୟ ପାଇଁ ବିପରୀତ ଆଚରଣର ବର୍ଣ୍ଣନା କରିଛନ୍ତି, ଯାହା ଅଲୌକିକ ଓ ଅପ୍ରତ୍ୟାଶିତ । ଖଲ୍ୟକାର ଜନ୍ମ ଉପାଖ୍ୟାନ ସାରଳାଦାସଙ୍କ ମୌଳିକ ସୃଷ୍ଟି । ଏଥିରେ କୃଷ୍ଣ ଠକି ହୋଇଯାଇଛନ୍ତି ଓ ଗୋଟିଏ କୁରୂପା ବୁଢ଼ୀ ଦୂତୀକୁ ଅନ୍ଧାରରେ ରାଧା ବୋଲି ଭାବି ରମଣ କରିଛନ୍ତି ଯାହା ଫଳରେ ସେହି ଦୂତୀ ଗର୍ଭବତୀ ହୋଇ ଜନ୍ମ ଦେଇଛି ବିଶ୍ୱର ପ୍ରଥମ ସିନ୍ଧିକଟା ତସ୍କର ଖଲ୍ୟକାରକୁ । କୃଷ୍ଣଙ୍କ ପ୍ରତି ଭକ୍ତିଭାବ ପୋଷଣ କରୁଥିବା ଲୋକଙ୍କ ପକ୍ଷେ କୃଷ୍ଣଙ୍କର ଏହି କୀର୍ତ୍ତି କଦାପି ସୁଖଦ ହେବନାହିଁ । କିନ୍ତୁ କୃଷ୍ଣଙ୍କ ସ୍ଥାନରେ ଅନ୍ୟ କାହାକୁ ରଖିଲେ ରସବୋଧ ସମ୍ଭବପର ହେବ । ଅଶିକ୍ଷିତ ସମାଜରେ ସବୁଦେଶରେ ଲଙ୍ଗଳାମୁକୁଳା ହାସ୍ୟ ପ୍ରଚୁର ଥିଲା, ଆଧୁନିକ ସଭ୍ୟତାର ଆବରଣ ତଳେ ତାହା ଘୋଡ଼ାଇ ହୋଇ ରହିଛି ସିନା ଏବେ ବି ଗୋପନରେ ବହୁ ଅଶ୍ଳୀଳ ଗୀତ ଓ ଅଶ୍ଳୀଳ କାହାଣୀ ଶୁଣିବାକୁ ମିଳୁଛି । ଆଇନର କୋପଦୃଷ୍ଟି ଭୟରେ ତାହା ପ୍ରକାଶ ପାଉନାହିଁ । ରଥର ଡାହୁକ ଗୀତ ଅଶ୍ଳୀଳ ହେବାରୁ ହିଁ ହାସ୍ୟ, ଉପଭୋଗ୍ୟ । ସାରଳାଦାସଙ୍କ ଲଙ୍ଗଳା ହାସ୍ୟ ଗାଉଁଲି ଅଶିକ୍ଷିତଙ୍କ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ।

ସାରଳାଦାସ ମହାଭାରତରେ ବିଭିନ୍ନ ପର୍ବରେ ହାସ୍ୟ ସଂଯୋଗ ପାଇଁ ପ୍ରସଙ୍ଗ ସୃଷ୍ଟି କରି ଅନେକ ହାସ୍ୟକର କାହାଣୀ ଭର୍ତ୍ତି କରିଛନ୍ତି । କାହାଣୀଗୁଡ଼ିକ ଲୋକକଥା-ଧର୍ମୀ, ତନ୍ମଧ୍ୟରୁ ଅଧିକାଂଶ ସାରଳାଦାସଙ୍କ କଳ୍ପନାପ୍ରସୂତ ହୋଇଥାଇପାରେ । ତାଙ୍କର ହାସ୍ୟକର କାହାଣୀ ଭାବରେ ଉଦ୍‌ଯୋଗ ପର୍ବର ବାବନାଭୂତ କଥା ଓ ମେଳଙ୍କା ଅଳସୁଆ କଥା ଓ ସ୍ୱର୍ଗାରୋହଣ ପର୍ବର ସାହୁ-କୃଷକ ବିବାଦ କଥା ଉଲ୍ଲେଖନୀୟ ।

ପୁରାଣ-ସାହିତ୍ୟରେ ହାସ୍ୟକୁ ସ୍ଥାନ ଦେବା ବିଷୟରେ ସାରଳାଦାସଙ୍କ ଅନୁଗାମୀ ବିଶେଷ କେହି ରହିଲେ ନାହିଁ । ଏହାର ଦ୍ୱିବିଧ କାରଣ ଅନୁମାନ କରାଯାଇପାରେ । ପ୍ରଥମ କାରଣ ହେଲା, ସାରଳାଦାସଙ୍କ ପରେ ଓଡ଼ିଶାରେ ବୈଷ୍ଣବ ଭକ୍ତିଧର୍ମ ଦୃଢ଼ୀଭୂତ ହେଲା । ଯାହା ଫଳରେ ପୌରାଣିକ ଇତିହ (ମିଥ୍)କୁ ବଦଳାଇ ନୂଆ ଇତିହ ଚଳାଇବା ସହଜ ହେଲାନାହଁ ଓ ପୌରାଣିକ ଚରିତ୍ରଗୁଡ଼ିକ ପ୍ରତି ବ୍ୟଙ୍ଗ୍ୟାତ୍ମକ ଦୃଷ୍ଟି ଗର୍ହିତ ବୋଲି ବିବେଚିତ ହେଲା । ପୁରାଣ-ସାହିତ୍ୟରେ ହାସ୍ୟ ହ୍ରାସ ପାଇବାର ଅନ୍ୟତର କାରଣ ଛନ୍ଦ ହୋଇପାରେ । ହାସ୍ୟ ପରିବେଷଣ ପାଇଁ ଛନ୍ଦୋବଦ୍ଧ ପଦ୍ୟ ଅପେକ୍ଷା ନିରଙ୍କୁଶ ଗଦ୍ୟ ଅଧିକତର ଉପଯୁକ୍ତ ମାଧ୍ୟମ । ଅନୁମାନ କରୁଛି, ଏହି କାରଣରୁ ବ୍ରଜନାଥ ବଡ଼ଜେନା ଓ ଧଳଦେବ ରଥଙ୍କ କାଟର ଛନ୍ଦୋବଦ୍ଧ ପଦ୍ୟରଚନାକୁଶଳ କବିମାନେ ହାସ୍ୟ ରଚନା ପାଇଁ ଗଦ୍ୟର ଆଶ୍ରୟ ନେଇଛନ୍ତି । ଅବଶ୍ୟ ପ୍ୟାରୋଡ଼ି ପାଇଁ ପଦ୍ୟ ଶ୍ରେୟ, କିନ୍ତୁ ପ୍ୟାରୋଡ଼ି ଶୈଳୀ ଖ୍ରୀ. ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିନଥିଲା । ମନେ ରଖିବାକୁ ହେବ, ସାରଳାଦାସ ଦାଣ୍ଡିପଦ୍ୟରେ ହାସ୍ୟ ଫୁଟାଇଛନ୍ତି କିନ୍ତୁ ଦାଣ୍ଡି ଛନ୍ଦୋବଦ୍ଧ ରଚନା ନୁହେଁ ।

—

# ଚତୁର୍ଦ୍ଦଶ ଅଧ୍ୟାୟ

# ସାରଳାଦାସଙ୍କ ରଚନାର କେତୋଟି ବୈଶିଷ୍ଟ୍ୟ

ସାରଳାଦାସ ହେଉଛନ୍ତି ପ୍ରଥମ ଓଡ଼ିଆ କବି ଯାହାଙ୍କର ସମୟ ସ୍ଥୂଳ ଭାବରେ ଅନୁମିତ ହେଉଛି । ସେ ମହାଭାରତ ଲେଖା ଆରମ୍ଭ କରିବା ବେଳକୁ 'କପିଳେଶ୍ୱର ଦେବ ମହାରାଜା' ରାଜତ୍ୱ କରୁଥିବା କଥା ଲେଖିଛନ୍ତି । କପିଳେଶ୍ୱର ଓରଫ୍ କପିଳେନ୍ଦ୍ର ଦେବ ଖ୍ରୀ. ୧୪୩୫ରୁ ୧୪୬୭ ଯାଏଁ ଶାସନ କରୁଥିଲେ । ତାଙ୍କ ପୂର୍ବର ଗଙ୍ଗବଂଶୀୟ ରାଜାମାନେ 'ଗଜପତି' ବୋଲାଉଥିଲେ ହେଁ ସୂର୍ଯ୍ୟବଂଶର ପ୍ରବର୍ତ୍ତକ କପିଳେଶ୍ୱର ଖ୍ରୀ. ୧୪୫୦ ପୂର୍ବରୁ ଗଜପତି ବୋଲାଉ ନଥିଲେ । ସାରଳାଦାସ 'ଗଜପତି' ଆଖ୍ୟା ଦେଇନଥିବାରୁ ଅନୁମାନ କରାଯାଇପାରେ ଯେ ସେ ଖ୍ରୀ. ୧୪୫୦ ପୂର୍ବେ ମହାଭାରତ ଲେଖା ଆରମ୍ଭ କରିଥିଲେ । ଲେଖା ଆରମ୍ଭ କରିବା ବେଳକୁ ସେ ଯୁବକ କିନ୍ତୁ ମହାଭାରତ ସାରିବା ବେଳକୁ ବୃଦ୍ଧ । ମହାଭାରତ ଲେଖିବା ପୂର୍ବରୁ ସିଦ୍ଧେଶ୍ୱର ଦାସ ନାମରେ ବିଚିତ୍ର ରାମାୟଣ ଲେଖିଥିଲେ ଓ ମହାଭାରତ ରଚନା ସାରି ଚଣ୍ଡୀପୁରାଣ ଲେଖିଥିଲେ । ଅନୁମିତ ହୁଏ ସାରଳାଦାସ ତାଙ୍କର ତିନୋଟିଯାକ ରଚନା ଆନୁମାନିକ ଖ୍ରୀ. ୧୪୪୦ରୁ ୧୪୮୫ ମଧ୍ୟରେ ଲେଖିଥିଲେ ।

ସାରଳାଦାସଙ୍କ ରଚନାତ୍ରୟର କେତୋଟି ବୈଶିଷ୍ଟ୍ୟ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ ।

### ସାହିତ୍ୟର ଆଦିମ କାଳ

ଆଦିମ ଅନ୍ୟର ଅନୁଗାମୀ ନୁହେଁ ତେଣୁ ଅନୁକାରୀ ନୁହେଁ । ସବୁ କଥାର ଆଦିମତ୍ୱ ନିଶ୍ଚୟ ତାହାର ଏକ ବୈଶିଷ୍ଟ୍ୟ । ଏ ପର୍ଯ୍ୟନ୍ତ ମିଳିଥିବା ଓଡ଼ିଆ ସାହିତ୍ୟକୃତି ମଧ୍ୟରୁ କୌଣସିଟି ଯେ ସାରଳାଦାସଙ୍କ ପୂର୍ବରୁ ନୁହେଁ ସେ ବିଷୟ ଇତିପୂର୍ବେ 'ସାରଳାଦାସ ଯଥାର୍ଥରେ ଆଦିକବି' ଅଧ୍ୟାୟରେ ଦର୍ଶାଇଛି ।

### ଓଡ଼ିଆ ଭାଷାର ରାଜକୀୟ ସ୍ୱୀକୃତି

ଓଡ଼ିଶାର ଅଭିଲେଖରେ ଆଂଚଳିକ ଭାଷାର ସଂଯୋଗ ଚୋଡ଼ଗଙ୍ଗଙ୍କ ସମୟରୁ ଚଳିଆସୁଥିଲେ ହେଁ ଖ୍ରୀ. ୧୨୯୫ର ଭୁବନେଶ୍ୱର ଶିଳାଲେଖ ହିଁ ଆମୂଳାନ୍ତ ଓଡ଼ିଆ ଭାଷାରେ ରଚିତ ପ୍ରାଚୀନତମ ଅଭିଲେଖ । ଅଭିଲେଖଟି ଗୋଟିଏ ଧର୍ମସଂସ୍କାର । ବରଗଡ଼

ଜିଲ୍ଲାର ନୃସିଂହନାଥ ମନ୍ଦିର ଗାତ୍ରରେ ପାଟନା ରାଜା ବୈଜଳ ଦେବଙ୍କ ଦ୍ୱାରା ଖ୍ରୀ. ୧୪୧୩ରେ ଖୋଦିତ ଲେଖାଟି ପ୍ରଥମ ଓଡ଼ିଆ ରାଜକୀୟ ଅଭିଲେଖ । କପିଳେନ୍ଦ୍ର ଦେବ ତାଙ୍କ ରାଜ୍ୟର ଓଡ଼ିଆ ଅଞ୍ଚଳରେ ଲେଖାଇଥିବା (ଗୋପୀନାଥପୁର ସଂସ୍କୃତ ଅଭିଲେଖକୁ ଛାଡ଼ି) ସବୁଗୁଡ଼ିକ ଅଭିଲେଖ ତ ଅବିମିଶ୍ର ଓଡ଼ିଆ ଭାଷାରେ ଲେଖାଇଛନ୍ତି, ତେଲଙ୍ଗାଭାଷୀ ଅଞ୍ଚଳର ଅନେକାନେକ ଅଭିଲେଖକୁ ମଧ୍ୟ ଓଡ଼ିଆ ଭାଷାରେ ଲେଖାଇଛନ୍ତି । ସାହିତ୍ୟର ଉନ୍ମେଷକାଳ ବେଳେ ଭାଷାର ରାଜକୀୟ ସ୍ୱୀକୃତି ନିଶ୍ଚୟ ଏକ ପ୍ରୋତ୍ସାହକ ଘଟନା । ପଞ୍ଚଦଶ ଶତାବ୍ଦୀରେ ହିଁ ଏହା ଓଡ଼ିଶାରେ ସମ୍ଭବିଲା ।

ଶ୍ରୀମନ୍ଦିରର ଜୟବିଜୟ-ଦ୍ୱାର କାନ୍ଥରେ ଖ୍ରୀ. ୧୪୩୬ରେ ଖୋଦିତ ଅଭିଲେଖଟି କପିଳେନ୍ଦ୍ର ଦେବଙ୍କ ଉପଲବ୍ଧ ଅଭିଲେଖଗୁଡ଼ିକ ମଧ୍ୟରେ ପ୍ରାଚୀନତମ । ବିଚିତ୍ର ରାମାୟଣ ଓ ସାରଳା-ମହାଭାରତ ରଚନା ଏହା ପୂର୍ବର ହୋଇନପାରେ । ଏଥିରୁ କପିଳେନ୍ଦ୍ର ଦେବଙ୍କ ଆନୁକୂଲ୍ୟରେ ଓଡ଼ିଆ ଭାଷାର ରାଜକୀୟ ସ୍ୱୀକୃତି ସାରଳାଦାସଙ୍କ ସାହିତ୍ୟ-ସୃଷ୍ଟି ପାଇଁ ଅନୁକୂଳ ବାତାବରଣ ଯୋଗାଇଥିଲା ବୋଲି ଅନୁମାନ କରାଯାଇପାରେ ।

କପିଳେନ୍ଦ୍ରଦେବଙ୍କ ନାମରେ ଭଣିତ ସଂସ୍କୃତ ଏକାଂକିକା 'ପରଶୁରାମ ବିଜୟମ୍' ମଧ୍ୟରେ ଗୋଟିଏ ଓଡ଼ିଆ ଗୀତ ସ୍ଥାନ ପାଇଛି । ଏହିଟି ଉପଲବ୍ଧ ଓଡ଼ିଆ ଗୀତ ମଧ୍ୟରେ ପ୍ରାଚୀନତମ । ଏଥିରୁ କପିଳେନ୍ଦ୍ର ଦେବଙ୍କ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି ପ୍ରତି ଆନୁକୂଲ୍ୟର ସୂଚନା ମିଳେ । କିନ୍ତୁ, ଗୀତଟି ବିଚିତ୍ର ରାମାୟଣ ପୂର୍ବରୁ ଲେଖାହୋଇଛି କି ପରେ ତାହା ଜାଣିହେଉନାହିଁ । ରାଜକୀୟ ଆନୁକୂଲ୍ୟ ଫଳରେ 'ଯଥା ରାଜା ତଥା ପ୍ରଜା' ନ୍ୟାୟରେ ଓଡ଼ିଆ ଭାଷା ସାହିତ୍ୟିକ ଭାଷା ରୂପେ ପ୍ରକାଶ ପାଇଲା ସାରଳାଦାସଙ୍କ ଲେଖନୀରେ । କିନ୍ତୁ, ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ଯେ ସାରଳାଦାସ ରାଜକୀୟ ପୃଷ୍ଠପୋଷଣ ଲାଭ ନକରି, ସମ୍ଭବତଃ ସେଥିପାଇଁ ଲାଳସୀ ନହୋଇ, ରାଜଧାନୀରୁ ଦୂରେ ପଲ୍ଲୀରେ ରହି ସାହିତ୍ୟ ସୃଷ୍ଟି କରିପାରିଥିଲେ । ସାରଳାଦାସଙ୍କ ପଲ୍ଲୀପ୍ରାଣ, ପଲ୍ଲୀବାସ ଓ ପଲ୍ଲୀଭାଷା ପ୍ରୀତି ଫଳରେ ଓଡ଼ିଆ ସାହିତ୍ୟ ସୁବୋଧ୍ୟ ସରଳ ହୋଇପାରିଥିଲା ।

## ସରଳ ଭାଷାର ସାହିତ୍ୟ

ସାରଳାଦାସଙ୍କ ସବୁଗୁଡ଼ିକ ରଚନାର ଭାଷା ନିରଳଂକାର, ସନ୍ଧିସମାସଶୂନ୍ୟ, ଗାଉଁଲିଲୋକଙ୍କ ତୁଣ୍ଡର ସରଳ ଭାଷା । ଭାଷାକୁ ସରଳ କରିବାର ପ୍ରୟୋଜନ ତାତ୍ପର୍ଯ୍ୟପୂର୍ଣ୍ଣ : ପ୍ରୟୋଜନ ମନୁଦ୍ଦିଶ୍ୟ ନ ମନ୍ଦୋପି ପ୍ରବର୍ତ୍ତତେ ।

କବି କାବ୍ୟ-ସୃଷ୍ଟି ପାଇଁ ଯେପରି ବ୍ୟାକୁଳ ସୃଷ୍ଟ ରଚନାର ଲୋକରେ ପ୍ରଚାର ପାଇଁ ସେହିପରି । ପ୍ରଚାର ହୋଇ ନ ପାରିଲେ ସୃଷ୍ଟି ହେବା ନହେବା ଏକା କଥା ହୁଏ । ରାମାୟଣକାର ବାଲ୍ମୀକି ଲବକୁଶଙ୍କୁ ନିଜେ ରାମାୟଣ ଶିଖାଇ ପ୍ରଚାର କରାଇଲେ ।

ସେହିପରି ବ୍ୟାସ ତାଙ୍କ କୃତ ମହାଭାରତକୁ ନିଜ ଶିଷ୍ୟ ବୈଶମ୍ପାୟନଙ୍କ ଦ୍ୱାରା ପ୍ରଚାର କରାଇଥିଲେ । ଏହା ହେଲା ପରଂପରା । ସାରଳାଦାସ ତାଙ୍କ ରଚନାର ପ୍ରଚାର ପାଇଁ ଗାଁଗଣ୍ଡାର ପୁରାଣ-ସଭାର ଉପଯୋଗ କଲେ ।

ଗାଁର ଧର୍ମକାମୀ ଜନତାଙ୍କୁ ସଂସ୍କୃତ ଭାଷାରେ ରଚିତ ପୁରାଣ ଶୁଣାଇ ଦକ୍ଷିଣା ପାଇ ପୁରାଣ-ପଣ୍ଡାମାନେ ଜୀବିକା ନିର୍ବାହ କରୁଥିଲେ । ଆଜିକାଲିର ପୁରୋହିତଙ୍କ ପରି ସେମାନେ ଅଳ୍ପବିଦ୍ୟ ଥିବା ସ୍ୱାଭାବିକ । ଜଣେ ସଂସ୍କୃତ ବିଦ୍ୱାନ୍‌ଙ୍କୁ ପୋଷିପାରିବା ଭଳି ଆର୍ଥିକ ସ୍ଥିତି ଗ୍ରାମବାସୀଙ୍କର ନଥିଲା । ପୁଣି, ଗାଉଁଲି ପରିବେଶରେ ଜଣେ ପଣ୍ଡିତ ଏକାଏକା ଚଳିବା ସମ୍ଭବ ନୁହେଁ । ଅପଣ୍ଡିତ ପୁରାଣପଣ୍ଡାମାନେ ଅଶୁଦ୍ଧ ଭାବରେ ପୁରାଣ ପଢୁଥିଲେ ଓ ଲୋକଙ୍କୁ ଧାରଣା ଦେଉଥିଲେ ଯେ ଦେବଭାଷା କାନରେ ପଡ଼ିଗଲେ ଯଥେଷ୍ଟ, ପୁଣ୍ୟାର୍ଜନ ପାଇଁ ଅର୍ଥ ବୁଝିବାର ଆବଶ୍ୟକତା ନାହିଁ । ସାରଳାଦାସ ଭାବିଥିବେ, ଯଦି ପୁରାଣ-ପଣ୍ଡାଙ୍କୁ ଓଡ଼ିଆ ଭାଷାରେ ପୁରାଣ ଯୋଗାଇ ହେବ ତେବେ ଲୋକେ ଅଶୁଦ୍ଧ ଅବୋଧ୍ୟ ସଂସ୍କୃତ ଭାଷା ବଦଳରେ ସୁବୋଧ୍ୟ ଲୌକିକ ଭାଷା ଶୁଣି ଆନ୍ତରିକ ସନ୍ତୋଷ ପାଇବେ । ଆଧାର ଆଧେୟ ନୁହେଁ, ତେଣୁ ପୁଣ୍ୟ କୌଣସି ଭାଷାର ଏକାଧିପତ୍ୟ ନୁହେଁ । ଗଙ୍ଗାଜଳ ସୁନା ଝରୀରେ ନରହି ମାଟିପାତ୍ରରେ ରହିଲେ ପବିତ୍ରତା ହରାଏ ନାହିଁ । ଏହି ଭାବନାରେ ସାରଳାଦାସ ତାଙ୍କ ରଚନାର ପ୍ରଚାରକଙ୍କୁ ଜୀବିକା ଯୋଗାଇବ ବୋଲି ଶ୍ରୋତାମାନେ ଦକ୍ଷିଣା ନଦେଲେ ପୁରାଣ-ଶ୍ରବଣ ନିଷ୍ଫଳ ହେବ ବୋଲି ତାଙ୍କର ପ୍ରତ୍ୟେକ ରଚନାରେ ବାରଂବାର ଲେଖିଛନ୍ତି ।

''ଯେ ଯାହାର ଅନରୂପେ ଦାନ-ଦକ୍ଷିଣା ଦେବେ ।
ଶାସ୍ତ୍ର ଶୁଣିମାର ସଦଗତି ଲଭିବେ ।'' (ବିଚିତ୍ର ରାମାୟଣ, ୩୧୯)
''ଦକ୍ଷିଣା ଦେଲେ ସେ ଫଳଶ୍ରୁତି ପାଇ'' (ବିଚିତ୍ର ରାମାୟଣ, ୩୯୨)

× × ×

''ଯେ ଭାରଥ ଶୁଣି ଦକ୍ଷିଣା ଦିଅ ପ୍ରାଣୀ ।।
ଭାରଥ ଶୁଣି ଯେହୁ ଦକ୍ଷିଣା ନ ଦିଅନ୍ତି ।
ଶତେ ଜନ୍ମଯାୟେ ସେହୁ କର୍ଣ୍ଣରେ ବଧିର ହୁଅନ୍ତି ।।
ଆହେ ପ୍ରାଣୀମାନେ ଯେ ଦକ୍ଷିଣା ଯାଚି ଦେବ ।''
(୨ ମଧ୍ୟପର୍ବ, ୮୦୪)

''ଦକ୍ଷିଣା ନଦିଲେ କର୍ଣ୍ଣ ହୋଅଇ ବଧିର ।।'' (ସ୍ୱର୍ଗାରୋହଣ, ୨୩୮)

ସାରଳାଦାସଙ୍କ ପୂର୍ବରୁ ଦାକ୍ଷିଣାତ୍ୟର ସବୁ ଲୋକଭାଷାରେ କାବ୍ୟ-ପୁରାଣାଦି ସୃଷ୍ଟି ହୋଇଥିଲାଣି । ଏହା ତାଙ୍କ ପାଇଁ ପ୍ରେରଣାପ୍ରଦ ଥିଲା । ଦାକ୍ଷିଣାତ୍ୟର ଭାଷାଗୁଡ଼ିକରେ ସଂସ୍କୃତ ଓ ପ୍ରାକୃତ ରୀତିରେ ଗୁରୁଲଘୁ ବର୍ଣ୍ଣନିୟମାଶ୍ରିତ ପଦ୍ୟର ପ୍ରଚଳନ

ହୋଇଥିଲା । ଫଳରେ ଲୌକିକ ଭାଷା ମଧ୍ୟ ସାହିତ୍ୟରେ ଜଟିଳ ରୂପ ପରିଗ୍ରହ କଲା । ମାର୍ଗ-କବିତା ନାମରେ ଆଖ୍ୟାତ ଏହି ସଂସ୍କୃତାୟିତ ଲୌକିକ ଭାଷା-ପୁରାଣର ପରିବେଷଣ ପାଇଁ ସେଠାରେ ଚାରିଜଣ ଆବଶ୍ୟକ ହେଉଥିଲେ; ଜଣେ ଛନ୍ଦ/ବୃତ୍ତ ନିୟମକୁ ଧରି ଗାଇପାରୁଥିବା ଗାୟକ, ଜଣେ ଜଟିଳ ଭାଷାକୁ ଶ୍ରୋତୃମଣ୍ଡଳୀଙ୍କୁ ବୁଝାଇବା ପାଇଁ ପଣ୍ଡିତ ଓ ଦୁଇଜଣ ବାଦକ । ଓଡ଼ିଶାର ଗାଁ ଲୋକେ ଏତେ ଲୋକଙ୍କୁ ପୋଷିବାକୁ ହେଲେ ବ୍ୟୟବୋଝକୁ ପାରିବେ ନାହିଁ ବୋଲି ଜାଣି ସାରଳାଦାସ ଜଣେ ମାତ୍ର ଅଳ୍ପବିଦ୍ୟ ପୁରାଣପଣ୍ଡା ଦ୍ୱାରା ପରିବେଷିତ ହୋଇପାରିବା ଭଳି ଛନ୍ଦ/ବୃତ୍ତ ନିୟମବର୍ଜିତ ସରଳ ଗ୍ରାମ୍ୟ ଭାଷାକୁ ଆଦରିଲେ ।

ଦାକ୍ଷିଣାତ୍ୟର ଭାଷାସାହିତ୍ୟସ୍ରଷ୍ଟାମାନେ ସଂସ୍କୃତସାହିତ୍ୟ ସହିତ ପ୍ରତିଯୋଗିତାକୁ ବିଦ୍ୱଦ୍‌ଗୋଷ୍ଠୀରେ ଆବଦ୍ଧ ରଖି ଶିଷ୍ଟ ସମାଜର ସମାଦର ସହ ରାଜସଭାର ଗ୍ରହଣୀୟ କରାଇବା ପାଇଁ ଚେଷ୍ଟିତ ଥିବା ସ୍ଥଳେ ସାରଳାଦାସ ବହୁଜନଙ୍କ ସମାଦର ପାଇଁ ହିଁ ଆଗ୍ରହୀ ଥିବା ଜଣାପଡୁଛି । ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ ଲୋକଙ୍କ ତୁଣ୍ଡର ଭାଷାକୁ ଆଶ୍ରୟ କରିଥିବାର ମହତ୍ତ୍ୱ କମ୍ ନୁହେଁ । ଦାକ୍ଷିଣାତ୍ୟର ତେଲୁଗୁ ଆଦି ଭାଷାର ସାହିତ୍ୟ ଜଟିଳ ଓ ଦୁର୍ବୋଧ୍ୟ ହୋଇପଡ଼ିଥିବାରୁ ସେଠାରେ ମାର୍ଗକବିତାର ଅପସାରଣ ପାଇଁ ଆଞ୍ଚଳିକ ଭାଷାପ୍ରେମୀମାନେ ଊନବିଂଶ ଶତାବ୍ଦୀରେ ଆନ୍ଦୋଳନ କରିବାକୁ ପଡ଼ିଥିଲା । ଓଡ଼ିଆ ଭାଷା ସେଥିରୁ ତ୍ରାହି ପାଇଲା । ସାରଳାଦାସ ତାଙ୍କ ସାହିତ୍ୟିକ ଆଭିମୁଖ୍ୟ ବଡ଼ ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି (୨ ସଭା ୪୫୦)–

ରାନ୍ଧଣା ମିଠା ଯେବେ ସୁପଂକୁ ହୋଇ ସିଝି ।
କହଣାର ମିଠା ଯେବେ ଶୁଣନ୍ତା ଲୋକ ବୁଝି ।।

[ପଂକୁର ଅର୍ଥ ପକ୍ୱ ଓ କହଣାର ଅର୍ଥ ବଚନ ।] ଶ୍ରୋତା ବୁଝିବା ଭଳି କହିଲେ ହିଁ କବିତ୍ୱର ମାଧୁର୍ଯ୍ୟ ଫୁଟେ । କବିଙ୍କ ସାହିତ୍ୟିକ ଆଦର୍ଶ ସ୍ୱଚ୍ଛ ।

## ପୁରାଣସଭାରେ ପ୍ରଚାରିତ ସବୁ କିଛି ପୁରାଣ

ଇତିପୂର୍ବେ 'ଜାତିସ୍ମରଣ ଓ ଦୈବୀପ୍ରସାଦ' ଅଧ୍ୟାୟରେ ଦର୍ଶାଇଛି ଯେ ସାରଳାଦାସ ବିଚିତ୍ର ରାମାୟଣ (ପୃ.୬୪) ଓ ମହାଭାରତକୁ ପୁରାଣ ବୋଲି ନାମିତ କରିଛନ୍ତି । 'ଶୂଦ୍ରମୁନି ସାରୋଳଦାସ କହନ୍ତି ଭାରଥ ପୁରାଣେ' (ଉଦ୍‌ଯୋଗ ୨୦୮) । ମହାଭାରତକୁ କବି ପୁରାଣ ଆଖ୍ୟା ଦେଉଥିବା କଥା ମଧ୍ୟପର୍ବ (ପୃ. ୭୮୩; ୮୨୯), ବନପର୍ବ (ଦ୍ୱିତୀୟଖଣ୍ଡ ପୃ. ୩୫୦ ଓ ୪୩୨), ଉଦ୍‌ଯୋଗ (ପୃ. ୨୭)ରେ ଓ ଅନ୍ୟତ୍ର ବହୁସ୍ଥାନରେ ଲେଖିଛନ୍ତି ।

"ଶୂଦ୍ରମୁନି ସାରୋଳାଦାସ ପୁରାଣେ ବୋଇଲେ ।" (ବିରାଟ ୧୦୬)

ପୁରାଣସଭାରେ ପୁରାଣପଣ୍ଡା ଯାହା ଶୁଣାଏ ତାହା ପୁରାଣ ହିଁ ବୋଲାଇବା କଥା । ଏହି ଲକ୍ଷ୍ୟ ରଖି ସାରଳାଦାସ ତାଙ୍କର ତିନୋଟିଯାକ ରଚନାକୁ ପୁରାଣ ବୋଲି ନାମିତ କରିଥିବା ଅନୁମିତ ହୁଏ । ମହାଭାରତରେ କୃଷ୍ଣଙ୍କ ଚରିତ ପ୍ରାଧାନ୍ୟ ପାଇଛି, ତାହାର ମୁଖ୍ୟ ନାୟକ କୃଷ୍ଣ । ଯେ କୃଷ୍ଣ ସେ ହିଁ ବିଷ୍ଣୁ । ବୋଧହୁଏ ଏହି ବିଚାରରୁ ସାରଳାଦାସ ମହାଭାରତକୁ 'ବିଷ୍ଣୁପୁରାଣ' ବୋଲି ନାମିତ କରିଛନ୍ତି—

ଶ୍ରୀ ବିଷ୍ଣୁପୁରାଣ ଯେ ମହାଭାରତ କଥା (୧ ମଧ ୩୨୯)

× × ×

ଦୟା କରି କହୁଛ ମୋତେ ଶ୍ରୀ ବିଷ୍ଣୁପୁରାଣ<br>
ତେଣୁ କରି କୃତାର୍ଥ ହୋଇଲା ମୋହର ପଞ୍ଚପ୍ରାଣ ।।<br>
ଅସଂଖ୍ୟ ଅସମ୍ଭବ ଶ୍ରୀ ମହାଭାରତ ଚରିତ । (୨ ମଧ ୮୨୮)

ସାରଳାଦାସ ମହାଭାରତକୁ ବିଷ୍ଣୁପୁରାଣ ବୋଲି ଚିହ୍ନାଇ ବିଷ୍ଣୁପୁରାଣ ଅଷ୍ଟାଦଶ ପୁରାଣ ମଧ୍ୟରେ ରାଜା (ଅର୍ଥାତ୍ ଶ୍ରେଷ୍ଠ) ବୋଲି ଜଣାଇଛନ୍ତି—

ବିଷ୍ଣୁପୁରାଣ ରାଜା ପାତ୍ର ମାର୍କଣ୍ଡ ପୁରାଣ ।<br>
ଶିବ ପୁରାଣ ମନ୍ତ୍ରୀ ଡଗର ନାରଦ ପୁରାଣ ।।<br>
ବାମନ ବରେହା ଗରୁଡ଼ କାଳିକା ପୁରାଣ<br>
ନରସିଂହ ମତ୍ସ୍ୟ କୁରୁମ ପୁରାଣ ବଉଦ କଳଂକୀ ବଖାଣ ।।<br>
ସାବର୍ଣ୍ଣିକ ମନୁ ଅନ୍ତରେଣ ଯମନିକ ଭାସ୍କର<br>
ଅଷ୍ଟାଦଶ ପୁରାଣ ମୋତେ ଦିଲେ ସିଦ୍ଧ ଅକ୍ଷର ।। (ଦ୍ରୋଣ ୪୯)

ଏହି ଉଦ୍ଧୃତିର ଶେଷ ପଦଟି ଅବୋଧ୍ୟ । ପାଠୋଦ୍ଧାର ନିଶ୍ଚୟ ଭ୍ରମାତ୍ମକ । ଏଥିରେ ୧୩ଟି ପୁରାଣର ନାମ ଦିଆଯାଇ 'ଅଷ୍ଟାଦଶ ପୁରାଣ' କୁହାଯିବା ଅସଙ୍ଗତ । ପୁରାଣ ମଧ୍ୟରେ 'ବୌଦ୍ଧପୁରାଣ' ନାମ ଅଛି, କିନ୍ତୁ ସେପରି ପୁରାଣ ଥିବା ଜଣାନାହିଁ । କାଳିକା, ନରସିଂହ ଓ କଳକୀ ଉପପୁରାଣ, କିନ୍ତୁ ପୁରାଣ ମଧ୍ୟରେ ଗଣାଯାଇଛି । କିନ୍ତୁ ପଦ୍ମ, ସ୍କନ୍ଦ, ଭାଗବତ, ବ୍ରହ୍ମ, ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ବାୟୁ, ଲିଙ୍ଗ ଓ ଭବିଷ୍ୟ ପୁରାଣକୁ ଏଠାରେ ସ୍ଥାନ ଦିଆଯାଇନାହିଁ । ସାରଳାଦାସ ମହାଭାରତକୁ ବିଷ୍ଣୁପୁରାଣ ବୋଲି ନାମିତ କରିଥିବାରୁ ଅଷ୍ଟାଦଶ ପୁରାଣାନ୍ତର୍ଗତ ବିଷ୍ଣୁପୁରାଣର ସ୍ଥାନ ମଧ୍ୟ ଏଥିରେ ନାହିଁ । ତେବେ ସେ ଅନେକ ସ୍ଥାନରେ ବିଷ୍ଣୁପୁରାଣର ଶ୍ରେଷ୍ଠତ୍ୱ ଘୋଷଣା କରିଛନ୍ତି ଓ ସେ ଚାରିଟି ମୁଖ୍ୟପୁରାଣ ଲେଖିବାକୁ ବର ପାଇଥିବା ଜଣାଇଛନ୍ତି—

ବିଷ୍ଣୁ ପୁରାଣ ରାଜା ମାର୍କଣ୍ଡପୁରାଣ ପାତର ।<br>
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।। (ଗଦା, ୬୮)<br>
ବିଷ୍ଣୁ ପୁରାଣ ରାଜା ମାର୍କଣ୍ଡପୁରାଣ ପାତ୍ର ।<br>
ଶିବପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ସଂଜାତ ।।

ଏ ଚାରି ପୁରାଣ ମୁଖ୍ୟ କରି ଅଷ୍ଟାଦଶ ପୁରାଣ ବୋଲି
ଯେତେକ ବିଖ୍ୟାତ କରିବାକୁ ମୁହିଁ ସେ ଆଖ୍ୟା ପାଇଲି ।

(ଦ୍ରୋଣ, ୨୭୫)

ସାରଳାଦାସଙ୍କ ବକ୍ତବ୍ୟ ସ୍ପଷ୍ଟ ହେଉନାହିଁ । ମହାଭାରତ ବିଷ୍ଣୁପୁରାଣ ଓ ଚଣ୍ଡୀପୁରାଣ ମାର୍କଣ୍ଡେୟ ପୁରାଣ (କାରଣ ଚଣ୍ଡୀପୁରାଣ ବର୍ଣ୍ଣିତ ମହିଷାସୁର, ଶୁମ୍ଭ ଆଦି ବଧ ଚରିତ ଦୁର୍ଗା ସପ୍ତଶତୀ ଉପରେ ଆଧାରିତ ଯାହା ମାର୍କଣ୍ଡେୟ ପୁରାଣୋକ୍ତ) ବୋଲି ବିଚାର କଲେ ଶିବ ଓ ନାରଦ ପୁରାଣର କିଛି ଚରିତ ଲେଖିବା ଯୋଜନା ତାଙ୍କର ଥିଲା ବୋଲି ମନେହୁଏ ।

## ସରଳ ଲୋକଙ୍କ ଚିତ୍ତାକର୍ଷଣ

ସାରଳାଦାସ ତାଙ୍କର ପ୍ରତ୍ୟେକ ରଚନାରେ ଗ୍ରାମବାସୀ ସରଳବିଶ୍ୱାସୀ ନିରକ୍ଷର ଜନତାଙ୍କ ଚିତ୍ତାକର୍ଷଣ ପାଇଁ ହାସ୍ୟ ଓ ଅଦ୍ଭୁତ ରସର ପ୍ରଚୁର ଉପଯୋଗ କରିଛନ୍ତି । 'ସାରଳାଦାସଙ୍କ ରଚନାରେ ହାସ୍ୟ' ଅଧ୍ୟାୟରେ ତାଙ୍କର ହାସ୍ୟର ବୈଚିତ୍ର୍ୟ ସମ୍ପର୍କରେ ଯତ୍‌କିଂଚିତ୍ ଆଲୋଚନା କରିଛି । ସାରଳାଦାସଙ୍କ ପରେ ସଂସ୍କୃତ ଗ୍ରନ୍ଥର ଅନୁବାଦ ପ୍ରକ୍ରିୟାର ସୂତ୍ରପାତ ହେଲା ହାସ୍ୟର ଉତ୍ସ ଶୁଷ୍କ ହୋଇପଡ଼ିଲା । ସାରଳାଦାସ ଅଦ୍ଭୁତରସର ଉପଯୋଗ ଅଧିକ ବ୍ୟାପକ ଭାବରେ କରିଛନ୍ତି । ଏତେ ବ୍ୟାପକ ଯେକୌଣସି ପାଠକ ଛତ୍ରେ ଛତ୍ରେ– ଚରିତ୍ର କଳ୍ପନାରେ, ଘଟନା ଉଦ୍ଭାବନରେ–ସହଜରେ ବାରିପାରିବ । ଖାଲି ମୂଳଗ୍ରନ୍ଥ ଥରେ ପଢ଼ିଲେ ହେଲା । ଆଧୁନିକ ସାହିତ୍ୟ-ପାଠକ ଓ ସମାଲୋଚକମାନେ ଅବାସ୍ତବ ବର୍ଣ୍ଣନା ପ୍ରତି କୃପାଣପାଣି । ବାସ୍ତବତାବାଦ ବହୁଭାବରେ ଲୋକଙ୍କ ଚିନ୍ତାକୁ ଏପରିକି କଳ୍ପନାକୁ ଲଗାମଛଡ଼ା ହେବାକୁ ଦେଉନାହିଁ । ସାରଳାଦାସ ''ହାତୀ ବାର ଜୁଣ ତାର କଣ୍ଠେ ଘଣ୍ଟା ବାର ଜୁଣ' (ବିରାଟ, ୨୮୯) କହିଥିବାରୁ ଉପହସିତ ହେଉଛନ୍ତି । କିନ୍ତୁ, ସାଂପ୍ରତିକ ସମାଜ ଜାଣୁନାହିଁ ଯେ ଟିଭିର କାର୍ଟୁନ୍ ଚଳଚ୍ଚିତ୍ରରେ ଅଦ୍ଭୁତ କଥା ରହିଥିବାରୁ ହିଁ ସରଳମତି ଶିଶୁମାନଙ୍କୁ ତାହା ଖୁବ୍ ଆକର୍ଷଣ କରୁଛି । ସଂସ୍କୃତ ମହାଭାରତ ଓ ରାମାୟଣରେ ମଧ୍ୟ ଅଦ୍ଭୁତ କଥା ପ୍ରଚୁର ଅଛି । ସମୁଦ୍ର-ମନ୍ଥନ ବିବରଣ, ଅଗସ୍ତି ସମୁଦ୍ରକୁ ଚଳୁକରିବା ବିବରଣ, ହନୁମାନ ପର୍ବତଟିଏ ଟେକି ଉଡ଼ିଆସିବା ବିବରଣ, ରେତ ପାନ କରି ଗର୍ଭବତୀ ହେବା ବିବରଣ, ଏପରି ସହସ୍ର ସଂଖ୍ୟକ ବିବରଣ ପୁରାଣରେ ପ୍ରଚାରିତ ହୁଏ । ସରଳମ୍ମତି ଲୋକଙ୍କ ମନକୁ ଅଦ୍ଭୁତରସ ଖୁବ୍ ବାନ୍ଧିରଖେ । ଶ୍ରୋତାମାନେ ଯେତେବେଳେ ଅଶିକ୍ଷିତ ସରଳ ବିଶ୍ୱାସୀ ନହୋଇ ନଗରବାସୀ ଶିକ୍ଷିତ ହୋଇପଡ଼ିଲେ ସେମାନେ ଅଦ୍‌ଭୁତ ରସର ସ୍ୱାଦୁ ନପାଇ ତାହାକୁ ଅବାସ୍ତବ କଥା ବୋଲି କହି ନିନ୍ଦା କଲେ ସିନା ତାହାର ପ୍ରୟୋଜନର ହେତୁ ବୁଝିଲେ ନାହିଁ । ସାରଳାଦାସ ତାଙ୍କ ରଚନାଗୁଡ଼ିକରେ ଅନେକ ଅଲୌକିକ କଥା, ଅନେକ ଅପୂର୍ବ କାହାଣୀର ସଂଯୋଗ

କରିଛନ୍ତି, ଲୋକଙ୍କୁ ବିସ୍ମିତ କରାଇବା ଲକ୍ଷ୍ୟରେ । ସାହିତ୍ୟ ପାଇଁ ନୂତନତାର ପ୍ରୟୋଜନ ରହିଛି ।

ଉପକ୍ରମୋପସଂହାରୌ ଅଭ୍ୟାସୋଽପୂର୍ବତା ଫଳମ୍
ଅର୍ଥବାଦୋପପତ୍ତିଶ୍ଚ ଲିଙ୍ଗମ୍ ତାତ୍ପର୍ଯ୍ୟ ନିର୍ଣ୍ଣୟେ ॥

ରଚନାର ତାତ୍ପର୍ଯ୍ୟବୋଧର ଏକତମ ଲକ୍ଷ୍ୟ ଅପୂର୍ବତା । ଅପୂର୍ବତା ବିନା ରଚନାର ପ୍ରାଧାନ୍ୟ ରହିବ ନାହିଁ । ପଣ୍ଡିତ ନୀଳକଣ୍ଠ ସାହିତ୍ୟରେ ଚମକର ପ୍ରୟୋଜନକୁ ସ୍ୱୀକାର କରନ୍ତି, ଅପୂର୍ବତା ନଥିଲେ ଚମକ ରହିବ ନାହିଁ । ସାରଳାଦାସ ଗୋଟିଏ ସଂପୂର୍ଣ୍ଣ ଅଭିନବ ମହାଭାରତ, ଅଭିନବ ରାମାୟଣ ଓ ଚଣ୍ଡୀପୁରାଣ ଲେଖି ଗୁଡ଼ିଏ ଅପୂର୍ବ ଚରିତର ସଂଯୋଗ କରିଛନ୍ତି । ଏହି କାରଣରୁ ସେ ରାମାୟଣକୁ ବିଚିତ୍ର ରାମାୟଣ କହିଥିବା ପରି ମହାଭାରତକୁ ମଧ୍ୟ ବିଚିତ୍ର ମହାଭାରତ ଆଖ୍ୟା ଦେଇଛନ୍ତି ।

''ସ୍ୱାମୀ ଅଭୟେ ବାରାନିଧି ପ୍ରତକ୍ଷେ ଦିଅ ମୋତେ ବୁଦ୍ଧି
ବିଚିତ୍ର ମହାଭାରତ ଯେ ଅମୂଲ୍ୟ ବାରାନିଧି ॥

— ବିରାଟ, ୪୫୪

''ଯାହାସେ ସ୍ରିଜନା କଲେକ ଅଗସ୍ତି ।
ମୁହିଂ ତାହା ବଖାଣିଲି ବିଚିତ୍ର ଶୁଦ୍ଧ ପୋଥି ।''

— ଉଦ୍‌ଯୋଗ, ୨

ସ୍ରିଜନାର ଅର୍ଥ ସୃଜନ । ସାରଳା-ମହାଭାରତକୁ ଅଗସ୍ତି ଶୁଣାଇଛନ୍ତି ମନୁଙ୍କୁ ।

## ଛନ୍ଦହୀନ କବିତା ଶୈଳୀ : ଦାଣ୍ଡୀ

ସାରଳାଦାସଙ୍କ ରଚିତ ତିନୋଟିଯାକ ଗ୍ରନ୍ଥ ଯେଉଁ ଶୈଳୀରେ ଲେଖାହୋଇଛି ତାହାର ନାମ 'ଦାଣ୍ଡୀ' ବୋଲି ଗୃହୀତ ହୋଇସାରିଛି । ଦାଣ୍ଡୀ ଶୈଳୀର ପ୍ରୟୋଜନ, ସ୍ୱରୂପ ଓ ସ୍ୱଭାବ ସମ୍ପର୍କରେ ବିଶଦ ଆଲୋଚନା ଏକ ପୃଥକ୍ ଅଧ୍ୟାୟରେ କରାଯାଇଛି । ସେହି ଅଧ୍ୟାୟରେ ଦାଣ୍ଡୀ ଶୈଳୀର ନାମକରଣ, ଉଦ୍‌ଗମ ଓ ପରିଣତି କଥା ମଧ୍ୟ ଆଲୋଚିତ ହୋଇଛି ।

## ସ୍ୱତନ୍ତ୍ର ଇତିହ-ସୃଷ୍ଟି

ସାରଳାଦାସ ତାଙ୍କର ସବୁଗୁଡ଼ିକ ରଚନାରେ ଓଡ଼ିଆ ଜନତାଙ୍କୁ ଅଖିଳ ଭାରତୀୟ ଇତିହ (myth) ପରିବେଷଣ ନକରି ସ୍ୱତନ୍ତ୍ର ଅଭିନବ ଇତିହ ଯୋଗାଇଥିବା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଶିଷ୍ଟତା । ସେ ସୃଷ୍ଟ କରିଥିବା ଇତିହ ଶତାଧିକ ଓ ସେଗୁଡ଼ିକ ଅବଶିଷ୍ଟ ଭାରତରେ ସୁପ୍ରଚଳିତ ଇତିହଠାରୁ ଭିନ୍ନ । ଏଠି ଲବକୁଶ ଜନ୍ମହୋଇ ବଢୁଛନ୍ତି ଅଜାଘରେ, ସୀତା ସ୍ୱାମୀପରିତ୍ୟକ୍ତା ଓଡ଼ିଆଣୀଙ୍କ ପରି ବାପାଘରେ ଦୁଃଖିନୀ ଜୀବନ କାଟୁଛନ୍ତି ।

ସୀତା, ରାମ, ହନୁମାନ, ବାଳି, ସୁଗ୍ରୀବ ଆଦିଙ୍କ ଜନ୍ମାଦି ବୃତ୍ତାନ୍ତ ବିଚିତ୍ର ରାମାୟଣରେ ଅନନ୍ୟସାମାନ୍ୟ । ସାରଳା-ମହାଭାରତରେ ସଂସ୍କୃତ ମହାଭାରତରେ ନଥିବା ଇତିହ ଏତେ ଅଧିକ ସଂଖ୍ୟକ ଯେ ସେସବୁର ତାଲିକା କଲେ ହିଁ ସ୍ୱତନ୍ତ୍ର ପୁସ୍ତକଟିଏ ହୋଇଯିବ । ସାରଳାମହାଭାରତର ଖଲ୍ୟକାର ଜନ୍ମ ଆଖ୍ୟାନ, ଜାରାଶବର ଚରିତ, ଲୋହଭୀମ ଆଖ୍ୟାନ, ଧୃତରାଷ୍ଟ୍ରଙ୍କ ୧୦୧ ତମ ପୁଅର ଚରିତ, ସହଦେବ କଳିଯୁଗକୁ ଖଟଖୁରାରେ ବାନ୍ଧି ରଖିଥିବା ଚରିତ, ଯୁଧିଷ୍ଠିର ସଙ୍ଗେ ସିଂହାଣୀ କନ୍ୟାର ବିବାହ ଆଖ୍ୟାନ ଯେପରି ଅଭିନବ, ସେହିପରି ଚମକପ୍ରଦ । ସାରଳା-ମହାଭାରତ ବର୍ଣ୍ଣିତ ବହୁ ଘଟନା ଘଟିଛି ଓଡ଼ିଶାରେ । ଚଣ୍ଡୀପୁରାଣରେ ଦୁର୍ଗାଙ୍କୁ ମହିଷାସୁର ବିଧରେ ସାହାଯ୍ୟ କରିଥିବା ସବୁ ଦେବୀ ଓଡ଼ିଶାର ଗ୍ରାମେଗ୍ରାମେ ରହିଯାଇଛନ୍ତି ।

ସ୍ପଷ୍ଟ ଜଣାଯାଉଛି ସାମାଜିକ ଇତିହ କ୍ଷେତ୍ରରେ ସଂସ୍କୃତ ଗ୍ରନ୍ଥଗୁଡ଼ିକ ଭାରତୀୟ ଉପମହାଦେଶର ସାଂସ୍କୃତିକ ଐକ୍ୟ ଭାବର– ଓ ତଜ୍ଜନିତ ଉପମହାଦେଶୀୟ ଜାତୀୟଭାବର– ପୋଷକତା କରି ଆସୁଥିବାବେଳେ ସାରଳାଦାସ ଓଡ଼ିଆଭାଷୀ ଅଞ୍ଚଳର ପୃଥକ୍‌ତ୍ୱକୁ ପ୍ରୋତ୍ସାହଦେବା ଭଳି ସ୍ୱତନ୍ତ୍ର ଇତିହମାନ ଉଦ୍ଭାବନ କରି ପରିବେଷଣ କରିଥିଲେ । କପିଳେନ୍ଦ୍ର ଦେବଙ୍କ ଦୃପ୍ତ ଧ୍ୱଜା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ଉଡୁଥିବା ସମୟରେ ଓଡ଼ିଆ ଜାତିକୁ ସ୍ୱତନ୍ତ୍ର ଇତିହ ଯୋଗାଇ ଦିଆଯିବାର ରାଜନୀତିକ ତାତ୍ପର୍ଯ୍ୟ ଚିନ୍ତନୀୟ । ଜଣେ ମଣିଷର ଅନ୍ୟ ଜଣକ ସହିତ ଏକତ୍ୱବୋଧର କତିପୟ ବନ୍ଧନରଜ୍ଜୁ– ଯଥା– ଭାଷା, ଧର୍ମ, ଆଚାର, ସଂସ୍କୃତି ମଧ୍ୟରୁ ଇତିହରଜ୍ଜୁ କମ୍ ଦୃଢ଼ ନୁହେଁ । ଜାତୀୟବାଦ ରୂପକ ମହାଦ୍ରୁମ ଆଞ୍ଚଳିକ ଭୂମିରୁ ଇତିହ-ଚେର ଦେଇ ସାର ନେଇ ପୁଷ୍ଟିଲାଭ କରିଥାଏ । ଜାତୀୟବାଦ ମାନଦଣ୍ଡରେ ସାରଳାଦାସଙ୍କ ସୃଷ୍ଟ ଓ ସାହିତ୍ୟରେ ସଂଚିତ ଇତିହଗୁଡ଼ିକର ମୂଲ୍ୟ କଳନା କରାଯାଇନାହିଁ, କିନ୍ତୁ କରାଯିବା ଉଚିତ, ଅନ୍ତତଃ ଇତିହାସ ଦୃଷ୍ଟିରୁ ।

## ନିର୍ଭୀକ ମତ ପ୍ରକାଶ

ବହୁ ମତରେ ସମର୍ଥନ ବା ଶାସକର ଚାଟୁକାରିତା ସର୍ବଦା ସର୍ବତ୍ର ସୁପ୍ରଚୁର, ଅପିତୁ ତାହା ନିରପେକ୍ଷ ବିଚାରରେ ମୂଲ୍ୟହୀନ । ସମାଜରେ ସୁପ୍ରତିଷ୍ଠିତ ମତ ବିରୋଧରେ କରି କିଛି କହିବା ବା ଶାସନରେ ଅଧିଷ୍ଠିତ ଶକ୍ତିର ସମାଲୋଚନା କରିବା ଭଳି ମନୋବଳ ନିର୍ଭୀକ ବିଚାରବନ୍ତ ମଣିଷର ହିଁ ଥାଏ । ଜନମତର ଖରସ୍ରୋତର ପ୍ରତିକୂଳରେ ପହଁରିବା ସାମର୍ଥ୍ୟ, ରାଜାର ଆଚରଣକୁ ଖୁଣିବା ସାହସ ପ୍ରାଚୀନ ସାହିତ୍ୟିକଙ୍କ ମଧ୍ୟରେ ଏକାନ୍ତ ବିରଳ । ଏହି ଦୃଷ୍ଟିରୁ ସାରଳାଦାସ ଏକ ବ୍ୟତିକ୍ରମ ।

ପଞ୍ଚଦଶ ଶତାବ୍ଦୀ ବେଳକୁ କୃଷ୍ଣ ପରମ ପୂଜନୀୟ ରୂପେ ଲୋକରେ ପ୍ରତିଷ୍ଠିତ ଥିଲେ । କୃଷ୍ଣଙ୍କୁ ଦେବତ୍ୱର ଶୀର୍ଷସନାରୂଢ଼ କରାଇଥିବା ଭଗବଦ୍ ଗୀତା ଓ ଭାଗବତ

ପୁରାଣର ଖ୍ୟାତି ଥିଲା ଅତୁଳନୀୟ । ରାଧା କୃଷ୍ଣପ୍ରଣୟିନୀ ଭାବରେ କେତେଦୂର ମାନ୍ୟା ଓ ଉପାସ୍ୟା ତାହା ଗୀତଗୋବିନ୍ଦର ଜନପ୍ରିୟତାରୁ ଜଣାପଡୁଛି । ହେଲେ ହେଁ ସାରଳା ଦାସ ଖଲ୍ୟକାର ଜନ୍ମ ଆଖ୍ୟାନ ମଧ୍ୟରେ କୃଷ୍ଣଙ୍କ ଚରିତ୍ର ଚିତ୍ରଣ ରାଧାଙ୍କ ପ୍ରସଙ୍ଗରେ ଯେପରି କଦର୍ଯ୍ୟଭାବରେ କରିଛନ୍ତି ତାହା ବିସ୍ମୟକର । କାମାସକ୍ତି ପୁରୁଷକୁ– ଏପରିକି ପରମ ପୁରୁଷଙ୍କୁ– ଅବିବେକ ମୂଢ଼ କରାଏ । ଫଳରେ, କୃଷ୍ଣ ଅନ୍ଧାରରେ କାମାତୁର ହୋଇ ରାଧାଙ୍କ ଆଗମନକୁ ଅପେକ୍ଷମାଣ ଥିବାବେଳେ, ରାଧା ଭାବି ଗୋଟିଏ କାଳୀ କୋତରୀ ବୁଢ଼ୀକୁ ସଂଭୋଗ କଲେ ଓ ସେହି ସମ୍ଭୋଗରୁ ଜାତ ସନ୍ତାନ ହେଲା ବିଶ୍ୱର ଅଗ୍ରଣୀ ସିନ୍ଧିଖୋଳା ଚୋର ।

ଆଉ ଏକ ଦୃଷ୍ଟାନ୍ତ– ଯେଉଁ ଯୁଗରେ ଶାଳଗ୍ରାମ ଶିଳାକୁ ସମାଜ ପରମ ଅର୍ଚ୍ଚନୀୟ ବୋଲି ଗ୍ରହଣ କରୁଥିଲା, ସେହି ଯୁଗରେ ସାରଳାଦାସ ବର୍ଣ୍ଣନା କରିଛନ୍ତି ଯେ, ଭୀମ ଗଣ୍ଡକୀନଦୀ ତୀରରେ ଶାଳଗ୍ରାମ ଶିଳାଗୁଡ଼ିକୁ ଗୋଡ଼ରେ ଲାତ ମାରୁଥିଲେ ଓ ଗୋଡ଼ଘଷା ପଥର ରୂପେ ବ୍ୟବହାର କରୁଥିଲେ । ଶାଳଗ୍ରାମ ଶିଳା ଦେବସ୍ୱରୂପ, ତେଣୁ ଏପରି କରିବା ଅନୁଚିତ ବୋଲି କୃଷ୍ଣ ଭୀମଙ୍କୁ କହିବାରୁ ଭୀମ ଉତ୍ତର ଦେଲେ, ଏଗୁଡ଼ାକ ତ ପଥର, ଏଥିରେ ଗୋଡ଼ ଘଷିଲେ ଗୋଡ଼ର ମଳି ଭଲ ଛାଡ଼େ ।

ସାରଳାଦାସ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ସମୟରେ ମହାଭାରତ ଲେଖୁଥିଲେ । ମହାଭାରତର ସ୍ୱର୍ଗାରୋହଣ ପର୍ବର କଳିଯୁଗର ବିବରଣ ମଧ୍ୟରେ ସେ ଏହି ରାଜାମାନଙ୍କ ଆଚରଣକୁ ନିନ୍ଦା କରି ଲେଖିଥିବା ବିଷୟ 'ସାରଳାଦାସଙ୍କ ସମୟ' ଅଧ୍ୟାୟରେ ଆଲୋଚିତ ହୋଇସାରିଛି ।

### କ୍ଷୁଦ୍ର ମଣିଷର ଜୟଗାନ

ସଂସ୍କୃତର ସାହିତ୍ୟିକ ପରଂପରାରେ ରାଜା, କ୍ଷତ୍ରିୟ ବୀରପୁରୁଷ ଓ ଋଷିମୁନିମାନଙ୍କ ଜୀବନ-ବୃତ୍ତାନ୍ତ ହିଁ ପ୍ରାଧାନ୍ୟ ପାଇଛି । ସଂସ୍କୃତ ଶିଷ୍ଟଗୋଷ୍ଠୀର ଭାଷା ହୋଇଥିବାରୁ ଓ ସଂସ୍କୃତ ସାହିତ୍ୟ ରାଜକୀୟ ପୃଷ୍ଠପୋଷକତା ପାଇ ରାଜସଭାରେ ଲାଳିତ ହେଉଥିବାରୁ ମାମୁଲି ମଣିଷର ଜୀବନକୁ ପ୍ରାୟଶଃ ଉପେକ୍ଷା କରାଯାଉଥିଲା । ସାରଳାଦାସ ଗାଉଁଲି ସମାଜରେ ବଢ଼ି ଗାଉଁଲି ସମାଜ ପାଇଁ ଲେଖୁଥିବାରୁ ସେ କ୍ଷୁଦ୍ରମଣିଷକୁ ପ୍ରାଧାନ୍ୟ ଦେବାରେ ପଥିକୃତ ହୋଇପାରିଛନ୍ତି । ତାଙ୍କର ଜାରାଶବର ଚରିତ୍ର ଏକ ବିସ୍ମୟକର ସୃଷ୍ଟି । ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳର ବାସିନ୍ଦା ଭାବରେ ପରିକଳ୍ପିତ ଏହି ଶବରବୀର ମହାଭାରତର ଆରମ୍ଭରୁ ଶେଷ ଯାଏଁ ପ୍ରଭାବ ବିସ୍ତାର କରିଛନ୍ତି ଓ ଶେଷକୁ ହୋଇଛନ୍ତି ଓଡ଼ିଶାର ରାଷ୍ଟ୍ରଦେବତା ଜଗନ୍ନାଥଙ୍କ ପ୍ରତିଷ୍ଠା ସହିତ ସଂପୃକ୍ତ । ସାରଳାଦାସଙ୍କ ପୂର୍ବେ ଜଗନ୍ନାଥ ଶବର-ପ୍ରତିଷ୍ଠିତ ହେବା କଥା କୁତ୍ରାପି କୁହାଯାଇନଥିଲା । କେବଳ ଜଗନ୍ନାଥ ନୁହେଁ ମହେନ୍ଦ୍ରର ଗୋକର୍ଣ୍ଣେଶ୍ୱର, କପିଳାସର ଶିଖରେଶ୍ୱର, ନିଜ ଗ୍ରାମର

ସାରୋଳଚଣ୍ଡୀ ଆଦିଙ୍କ ଆରାଧନା ମୂଳତଃ ଅନାର୍ଯ୍ୟ ଶବରମାନଙ୍କର ଥିବା ତତ୍ତ୍ୱକୁ ସେ ସୁପରିକଳ୍ପିତ ଭାବରେ ଉପସ୍ଥାପନ କରିଛି । ଇତିହାସ ଦଷ୍ଟିରୁ ଏହା ସମର୍ଥନୀୟ ନହେଲେ ହେଁ ଓଡ଼ିଶାର ସଂସ୍କୃତିର ମୂଳପ୍ରସ୍ତାର ଯେ ଅବହେଳିତ ଅସଭ୍ୟ ଭାବରେ ପରିଗଣିତ ସମାଜର ଥିଲା ଏହି ଚେତନା ତାଙ୍କର ଥିଲା ଦୁର୍ବାର ଓ ଆଧୁନିକ ଗବେଷଣା ଦୃଷ୍ଟିରୁ ବାସ୍ତବ । କ୍ଷୁଦ୍ର ମଣିଷଙ୍କୁ ପ୍ରାଧାନ୍ୟ ଦେବାରେ ସାରଳାଦାସଙ୍କ ଅନୁଗାମୀ ହୋଇଥିଲେ ବଳରାମ ଦାସ (ଶ୍ରୀୟା ଚଣ୍ଡାଳୁଣୀ ପ୍ରସଙ୍ଗରେ ଖୋଦ୍ ଜଗନ୍ନାଥଙ୍କୁ ଭର୍ତ୍ସିତ କରି), ଯଶୋବନ୍ତ ଦାସ (ହାଡ଼ିକୁ ରାଜା ଗୋବିନ୍ଦଚନ୍ଦ୍ରଙ୍କର ଗୁରୁ କରି) ରାମ ଦାସ (ବାଲିଗାଁ ଦାସ, ବନ୍ଧୁ ମହାନ୍ତି ଆଦିଙ୍କୁ ବନ୍ଦନୀୟ କରାଇ), ପୀତାମ୍ବର ଦାସ (ପବିତ୍ରତା ଓ ପାତିବ୍ରତ୍ୟର ଉତ୍ତୁଙ୍ଗ ଶିଖକୁ ନର୍ମଦା ନାମ୍ନୀ ବେଶ୍ୟାକୁ ଉଠାଇ ଓ ବ୍ୟାସଦେବଙ୍କ ଗୁରୁ ଆସନରେ ଜଣେ ଅସ୍ପୃଶ୍ୟ ଜାତିର ଯୁବକକୁ ବସାଇ) ଆଦି ପୁରାଣକାର । ଲକ୍ଷ୍ୟ କରିବାର କଥା ଗ୍ରାମ୍ୟ ସମାଜରେ ପୁରାଣ-ସଭାରେ ପ୍ରସାରିତ ସାହିତ୍ୟ ହିଁ କ୍ଷୁଦ୍ର ମଣିଷକୁ ପ୍ରଶଂସିତ କରାଇଛି । ଅନେକ ଆଲୋଚକ ପାଶ୍ଚାତ୍ୟ ସାହିତ୍ୟିକ ପରଂପରାର ପ୍ରତିଫଳନ ସର୍ବତ୍ର ଥିବା କଳ୍ପନା କରି ମତ ଦେଇ ଆସୁଛନ୍ତି ଯେ କ୍ଷୁଦ୍ର ମଣିଷକୁ ଗୌରବ ଦେବା ପ୍ରକ୍ରିୟା ଆଧୁନିକ ଯୁଗରେ, ପାଶ୍ଚାତ୍ୟ ସାହିତ୍ୟିକ ହାଓ୍ୱା ବଙ୍ଗଳାଭାଷା ମାଧ୍ୟମରେ ଓଡ଼ିଶାରେ ପ୍ରବେଶ କରିବାରୁ, ଫକୀରମୋହନ ସେନାପତିଙ୍କଠାରୁ ହିଁ ଆରମ୍ଭ ହୋଇଛି । ଏକଥା ଠିକ୍ ନୁହେଁ । ରାଣ୍ଡୀପୁଅ ଅନନ୍ତା ଓଡ଼ିଶାର ଲୋକକଥାର ନୁହେଁ କି ?

## ବିଧି ଉଲ୍ଲଂଘନ

ସାରଳାଦାସ ନାନା କାଳ୍ପନିକ ଆଖ୍ୟାନ ସଂଯୋଜନା କରି ଅନେକ ଶାସ୍ତ୍ରୀୟ ବିଧାନର କୌଶଳ ପୂର୍ବକ ଉଲ୍ଲଂଘନ ଘଟାଇଛନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ହେଉଛି । କବି ଚଣ୍ଡୀପୁରାଣରେ ପ୍ରତ୍ୟେକ ମୁଖ୍ୟ ଘଟଣାର ପଞ୍ଜିଙ୍ଗର ବିବରଣ ଦେଇଛନ୍ତି । କିନ୍ତୁ, ଦେଖାଯାଉଛି ଯେଉଁ ଯୋଗରେ ଯାହା କଲେ କର୍ମରେ ସଫଳତା ମିଳିପାରିବ ନାହିଁ ବୋଲି ଜ୍ୟୋତିଷଶାସ୍ତ୍ରରେ ଲେଖାରହିଛି ସେହି ଯୋଗରେ କବି ସେହି କର୍ମ ଘଟାଇଛନ୍ତି ଓ କର୍ମରେ ସଫଳତା ମିଳିଥିବା କଥା ଜଣାଇଛନ୍ତି । ସେହିପରି ଯାତ୍ରା, ବିଜୟ ଅଭିଯାନ ପାଇଁ ଜ୍ୟୋତିଷଶାସ୍ତ୍ରରେ ସୁପାରିଶ କରାଯାଇଥିବା ଯୋଗରେ ଯାତ୍ରା/ଅଭିଯାନ ଘଟିଥିବା କଥା ସେ ଲେଖିଛନ୍ତି ଓ ତାହା ସଂପୂର୍ଣ୍ଣ ଅସଫଳ ହୋଇଥିବା କଥା କହିଛନ୍ତି । ଜ୍ୟୋତିଷର ବିଧି ଉଲ୍ଲଂଘନ ପକ୍ଷପାତୀ ବିଚାର କବିଙ୍କର ନିଶ୍ଚୟ ଥିଲା (ଚଣ୍ଡୀପୁରାଣର ପଞ୍ଜିଙ୍ଗର ସମୀକ୍ଷା' ଅଧ୍ୟାୟରେ ଏହି କଥା ଦର୍ଶାଯାଇଛି) ।

ଆଉ ଗୋଟିଏ ଦୃଷ୍ଟାନ୍ତ – ହିନ୍ଦୁଙ୍କ କର୍ମକାଣ୍ଡରେ ଶାହାଡ଼ା ଗଛ ସହିତ ପୁରୁଷର ବିବାହ ପ୍ରଥାର ସ୍ୱୀକୃତି ଅଛି । କୌଣସି ପୁରୁଷର ପ୍ରଥମ ଓ ଦ୍ୱିତୀୟ ପତ୍ନୀ ନଷ୍ଟ ହେଲେ ତୃତୀୟ ଥରକୁ ପ୍ରଥମେ ଏକ ଶାହାଡ଼ା ଗଛ ସହିତ ତାହାର ବିବାହ କରାଇ ପରେ ଅନ୍ୟ

ଏକ ଦାର ଗ୍ରହଣ କର୍ତ୍ତବ୍ୟ ବୋଲି ବିଧି ଅଛି (ବିହାରୀ କର୍ମକାଣ୍ଡ, ୧୯୬୯ ସଂସ୍କରଣର ପୃ. ୪୪୪ରେ ଶାଖୋଟକ ବିବାହବିଧି ଦ୍ରଷ୍ଟବ୍ୟ) । ସାରଳାଦାସ ଏହି ବିଧିକୁ ଓଲଟାଇ ଦେଇ ଗାନ୍ଧାରୀଙ୍କୁ ପ୍ରଥମେ ଗୋଟିଏ ଶାହାଡ଼ା ଗଛ ସହିତ ବିବାହ କରାଇଛନ୍ତି ଓ ଗାନ୍ଧାରୀଙ୍କୁ ଯେ ବିବାହ କରିବ ସେ ମରିବା କଥା ଥିବାରୁ ଶାହାଡ଼ା ଗଛକୁ ମରାଇଛନ୍ତି । ପରିଣାମରେ ଗାନ୍ଧାରୀ ବିଧବା ହେବା ପରେ ଧୃତରାଷ୍ଟ୍ରଙ୍କୁ ବିବାହ କରିଛନ୍ତି । ଏଥିପାଇଁ ଦୁର୍ଯ୍ୟୋଧନ ତାଙ୍କ ମାତାମହ ଗାନ୍ଧାରସେନଙ୍କୁ ଗାଳି କରି କହୁଛନ୍ତି– (ଆଦି, ୪୫୯)

ଗାନ୍ଧାରସେନ ପାମର କିନା ଯେମନ୍ତ କୃତ୍ୟ କଲା ।
ବିଧବା କନ୍ୟାକୁ କେମନ୍ତେ ମୋ ପିତା କଇଁ ଦେଲା ।।
ଯେହେନେକ ପାପ କ୍ଷଣେ ଯେବେ ହୋଇଲୁଟୁ ଜାତ ।
ପିତା ଘରେ ପଡ଼ିକିଂପେ ନମଲୁ ଗୋମାତ ।।

ବିଧବା ବିବାହର ପ୍ରଚଳନ ନଥିବା ସମାଜରେ ସାରଳାଦାସ କୌଶଳକ୍ରମେ ଆଖ୍ୟାନ ମଧ୍ୟରେ ବିଧବା ବିବାହ ଚଳାଇଛନ୍ତି । ସେ ଏପରି ବିଧିଉଲ୍ଲଂଘନ ଘଟାଇ ଗୁଡ଼ିଏ କାହାଣୀ ମହାଭାରତରେ ଖଞ୍ଜିଛନ୍ତି ।

### ବୀରତ୍ୱର ପୋଷଣ

ସାରଳାଦାସ ବ୍ରାହ୍ମଣ ଓ କୃଷକମାନେ ନିଜ କୁଳବୃତ୍ତି ଛାଡ଼ି ସୈନିକ ବୃତ୍ତି କରିବାର ବିରୋଧୀ ଥିଲେ, କିନ୍ତୁ କ୍ଷତ୍ରିୟଙ୍କ ବୀରତ୍ୱର ଜୟଘୋଷକ ଥିଲେ । ପକ୍ଷାନ୍ତରେ, ତାଙ୍କର ଅନୁଜ ଓଡ଼ିଆ କବିମାନେ ବୀରତ୍ୱର ଉତ୍ସାହକୁ ଭୁଲିଯାଇ ଭକ୍ତି ଓ ଶରଣାଗତିର ବିନୟ-ବାଣୀରେ ସାହିତ୍ୟକୁ ଛାଇ ଦେଇଛନ୍ତି । ବହୁ ଐତିହାସିକ ଚୈତନ୍ୟ ଓଡ଼ିଶାକୁ ତାଙ୍କ ପ୍ରଚାରର କେନ୍ଦ୍ରକରି ପ୍ରତାପରୁଦ୍ରଙ୍କ ହାତରୁ କରବାଳ କାଢ଼ି କରତାଳ ଧରାଇ ଗୋଟିଏ ବୀର ଜାତିକୁ ଦୁର୍ବଳ କରାଇବାର କାରଣ ହୋଇଥିଲେ ବୋଲି ଅଭିମତ ଦେଉଛନ୍ତି । ତାହା କେବଳ ଆଂଶିକ ସତ୍ୟ । ଓଡ଼ିଆ କବିମାନେ କଣ ବୀରତ୍ୱକୁ ଗୌଣ କରି ଭକ୍ତିକୁ ଉଚ୍ଚସ୍ଥାନ ଦେଇନାହାନ୍ତି କି ? ଏହି ଦୃଷ୍ଟିରୁ ଦେଖିଲେ ସାରଳାଦାସଙ୍କ ପରେ ବୀରତ୍ୱର ପ୍ରାଧାନ୍ୟ ସାହିତ୍ୟରେ ରହିଲା ନାହିଁ । ସାରଳାଦାସଙ୍କ ମହାଭାରତ ଓ ଚଣ୍ଡୀପୁରାଣ ଲୋମହର୍ଷଣକାରୀ ଯୁଦ୍ଧ ବର୍ଣ୍ଣନାରେ ଭରପୂର । ବିସ୍ତୃତ ସମରସଜ୍ଜା ସହିତ ଊର୍ଜ୍ଜସ୍ୱଳ ବୀରମାନଙ୍କ ମଧ୍ୟରେ ବାହୁଯୁଦ୍ଧ, ଗଦାଯୁଦ୍ଧ, କାଣ୍ଡଯୁଦ୍ଧ ଆଦିର ବର୍ଣ୍ଣନା ପ୍ରତ୍ୟକ୍ଷଦର୍ଶୀ ବିବରଣୀ ତୁଲ୍ୟ ପ୍ରତୀତ ହୁଏ ।

ସାରଳାଦାସ ଶୌର୍ଯ୍ୟର ପୋଷକତା କରି ଅନେକ ପ୍ରେମିକ-ବୀର ଆଖ୍ୟାନ ଉଦ୍ଭାବନ କରିଛନ୍ତି । ମହାଭାରତରେ, ବିଶେଷତଃ ସେ ନୂତନ ଭାବରେ ଯୋଡ଼ିଥିବା 'ମଧ୍ୟପର୍ବ' ମଧ୍ୟରେ, ଅନେକଗୁଡ଼ିଏ ହରଣ ଆଖ୍ୟାନ ଦେଇଛନ୍ତି, ଯେଉଁଠାରେ

ପ୍ରେମିକବୀର ପ୍ରେମିକାର ପିତାର ବିରୋଧ ସତ୍ତ୍ୱେ, ପ୍ରେମିକାକୁ ହରଣ କରିନେଇ ବିବାହ କରିଥାଏ । ସୁଗନ୍ଧିକା ହରଣ, ନୀଳେନ୍ଦ୍ରୀ ହରଣ, ଚନ୍ଦ୍ରାବତୀ ହରଣ, ସୁରେଖା ହରଣ, ଶୋଭାବତୀ ହରଣ, ତ୍ରିପୁରମୋହନୀ ହରଣ, ସଚଳା ହରଣ ଆଦି ଆଖ୍ୟାନ ମଧ୍ୟରେ ପ୍ରେମିକ-ବୀରର ପ୍ରେମକାହାଣୀ, ପ୍ରେମିକାକୁ ପାଇବା ପାଇଁ ଯୁଦ୍ଧ ଓ ବିଜୟ ପରେ ପ୍ରେମିକା ସହିତ ବିବାହ ବନ୍ଧନ ଓ ମିଳନର ଚିତ୍ରଣ ଦେବା ମଧ୍ୟରେ ଗୋଟିଏ ସ୍ୱାଧୀନ ଜାତି ପାଇଁ ପ୍ରେମିକ-ବୀରର ପ୍ରୟୋଜନ ଦର୍ଶାଇଛନ୍ତି । ସ୍ୱାଧୀନ ଓଡ଼ିଶାର ସାହିତ୍ୟର ଏହି ବିଶେଷତ୍ୱକୁ ବର୍ତ୍ତମାନ ସୁଦ୍ଧା ଦାସକାଠିଆ ଗାୟକମାନେ ଜନତାଙ୍କୁ ଶୁଣାଇ ଶୌର୍ଯ୍ୟର ସ୍ତାବକତା କରୁଛନ୍ତି ।

ସାରଳାଦାସଙ୍କ ପରେ ପ୍ରତାପରୁଦ୍ର ଓ ତାଙ୍କ ଉତ୍ତରକାଳୀନ ରାଜାମାନଙ୍କ ସମୟରେ ଓ ଭକ୍ତି ଉପରେ ଆଧାରିତ ମୁସଲମାନ ଶାସନରେ ଶୌର୍ଯ୍ୟ ସାହିତ୍ୟରେ ପ୍ରାଧାନ୍ୟ ହରାଇଥିଲା । ଶୌର୍ଯ୍ୟର ପୁନରଭ୍ୟୁଦୟ ଘଟିଲା ମରହଟ୍ଟା ଶାସନରେ ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ ଓ ବ୍ରଜନାଥ ବଡ଼ଜେନାଙ୍କ 'ସମର ତରଙ୍ଗ' ଆଦିରେ ।

—

## ପଞ୍ଚଦଶ ଅଧ୍ୟାୟ

# ସାରଳା-ମହାଭାରତର ଆଞ୍ଚଳିକ ଆଖ୍ୟାନ

ଜଣେ କଳ୍ପନା-କାରିଗର କବି ଭାବରେ ସାରଳାଦାସଙ୍କ ପଟୁତା ଚମକପ୍ରଦ । ସେ ତାଙ୍କ ମହାଭାରତର ବିଭିନ୍ନ ପର୍ବରେ ବହୁ ଅଞ୍ଚଳ ସହିତ ସଂପୃକ୍ତ କରି ଅନେକ ଆଖ୍ୟାନ ଯୋଡ଼ିଛନ୍ତି । ଏହି ଆଖ୍ୟାନଗୁଡ଼ିକ ସେହି ସବୁ ଅଞ୍ଚଳରେ ତାଙ୍କ ସମୟରେ ପ୍ରଚଳିତ ପ୍ରବାଦ/କିଂବଦନ୍ତୀ କି ତାଙ୍କର ଅଭିନବ ଚରିତ-ପ୍ରଭବ ଉର୍ବର କଳ୍ପନା-କ୍ଷେତ୍ରଜ, ତାହା ବିଧିବଦ୍ଧ ଭାବରେ ଆଲୋଚିତ ହେବା ମୋ ଦୃଷ୍ଟିରେ ପଡ଼ିନାହିଁ । ତାହା ଆଂଚଳିକ କିଂବଦନ୍ତୀ ହୋଇଥିଲେ ସେଥିରୁ ସାଢ଼େ ପାଞ୍ଚ ଶହ ବର୍ଷ ତଳର ଲୋକବିଶ୍ୱାସ ତଥା ଲୋକରୁଚିର ସନ୍ଧାନ ମିଳିବ ଓ ସାରଳାଦାସଙ୍କୁ ଜଣେ ସଚ୍ଚା ସଂଗ୍ରାହକ ବା ସାଂବାଦିକ ଭାବେ କଳନା କରିହେବ । ଅନ୍ୟଥା, ସାରଳାଦାସଙ୍କ ବହୁ ଦିଗନ୍ତସ୍ପର୍ଶୀ ଉଦ୍ଭାବନ ଶକ୍ତିର ସୂଚନା ସେଥିରୁ ମିଳିପାରିବ ଓ ସେ ଜଣେ ନବନବୋନ୍ମେଷଶାଳିନୀ ପ୍ରଜ୍ଞାବନ୍ତ କବି ଭାବେ ପ୍ରତିଭାତ ହେବେ । କବିତ୍ୱର ମହତ୍ତ୍ୱ ଅପୂର୍ବତା । ଆନନ୍ଦବର୍ଦ୍ଧନ ଧ୍ୱନ୍ୟାଲୋକର ୩ୟ ଉଦ୍ୟୋତରେ ଲେଖିଛନ୍ତି କାବ୍ୟ-ସଂସାରର ଏକମାତ୍ର ସ୍ରଷ୍ଟା କବି, ସେ ବିଧାତାସୃଷ୍ଟ ବାସ୍ତବ ବିଶ୍ୱକୁ ନିଜ ରୁଚି ଅନୁରୂପରେ ବଦଳାଇ ଥାଏ । ସାରଳାଦାସଙ୍କ ରୁଚି ତାଙ୍କ ଦ୍ୱାରା ବର୍ଣ୍ଣିତ ଆଂଚଳିକ ଆଖ୍ୟାନଗୁଡ଼ିକରେ ତଥା ତାଙ୍କ ଦ୍ୱାରା କଳ୍ପିତ ଅଭିନବ ଚରିତ ମଧ୍ୟରେ ଅନୁସନ୍ଧାନ କରାଯାଇପାରେ ।

## ୧. ବିଜୟନଗର ରାଜ୍ୟ ପ୍ରତିଷ୍ଠା

ସାରଳାଦାସ ସଭାପର୍ବରେ (ପ୍ରଥମ ଖଣ୍ଡ ପୃ. ୫୪୬) ବିଜୟ ନଗର ପ୍ରତିଷ୍ଠାର ବିବରଣ ନିମ୍ନମତେ ଦେଇଛନ୍ତି–

ରାମ ରାବଣକୁ ମାରି ପୁଷ୍ପକ ଯାନରେ ଅଯୋଧ୍ୟାକୁ ଫେରିବା ବାଟରେ 'ଶ୍ରୀଗିରି' ପର୍ବତରେ ବିଶ୍ରାମ କଲେ । ହନୁମାନ ସେହି ନିକଟରେ ଏକ ପର୍ବତ ଦୁର୍ଗ ଗଢ଼ିଲେ । ସେଠାରେ ରାମ ବିଜୟ (ବିଜେ ଅର୍ଥାତ୍ ଉପସ୍ଥାନ) କରିବାରୁ ତାହାର ନାମ ହେଲା ବିଜୟାକଟକ/ବିଜୟ ନଗ୍ର । ଏଠାରେ ସୀତାଙ୍କ ମାସିକ ଋତୁ ହେବାରୁ ତାଙ୍କର ଶୁଦ୍ଧସ୍ନାନ ପର୍ଯ୍ୟନ୍ତ ସମସ୍ତେ ଏହି ନଗରରେ ସାତ ଦିନ ରହିଲେ । ଶୁଦ୍ଧ ସ୍ନାନାନ୍ତେ ରାମ ସୀତାଙ୍କୁ ରମଣ କରିବାରୁ ସଙ୍ଗେ ସଙ୍ଗେ ଏକ ପୁତ୍ର ଜାତ ହେଲା । ରାମ ସେ ପୁତ୍ରର ନାମ 'ଋତୁପର୍ଣ୍ଣ' ରଖି ଋତୁପର୍ଣ୍ଣକୁ ବିଜୟନଗ୍ରର ରାଜା କରାଇ ଅଯୋଧ୍ୟା ଗଲେ । ରାମଙ୍କ ପ୍ରସାଦରୁ

ରତୁପନ୍ନ ଦୀର୍ଘଜୀବୀ ହୋଇ ମହାଭାରତ ଯୁଦ୍ଧ ବେଳକୁ ଜୀବିତ ଥିଲେ । ନକୁଳ ରାଜସୂୟ ଯଜ୍ଞକୁ ଆମନ୍ତ୍ରିତ କରିବାବେଳେ ସେ ଆତ୍ମପରିଚୟ ଦେଇଥିଲେ–

''ବାବୁ ମୁହିଂ ସୂର୍ଯ୍ୟବଂଶୀ ହୋ ଶ୍ରୀରାମଚନ୍ଦ୍ରଙ୍କର ବାଳ ।
ଶ୍ରୀ ରଘୁନାଥ ପ୍ରସନ୍ନେ ମୁହିଂ ବଞ୍ଚିଲି ଯେତେ କାଳ ।''

ରାମ ସେଠାରେ ବିଜେ କରିବାରୁ ତାହା 'ବିଜୟେ ନଗ୍ର' ହେବା କଥା ବନପର୍ବ ପ୍ରଥମଖଣ୍ଡର ପୃ.୪୨୯ରେ ବର୍ଣ୍ଣିତ ରହିଛି । ବିଜୟ ନଗ୍ର ରାଜା ରତୁପନ୍ନ ରାମଙ୍କ ପୁତ୍ର ଥିବା କଥା ଆଦିପର୍ବର ପୃ. ୭୮୭ରେ ମଧ୍ୟ ଲେଖାଅଛି–

''ବିଜୟ ନଗ୍ର ରାଜା ଅଟଇ ରତୁପର୍ଣ୍ଣ
ଅମଳାନ ସୂର୍ଯ୍ୟବଂଶୀ ଯେ ଶ୍ରୀରାମ ନନ୍ଦନ ।''

ବିଜୟନଗର ପ୍ରତିଷ୍ଠା ଆଖ୍ୟାନ ଶୁଦ୍ଧ କବି-କଳ୍ପନା । 'ଶ୍ରୀଗିରି' ନିଶ୍ଚୟ ପ୍ରସିଦ୍ଧ ଶ୍ରୀଶୈଳମ୍, କାରଣ ସେଠାରେ ମଲ୍ଲିକାର୍ଜୁନଙ୍କ ଅଧିଷ୍ଠାନ ଥିବା କଥା ସାରଳାଦାସ ଜଣାଇଛନ୍ତି (୧ ସଭା ୫୫୪).। ସାରଳାଦାସ ବିଜୟନଗର ଶ୍ରୀଗିରି ନିକଟସ୍ଥ ଭଳି ବର୍ଣ୍ଣିଛନ୍ତି କିନ୍ତୁ ବାସ୍ତବରେ ଉଭୟସ୍ଥାନ ମଧ୍ୟର ଦୂରତ୍ୱ ପ୍ରାୟ ୧୨୫ ମାଇଲ । ରତୁପର୍ଣ୍ଣ ବୋଲି ଜଣେ ରାଜା ଅଯୋଧ୍ୟାରେ ଥିବା କଥା ଓ ସେ ନଳଙ୍କୁ ଆଶ୍ରୟ ଦେଇଥିବା କଥା ପୁରାଣରେ ମିଳେ । ସେହି ରତୁପର୍ଣ୍ଣ ଅୟତାୟୁଙ୍କ ପୁତ୍ର । ରାମଙ୍କ ଜ୍ୟେଷ୍ଠପୁତ୍ର ରତୁପନ୍ନ ହୋଇଥିବା ଓ ସେ ବିଜୟନଗର ରାଜା ଥିବା କିଂବଦନ୍ତୀ ବିଜୟନଗରରେ ନାହିଁ । ବିଜୟନଗର ଓ ସେହି ନାମର ରାଜ୍ୟର ପ୍ରତିଷ୍ଠା ଖ୍ରୀ. ୧୩୩୬ରେ ହେବା ପ୍ରମାଣିତ । ଏହି ଆଖ୍ୟାନ ସାରଳାଦାସଙ୍କ ଭୌଗୋଳିକ ଓ ଐତିହାସିକ ଜ୍ଞାନର ସୀମାବଦ୍ଧତା ସୂଚାଉଛି ।

## ୨. ମଲ୍ଲିକାର୍ଜୁନ

ଆଧୁନିକ ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଶ୍ରୀଶୈଳମ୍‌ର ମଲ୍ଲିକାର୍ଜୁନ ପୁରାଣ ପ୍ରସିଦ୍ଧ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗରୁ ଏକତମ । ସାରଳାଦାସ ଏହି ଲିଙ୍ଗ ସୃଷ୍ଟି ହେବାର ଆଖ୍ୟାନ ମହାଭାରତର ସଭାପର୍ବର ପ୍ରଥମ ଖଣ୍ଡ ପୃ. ୫୫୪ରୁ ନିମ୍ନ ଲିଖିତ ରୂପେ ବର୍ଣ୍ଣନା କରି ''ଭାବିଲି ସର୍ବଥା ମୁହିଂ ଶିବପୁରାଣ ମତେ'' (ପୃ. ୫୫୯) ବୋଲି ଜଣାଇଛନ୍ତି, କିନ୍ତୁ ଶିବପୁରାଣରେ ଏପରି ଆଖ୍ୟାନ ନାହିଁ ।

ନକୁଳ ଦକ୍ଷିଣସ୍ଥ ରାଜାମାନଙ୍କୁ ଆମନ୍ତ୍ରଣ କରିବା ବେଳେ ଶ୍ରୀଗିରିର ଅଧିପତି ଶ୍ରୀରାମଜଙ୍ଗମଙ୍କୁ ଭେଟିଥିଲେ । ଶ୍ରୀ ରାମଜଙ୍ଗମ ନକୁଳଙ୍କୁ ଏହି କ୍ଷେତ୍ରର ପ୍ରତିଷ୍ଠା ବିବରଣ ଦେଇ କହିଥିଲେ ଯେ ରାମ ଲଙ୍କାରୁ ଫେରିବା ବାଟରେ ଶ୍ରୀ ଗିରିରେ ଅଟକିଥିଲେ । ରାମ ସୁଷେଣଙ୍କୁ ଶ୍ରୀ ଗିରିର ରାଜା କରାଇବାକୁ ଇଚ୍ଛା ପ୍ରକାଶ କରି ସୁଷେଣଙ୍କୁ ଶ୍ରୀଗିରିରେ ଛାଡ଼ି ବିଜୟନଗରକୁ ଗଲେ । ରାମଙ୍କ ଏକାନ୍ତ ଭକ୍ତ ସୁଷେଣ ରାମଙ୍କ ସେବାରୁ ବଞ୍ଚିତ

ହୋଇ ରାଜ୍ୟ ଲାଭ କରିବା ଶ୍ରେୟସ୍କର ବୋଲି ଭାବିଲା ନାହିଁ । ରାମ ଶ୍ରୀଗିରିରୁ ବିଜୟନଗର ଯିବା ପରେ ସୁଷେଣ ରାମଙ୍କ ସେବା ହରାଇ ରାଜପଣ-ଲାଭ ଭାଗ୍ୟର ବିପର୍ଯ୍ୟୟ ବୋଲି ବିଚାରି ନିରାଶ ହୋଇ ଶ୍ରୀଗିରିରେ ପ୍ରାଣତ୍ୟାଗ କଲା । ପରଦିନ ରାମ ଶ୍ରୀଗିରିକୁ ଆସି ସୁଷେଣକୁ ଡାକି ଆଣିବା ପାଇଁ ହନୁମାନ୍‌କୁ ପଠାଇଲେ । ହନୁମାନ୍ ଦେଖିଲା, ସୁଷେଣ ମରି ପଡ଼ିଛି । ହନୁମାନ୍ ସେଠାରେ ଗୋଇଠା ମାରି ଗଭୀର ଗର୍ତ୍ତ କରି ଶବକୁ ପୋତି ତାହା ଉପରେ ଗୁଡ଼ିଏ ମଲ୍ଲିଫୁଲ କୁଢ଼ାଇ ଦେଲା ଓ ସବା ଉପରେ ଅଜିନ (ଅର୍ଥାତ୍ କୃଷ୍ଣସାର ମୃଗଛାଲ) ଘୋଡ଼ାଇ ଦେଲା । ରାମ ଅଜିନ ତଳେ ସୁଷେଣର ଶବ ଥିବା କଥା ନ ଜାଣି ତାହା ଉପରେ ବସିପଡ଼ି ଶୀଘ୍ର ସୁଷେଣକୁ ଡାକି ଆଣିବାକୁ କହିଲେ । ହନୁମାନ୍ ରାମଙ୍କ ଆସନ ତଳେ ସୁଷେଣର ଶବ ଥିବା କଥା ପ୍ରକାଶ କଲା । ରାମ ଉଠିଲେ ଓ ଅଜିନ ଓ ମଲ୍ଲିଫୁଲକୁ କାଢ଼ିବା ପରେ ସେଠାରେ ଏକ ମହାଲିଙ୍ଗ ଥିବା ଦେଖିଲେ—

ହନୁମନ୍ତ ଘୋଡ଼ାଇଲେ ମଲ୍ଲିଫୁଲ ଗୁଡ଼ାଏ ।
ଉପରେ ଦିଲେ ସେ କୃଷ୍ଣାଜିନ ଛାଲ ଗୋଟିଏ ।।
ମଲ୍ଲିକା ଅଞ୍ଜନ ସେ ଲିଙ୍ଗେକ ଉତପତ୍ତି ।
ମଲ୍ଲିକା ଅଞ୍ଜନ ନାମ ତାକୁ ଦିଲେକ ଦାଶରଥି ।। (ପୃ. ୫୫୮)

[ଉଦ୍ଧୃତିର ଅଞ୍ଜନ ଅଜିନର ଭ୍ରମାତ୍ମକ ପାଠ] ବନପର୍ବର ପ୍ରଥମ ଖଣ୍ଡର ପୃ. ୪୨ରୁ ମଲ୍ଲିକାର୍ଜ୍ଜୁନ ଲିଙ୍ଗ ସୃଷ୍ଟିର ଏହି ଆଖ୍ୟାନ ପୁନରୁକ୍ତ ହୋଇଛି ।

ମଲ୍ଲୀପୁଷ୍ପ ପୂରୋ କୃଷ୍ଣାଜିନ ଛାଲ ଯେ ଘୋଡ଼ାଇ ।
ମଲ୍ଲିକା ଅଞ୍ଜନ ନାମ ହୁଅତୁ ଏହି ଠାଇଁ । (ପୃ. ୪୩୨)

ବନପର୍ବରେ ସାରଳାଦାସ ମଲ୍ଲିକାଜୀନ ନାମ ସାଙ୍ଗକୁ ମଲ୍ଲିକାର୍ଜ୍ଜୁନ ନାମ ମଧ୍ୟ ଲେଖିଛନ୍ତି । ଏଠାର ପାତାଳଗଙ୍ଗା ତୀର୍ଥରେ ଯୁଧିଷ୍ଠିରାଦି ସ୍ନାନ କରିବା କଥା ସେଠାରେ ଲେଖାଅଛି—

"ଗୁପତ ପାତାଳଗଙ୍ଗାୟେ ପଶି କଲେକ ସ୍ନାହାନ ।
ଦେଖିଲେ ଗିରିବନ ଉପରେ ମଲ୍ଲିକା ଅରଜୁନ" (ପୃ. ୪୨୮)

ସାରଳାଦାସ ମଲ୍ଲିକାର୍ଜ୍ଜୁନଙ୍କ ଆବିର୍ଭାବ ସମ୍ପର୍କରେ ଲେଖିଥିବା ଆଖ୍ୟାନ ତତ୍ରତ୍ୟ କ୍ଷେତ୍ରମାହାତ୍ମ୍ୟରେ ନାହିଁ କି ପ୍ରବାଦ ରୂପରେ ନାହିଁ । କ୍ଷେତ୍ରମାହାତ୍ମ୍ୟ ଅନୁସାରେ ଚନ୍ଦ୍ରଗୁପ୍ତ ପୁରର ରାଜକନ୍ୟା ଚନ୍ଦ୍ରାବତୀ ତାଙ୍କ ପ୍ରତି ତାଙ୍କ ପିତାଙ୍କର କାମାଭିଳାଷ ଜାଣିବା ପରେ ରାଜନବର ଛାଡ଼ି ଶ୍ରୀଶୈଳମ୍ ଆସି ଲୁଚିରହିଲେ । ଏଠାରେ ସେ ଏକ ଶିବଲିଙ୍ଗ ଦେଖି ତାହାକୁ ଶୁକ୍ଳ ମଲ୍ଲୀଫୁଲରେ ପୂଜା କରିବାରୁ ଶିବଙ୍କ ନାମ ହେଲା ମଲ୍ଲିକାର୍ଜ୍ଜୁନ । ମଲ୍ଲିକାର ଅର୍ଥ ମଲ୍ଲୀଫୁଲ ଓ ଅର୍ଜ୍ଜୁନର ଅର୍ଥ ଶୁକ୍ଳ । ମଲ୍ଲିକାର୍ଜ୍ଜୁନଙ୍କ ପୂଜକ ଜଙ୍ଗମ ବୋଲାନ୍ତି ।

ଶ୍ରୀଶୈଳମ୍ ଶ୍ରୀପର୍ବତ ଓ ଶ୍ରୀଗିରି ମଧ୍ୟ ବୋଲାଏ । ସାରଳାଦାସ ପୂଜକ ଜଙ୍ଗମକୁ ଧରି ଦ୍ୱାପର ଯୁଗରେ ଶ୍ରୀଗିରିରେ ଶ୍ରୀରାମଜଙ୍ଗମ ଏଠାରେ ରାଜତ୍ୱ କରୁଥିବା ଚରିତ ସୃଷ୍ଟି କରିଛନ୍ତି । ବାସ୍ତବରେ ଜଙ୍ଗମମାନେ ଶିବପୂଜକ ଶୂଦ୍ର ଜାତି, ଓଡ଼ିଶାର ରାଉଳମାନଙ୍କ ପରି ଜଙ୍ଗମମାନେ ଲିଙ୍ଗାୟତ ଶୈବ ।

ଶ୍ରୀକ୍ଷେତ୍ର ପୁରୀ ସହିତ ଶ୍ରୀଶୈଳମ୍‌ର ବହୁ ବିଷୟରେ ସାମଞ୍ଜସ୍ୟ ରହିଛି । ଶ୍ରୀଶୈଳମ୍‌ରେ ଜାତି, ବର୍ଣ୍ଣ ଓ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସବୁ ହିନ୍ଦୁଙ୍କର ପୂଜା ଅଧିକାର ରହିଛି । ଶ୍ରୀଶୈଳମ୍‌ର ଅଧିବାସୀମାନେ ଚେଞ୍ଚୁ ନାମକ ଆଦିବାସୀ ସଂପ୍ରଦାୟର । ସେମାନଙ୍କ ମଧ୍ୟରେ ପ୍ରବାଦ ଅଛି ଯେ ଏକଦା ଶିବ ଏଠାକୁ ମୃଗୟା ଉଦ୍ଦେଶ୍ୟରେ ଆସି ଗୋଟିଏ ସୁନ୍ଦରୀ ଚେଞ୍ଚୁ କନ୍ୟାକୁ ପ୍ରେମ କରି ବିବାହ କଲେ । ଚେଞ୍ଚୁମାନେ ମଲ୍ଲିକାର୍ଜୁନଙ୍କ ଯାତ୍ରାପର୍ବ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଓ ଶୈବ ଜଙ୍ଗମ ପୂଜକଙ୍କର ସହାୟକ ଭାବେ କାର୍ଯ୍ୟ କରନ୍ତି । ସାରଳାଦାସ ଶ୍ରୀଶୈଳମ୍ ବିଷୟ ଜାଣିଥିବା ସମ୍ଭବ । ସେ ସେଠାର ପାତାଳଗଙ୍ଗା କଥା ଲେଖିଛନ୍ତି । ଶ୍ରୀଶୈଳମ୍ ପର୍ବତର ପାଦ ଦେଶରେ ପ୍ରବାହିତ କୃଷ୍ଣାନଦୀ ସେଠାରେ ପାତାଳଗଙ୍ଗା ନାମରେ ଅଭିହିତ ହୁଏ । ସାରଳାଦାସ ଏଠାର ଦେବତାଙ୍କ ଆଦିବାସୀ କନ୍ୟାକୁ ବିବାହ କରିବା ଆଖ୍ୟାନକୁ ନେଇ ଶବରୀ-ନାରାୟଣଙ୍କ ସହିତ ଯୋଡ଼ିଲେ ଓ ସେହି ଶବରୀ-ନାରାୟଣ ହିଁ କଳିଯୁଗରେ ନୀଳମାଧବ ହୋଇ ଶବରପୂଜିତ ହେବା ଆଖ୍ୟାନ ଗଢ଼ିଲେ । ଶ୍ରୀଶୈଳମ୍‌ର ଆଖ୍ୟାନ ପ୍ରତିବଦଳେ ସାରଳାଦାସ ରାମାୟଣର ସୁଷେଣ ମଲ୍ଲିକାର୍ଜୀନ ହେବା ଆଖ୍ୟାନ ଲେଖିଲେ, ଯାହାର ପ୍ରଚଳନ ଶ୍ରୀ ଶୈଳମ୍‌ରେ ନଥିଲା, ନାହିଁ ମଧ୍ୟ । ଆଖ୍ୟାନଟି କଳ୍ପିତ ହେଲେ ହେଁ ରାଜଭୋଗ ଅପେକ୍ଷା ଭକ୍ତିଯୋଗର ଉତ୍କର୍ଷ ପ୍ରତିପାଦନ କରୁଥିବାରୁ ମନୋମୁଗ୍ଧକର ।

## ୩. ଗୋକର୍ଣ୍ଣେଶ୍ୱର

ଆଧୁନିକ ଗଜପତି ଜିଲ୍ଲା ଅନ୍ତର୍ଗତ ମହେନ୍ଦ୍ର ପର୍ବତ ପୁରାଣ ପ୍ରସିଦ୍ଧ; ପୁରାଣଗୁଡ଼ିକ ଅପେକ୍ଷା ପ୍ରାଚୀନତର କାଳିଦାସଙ୍କ ରଘୁବଂଶ ଓ ମହାଭାରତରେ ଏକ ପୁଣ୍ୟକ୍ଷେତ୍ର ଭାବରେ ମହେନ୍ଦ୍ର ପର୍ବତ ସ୍ଥାନ ପାଇଛି । ରାମାୟଣ ଓ ମହାଭାରତରେ ଗୋକର୍ଣ୍ଣ ନାମଟି ମହାଦେବଙ୍କ ପାଇଁ ବ୍ୟବହୃତ ହୋଇଛି । ଭାରତରେ ବିଂଶାଧିକ ସ୍ଥାନରେ ମହାଦେବ ଗୋକର୍ଣ୍ଣେଶ୍ୱର ନାମରେ ପୂଜିତ ହେଲେ ହେଁ ମହେନ୍ଦ୍ର ଶିଖର ନିକଟସ୍ଥ ଗୋକର୍ଣ୍ଣେଶ୍ୱରଙ୍କ ଖ୍ୟାତି ସର୍ବାଧିକ । ଗୋକର୍ଣ୍ଣେଶ୍ୱରଙ୍କ ପ୍ରତିଷ୍ଠା ସଂପର୍କରେ ସାରଳାଦାସ ଆଦିପର୍ବରେ (ଦ୍ୱିତୀୟ ଖଣ୍ଡ ୬୧୯ ରୁ ୬୩୫ ମଧ୍ୟରେ) ଯେଉଁ ସୁଦୀର୍ଘ ବିବରଣ ଦେଇଛନ୍ତି ତାହାର ସାରକଥା ଏହିପରି—

ଅର୍ଜୁନ ଗଣ୍ଡାବଧ ଉଦ୍ଦେଶ୍ୟରେ ମହେନ୍ଦ୍ର ପର୍ବତକୁ ଯାଇଥିଲେ । ଦୂରରେ ଗୋମାତା କପିଳା ଚରୁଥିଲା । ଅର୍ଜୁନ କପିଳାକୁ ଗଣ୍ଡା ବୋଲି ଭାବି ଶରାଘାତ କରିବାରୁ କପିଳା

ମଲା । ଅର୍ଜୁନ ନିହତ ଜୀବକୁ ନିକଟକୁ ଆଣିବାକୁ ଅନ୍ୟ ଏକ ଶର ପ୍ରେରଣ କଲେ । ଶର କପିଳାର ମୃତ ଦେହକୁ ମହେନ୍ଦ୍ର ପର୍ବତକୁ ଆଣିବା ବାଟରେ ଅନ୍ତବୁଜୁଳିରୁ ପୁଷ୍ଟି ଖସିପଡ଼ିଲା, ତାହା ପୁଟେଶ୍ୱର ଲିଙ୍ଗ ହେଲା; ଯେଉଁଠାରେ ରକ୍ତବିନ୍ଦୁମାନ ପଡ଼ିଥିଲା ସେଠାରେ ଏକ ଏକ ଶିବଲିଙ୍ଗର ଆବିର୍ଭାବ ହେଲା । ଅର୍ଜୁନଙ୍କୁ ଗୋହତ୍ୟା ପାତକରୁ ଉଦ୍ଧାର କରିବା ପାଇଁ କୃଷ୍ଣଙ୍କ ଉଦ୍ୟମରେ ଦେବତା ଓ ଋଷିମାନେ ସମବେତ ହୋଇ ଯଜ୍ଞ କଲେ । ସବୁ ଦେବତାଙ୍କ ସମ୍ମତିରେ ଅର୍ଜୁନ ପାପମୁକ୍ତ ହେଲେ । ଗୋମାତାଙ୍କ ମୁଣ୍ଡଟି ''ଗୋକର୍ଣ୍ଣେଶ୍ୱର'' ଲିଙ୍ଗ ହେଲା । ମହେନ୍ଦ୍ର ପର୍ବତ ଉପରେ କୁନ୍ତୀ, ପାଣ୍ଡବମାନେ ଓ ଦେବଗଣ ସ୍ୱସ୍ୱ ନାମରେ ଏକ ଏକ ଶିବଲିଙ୍ଗ ସ୍ଥାପନ କଲେ । ଗୋକର୍ଣ୍ଣେଶ୍ୱର ଲିଙ୍ଗକୁ କିଏ ପୂଜିବ ବୋଲି ବ୍ରହ୍ମା ପଚାରିଲେ । ସହଦେବ ନିକଟରେ କରବା ଖୋଳୁଥିବା ଏକ ଶବରକୁ ଆଣିଲେ [ସେହି ଶବରକୁ କବି ତୟେଂଳା ବା ବାଉରି ଜାତିର ବୋଲି ମଧ ଲେଖିଛନ୍ତି] । କୃଷ୍ଣଙ୍କ ପରାମର୍ଶରେ ବ୍ରହ୍ମା ତାହାକୁ ପଇତା ପିନ୍ଧାଇ ବ୍ରାହ୍ମଣ କରିଦେଲେ । ତାଙ୍କ ନାମ ହେଲା କାଳିନ୍ଦୀ ବିପ୍ର । କାଳିନ୍ଦୀ ବିପ୍ର ସ୍ୱଜନଙ୍କୁ ଆଣି ଯେଉଁ ଗ୍ରାମ ବସାଇଲା ତାହାର ନାମ ହେଲା ବାଉରିଶାସନ ।

ସାରଳାଦାସଙ୍କ ବର୍ଣ୍ଣନାରେ ଅର୍ଜୁନ ମହେନ୍ଦ୍ର ଶିଖରରେ ଗୋମାତା କପିଳାକୁ ବଧ କରିଥିବା ଆଖ୍ୟାନ ପ୍ରାଧାନ୍ୟ ପାଇଛି । ମୁଁ ଦୁଇବାର ମହେନ୍ଦ୍ରଶିଖରକୁ ଯାଇଛି ଓ ମହେନ୍ଦ୍ରର ସୁପ୍ରାଚୀନ ଇତିବୃତ୍ତକୁ ଏକ ପ୍ରବନ୍ଧ ଆକାରରେ ପ୍ରକାଶିତ (ଝଙ୍କାର, ୧୯୭୬ ନଭେମ୍ବର) କରିଛି ମଧ । ମହେନ୍ଦ୍ରରେ କପିଳାର ନିଧନ କିଂବଦନ୍ତୀ ନାହିଁ, କୌଣସି ପୁରାଣରେ କି ଲୋକପ୍ରବାଦ ରୂପରେ । ମହେନ୍ଦ୍ର ଶିଖରରେ କୋଟି କୋଟି ଲିଙ୍ଗ ପ୍ରତିଷ୍ଠିତ ହେବା ଅତିଶୟୋକ୍ତି । ସେଠାରେ ମାତ୍ର ବର୍ତ୍ତମାନ ତିନୋଟି ଶିବ ମନ୍ଦିର ଅଛି– ୧. ଗୋକର୍ଣ୍ଣେଶ୍ୱର, ୨. ଧର୍ମେଶ୍ୱର ଓ ୩. ମାରୁତୀଶ୍ୱର । ସଂସ୍କୃତ ମହାଭାରତରେ ପାଣ୍ଡବମାନେ ବନବାସ କାଳରେ ଏଠାକୁ ଆସିଥିବା ଆଖ୍ୟାନ ରହିଛି । କିନ୍ତୁ ସେମାନେ ଲିଙ୍ଗଗୁଡ଼ିକୁ ପ୍ରତିଷ୍ଠା କରିବା କଥା ଲେଖା ହୋଇନାହିଁ । ଗୋକର୍ଣ୍ଣେଶ୍ୱର ନାମ ସାରା ଭାରତରେ ବିଖ୍ୟାତ । ସାରଳାଦାସଙ୍କ ଆଖ୍ୟାନରେ ତାହା ହୋଇଛି ଗୋମୁଖେଶ୍ୱର । ସାରଳାଦାସଙ୍କ ଯୁଧିଷ୍ଠିରେଶ୍ୱରଙ୍କ ପ୍ରକୃତ ନାମ 'ଧର୍ମେଶ୍ୱର' ଓ ଭୀମେଶ୍ୱରଙ୍କ ନାମ 'ମାରୁତୀଶ୍ୱର' । ବାଲ୍ମୀକି ରାମାୟଣ (କିଷ୍କିନ୍ଧା ୬୭ ସର୍ଗ) ଅନୁଯାୟୀ ହନୁମାନ୍ (ମାରୁତି) ଏହି ମହେନ୍ଦ୍ରଗିରି ଉପରୁ ଲଙ୍କାକୁ ଲମ୍ଫ ଦେଇଥିଲେ । ବହୁ ତନ୍ତ୍ରଶାସ୍ତ୍ରରେ ଗୋକର୍ଣ୍ଣ ମହାପୀଠର ମାରୁତୀଶ୍ୱରଙ୍କ ନାମ ଲେଖାଅଛି । ମାରୁତୀଶ୍ୱରଙ୍କ ପ୍ରଚଳିତ ନାମ ଭୀମେଶ୍ୱର (ଭୀମ ମଧ ମାରୁତି) । ଶଉରାମାନଙ୍କ ଦେବତା ମଧରେ ବିମ୍ମ ଜଣେ ମୁଖ୍ୟ ଦେବତା । ବର୍ତ୍ତମାନ ଶଉରାମାନେ ଭୀମେଶ୍ୱରଙ୍କୁ ପୂଜା କରୁଛନ୍ତି । ସାରଳାଦାସ ମହେନ୍ଦ୍ର ପର୍ବତକୁ ଯାଇଥିବା ନିଃସନ୍ଦେହ । କିନ୍ତୁ ତାଙ୍କର

''କୋଟିଏ ଲିଙ୍ଗ ଘେନି ତହିଁ ବିଜୟେ ତ୍ରିପୁରାରି'' (ମଧ୍ୟ ୪୪) ଅତିଶୟୋକ୍ତି । ଉପର ଲିଖିତ ତିନୋଟି ଶିବାଳୟ ଛଡ଼ା ଦୁଇଟି କୁନି କୁନି ଦେଉଳରେ ଦେବୀ ଓ ନାରାୟଣ ସ୍ଥାପିତ ହୋଇଛନ୍ତି ଓ ଆଖପାଖରେ ଦୁଇ ତିନୋଟି ଭାଙ୍ଗିପଡ଼ିଥିବାର ନିଦର୍ଶନ ଅଛି । ସାରଳାଦାସ ପାଣ୍ଡବମାନେ ଗୋଟିଏ ସଂକୀର୍ଣ୍ଣ ଦ୍ୱାରରେ ଗଳି ପାରି ନିଜର ସାଧୁତା ପରୀକ୍ଷା କରିଥିବା କଥା ଲେଖିଛନ୍ତି । ଭୀମେଶ୍ୱର ମନ୍ଦିରରେ ଏକ ସଂକୀର୍ଣ୍ଣ ଦ୍ୱାର ଅଛି, ଯାହା ମଧ୍ୟରେ ପାତକୀମାନେ ଗଳିପାରିବେ ନାହିଁ ବୋଲି ଲୋକବିଶ୍ୱାସ ରହିଛି । ସାରଳାଦାସ ମହେନ୍ଦ୍ର ଶିଖରରୁ ସମୁଦ୍ର ଦେଖାଯିବା କଥା ଲେଖିଛନ୍ତି, ତାହା ପ୍ରକୃତ କଥା । ମହେନ୍ଦ୍ର ପର୍ବତ ତଳେ ପୁତିଙ୍ଗି ନାମରେ ଗାଁଟିଏ ଅଛି, ସେହି ନାମକୁ ଧରି ସେଠାରେ କପିଳାର ଅନ୍ତପୁଟା ପଡ଼ିବା ଆଖ୍ୟାନ ସେ ଗଢ଼ିଥିବା ମନେହୁଏ । ପର୍ବତ ଶିଖରର ସବୁ ଦେବତାଙ୍କ ପୂଜାର୍ଚ୍ଚନା ପାଇଁ ଏକ ଶବରକୁ ଆଣି ତାହାକୁ ବ୍ରାହ୍ମଣ କରାଇବା ଚରିତ୍ର ଭୀମ ଦେଉଳର ଶବର ପୂଜକରୁ ନେଇଥାଇ ପାରନ୍ତି । ଶତପଥ ବ୍ରାହ୍ମଣ ଅନୁସାରେ ଶବରମାନେ ବିଶ୍ୱାମିତ୍ରଙ୍କ ଅବାଧ୍ୟ ଜ୍ୟେଷ୍ଠପୁତ୍ରମାନଙ୍କ ବଂଶଧର । ଓଡ଼ିଆରେ ଗଣେଶ ବିଭୂତି ଟୀକା ନାମରେ ଗୋଟିଏ ପୁସ୍ତକ ମିଳୁଛି । ଏହାର ୧୨ରୁ ୧୮ ଅଧ୍ୟାୟ ମଧ୍ୟରେ ବିଭିନ୍ନ ତଳଜାତିମାନଙ୍କର କାଳ୍ପନିକ ସୃଷ୍ଟି ଆଖ୍ୟାନ ଦିଆଯାଇଛି । ତଦନୁସାରେ ବିଶ୍ୱାମିତ୍ରଙ୍କ ଜ୍ୟେଷ୍ଠ ପୁତ୍ର ବାଉରି, ନାମ ଅନନ୍ତ କାଣ୍ଡି । ଏହି ପୁସ୍ତକ ଅନୁସାରେ ଅନନ୍ତକାଣ୍ଡିର ବିଭିନ୍ନ ଭାର୍ଯ୍ୟା ଗର୍ଭରୁ ବଉରି, ଶବର, ଜୁଆଙ୍ଗ ଆଦି ଜନ୍ମଗ୍ରହଣ କରିଥିଲେ । ସାରଳାଦାସ ଶବର ଓ ବାଉରିଙ୍କୁ ସମାନ ଭାବେ ବର୍ଣ୍ଣନା ଦେବା ତାତ୍ପର୍ଯ୍ୟପୂର୍ଣ୍ଣ । ବଉରି ଦକ୍ଷିଣ ଭାରତର ଏକ ଆଦିବାସୀ ଜାତି । ବାଉରିମାନେ ବର୍ତ୍ତମାନ ହରିଜନ ଗୋଷ୍ଠୀଭୁକ୍ତ ହେଲେ ହେଁ ଅତୀତରେ ଶବର ଗୋଷ୍ଠୀର ଗିରିଜନ ଥିବା ଅନୁମିତ ହୁଏ । ସାରା ଭାରତରେ ବିଭିନ୍ନ ଯୁଗରେ ରାଜା ଓ ଧର୍ମଗୁରୁମାନେ ଅବ୍ରାହ୍ମଣମାନଙ୍କୁ ବ୍ରାହ୍ମଣ କରାଉଥିବା ପ୍ରମାଣ ମିଳେ । ସାରଳାଦାସ ବାଉରିକୁ ପଇତା ପିନ୍ଧାଇବାରୁ ସେ 'କାଳିନ୍ଦୀବିପ୍ର' ହେଲା ବୋଲି ଓ ତାହାର ଗ୍ରାମ 'ବାଉରି ଶାସନ' ହେବା କଥା ଲେଖିଛନ୍ତି । କଳିଙ୍ଗ ଦେଶୀୟ କାଳିଙ୍ଗୀ ଅର୍ଥରେ କାଳିନ୍ଦୀ ଶବ୍ଦ ଗଢ଼ା ହୋଇଥିବା ସମ୍ଭବ । ଆଧୁନିକ ଶ୍ରୀକାକୁଳମ୍ ଜିଲାର ପ୍ରାଚୀନ ବନ୍ଦର ବାରୁଆ ! ସେ ଅଞ୍ଚଳରେ ଓଡ଼ିଆ ବ୍ରାହ୍ମଣମାନଙ୍କ ଏକ ଶାଖା ଅଛନ୍ତି ଯେଉଁମାନେ 'ବାରୁଆ ବ୍ରାହ୍ମଣ' ବୋଲାନ୍ତି । ବାଉରିମାନେ ବିବାହବେଳେ ପଇତାଧାରୀ ହେବା ପ୍ରଥା ଚଳୁଛି । ସାରଳାଦାସ ଏସବୁ ବିଷୟରେ ଅବହିତ ଥାଇ ଗୋକର୍ଣ୍ଣେଶ୍ୱରଙ୍କ ପ୍ରତିଷ୍ଠା ଆଖ୍ୟାନ କଳ୍ପନା କରିଥିଲେ । କିନ୍ତୁ ସେ ତାଙ୍କ ମହାଭାରତରେ ପ୍ରଚାର କରିଥିବା ଆଖ୍ୟାନ ଆଂଚଳିକ ପ୍ରବାଦ ରୂପେ ଗୃହୀତ ହୋଇନାହିଁ ।

## ୪. ଚିଲିକା

ଓଡ଼ିଶା ପ୍ରସିଦ୍ଧ ହ୍ରଦ ଚିଲିକାର ସୃଷ୍ଟି ବିଷୟରେ ସାରଳାଦାସ ନିମ୍ନଲିଖିତ ଆଖ୍ୟାନ ବନପର୍ବରେ (ଦ୍ୱିତୀୟ ଖଣ୍ଡ, ପୃ. ୧୫୩ରୁ) ଲେଖିଛନ୍ତି–

ନୀଳସୁନ୍ଦର ଗିରି (ଆଧୁନିକ ପୁରୀ) ପଶ୍ଚିମକୁ ତିନିଶହ ଯୋଜନ ବ୍ୟାପୀ ଏକ ନିଷାଦପୁରୀ ଥିଲା । ଏକଦା କଶ୍ୟପଙ୍କ ଦୁଇ ପତ୍ନୀ କଦ୍ରୁ ଓ ବିନତା ବିବାଦୀ ହେଲେ । କଦ୍ରୁ ବିନତାଙ୍କୁ ଘୋର ଅପମାନ ଦେଇ ତାଚ୍ଛଲ୍ୟ କଲେ । ଏହା ଦେଖି ନିଷାଦପୁରୀର ଲୋକେ ବିନତାଙ୍କୁ ଛିଛିକାର କରି ହାସ୍ୟରୋଳ କଲେ । ଏହା ବିନତାଙ୍କୁ ଅଧିକ ବାଧିଲା ଓ ସେ ତାଙ୍କ ପୁଅ ଗରୁଡ଼ଙ୍କୁ ଏହା କହିଥିଲେ ।

ଅହଲ୍ୟାଙ୍କ କନ୍ୟା ଅଞ୍ଜନା ଯୋଗୁଁ ଇନ୍ଦ୍ର ଶାପଗ୍ରସ୍ତ ହୋଇଥିବାରୁ ଇନ୍ଦ୍ର ଅଞ୍ଜନାର ପତି ଉତ୍ତଙ୍କ ଋଷିଙ୍କୁ ଦେବସଭାରେ ଅପମାନିତ କରିଥିଲେ । ଉତ୍ତଙ୍କ ରାଗିଯାଇ ଇନ୍ଦ୍ରଙ୍କୁ ପଦଚ୍ୟୁତ କରିବା ଲକ୍ଷ୍ୟରେ ତପସ୍ୟା କଲେ । ତାଙ୍କର ତପସ୍ୟା ଭାଙ୍ଗିବା ପାଇଁ ଇନ୍ଦ୍ର ଉମାବସୁ ଓ ବିଭାବସୁ ନାମକ ଦୁଇ ବସୁ ଭାଇଙ୍କୁ ପଠାଇଲେ । ଏ ଦୁହେଁ ମାୟାରେ ଗଜ ଓ କଚ୍ଛପ ହୋଇ ପରସ୍ପର ଯୁଦ୍ଧ କରି ଉତ୍ତଙ୍କଙ୍କର ଆଶ୍ରମ ଭାଙ୍ଗିଲେ । ଉତ୍ତଙ୍କ କହିଲେ ତୁମେ ଦୁହେଁ ଯଦି ମାୟାରେ ଗଜକଚ୍ଛପ ହୋଇ ଯୁଦ୍ଧ କରୁଥାଅ ତେବେ ଚିରକାଳ ଏହି ରୂପରେ ଯୁଦ୍ଧ ହିଁ କରୁଥିବ । ସେମାନେ ସଂଗ୍ରାମରତ ରହିବାରୁ ଦେଶ ନଷ୍ଟଭ୍ରଷ୍ଟ ହେଲା । ବ୍ରହ୍ମା ଗଜକଚ୍ଛପ ଦୁହିଁଙ୍କୁ ବିନାଶ କରିବା ପାଇଁ ଗରୁଡ଼ଙ୍କୁ କହିଲେ । ଗରୁଡ଼ ଦୁହିଁଙ୍କ ଉପରେ ଆକ୍ରମଣ କରିବାବେଳେ କଚ୍ଛପର ପ୍ରବଳ ନିଃଶ୍ୱାସରେ ଫିଙ୍ଗି ହୋଇ ନିଷାଦପୁରୀ ଉପରେ କଚାଡ଼ି ହୋଇ ପଡ଼ିବାରୁ ସେହି ବିଶାଳ ନଗରର ବିନାଶ ଘଟିଲା । ନିଷାଦପୁରୀର ମାଟି ତଳକୁ ଦବିଯିବାରୁ ସେହି ସ୍ଥାନରେ ଚିଲିକାର ସୃଷ୍ଟି ହେଲା । ନିଷାଦପୁରୀର ଲୋକେ ଗରୁଡ଼ର ମାତା ବିନତାଙ୍କୁ ଧିକ୍‌କାର କରୁଥିବାରୁ ଗରୁଡ଼ କଚଡ଼ା ଖାଇବା ସତ୍ତ୍ୱେ ନିଷାଦପୁରୀ ଧ୍ୱଂସ ହେବାରୁ ସୁଖୀ ହେଲେ । ପରେ ଗରୁଡ଼ ମହାକାୟ ହୋଇ ଗଜକଚ୍ଛପଙ୍କୁ କାବୁ କରିଥିଲେ ।

ଏହି ଗଜ-କଚ୍ଛପ ଯୁଦ୍ଧ ଆଖ୍ୟାନ ସାରଳାଦାସଙ୍କ କଳ୍ପନାରୁ ଜାତ, ସେହିପରି ଚିଲିକାର ସୃଷ୍ଟି ଚରିତ । ଏହା କିଂବଦନ୍ତୀ ରୂପେ ଅଦ୍ୟାବଧି ଗୃହୀତ ହୋଇନାହିଁ । ବିଶ୍ୱଭାରତୀର ରିସର୍ଚ୍ଚ ଫେଲୋ ଭାବରେ ଶ୍ରୀ. ୧୯୬୪-୬୫ରେ ପ୍ରସନ୍ନ କୁମାର ମିଶ୍ର ସଂଗ୍ରହ କରିଥିବା କିଂବଦନ୍ତୀଗୁଡ଼ିକୁ "ଓଡ଼ିଶାର କିମ୍ବଦନ୍ତୀ" ନାମକ ପୁସ୍ତକରେ ପ୍ରକାଶ କରିଛନ୍ତି । ଏଥିରେ ସେ ଚିଲିକାର ସୃଷ୍ଟି ବିଷୟରେ ଦୁଇଟି ଭିନ୍ନ ଭିନ୍ନ କିଂବଦନ୍ତୀ ଦେଇଛନ୍ତି । ସେ ବାଲୁଗାଁରୁ ସଂଗ୍ରହ କରିଥିବା କିଂବଦନ୍ତୀ ଅନୁସାରେ ଅତୀତରେ ଚିଲିକା ଅଞ୍ଚଳ ଭୂଭାଗ ଥିଲା । ରକ୍ତବାହୁ ନାମକ ଯବନ ପୁରୀକୁ ଆକ୍ରମଣ କରି ଜଗନ୍ନାଥ ମୂର୍ତ୍ତିକୁ ନଷ୍ଟ

କରିବାକୁ ବସିଥିଲା । ପୂଜକମାନେ ଜଗନ୍ନାଥଙ୍କ ବିଗ୍ରହକୁ ଚଢ଼େଇହଗା ପର୍ବତରେ ଲୁଚାଇଲେ । ଜଗନ୍ନାଥଙ୍କୁ ଖୋଜି ନ ପାଇବାରୁ ରକ୍ତବାହୁ ସମୁଦ୍ର ଲୁଚାଇଥିବ ବୋଲି ଭାବି ସମୁଦ୍ରକୁ ଖୁବ୍ ଗାଳି କଲା । "ସମୁଦ୍ର ରକ୍ତବାହୁର ଗାଳି ଶୁଣି ବହୁତ ଦୂରକୁ ପଛେଇଗଲା । ଜଳପୂରିତ ସ୍ଥାନ ଚାହୁଁଚାହୁଁ ଶୁଖିଗଲା । ରକ୍ତବାହୁ ଓ ତା'ର ସୈନ୍ୟମାନେ ଏହା ଦେଖି ଆନନ୍ଦରେ ନାଚି ଉଠିଲେ । ସେମାନେ ଆନନ୍ଦରେ ବିହ୍ୱଳ ଥିବା ସମୟରେ ସମୁଦ୍ରରୁ ଗୋଟିଏ ପ୍ରକାଣ୍ଡ ଢେଉ ଆସି ସେମାନଙ୍କୁ ବୁଡ଼ାଇ ମାରିଦେଲା ଏବଂ ସେଇ ଢେଉଟି ଯୋଗେ ପୁରୀର ଗୋଟିଏ ଭାଗ ଜଳପ୍ଲାବିତ ହୋଇଗଲା । ସେଇ ଜଳପ୍ଲାବିତ ଭାଗ ହେଉଛି ଚିଲିକା ହ୍ରଦ (ପୃ. ୧୦୧) ।

'ଓଡ଼ିଶାର କିମ୍ବଦନ୍ତୀ' ପୁସ୍ତକରେ ପୁରୀରୁ ସଂଗୃହୀତ ଅନ୍ୟ ଏକ କିଂବଦନ୍ତୀ ରହିଛି । ତଦନୁସାରେ ଶ୍ରୀକୃଷ୍ଣ ଦ୍ୱାରକା ଲୀଳା ପରେ ଆକାଶମାର୍ଗରେ ସ୍ୱର୍ଗକୁ ଯାଉଥିବା ବେଳେ "ତାଙ୍କ ହାତରୁ ସୁଦର୍ଶନ ଚକ୍ରଟି ପୁରୀ ନିକଟବର୍ତ୍ତୀ ସମୁଦ୍ରରେ ଖସି ପଡ଼ିଲା । ସୁଦର୍ଶନ ଚକ୍ରର ଓଜନ ସହି ନ ପାରି ସମୁଦ୍ର ଉଛୁଳି ଉଠିଲା, ଫଳରେ ଢେଉ ସବୁ ମାଡ଼ିଯାଇ ପୃଥିବୀର ସ୍ଥଳଭାଗକୁ ବୁଡ଼ାଇ ଦେଲେ । ଲୋକମାନେ ଚିତ୍କାର କଲେ । ସମୁଦ୍ରର ରାଜା ବରୁଣ ଏହା ଦେଖି ନିଜର ପାଶଅସ୍ତ୍ର ବାହାର କଲେ । ସେଇ ପାଶ ଅସ୍ତ୍ର ଦ୍ୱାରା ସେ ସ୍ଥଳ ଭାଗ ଉପରକୁ ମାଡ଼ି ଯାଇଥିବା ଲହରୀ ସବୁକୁ ସମୁଦ୍ର ଭିତରକୁ ଫେରାଇ ଆଣିଲେ । ଭୁଲବଶତଃ ମାତ୍ର ଦୁଇଟି ସ୍ଥାନରେ ପାଣି ଛାଡ଼ି ହୋଇଗଲା । ତାହାହିଁ ହେଲା– ଚିଲିକା ହ୍ରଦ ଓ ସର ହ୍ରଦ" (ପୃ. ୧୦୧-୧୦୨) ।

ଏଥିରୁ ଦୁଇଟି କଥା ବାହାରୁଛି– ୧. ସାରଳାଦାସ ଚିଲିକା-ସୃଷ୍ଟି ଆଖ୍ୟାନଟିକୁ କୌଣସି ପ୍ରଚଳିତ କିଂବଦନ୍ତୀରୁ ନେଇନାହାନ୍ତି; ୨ ଚିଲିକା ଖାଲୁଆ ହେବାର ହେତୁ ସାରଳାଦାସ ହିଁ ଦେଇଛନ୍ତି, ଅନ୍ୟ ଦୁଇ କିଂବଦନ୍ତୀରେ ତାହା ନାହିଁ ।

## ୫. ରାମଚଣ୍ଡୀ

ଓଡ଼ିଶାରେ ଓ ଅନ୍ୟତ୍ର ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ଦେବୀଙ୍କ ନାମ ରାମଚଣ୍ଡୀ ହେବା ଆଂଚଳିକ ପ୍ରବାଦ ବହୁସ୍ଥାନରେ ରହିଛି । କୋଣାର୍କ ନିକଟସ୍ଥ ରାମଚଣ୍ଡୀଙ୍କ ସଂପର୍କରେ ସାରଳାଦାସ ମହାଭାରତର ବନପର୍ବରେ (୨ୟ ଖଣ୍ଡ ପୃ.୧୦୬ରୁ) ଏକ ପରିବର୍ଦ୍ଧିତ ଆଖ୍ୟାନ ପ୍ରଦାନ କରିଛନ୍ତି । ସଂସ୍କୃତ ରାମାୟଣ, ମହାଭାରତ ବା କୌଣସି ପୁରାଣରେ ରାମ ଏଠାରେ ଦେବୀଙ୍କୁ ସ୍ଥାପନା କରିବା କଥା ନାହିଁ ।

ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ ରାମ ଲଙ୍କାକୁ ସେତୁବନ୍ଧ ବାନ୍ଧିବା ଉଦ୍ଦେଶ୍ୟରେ ମାଲ୍ୟବନ୍ତ ପର୍ବତରୁ ଏଠାକୁ ଆସି ସମୁଦ୍ରକୂଳରେ ଶୁଭଖମ୍ବ ପୋତିଲେ । ଏଠାରେ ବିଭୀଷଣ ରାମଙ୍କ ଶରଣ ଭିକ୍ଷା କଲା । ସେ ଜଣାଇଥିଲା ଯେ ଲଙ୍କାର ଉତ୍ତର ଦିଗରେ

ସିଂହଦ୍ୱାର । ପୂର୍ବ ଭାଗରେ ମଳତ୍ୟାଗ କରିବା ସ୍ଥାନ । ଏଠାରୁ ସେତୁବନ୍ଧ ବାନ୍ଧିଲେ ତାହା ଲଙ୍କାର ମରଡ଼ୋଶାଳ (ଶ୍ମଶାନ)ରେ ଲାଗିବ । ରାମ ଏ କଥା ଶୁଣି ଏହା ଉପଯୁକ୍ତ ସ୍ଥାନ ନୁହେଁ ବୋଲି ସେତୁବନ୍ଧ ବାନ୍ଧିବାକୁ ଦକ୍ଷିଣକୁ ଗଲେ ଓ ସେ ପୋତିଥିବା ଶୁଭଖମ୍ଭକୁ ପୂଜା କରି ତାହାକୁ ରାମଚଣ୍ଡୀ ନାମ ଦେଲେ ।

କୋଣାର୍କ ନିକଟସ୍ଥ ରାମଚଣ୍ଡୀଙ୍କ ବିଦ୍ୟମାନ ମନ୍ଦିରଟି ଊନବିଂଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ମନ୍ଦିର ତୋଳା ହେବା ପୂର୍ବରୁ ଦେବୀ ବାଲିକୁଦ ଉପରେ ଏକ ଚାଳଘରେ ଥିଲେ । ଦେବୀଙ୍କ ମୂର୍ତ୍ତି ଦଶଭୁଜା ମହିଷମର୍ଦ୍ଦିନୀ । ସାରଳାଦାସ ରାମ ଶୁଭଖମ୍ଭକୁ ପୂଜା କରିବାରୁ ତାହା ରାମଚଣ୍ଡୀ ହେବା କଥା ଲେଖିଥିବାରୁ ତାଙ୍କ ସମୟର ରାମଚଣ୍ଡୀ ନିରବୟବ ସ୍ତମ୍ଭାକାର ହେବା ଅନୁମିତ ହୁଏ । କୌଣସି କାରଣରୁ ସାରଳାଦାସଙ୍କ ସମୟର ରାମଚଣ୍ଡୀ ପରେ ପ୍ରାଧାନ୍ୟ ହରାଇଥିଲେ । ଷୋଡ଼ଶ ଶତାବ୍ଦୀର ଶେଷ ବେଳକୁ ରଚିତ କପିଳ ସଂହିତାରେ ମହୋଦଧିକୂଳରେ ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ରାମେଶ୍ୱରଙ୍କ କଥା ସ୍ଥାନ ପାଇଛି କିନ୍ତୁ ରାମଚଣ୍ଡୀଙ୍କ ନାମୋଲ୍ଲେଖ ହୋଇନାହିଁ । ରାମଚନ୍ଦ୍ର ଏଠାରୁ ସେତୁବନ୍ଧ ବାନ୍ଧିବା ଆଖ୍ୟାନ କଳ୍ପନାପ୍ରସୂତ, ଅନ୍ୟ ଗ୍ରନ୍ଥରେ ବା ପ୍ରବାଦ ରୂପରେ ନାହିଁ ।

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ''ସାରଳା ସାହିତ୍ୟର ଐତିହାସିକ ଚିତ୍ର'' (ପୃ. ୧୦୭) ପୁସ୍ତକରେ ରାଧାରମଣ ପ୍ରେସ୍ ଦ୍ୱାରା ମୁଦ୍ରିତ ସାରଳା-ମହାଭାରତର ମଧ୍ୟପର୍ବରେ ସ୍ଥାନ ପାଇଥିବା ରାମଚଣ୍ଡୀଙ୍କ ବନ୍ଦନାକୁ ଉଦ୍ଧାର କରିଛନ୍ତି । ଏହି ବନ୍ଦନାରେ କୁହାଯାଇଛି ଯେ ରାମଚଣ୍ଡୀ ବଡ଼ ଚୁଡ଼ଙ୍ଗ ଅର୍ଥାତ୍ ଚୋଡ଼ଗଙ୍ଗ ଦେବଙ୍କୁ ଭଣ୍ଡି ନଅର-ପୋଇଲି ବେଶରେ କାଖରେ ମାଠିଆ ଘେନି ସ୍ନାନ କରିବା ପାଇଁ ମନ୍ଦିରରୁ ବାହାରି ସମୁଦ୍ର ଭିତରେ ପଶିଗଲେ । ଚୋଡ଼ଗଙ୍ଗଦେବ ଦେବୀଙ୍କୁ ଧରି ପାରିନଥିଲେ । ରାମଚଣ୍ଡୀ ଚୋଡ଼ଗଙ୍ଗଦେବଙ୍କୁ ଭଣ୍ଡି ମନ୍ଦିରରୁ ଖସି ପଳାଇବା ଆଖ୍ୟାନ ସ୍ଥାନୀୟ କିଂବଦନ୍ତୀ ଭାବରେ ନାହିଁ । କିନ୍ତୁ, ସ୍ଥାନୀୟ କିଂବଦନ୍ତୀ ଅନୁସାରେ ରାମଚଣ୍ଡୀ କଳାପାହାଡ଼କୁ ଭଣ୍ଡି କୁଶଭଦ୍ରାର ଲିଆଖିଆ ମୁହାଣ ଜଳରେ ପଶିଗଲେ । ଝଙ୍କଡ଼ର ସାରଳାଙ୍କ ସଂପର୍କରେ ଠିକ୍ ଏହିପରି ଏକ କିଂବଦନ୍ତୀ ଥିବା କଥା 'ଓଡ଼ିଶାର କିମ୍ବଦନ୍ତୀ' ପୁସ୍ତକର ପୃ. ୪୮ରେ ଲେଖାଅଛି । ତଦନୁସାରେ କଳାପାହାଡ଼ ଆକ୍ରମଣ କରିବା ବେଳକୁ ସାରଳା ଝଙ୍କଡ଼ରେ ନାଣ୍ଡିଦେଉଳରେ ପୂଜା ପାଉଥିଲେ । କଳାପାହାଡ଼ ଆସିବାରୁ ଦେବୀ ସ୍ତ୍ରୀ ବେଶରେ ପାଣି କଳସୀ ଧରି ନାଣ୍ଡି-ଦେଉଳରୁ ବାହାରିଗଲେ । ଆଉ ନାଣ୍ଡିଦେଉଳକୁ ଫେରିନଥିଲେ ।

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ସାରଳା ମହାଭାରତର ସଂସ୍କରଣକୁ ଯେତେବେଳେ ଦେଖିଲେ ସେ ଆଶ୍ଚର୍ଯ୍ୟ ହେଲେ ଯେ ''ତଥାକଥିତ ଶୁଦ୍ଧ ସଂସ୍କରଣରେ ମଧ୍ୟପର୍ବରେ ଥିବା କୋଣାର୍କ ଚଣ୍ଡୀଙ୍କ ସ୍ତବକୁ ଏକାବେଳେକେ ବାଦ୍‌ଦିଆଯାଇଛି'' (ପୃ.୨୮୦) । ଡଃ ପାଣିଗ୍ରାହୀ ଆର୍ତ୍ତବଲ୍ଲଭ ମହାନ୍ତି

ବ୍ୟବହାର କରିଥିବା ବିଭିନ୍ନ ପୋଥି ଦେଖି ପ୍ରମାଣିତ କରିଛନ୍ତି ଯେ ଶୁଦ୍ଧ ସଂସ୍କରଣକୁ ଜାଣିଶୁଣି ଖଣ୍ଡିତ କରାଯାଇଛି, ବିଭିନ୍ନ ପୋଥିରେ ଥିବା ଅଂଶକୁ ବାଦ୍ ଦିଆଯାଇଛି । କିନ୍ତୁ, ରାମଚଣ୍ଡୀଙ୍କ ବନ୍ଦନା ଅଂଶ ପୋଥିରେ ରହିଛି କି ନାହିଁ ସେ ବିଷୟରେ ଡଃ ପାଣିଗ୍ରାହୀ ନୀରବ ରହିଛନ୍ତି । ବନ୍ଦନାର ଆରମ୍ଭ ପଦଟି ହେଲା–

''ପ୍ରଥମେ ବନ୍ଦଇ ମାଗୋ କୋଣାରକ ଚଣ୍ଡୀ,
ମୁଖ ଗୋଟି ଶୋଭା ତୋର ସିନ୍ଦୂରରେ ମଣ୍ଡି ।।''

''ପ୍ରଥମେ ବନ୍ଦଇ'' ଶୈଳୀ ପାଲାବାଲାଙ୍କର ଭଳି ମନେହେଉଛି । ସାରଳାଦାସ ଅନ୍ୟତ୍ର ପ୍ରଥମେ ବନ୍ଦଇ କହି ବନ୍ଦନା ଆରମ୍ଭ କରିଥିବା ମୋ ଦୃଷ୍ଟିରେ ପଡ଼ିନାହିଁ । 'ମଙ୍ଗଳା ସ୍ତୁତି' ନାମକ ଏକ ଆଧୁନିକ ରଚନାରେ ରାମଚଣ୍ଡୀଙ୍କ ମୁଖ ସିନ୍ଦୂରଲିପ୍ତ ଥିବା ବର୍ଣ୍ଣନା ମିଳେ–

ଲହ ଲହ ଜିହ୍ବା ମାଗୋ ସିନ୍ଦୂରେ ମୁଖ ମଣ୍ଡି ।
କୋଣାର୍କେ ରହିଲୁ ମା' ଅଭୟା ରାମଚଣ୍ଡୀ ।।

ତେଣୁ, ମନେହୁଏ ରାମଚଣ୍ଡୀଙ୍କ କଳାପାହାଡ଼କୁ ଠକି ଚାଲିଯିବା ପ୍ରବାଦକୁ ମହାଭାରତ ମଧ୍ୟରେ ପୂରାଇବା ଲକ୍ଷ୍ୟରେ ଅନ୍ୟ କେହି ଲୋକ କଳାପାହାଡ଼ ସ୍ଥାନରେ 'ବଡ଼ ଚୁଡ଼ଙ୍ଗ'କୁ ରଖି ରାମଚଣ୍ଡୀଙ୍କ ବନ୍ଦନାଟି ରଚନା କରିଥାଇପାରେ । ସେ କଳାପାହାଡ଼ର ସମୟ ସାରଳାଦାସଙ୍କ ପରବର୍ତ୍ତୀ ବୋଲି ଜାଣି ଏହା କରିଥିବା ସମ୍ଭବ ।

## ୬. କୋଣାର୍କ କ୍ଷେତ୍ର

କୋଣାର୍କ କ୍ଷେତ୍ର ଓ ଚନ୍ଦ୍ରଭାଗା ତୀର୍ଥକୁ ସଂପୃକ୍ତ କରି ସାରଳାଦାସ ମହାଭାରତର ବିଭିନ୍ନ ପର୍ବରେ ନାନା ଆଖ୍ୟାନ ଯୋଡ଼ିଛନ୍ତି । ଏହି ଆଖ୍ୟାନଗୁଡ଼ିକ ମଧ୍ୟରୁ ଏଠାରେ କୃଷ୍ଣପୁତ୍ର ଶାମ୍ବଙ୍କ କୁଷ୍ଠରୋଗରୁ ମୁକ୍ତି ବିଷୟକ ଆଖ୍ୟାନକୁ ଛାଡିଲେ ଅନ୍ୟ କୌଣସି ଆଖ୍ୟାନର ପୌରାଣିକ ଭିତ୍ତିଭୂମି ନାହିଁ, ସେଗୁଡ଼ିକ ସ୍ଥାନୀୟ କିଂବଦନ୍ତୀ ଭାବେ ମଧ୍ୟ ଲୋକରେ ପ୍ରଚଳିତ ହୋଇପାରିନାହିଁ । କୋଣାର୍କ ଓ ଅର୍କତୀର୍ଥ (ଚନ୍ଦ୍ରଭାଗା) ବିଷୟରେ ସାରଳାଦାସ ଲେଖିଛନ୍ତି–

(୧) ବ୍ରହ୍ମା କୂଳରେ ବେଦପୋଥି ଥୋଇ ଚନ୍ଦ୍ରଭାଗାଠାରେ ମହୋଦଧିରେ ସ୍ନାନ କରୁଥିଲେ । ଶଙ୍ଖାସୁର ଏଠାରୁ ବେଦପୋଥି ହରଣ କଲା । ବ୍ରହ୍ମା ବିକଳ ହେବାରୁ ନାରାୟଣ ମୀନରୂପ ହୋଇ ବେଦ ଉଦ୍ଧାର କରିଥିଲେ (ଉଦ୍‌ଯୋଗ, ୩୮୪) ।

(୨) ସୂର୍ଯ୍ୟ ଚନ୍ଦ୍ରଭାଗାର ଦକ୍ଷିଣ ଓ ମହୋଦଧିର ଉତ୍ତରସ୍ଥିତ ସ୍ଥାନରେ ଅଣାକାରଙ୍କୁ ଧ୍ୟାନ କରି ସନ୍ତୁଷ୍ଟ କରିଥିଲେ । ସେହି ସ୍ଥାନରେ ସୂର୍ଯ୍ୟ କୋଣାର୍କ ନାମ ଧରି ପ୍ରତିଷ୍ଠିତ ହୋଇଥିଲେ (ବିରାଟ, ୨୯୨) ।

(୩) ସତ୍ୟପା ନାମଧେୟ ଜଳପତି ଇନ୍ଦ୍ରପଦ ପାଇବା ଲକ୍ଷ୍ୟରେ ଚନ୍ଦ୍ରଭାଗା ତଟରେ ଦୀର୍ଘକାଳ ସୂର୍ଯ୍ୟଙ୍କୁ ଧ୍ୟାନ କରୁଥିଲେ । ଏହି ଅଞ୍ଚଳର ଅଧୀଶ୍ୱର ଥିଲା ଅର୍କଦୈତ୍ୟ । ଅର୍କଦୈତ୍ୟ ପୃଥିବୀ ଭ୍ରମଣରେ ଯାଇଥିଲା । ଫେରିଆସି ଦେଖିଲା ଯେ ସୁନ୍ଦର ପୁରୁଷଟିଏ ତପସ୍ୟା କରୁଛି । ତପସ୍ୟା କରି ସେ କାଳେ ଅର୍କଦୈତ୍ୟର ଅଧିକାର ଛିନ୍ନ କରିବ ବୋଲି ଆଶଙ୍କା କରି ଅର୍କଦୈତ୍ୟ ସତ୍ୟପାକୁ ଲୋହ ଯଷ୍ଟିରେ ମାରିବାକୁ ଉଦ୍ୟତ ହେବା ଦେଖି ସୂର୍ଯ୍ୟ ଲକ୍ଷେ ଯୋଜନାରୁ କର ବଢ଼ାଇ ଦୈତ୍ୟକୁ ଧରି ତାର ବକ୍ଷସ୍ଥଳ ଉପରେ ମାଡ଼ି ବସିଲେ (ଶାନ୍ତି, ୩୦) ।

(୪) ଚନ୍ଦ୍ରଭାଗା-ଅର୍କତୀର୍ଥର ଅଧିପତି ଅର୍କଦୈତ୍ୟ । ବ୍ରହ୍ମା ସନ୍ଧ୍ୟାଯୋଗ ଉଦ୍ଦେଶ୍ୟରେ ସେଠାକୁ ଯାଇଥିଲେ । ଅର୍କଦୈତ୍ୟର ଝିଅ ସତ୍ୟବତୀ ବ୍ରହ୍ମାଙ୍କୁ ଦେଖି ସମ୍ଭୋଗ ମାଗିଲା । ବ୍ରହ୍ମା ଭୟରେ ନାହିଁ କରି ନ ପାରି ସମ୍ଭୋଗ କଲେ । ସତ୍ୟବତୀ ଏକ ବ୍ରହ୍ମରାକ୍ଷସ ପୁତ୍ର ଜାତ କଲା ଯେ କି ଦେବତାମାନଙ୍କୁ ଉତ୍ପୀଡ଼ନ କଲା । ସେ ଚନ୍ଦ୍ରଙ୍କୁ ଧରି ଦର୍ପଣ ଭାବେ ଘରେ ରଖିବାକୁ ଉଦ୍ୟତ ହେବାରୁ ଚନ୍ଦ୍ର ଇନ୍ଦ୍ରଙ୍କ ଶରଣ ପଶିଲେ । ଇନ୍ଦ୍ର ବଜ୍ର ମାରି ବ୍ରହ୍ମରାକ୍ଷସକୁ ନିହତ କଲେ ସିନା ତାଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିବାରୁ ସେ ଲୁଚିରହିଲେ । ଏହି ପରିସ୍ଥିତିରେ ବ୍ରହ୍ମା ନଘୋଷଙ୍କୁ ଇନ୍ଦ୍ରପଦ ଦେଲେ (୧ ବନ, ୨୨୫) ।

(୫) ଅମ୍ବୁଦୈତ୍ୟର ପୁଅ ଅର୍କଦୈତ୍ୟ ଚନ୍ଦ୍ରଭାଗା ଅଞ୍ଚଳରେ ଥାଏ । ସୂର୍ଯ୍ୟ ଚନ୍ଦ୍ରଭାଗା-ଅର୍କତୀର୍ଥରେ ସ୍ନାନ କରୁଥିଲେ ଓ କୂଳରେ ତାଙ୍କ ରଥଟିକୁ ରଖିଥିଲେ । ଏତେବେଳେ ଅର୍କଦୈତ୍ୟ ପହଞ୍ଚି ମୋ କ୍ଷେତ୍ରରେ କିଏ ପଶିଛି ବୋଲି ସୂର୍ଯ୍ୟଙ୍କ ରଥଟିକୁ ସାରଥି ଅରୁଣଙ୍କ ସହିତ ଗିଳିଦେଲା । ସୂର୍ଯ୍ୟ ସ୍ନାନାନ୍ତେ ରଥକୁ ନ ଦେଖି ଅର୍କଦୈତ୍ୟକୁ ଧରି ତା' ଉପରେ ମାଡ଼ି ବସି ରଥ ଓ ସାରଥିଙ୍କୁ ଉଦ୍ଧାର କଲେ । ପୃଥିବୀର ଅଗ୍ନିକୋଣରେ ସୂର୍ଯ୍ୟ ଅର୍କଦୈତ୍ୟକୁ ମାଡ଼ି ବସିଥିବାରୁ ତାଙ୍କ ନାମ କୋଣାର୍କ ହେଲା (ଭୀଷ୍ମ, ପୃ.୭୩) ।

(୬) କୌଶଲ୍ୟାଙ୍କ ପିତା କଣୟବିନ୍ଦୁ ଅତି ଧର୍ମଶୀଳ ରାଜା । ତାଙ୍କ ରାଜ୍ୟରେ ଦାରିଦ୍ର୍ୟ ଘୋଟିବାରୁ ସେ ଚନ୍ଦ୍ରଭାଗା-ଅର୍କତୀର୍ଥକୁ ଆସି ଦୀର୍ଘ କାଳ ସୂର୍ଯ୍ୟଙ୍କୁ ଧ୍ୟାନ କରିବସିଲେ । ଏହି ତୀର୍ଥ ଭାସ୍କରଦୈତ୍ୟର ପୁଅ ଅର୍କଦୈତ୍ୟର ପ୍ରଭାବକ୍ଷେତ୍ର ଥିଲା । ଅର୍କଦୈତ୍ୟ କଣୟବିନ୍ଦୁକୁ ଲୋହଦଣ୍ଡରେ ପିଟି ହତ୍ୟା କରିବାକୁ ଉଦ୍ୟତହେବା ବେଳେ ସୂର୍ଯ୍ୟ କର ପ୍ରସାରିତ କରି ତାକୁ ରୋଧିଲେ । ଅର୍କଦୈତ୍ୟ ସହିତ ସୂର୍ଯ୍ୟଙ୍କର ମାଘ ଶୁକ୍ଳ ଚଉଠିରୁ ତିନି ଦିନ ଧରି ଯୁଦ୍ଧ ହେଲା । ସୂର୍ଯ୍ୟ ଅର୍କଦୈତ୍ୟକୁ ଧରି ଚନ୍ଦ୍ରଭାଗା ତୀରସ୍ଥ ଚନ୍ଦ୍ରଚୂଡ଼ ପର୍ବତରେ କଚାଡ଼ିବାରୁ ପର୍ବତଟି ଚୂନା ହୋଇଗଲା । ସୂର୍ଯ୍ୟ ସପ୍ତମୀରେ ଅର୍କଦୈତ୍ୟର ବକ୍ଷସ୍ଥଳ ମାଡ଼ିବସିଲେ ଓ କୋଣାର୍କ ବୋଲାଇଲେ । ଏହା ବନପର୍ବ (୨ୟ ଖଣ୍ଡ ପୃ.୯୭ରୁ) ବର୍ଣ୍ଣିତ ଆଖ୍ୟାନ । ପୂର୍ବରୁ ସଭାପର୍ବ (୧ମ ଖଣ୍ଡ ପୃ.୨୯) ମଧ୍ୟ ଏହି ଆଖ୍ୟାନ ବର୍ଣ୍ଣନା କରିଛି କିନ୍ତୁ ସେଠାରେ ଚନ୍ଦ୍ରଚୂଡ଼ ପର୍ବତ ଚୂନା ହେବା କଥାଟି ନଥିଲା ।

(୭) ଯୁଧିଷ୍ଠିର କାଳଯବନକୁ ଚନ୍ଦ୍ରଭାଗା-ଅର୍କତୀର୍ଥରେ ନିହତ କରିଥିଲେ । ମହାଭାରତ ଯୁଦ୍ଧରେ ହତ୍ୟାପାତକ ଖଣ୍ଡନ ପାଇଁ ଯୁଧିଷ୍ଠିର ଚନ୍ଦ୍ରଭାଗାତୀର୍ଥରେ ଯାଗ କରିଥିଲେ (ଦ୍ରୋଣ, ପୃ.୪୩୩) ।

(୮) ଅର୍କଦୈତ୍ୟର ପୁତ୍ର ମୟଦୈତ୍ୟ । ମୟଦୈତ୍ୟର ପୁଅ କଦମ୍ବାସୁର ଓ କଦମ୍ବାସୁରର ପୁତ୍ର ଅମ୍ବାସୁର । ଏମାନେ ଅର୍କତୀର୍ଥର ଅଧିକାରୀ । କୁବେରଙ୍କ ପତ୍ନୀ ହାରାବତୀ ଚନ୍ଦ୍ରଭାଗାରେ ସ୍ନାନ କରୁଥିବା ବେଳେ ଅର୍କଦୈତ୍ୟର ପତ୍ନୀ ସରହସୁନ୍ଦରୀ ତାଙ୍କୁ ଗୋଟିଏ ହାର ମାଗିଲା । ହାରାବତୀ ସରହସୁନ୍ଦରୀକୁ ଛିଛିକାର କରିବାରୁ ସେ ଏକଥା ଅମ୍ବାସୁରକୁ ଜଣାଇଲା । ଏହି କାରଣରୁ କୁବେରପୁତ୍ର ନଳକୁବର ସଙ୍ଗେ ଅମ୍ବାସୁରର ଯୁଦ୍ଧ ହେଲା (ବିରାଟ ୫୦୨) ।

(୯) ଋଷି ଶାୟେନ୍ତନୁ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ନାମକ ତାଙ୍କର ଦୁଇ ପୁତ୍ରଙ୍କୁ ପତ୍ନୀ ଗଙ୍ଗାଙ୍କୁ ନ ଜଣାଇ ସତ୍ୟବତୀଙ୍କ ପାଖରେ ଛାଡ଼ିଥିଲେ । ସତ୍ୟବତୀ ଏହି ଦୁଇପୁଅଙ୍କୁ ଧରି ଚନ୍ଦ୍ରଭାଗାରେ ସ୍ନାନ କରିବା ସମୟରେ ଶାୟେନ୍ତନୁ ଗଙ୍ଗାଙ୍କ ସହିତ ସେଠାକୁ ସ୍ନାନ ପାଇଁ ଯାଇଥିଲେ । ସେଠାରେ ଏହି ପିଲାମାନେ ଶାୟେନ୍ତନଙ୍କୁ ଦେଖି 'ବାପା' ବୋଲି ସମ୍ବୋଧନ କଲେ । ଗଙ୍ଗା ତାଙ୍କ ଆଗୋଚରରେ ଶାୟେନ୍ତନୁଙ୍କର ଦୁଇ ପୁତ୍ର ଥିବା ଜାଣି କୁପିତା ହୋଇ ଏ ଦୁହେଁ ଅପୁତ୍ରିକ ହେବେ ବୋଲି ଶାପ ଦେଲେ (ଆଦି, ୩୪) ।

(୧୦) ଇନ୍ଦ୍ର ଓ ଆଦିତ୍ୟଙ୍କଠ ଔରସରୁ ଗୌତମପତ୍ନୀ ଅହଲ୍ୟାଙ୍କର ଦୁଇପୁତ୍ର ଜାତ ହୋଇଥିଲେ– ୧. ସାମତିଳା ଓ ୨. ଯବତିଳା । ଗୌତମ ଏହି ଦୁଇଙ୍କୁ ନିଜର ପୁତ୍ର ବୋଲି ଭାବୁଥିଲେ । ଥରେ ସେ ଏହି ଦୁଇ ପୁତ୍ରଙ୍କ ସହିତ ନିଜର ଔରସଜାତ କନ୍ୟା ଅଞ୍ଜନାକୁ ଧରି ସ୍ନାନାର୍ଥେ ଅର୍କତୀର୍ଥକୁ ଆସିଥିଲେ । ଏଠାରେ ତାତିବାଲିରେ ପିଲାଙ୍କ ଗୋଡ଼ ପୋଡ଼ିଯିବାରୁ ଗୌତମ ଦୁଇ କାଖରେ ଦୁଇପୁଅଙ୍କୁ କାଖେଇ କରି ଚାଲିଲେ । ଅଞ୍ଜନା ଦୁଃଖିତା ହୋଇ କହିଦେଲା ଯେ ଗୌତମ ନିଜର ଔରସଜାତ କନ୍ୟାକୁ ଅବହେଳା କରି ଜାରଜାତକ ପୁଅଙ୍କୁ ଆଦର କରୁଛନ୍ତି । ଗୌତମ ଅଞ୍ଜନାର କଥାର ସତ୍ୟତା ପରୀକ୍ଷା କରିବା ପାଇଁ ଦୁଇ ପୁଅଙ୍କୁ ସମୁଦ୍ରଗର୍ଭକୁ ଫିଙ୍ଗି ଦେଇ କହିଲେ, 'ତୁମେ ଦୁହେଁ ପ୍ରକୃତରେ ମୋ ପୁଅ ହୋଇନଥିଲେ ବାନରମୁଖ ହେବ' । ସେମାନେ ବାନରମୁଖ ହୋଇଗଲେ । ପରେ ସେ ଦୁହେଁ ହେଲେ ବାଳି ଓ ସୁଗ୍ରୀବ । ଏହି ଆଖ୍ୟାନ ବନପର୍ବ (ପ୍ରଥମଖଣ୍ଡ ପୃ.୩୯୭ରେ) ଓ ଦ୍ରୋଣପର୍ବ (ପୃ.୩୫୩) ମଧ୍ୟରେ ସ୍ଥାନ ପାଇଛି ।

(୧୧) ଶାମ୍ବ (କୃଷ୍ଣପୁତ୍ର) ସୂର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପନ କରି ଦେବାଳୟ ପ୍ରଥମେ ନିର୍ମାଣ କରିଥିବା ଚଳିତ ଶାମ୍ବ-ପୁରାଣରେ ବର୍ଣ୍ଣିତ ହୋଇଛି । କିନ୍ତୁ, ଶାମ୍ବପୁରାଣର ଚରିତ ମୂଳତଃ ପୌରାଣିକ ଚନ୍ଦ୍ରଭାଗା ନଦୀ ତଟବର୍ତ୍ତୀ ମୂଳସ୍ଥାନ (ମୁଲତାନ୍) ସ୍ଥିତ ସୂର୍ଯ୍ୟମନ୍ଦିର ବିଷୟକ । ମୂଳସ୍ଥାନ ମୁସଲମାନ୍ ଶାସିତ ହେବାପରେ କୋଣାର୍କ ମନ୍ଦିର ନିର୍ମିତ ହେଲା ଓ

ଶାମ୍ବପୁରାଣର ଆଖ୍ୟାନଟିକୁ ନବନିର୍ମିତ କୋଣାର୍କ ମନ୍ଦିର ସହିତ ଯୋଡ଼ି ଦିଆଗଲା ଓ ସେଠାରେ ଚନ୍ଦ୍ରଭାଗା (ଆଧୁନିକ ଚେନାବ୍) ନଦୀର ଅସ୍ତିତ୍ୱର ଅଭାବକୁ ଅତୀତରେ ଚନ୍ଦ୍ରଭାଗା ଏଠାରେ ଥିଲା କିନ୍ତୁ ବର୍ତ୍ତମାନ ଗୁପ୍ତ ବୋଲି ଏକ କାଳ୍ପନିକ ବିଶ୍ୱାସ ସୃଷ୍ଟି କରି ପୂରଣ କରାଗଲା । ଦ୍ୱିତୀୟ ଅଧ୍ୟାୟରେ ଚନ୍ଦ୍ରଭାଗା ନଦୀର ଅସ୍ତିତ୍ୱ ଏଠାରେ କସ୍ମିନ୍‌କାଳେ ନଥିବା କଥା ଆଲୋଚିତ ହୋଇଛି ।

ଶାମ୍ବପୁରାଣ ବର୍ଣ୍ଣିତ ଆଖ୍ୟାନ ଅନୁସାରେ ଶ୍ରୀକୃଷ୍ଣପତ୍ନୀ ଜାମ୍ବବତୀଙ୍କ ପୁତ୍ର ଶାମ୍ବ ଅନିନ୍ଦ୍ୟ ସୁନ୍ଦର ଥିଲେ । ସେ ରୂପଗର୍ବିତ ହୋଇ ମହର୍ଷି ନାରଦଙ୍କୁ ଅବଜ୍ଞା କରିବାରୁ ନାରଦ ଶ୍ରୀକୃଷ୍ଣଙ୍କ ଆଗରେ ପ୍ରକାଶ କଲେ ଯେ ଶାମ୍ବ ପାପପ୍ରଣୟରେ ଲିପ୍ତ ଅଛନ୍ତି । ଗୋପବାଳାମାନେ ରୈବତକ ପର୍ବତ ନିକଟସ୍ଥ ଜଳାଶୟରେ ପ୍ରତ୍ୟହ ଜଳକ୍ରୀଡ଼ା କରନ୍ତି । ନାରଦ ମିଛରେ ଶାମ୍ବଙ୍କୁ କହିଲେ ତୁମ ପିତା ରୈବତକରେ ଅଛନ୍ତି, ତୁମକୁ ଡକାଇଛନ୍ତି । ଶାମ୍ବ ସେଠାକୁ ଗଲାବେଳକୁ ସେଠାରେ ଶ୍ରୀକୃଷ୍ଣ ନଥିଲେ କିନ୍ତୁ ଅନେକ ଗୋପବାଳା ଜଳକେଳି କରୁଥିବା ସେ ଦେଖିଲେ । ଗୋପବାଳାମାନେ ଶାମ୍ବଙ୍କ ରୂପରେ ବିମୋହିତ ହୋଇ ତାଙ୍କୁ ପ୍ରେମାଲିଙ୍ଗନ କରିଲାଗିଲେ । ନାରଦ ଶ୍ରୀକୃଷ୍ଣଙ୍କୁ ଶାମ୍ବଙ୍କ ଦୁଶ୍ଚରିତ୍ରର ଚାକ୍ଷୁଷ ପ୍ରମାଣ ଦେବାପାଇଁ ରୈବତକକୁ ନେଲେ । ଶ୍ରୀକୃଷ୍ଣ ରାଗିଯାଇ ଶାମ୍ବ କୁଷ୍ଠରୋଗଗ୍ରସ୍ତ ହୋଇ ବିକଳାଙ୍ଗ ହେବେ ବୋଲି ଶାପ ଦେଲେ । ଶାମ୍ବ ନିଜେ ନିରପରାଧ, ଏହି ଗୋପସ୍ତ୍ରୀମାନେ ତାଙ୍କୁ ଦେଖି ମୋହିତ ହେବାପାଇଁ ସେ ଦାୟୀ ନୁହନ୍ତି ବୋଲି ବୁଝାଇ ରୋଗମୁକ୍ତିର ଉପାୟ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ରୋଗମୁକ୍ତି ପାଇଁ ଶାମ୍ବଙ୍କୁ ମୈତ୍ରେୟ ବନକୁ ଯାଇ ସୂର୍ଯ୍ୟଙ୍କୁ ଉପାସନା କରିବାକୁ ପରାମର୍ଶ ଦେଲେ । ଶାମ୍ବ ମୈତ୍ରେୟ ବନକୁ ଯାଇ ୧୨ ବର୍ଷ ତପଶ୍ଚର୍ଯ୍ୟା କରି ରୋଗମୁକ୍ତ ହେଲେ ଚନ୍ଦ୍ରଭାଗା ନଦୀରେ ସ୍ନାନ କଲେ । ଶାମ୍ବ ଚନ୍ଦ୍ରଭାଗା ନଦୀ ଗର୍ଭରୁ ଏକ ସୂର୍ଯ୍ୟପ୍ରତିମା ପାଇଲେ ଓ ସେହି ପ୍ରତିମାକୁ ପ୍ରତିଷ୍ଠିତ କରାଇବା ପାଇଁ ଏକ ମନ୍ଦିର ନିର୍ମାଣ କଲେ ।

କୃଷ୍ଣ ଶାମ୍ବଙ୍କୁ ଶାପ ଦେବା ଓ ଶାମ୍ବ ସୂର୍ଯ୍ୟୋପାସନା କରି ବ୍ୟାଧିମୁକ୍ତ ହେବା ଓ ସୂର୍ଯ୍ୟବିଗ୍ରହକୁ ପ୍ରତିଷ୍ଠା କରିବା ପାଇଁ ଏକ ମନ୍ଦିର ନିର୍ମାଣ କରିବା ବିଷୟକ ଶାମ୍ବପୁରାଣର ଆଖ୍ୟାନ ପଞ୍ଜାବର ଚନ୍ଦ୍ରଭାଗା (ଚେନାବ୍) ନଦୀ ତୀରସ୍ଥ ମୂଳସ୍ଥାନର ସୂର୍ଯ୍ୟମନ୍ଦିର ସହିତ ସଂପୃକ୍ତ । ହୁଏନ୍‌ସାଂ ଖ୍ରୀ.୬୪୧ରେ ମୂଳସ୍ଥାନ ଯାଇ ସୂର୍ଯ୍ୟମନ୍ଦିର ପରିଦର୍ଶନ କରିଥିଲେ । ସେ ତାଙ୍କ ପର୍ଯ୍ୟଟନର ବିବରଣରେ ଦେବାଳୟରେ ପୂଜିତ ବହୁମହାମୂଲ୍ୟ ରତ୍ନଖଚିତ ଶୁଦ୍ଧ ସୁବର୍ଣ୍ଣରେ ନିର୍ମିତ ସୂର୍ଯ୍ୟଙ୍କ ପ୍ରତିମା କଥା ଲେଖିଛନ୍ତି । ପରବର୍ତ୍ତୀ ସମୟରେ ଖ୍ରୀ. ୭୧୩ ନିକଟରେ ମହମ୍ମଦ୍ ବିନ୍ କାସିମ୍ ପଞ୍ଜାବ ଅଧିକାର କରି ମୂଳସ୍ଥାନର ସୂର୍ଯ୍ୟ ମନ୍ଦିରକୁ ଧ୍ୱଂସ କରି ତାହାର ରତ୍ନଭଣ୍ଡାରକୁ ଲୁଣ୍ଠନ କଲେ । ତାହା ପରେ ପଞ୍ଜାବ (ମୂଳସ୍ଥାନ ସମେତ) ଘଜନି-ସାମ୍ରାଜ୍ୟର ଅଂଶ ହୋଇଗଲା । ଘଜନିର ଶାସକମାନେ

ହିନ୍ଦୁମାନଙ୍କୁ ବଳପୂର୍ବକ ମୁସଲମାନ କରାଉଥିବାରୁ ତୀର୍ଥକ୍ଷେତ୍ର ଭାବରେ ମୂଳସ୍ଥାନର ପ୍ରାଧାନ୍ୟ ଲୋପପାଇଲା ।

ସମ୍ଭବତଃ ସାରଳାଦାସ ହିଁ ପ୍ରଥମେ ଶାମ୍ବଉପାଖ୍ୟାନକୁ କୋଣାର୍କ ମନ୍ଦିର ସହିତ ସଂପୃକ୍ତ କରାଇଥିଲେ । ସାରଳାଦାସଙ୍କ ପୂର୍ବରୁ ରଚିତ ବ୍ରହ୍ମପୁରାଣରେ କୋଣାର୍କ କ୍ଷେତ୍ରର ମାହାତ୍ମ୍ୟ ବିଶେଷ ପ୍ରାଧାନ୍ୟ ପାଇଛି । କିନ୍ତୁ, ସେଥିରେ ଶାମ୍ବଉପାଖ୍ୟାନ ସ୍ଥାନ ପାଇନାହିଁ । ସାରଳାଦାସଙ୍କ ସମୟର ପ୍ରାୟ ଦେଢ଼ଶହ ବର୍ଷପରେ ରଚିତ 'କପିଳସଂହିତା'ରେ କୋଣାର୍କଠାରେ ଶାମ୍ବ ବ୍ୟାଧିମୁକ୍ତ ହେବା ଓ ସେଠାରେ ଏକ ମନ୍ଦିର ତୋଳି ଚନ୍ଦ୍ରଭାଗା ନଦୀରୁ ପ୍ରାପ୍ତ ସୂର୍ଯ୍ୟବିଗ୍ରହକ ପ୍ରତିଷ୍ଠିତ କରାଇଥିବା ଚରିତ ଲେଖାହୋଇଛି । କପିଳ ସଂହିତା ଶାମ୍ବ ତାଙ୍କ ମାତାମାନଙ୍କୁ କାମାସକ୍ତ କରାଇବା ଦେଖି ଶ୍ରୀକୃଷ୍ଣ ଶାପଦେବା ବର୍ଣ୍ଣନା କରିଛି, ସେଥିରେ ନାରଦଙ୍କୁ ସଂପୃକ୍ତ କରାଯାଇନାହିଁ । ସାରଳାଦାସ ଶାମ୍ବ କୋଣାର୍କରେ ସୂର୍ଯ୍ୟୋପାସନା କରି ବ୍ୟାଧିମୁକ୍ତ ହେବା କଥା ଲେଖିଛନ୍ତି କିନ୍ତୁ ଶାପର କାରଣ ଭିନ୍ନ ପ୍ରକାରେ ଦେଇଛନ୍ତି । କୌତୂହଳର ବିଷୟ ସାରଳାଦାସ ଶାମ୍ବଚରିତକୁ ବନପର୍ବ (୨ ବନ, ୧୦୩ରୁ) ମଧ୍ୟରେ ଏକପ୍ରକାର ଲେଖି ଶାନ୍ତି ପର୍ବ (ପୃ. ୨୮ରୁ) ମଧ୍ୟରେ ତାହାକୁ ବଦଳାଇଛନ୍ତି । ଶାମ୍ବଚରିତ କୋଣାର୍କର ଆଂଚଳିକ କିଂବଦନ୍ତୀ ହୋଇଥିଲେ ତାହା ଦ୍ୱିବିଧ ରୂପରେ ବର୍ଣ୍ଣିତ ହେବା ସମ୍ଭବପର ହୁଅନ୍ତାନାହିଁ ।

ସାରଳା-ମହାଭାରତର ବନପର୍ବ ଅନୁସାରେ ନାରଦ ଶ୍ରୀକୃଷ୍ଣଙ୍କୁ ଡାକି ଆଣିବାକୁ ଶାମ୍ବଙ୍କୁ ପଠାଇଲେ । ଶାମ୍ବ ଶ୍ରୀକୃଷ୍ଣଙ୍କ ପାଖକୁ ଗଲାବେଳକୁ ଜମ୍ବୁବତୀ-କୃଷ୍ଣ ରତିକ୍ରୀଡ଼ାରତ ଥିଲେ । ଶ୍ରୀକୃଷ୍ଣ ଶାମ୍ବଙ୍କ ପ୍ରତି ରୁଷ୍ଟ ହୋଇ ସେ ଗଳିତକୁଷ୍ଠରୋଗ ଭୋଗିବେ ବୋଲି ଶାପଦେଲେ । ନାରଦଙ୍କ ପରାମର୍ଶ କ୍ରମେ ଶାମ୍ବ କୋଣାର୍କ ତୀର୍ଥକୁ ଯାଇ ସୂର୍ଯ୍ୟୋପାସନା କରି ରୋଗମୁକ୍ତ ହେଲେ । ଶାମ୍ବଙ୍କ ପ୍ରତି କୃଷ୍ଣପତ୍ନୀମାନଙ୍କ କାମାସକ୍ତି ସାରଳାଦାସ ପସନ୍ଦ କରିନାହାନ୍ତି ।

ସାରଳା-ମହାଭାରତର ଶାନ୍ତିପର୍ବ ବର୍ଣ୍ଣିତ ଚରିତ ଏହିପରି– ଶ୍ରୀକୃଷ୍ଣ ଶାମ୍ବଙ୍କୁ ଦ୍ୱାରରେ ଜଗାଇ ଅନ୍ତଃପୁରରେ ସତ୍ୟଭାମାଙ୍କ ସହିତ ରତିକ୍ରୀଡ଼ାରତ ଥିବାବେଳେ ଦୁର୍ବାସା ଋଷି ଶ୍ରୀକୃଷ୍ଣଙ୍କୁ ତୁରନ୍ତ ଡାକି ଆଣିବାକୁ ଶାମ୍ବଙ୍କୁ କହିଲେ । ଦୁର୍ବାସା କୃଷ୍ଣଙ୍କୁ ସଙ୍ଗେ ସଙ୍ଗେ ଡାକି ନ ଆଣିଲେ ସମଗ୍ର ଦ୍ୱାରକାକୁ କୋପାନଳରେ ଭସ୍ମୀଭୂତ କରିବେ ବୋଲି ଧମକାଇବାରୁ ଶାମ୍ବ ଅନ୍ତଃପୁରକୁ ଯାଇ ସତ୍ୟଭାମା ଶ୍ରୀକୃଷ୍ଣଙ୍କ ରତି ଦେଖିଲେ । କୃଷ୍ଣ ମାତା-ପିତାଙ୍କ ରତି ଦେଖିବା ଦୋଷ ପାଇଁ ଶାମ୍ବଙ୍କୁ ଗଳିତକୁଷ୍ଠ ବ୍ୟାଧି ହେବ ବୋଲି ଶାପ ଦେଲେ । ଦୁର୍ବାସା ଶାମ୍ବଙ୍କ ଦୁରବସ୍ଥା ଦେଖି ସେ ଭାସ୍କରତୀର୍ଥରେ ଚନ୍ଦ୍ରଭାଗାରେ ସ୍ନାନ କରି କୋଣାର୍କଙ୍କୁ ଉପାସନା କଲେ ବ୍ୟାଧିମୁକ୍ତ ହେବେ ବୋଲି ଉପଦେଶ ଦେଲେ ।

ଶାମ୍ବ ଭାସ୍କରତୀର୍ଥକୁ ଯାଇ ସୂର୍ଯ୍ୟୋପସନା କରିବାରୁ ୧୨ ବର୍ଷରେ ରୋଗମୁକ୍ତ ହୋଇଥିଲେ ।

ଉଲ୍ଲେଖନୀୟ ଯେ ଶାମ୍ବପୁରାଣରେ ଶାମ୍ବ ମନ୍ଦିରତୋଳି ସେଠାରେ ସୂର୍ଯ୍ୟଙ୍କ ବିଗ୍ରହକୁ ପ୍ରଥମେ ଅଧିଷ୍ଠିତ କରିଥିବା କଥା ରହିଛି । ସାରଳାଦାସ ଉପାଖ୍ୟାନର ସେହି ଅଂଶକୁ ଗ୍ରହଣ କରିନାହାନ୍ତି । ଇତିପୂର୍ବେ 'ସାରଳାଦାସଙ୍କ ବୟସର ଛାପ' ଶୀର୍ଷକ ନବମ ଅଧ୍ୟାୟରେ ଦର୍ଶିଛି ଯେ ମହାଭାରତର ବିରାଟପର୍ବ ପର୍ଯ୍ୟନ୍ତ ଅଂଶ ଲେଖାଯିବାର ଦୀର୍ଘକାଳ ପରେ ଅବଶିଷ୍ଟାଂଶ ଲେଖାଯାଇଛି । ତେଣୁ, ଆଦ୍ୟାଂଶର ଚରିତ ସହିତ ଶେଷାଂଶର ଚରିତର ଅମେଳ ବହୁସ୍ଥଳେ ରହିଛି । ସାରଳାଦାସଙ୍କ ଶାମ୍ବ ଉପାଖ୍ୟାନର ଦ୍ୱିବିଧତା ସେହି କାରଣରୁ ହୋଇଥିବା ସମ୍ଭବ ।

## ୭. ଏକାମ୍ରକ୍ଷେତ୍ର

ସାରଳାଦାସ ମହାଭାରତର ବନପର୍ବ (୨ୟ ଖଣ୍ଡ, ପୃ.୮୦ରୁ) ଓ ସ୍ୱର୍ଗାରୋହଣ ପର୍ବ (ପୃ.୩୫ରୁ) ମଧ୍ୟରେ ଏକାମ୍ର କ୍ଷେତ୍ରର ଇତିବୃତ୍ତ ଲେଖିଛନ୍ତି । ବନପର୍ବର ବିବରଣଠାରୁ ସ୍ୱର୍ଗାରୋହଣ ପର୍ବର ବିବରଣର କେତେକ ପାର୍ଥକ୍ୟ ରହିଛି ।

ବନପର୍ବ ଅନୁସାରେ ସୌଦାସ ରାଜାର କ୍ରୀତି ଓ ବାସନ ନାମକ ଦୁଇ ଅସୁର ପୁତ୍ର ଏକାମ୍ରନାଥଙ୍କୁ ସେବା କରି କଳ୍ପାୟୁ ହେବାକୁ ବରପାଇଥିଲେ । ସେମାନେ ସ୍ୱର୍ଗ ଜୁରିଲେ ଓ କୁବେର ଭଣ୍ଡାର ଲୁଟିଲେ । ସେମାନେ ସୁବର୍ଣ୍ଣକୂଟ ଗିରି ଗଢ଼ିଲେ । ସ୍ୱର୍ଗାରୋହଣ ପର୍ବର ଚରିତ ଅନୁସାରେ ଭାନୁବନ୍ତ ଦୈତ୍ୟର ତିନିପୁତ୍ର— ୧. କୀର୍ତ୍ତନ ୨. କୀର୍ତ୍ତିବାସ ଓ ୩. ଆରଡ଼କ । ଆରଡ଼କ ପ୍ରାଚୀ ନଦୀକୂଳ ମାଡ଼ି ବସିଥାଏ ଓ କୀର୍ତ୍ତନ-କୀର୍ତ୍ତିବାସ ଏକାମ୍ରକ୍ଷେତ୍ର ମାଡ଼ି ବସିଥାନ୍ତି ।

ବନପର୍ବୋକ୍ତ କ୍ରୀତି ଓ ବାସନ (ଓ ସ୍ୱର୍ଗାରୋହଣ ପର୍ବୋକ୍ତ କୀର୍ତ୍ତନ ଓ କୀର୍ତ୍ତିବାସ) ଦୁଇ ଅସୁର ଭାଇଙ୍କ ଉତ୍ପାତ ଯୋଗୁଁ ଏକାମ୍ରକ୍ଷେତ୍ର ଜନଶୂନ୍ୟ ହେଲା । ମହାଦେବ ଏହି ଦୁଇ ଅସୁର ଭାଇଙ୍କୁ ନିପାତ କରିବା ପାଇଁ ପାର୍ବତୀଙ୍କୁ କହିଲେ । ପାର୍ବତୀ ଗୋପାଳୁଣୀ ବେଶରେ ଦଧିନଉତି ଧରି ସୁବର୍ଣ୍ଣକୂଟ ଗିରିକୁ (ସ୍ୱର୍ଗାରୋହଣ ପର୍ବ ଅନୁସାରେ ବିଂଝିଗିରିକୁ) ଗଲେ । ଦୁଇ ଭାଇ ତାଙ୍କଠାରୁ ଦହି ଖାଇଲେ ଓ କାମାସକ୍ତ ହେଲେ । ସେ ଦୁହେଁ ଗୋପାଳୁଣୀକୁ ପତ୍ନୀ କରିବାକୁ ଚାହିଁଲେ । (ସ୍ୱର୍ଗାରୋହଣ ପର୍ବ ଅନୁସାରେ ଗୋପାଳୁଣୀ ଦ୍ୱିତୀୟ ଦିନ ସେମାନଙ୍କୁ ଦହି ଖୁଆଇବା ବେଳେ ଏହା ଘଟିଛି) ! ଗୋପାଳୁଣୀ କହିଲେ, 'ମୋର ଏକ ବ୍ରତ ଅଛି, ଯେ ମୋତେ କାନ୍ଧରେ ଠିଆ କରି ଏ ତୀର୍ଥ ବୁଲାଇବ ମୁଁ ତାର ଭାର୍ଯ୍ୟା ହେବି ।' ଦୁଇ ଭାଇ ସ୍ୱ ସ୍ୱ କାନ୍ଧ ଯାଚିଲେ ଓ ଗୋପାଳୁଣୀ ତାଙ୍କ କାନ୍ଧରେ ଠିଆ ହେଲେ । ସେମାନେ ଗୋପାଳୁଣୀଙ୍କୁ ଧରି ଏକାମ୍ରେଶ୍ୱରଙ୍କ ନିକଟରେ

ହେବାବେଳେ ଦେବୀ ପ୍ରକାଣ୍ଡ ମୂର୍ତ୍ତି ଧରି ଦୁଇ ଅସୁରଙ୍କୁ ଭୂମିଗର୍ଭକୁ ଚାପିଲେ । ତାଙ୍କ ଶରୀର ଛାତିଯାଏଁ ଭୂଗର୍ଭଗତ ହେଲା ।

ଏକାମ୍ରକ୍ଷେତ୍ରର ସ୍ଥଳପୁରାଣଗୁଡ଼ିକରେ ଦେବୀ ପାର୍ବତୀ ଗୋପାଳୁଣୀ ହୋଇ କୀର୍ତ୍ତି ଓ ବାସ ନାମଧେୟ ଦୁଇ ଅସୁର ଭ୍ରାତାଙ୍କୁ ଭୂମିରେ ଚାପିଦେବା ଆଖ୍ୟାନ ସ୍ଥାନ ପାଇଛି । ସେଠାରେ ଏ ଦୁଇଙ୍କ ପିତା ଦ୍ରୁମିଳ ବୋଲି ଲେଖାଅଛି । ତେଣୁ ଅନୁମିତ ହୁଏ ସାରଳାଦାସ ବନପର୍ବରେ ସ୍ଥାନୀୟ କିଂବଦନ୍ତୀକୁ ସ୍ଥାନ ଦେଇଛନ୍ତି, ସାମାନ୍ୟ ତାରତମ୍ୟ ରଖି । ସ୍ୱର୍ଗାରୋହରଣ ପର୍ବ ରଚନା ବେଳକୁ ଏହି ତାରତମ୍ୟ ଅଧିକ ବିସ୍ତାର ଲାଭକଲା ।

## ୮. କପିଳାସ

ସାରଳାଦାସ ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଶୈବପୀଠ କପିଳାସ ସଂପର୍କରେ ବନପର୍ବ (ଖଣ୍ଡ ୧ର ପୃ ୯୬ରୁ) ଓ ସ୍ୱର୍ଗାରୋହଣ ପର୍ବ (ପୃ. ୧୨ ଠାରୁ) ମଧ୍ୟରେ ଦୁଇଟି ଆଖ୍ୟାନ ଯୋଡ଼ିଛନ୍ତି ।

ସେ ବନପର୍ବରେ ଲେଖିଛନ୍ତି— ମହାଦେବ ଦେବତାମାନେ ଯେ ଯାହା ମାଗିଲେ ତାହା ଦେଇ ନିଜେ ଦିଗମ୍ବର ହୋଇ ବୁଢ଼ା ବଳଦଟିକୁ ଧରି ଚିତ୍ରୋତ୍ପଳା ନଦୀକୂଳରେ ବୁଲୁଥିବା ବେଳେ ଶିଖରା ନାମକ ଏକ ଶବର ତାଙ୍କୁ ନିଷ୍ଠା ସହକାରେ ସେବା କଲା । ମହାଦେବ ତାହାର ସେବାରେ ସନ୍ତୁଷ୍ଟ ହୋଇ କପିଳାସ ପର୍ବତରେ ଶିଖରେଶ୍ୱର ନାମ ଧାରଣ କରି ରହିଲେ ।

ଶିଖରେଶ୍ୱର ମନ୍ଦିର ଚୂଡ଼ାର କଳସରେ ଗଙ୍ଗରାଜା ନରସିଂହ ଦେବଙ୍କ ରାଜତ୍ୱ କାଳର ତିନୋଟି ଶିଳାଲେଖ ଖୋଦିତ ହୋଇଛି । ତନ୍ମଧ୍ୟରୁ ଖ୍ରୀ ୧୨୪୬ର ଦୁଇଟି ଲେଖରେ ଦେବତାଙ୍କ ନାମ 'କୈଳାସଶିଖରେଶ୍ୱର' ଓ ଖ୍ରୀ. ୧୨୫୩ର ଲେଖରେ ନାମଟି 'କୈଳାସଦେବ' ଲେଖାଅଛି । କପିଳ ସଂହିତା (୯ମ ଅଧ୍ୟାୟ) ପର୍ବତର ନାମ କୋଷାଚଳ ଓ ତାହା ହିମାଳୟସ୍ଥ କୈଳାସର ଏକ ଖଣ୍ଡ ବୋଲି ବର୍ଣ୍ଣନା କରେ । ସାରଳାଦାସ ମଧ୍ୟ କପିଳାସକୁ କୈଳାସରୂପେ ଗ୍ରହଣ କରିଛନ୍ତି । ପର୍ବତ ଶିଖରସ୍ଥିତ ଈଶ୍ୱର ହେବାରୁ ତାଙ୍କ ନାମ ଶିଖରେଶ୍ୱର ଥିବା ନିଃସନ୍ଦେହ । କିନ୍ତୁ, ସାରଳାଦାସ ଶିଖରା ନାମକ ଶବର ଦ୍ୱାରା ଉପାସିତ ହେବାରୁ ସେ ଶିଖରେଶ୍ୱର ବୋଲାଇବା କଥା ଲେଖିଛନ୍ତି । ଏପରି କିଂବଦନ୍ତୀ ବା ଚରିତ ଅନ୍ୟତ୍ର ନାହିଁ । ସାରଳାଦାସ ଦେବଦେବୀମାନେ ମୂଳରେ ଶବର ଉପାସିତ ଥିବା ଚରିତ ଗୋକର୍ଣ୍ଣେଶ୍ୱର, ତାଙ୍କ ଗ୍ରାମଦେବୀ ସାରୋଳଚଣ୍ଡୀ ଓ ଜଗନ୍ନାଥଙ୍କ ସଂପର୍କରେ କଳ୍ପନା କରିଥିବା ପରି ଶିଖରେଶ୍ୱରଙ୍କ ସଂପର୍କରେ ମଧ୍ୟ କଳ୍ପନା କରିଛନ୍ତି ବୋଲି ଅନୁମିତ ହୁଏ । ଆଶ୍ଚର୍ଯ୍ୟର ବିଷୟ କୈଳାସରୁ କପିଳାସ ହେବା କଥା ଖ୍ରୀ.୧୩ଶ ଶତାବ୍ଦୀର ଶିଳାଲେଖରେ ଥିବା ସତ୍ତ୍ୱେ ସ୍ଥାନୀୟ କିଂବଦନ୍ତୀ ଅନୁସାରେ କପିଳ ଋଷିଙ୍କ ଆଶ୍ରମ ଯୋଗୁଁ ଏହା କପିଳାସ (ଓଡ଼ିଶାର କିମ୍ବଦନ୍ତୀ ପୃ.୧୦୮) ।

ସାରଳାଦାସ ସ୍ୱର୍ଗାରୋହଣ ପର୍ବ (ପୃ.୧୨ରୁ) ମଧ୍ୟରେ କପିଳାସ ସଂପର୍କରେ ଏକ ଅଭିନବ ଆଖ୍ୟାନ ବର୍ଣ୍ଣିଛନ୍ତି । ସେ ଲେଖିଛନ୍ତି ଯେ ପାଣ୍ଡବମାନେ ସ୍ୱର୍ଗାରୋହଣ ପୂର୍ବରୁ ତୀର୍ଥଯାତ୍ରା କ୍ରମରେ ଯାଜନଗ୍ର ଦେଇ ଅମରାବତୀ ନଗରରେ ପହଞ୍ଚିଲେ । ସେଠାର ଗନ୍ଧବଣିକ ହରିସାହୁର ସୁହାଣୀ ନାମକ ଝିଅଟିଏ ଥିଲା । ସୁହାଣୀ ବିଭାହେଲେ ମରିବ ବୋଲି ଜ୍ୟୋତିଷୀ କହିବାରୁ ସେ ତାକୁ ଅଭିଆଡ଼ୀ କରି ଘରେ ରଖିଥିଲା । ଯମର କର୍ତ୍ତୃତ୍ୱରୁ ରକ୍ଷା ପାଇବା ଆଶାରେ ହରିସାହୁ ତାହାର ପନ୍ଦର ବର୍ଷୀୟା ଝିଅକୁ ବିବାହ କରିବା ପାଇଁ ଯୁଧିଷ୍ଠିରଙ୍କୁ ପ୍ରାର୍ଥନା କଲା । ଯୁଧିଷ୍ଠିର ସୁହାଣୀକୁ ବିବାହ କଲେ ଓ ଅର୍ଜୁନ ଯମକୁ ଆକଟିଲେ । ଧର୍ମରାଜ ଯୁଧିଷ୍ଠିର ବିବାହ କରି ଅମରାବତୀରେ ୩୫ ବର୍ଷ ବିତାଇଲେ ଓ ସେଥିଯୋଗୁଁ ଅମରାବତୀର ନାମ ହେଲା ଧର୍ମପୁର । ତାହାପରେ ପାଣ୍ଡବମାନେ ନିକଟସ୍ଥ ଗୁପ୍ତତୀର୍ଥ କପିଳାସକୁ ଗଲେ ଦ୍ରୌପଦୀ ଓ ସୁହାଣୀକୁ ସଙ୍ଗରେ ଧରି । କପିଳାସ ପର୍ବତ ଉପରେ ଚନ୍ଦ୍ରଶେଖରଙ୍କ ପୀଠ । ସୁହାଣୀ ପର୍ବତ ଚଢ଼ିପାରିବ ନାହିଁ ବୋଲି ତାକୁ ପର୍ବତ ତଳେ ରଖି କହିଲେ 'ଆମେ ବାହୁଡ଼ିବା ବେଳେ ତୋତେ ଧରି ବାରାଣସୀ ଯିବୁ' । ସୁହାଣୀ ସେହି ପର୍ବତ ପାଦଦେଶରେ ଚିରକାଳ ରହିଲା, ତାକୁ ପାଣ୍ଡବମାନେ ବାରାଣସୀକୁ ନେଲେ ନାହିଁ ।

ସାରଳାଦାସ ଏଠାରେ ଶିଖରେଶ୍ୱର ନାମ ବଦଳେ ଚନ୍ଦ୍ରଶେଖର ନାମ ଦେଇଛନ୍ତି । ଅଧୁନା ଶିଖରେଶ୍ୱର ଚନ୍ଦ୍ରଶେଖର ନାମରେ ମଧ୍ୟ ଅଭିହିତ ହୁଅନ୍ତି, ଯଦିଓ ଅଭିଲେଖ ଓ କପିଳସଂହିତାରେ ଚନ୍ଦ୍ରଶେଖର ନାମ ନାହିଁ । ସୁହାଣୀ ସେଠାରେ ରହିବା ପ୍ରବାଦ ସେଠାରେ ନାହିଁ । କୌତୂହଳର ବିଷୟ ଏହିପରି ଏକ ଚରିତ ସମ୍ବଲପୁର ଜିଲ୍ଲାର ରେଢ଼ାଖୋଲ ସବ୍‌ଡ଼ିଭିଜନ୍‌ର ସଦର ମହକୁମା ରାମପୁରର ୧୦ ମାଇଲ ପଶ୍ଚିମସ୍ଥ ଚାରମାଲ୍ ଗ୍ରାମ ନିକଟ ଏକ ପର୍ବତ ସମ୍ପର୍କରେ ରହିଛି । ସମ୍ବଲପୁର ଜିଲା ଗେଜେଟିଅର୍‌ରେ ଚାରମାଲ୍ ବିଷୟରେ ଲେଖାଅଛି– (ଅନୁବାଦ)

> ''ଅଦୂରବର୍ତ୍ତୀ ସୁଆଣୀ ପର୍ବତରେ ସୁଆଣୀ ଦେବୀଙ୍କର ପ୍ରତିମା ତଥା ଅନ୍ୟାନ୍ୟ ପ୍ରତିମା ଦେଖିବାକୁ ମିଳେ । ସ୍ଥାନୀୟ ପ୍ରବାଦ ଅନୁସାରେ, ଦେବୀ ଯାହାକୁ ବା ବିବାହ କରୁଥିଲେ ସେମାନେ ଜଣକ ପରେ ଜଣେ ମରୁଥିଲେ । ପରିଶେଷରେ ତାଙ୍କ ପିତା ଯୁଧିଷ୍ଠିରଙ୍କୁ ଅନୁରୋଧ କଲେ ତାଙ୍କୁ ବିବାହ କରିବାକୁ । ସେତେବେଳେ ଯୁଧିଷ୍ଠିର ବନବାସ ମଧ୍ୟରେ ସେଠାକୁ ଆସିଥିଲେ । ଯୁଧିଷ୍ଠିର ତାଙ୍କୁ ବିବାହ କଲେ କିନ୍ତୁ ସେ ବନବାସରେ ଥିବା ଯୋଗୁଁ ତାଙ୍କୁ ଘରକୁ ନ ନେଇ ସେଠାରେ ଛାଡ଼ି ପ୍ରବୋଧନା ଦେଇଥିଲେ ଯେ ସେମାନେ ବନବାସରୁ ଫେରିବା ପରେ ତାଙ୍କୁ ନେବେ । ସଂପ୍ରତି ଲୋକେ ସୁଆଣୀ ଦେବୀଙ୍କ ପ୍ରତିମାକୁ ପୂଜା କରନ୍ତି । ପ୍ରତି ବର୍ଷ ଭାଦ୍ରବ ମାସରେ ଏକ ବଡ଼ ମେଳା ସେଠାରେ ଅନୁଷ୍ଠିତ ହୁଏ ।''

ସମ୍ଭବତଃ ସାରଳାଦାସ ବନପର୍ବ ଲେଖିବାର ବହୁବର୍ଷ ପରେ ରେଢ଼ାଖୋଲର ସୁଆଣୀ ଦେବୀଙ୍କ କିଂବଦନ୍ତୀ ଶୁଣିଥିଲେ ଓ ତାକୁ ପାଣ୍ଡବଙ୍କ ବନବାସ ସହିତ ସଂପୃକ୍ତ କରିପାରି ନଥିଲେ । ଯୁଧିଷ୍ଠିରଙ୍କ ପକ୍ଷେ ବିଧବା ବିବାହ ଅସଙ୍ଗତ ହେବ ବୋଲି ସାରଳାଦାସ ଆଖ୍ୟାନରେ ପରିବର୍ତ୍ତନ ଆଣିଥିବା ଅନୁମେୟ । ସାରଳାଦାସ ଗାନ୍ଧାରୀଙ୍କୁ ଏକ ଶାହାଡ଼ା ଗଛ ସହିତ ବିବାହ କରାଇ ଶାହାଡ଼ା ଗଛକୁ ମରାଇଛନ୍ତି । ପରେ ବିଧବା ଗାନ୍ଧାରୀ ଧୃତରାଷ୍ଟ୍ରଙ୍କୁ ବିବାହ କରିଛନ୍ତି । ଏଥିପାଇଁ ଦୁର୍ଯ୍ୟୋଧନ ମାତାମହ ଗାନ୍ଧାରସେନଙ୍କୁ ନିନ୍ଦା କରି କହିଛନ୍ତି—

ଗାନ୍ଧାରସେନ ପାମର କିନା ଯେମନ୍ତ କୃତ୍ୟ କଲା ।
ବିଧବା କନ୍ୟାକୁ କେମନ୍ତ ମୋ ପିତା କଇ ଦେଲା ।। (ଆଦି, ୪୫୯)

## ୯. କାଶୀ

ଭାରତର ଏହି ସୁପ୍ରସିଦ୍ଧ ପୁଣ୍ୟକ୍ଷେତ୍ରର ଉତ୍ପତ୍ତି ସମ୍ପର୍କରେ ସାରଳାଦାସ ବନପର୍ବର ପ୍ରଥମଖଣ୍ଡର ପୃ. ୧୦୦ରୁ ଦେଇଥିବା ଆଖ୍ୟାନ କୌଣସି ପୁରାଣ ଉପରେ ଆଧାରିତ ନୁହେଁ । ତାଙ୍କ ବର୍ଣ୍ଣନା ଅନୁସାରେ ଶିବ ଶ୍ୱଶୁରାଳୟ ଛାଡ଼ି ଅନ୍ୟତ୍ର ରହିବାକୁ ଇଚ୍ଛା କରି ଗଣେଶଙ୍କୁ ଉପଯୁକ୍ତ ସ୍ଥାନ ଖୋଜିବାକୁ ପଠାଇଲେ । ଗଣେଶ କାଶୀକୁ ଆସି ନିଜର ପୋଡ଼ାମାଟିର ପ୍ରତିମା ଗଢ଼ାଇ ପୂଜା ପ୍ରବର୍ତ୍ତନ କଲେ ଓ ତାଙ୍କ ପ୍ରତିମାକୁ ପୂଜା କରି ଯେ ଯାହା ମାଗିଲା ତାକୁ ସେହି ଫଳ ଦେଲେ । ସେତେବେଳେ କାଶୀରାଜା ଅପୁତ୍ରିକ ଥିଲେ । ସେ ପୁତ୍ର କାମନା କରି ଗଣେଶଙ୍କୁ ପୂଜା କଲେ । ଗଣେଶ କାଶୀରାଜଙ୍କୁ ବାଞ୍ଛିତ ଫଳ ନ ଦେବାରୁ ସେ ରାଗି ଯାଇ ଗଣେଶଙ୍କୁ ପାଦପ୍ରହାର କଲେ । ଗଣେଶଙ୍କ କୋପରେ ରାଜା ସସୈନ୍ୟ ନାଶ ପ୍ରାପ୍ତ ହେଲେ । ରାଜ୍ୟରେ ନାନା ଅରିଷ୍ଟ ଉପୁଜିଲା । ଲୋକେ ରାଜ୍ୟ ଛାଡ଼ି ପଳାଇଲେ । ତାହା ପରେ ଶିବ କାଶୀକୁ ସପରିକର ଯାଇ ସେଠାରେ ରହିଲେ । କାଶୀପୁର ଧ୍ୱଂସ କରିବାବେଳେ ଗଣେଶଙ୍କର ହୃଦୟର ମଣିଟି ସେଠାରେ ଖସିପଡ଼ିଥିଲା । ଗଣେଶ ମଣିଟିକୁ ଖୋଜି ନ ପାଇବାରୁ ତାଙ୍କ ଶୂଳରେ ସେହି ସ୍ଥାନକୁ ବିଦାରିବାରୁ ଗଙ୍ଗା ଗର୍ଭରୁ ମଣିକର୍ଣ୍ଣିକା କୁଣ୍ଡର ଉଦ୍‌ଭବ ହେଲା । ସାରଳାଦାସ ସଭାପର୍ବ (୨ୟ ଖଣ୍ଡ, ପୃ. ୧୧୨) ମଧ୍ୟରେ ମଧ୍ୟ ମଣିକର୍ଣ୍ଣିକା ତୀର୍ଥର ଉତ୍ପତ୍ତି ବିଷୟକ ଏହି ଆଖ୍ୟାନର ସୂଚନା ଦେଇଛନ୍ତି । କିନ୍ତୁ, ସ୍ୱର୍ଗାରୋହଣ ପର୍ବ (ପୃ.୪୭) ଅନୁଯାୟୀ— "ମଣି ହଜାଇ ଯାହା ଖୋଜିଲେ ସୁଢ଼ଳ ।" ପ୍ରାଚୀନ ସାହିତ୍ୟରେ ସୁଢ଼ଳ ଶିବଙ୍କର ନାମାନ୍ତର, ତାହା ଗଣେଶଙ୍କର ନାମ ନୁହେଁ ।

ସାରଳା-ମହାଭାରତର ଆଦ୍ୟଭାଗ ଓ ପ୍ରାନ୍ତଭାଗ ମଧ୍ୟରେ ଥିବା ଚରିତ୍ରର ଅମେଳର କାରଣ ଇତିପୂର୍ବେ ନବମ ଅଧ୍ୟାୟରେ ଆଲୋଚିତ ହୋଇଛି ।

କାଶୀର ସ୍ଥଳପୁରାଣରେ ମଣିକର୍ଣ୍ଣିକାର ଉତ୍ପତ୍ତି ବିବରଣ ଭିନ୍ନ ପ୍ରକାରେ ଦିଆଯାଇଛି । ତଦନୁସାରେ ବିଷ୍ଣୁ ତାଙ୍କ ସୁଦର୍ଶନ ଚକ୍ର ଦ୍ୱାରା ଏକ ଗାତ ଖୋଳିଥିଲେ । ସେ ଏଠାରେ କଠୋର ତପସ୍ୟା କଲେ ଓ ତାଙ୍କର ଶରୀରର ସ୍ୱେଦ ଦ୍ୱାରା ଗାତଟି ପୂରିଗଲା । ଶିବ ବିଷ୍ଣୁଙ୍କର କଠୋର ତପଶ୍ଚର୍ଯ୍ୟା ଦେଖି ଚମକୃତ ହୋଇ ତାଙ୍କ ଶିରକୁ କମ୍ପାଇବାରୁ ଶିବଙ୍କର ମଣିଖଚିତ କର୍ଣ୍ଣଭୂଷଣଟି ସେହି ଗାତରେ ପଡ଼ିଗଲା । ତେଣୁ ତାହା ମଣିକର୍ଣ୍ଣିକା ନାମରେ ଅଭିହିତ ହେଲା । କର୍ଣ୍ଣିକାର ଅର୍ଥ କର୍ଣ୍ଣଭୂଷଣ, ସାରଳାଦାସ କର୍ଣ୍ଣିକାକୁ କଣିକା ସହ ମିଳାଇଛନ୍ତି ।

## ୧୦. ଜଗନ୍ନାଥ କ୍ଷେତ୍ର

ସାରଳାଦାସ ପୁରୀର ନାମ ରଖିଛନ୍ତି ଯମନିକ କ୍ଷେତ୍ର, ନାମଟି ତାଙ୍କର କଳ୍ପନାପ୍ରସୂତ । ସେ ଲେଖିଛନ୍ତି (୨ବନ, ୧୦୭ରୁ) ଯମନିକ ବ୍ରହ୍ମାଙ୍କ ପୁତ୍ର । ବ୍ରହ୍ମାଙ୍କ ହଂସବାହନ ଚଢ଼ି ଯମନିକ ମନ ଖୁସିରେ ବ୍ରହ୍ମାଣ୍ଡ ବୁଲୁଥିଲେ । ବ୍ରହ୍ମା ଲୋଡ଼ିବା ବେଳକୁ ତାଙ୍କ ବାହନ ନଥିଲା । ଯମନିକ ବାହନ ନେଇ ମଉଜ କରୁଥିବା ଜାଣି ବ୍ରହ୍ମା ରାଗିଯାଇ ତାଙ୍କୁ ଶାପ ଦେଲେ— ''ତୁ ଯେଉଁଠାରେ ଅଛୁ ଚିରକାଳ ସେଠାରେ ରହିବୁ ମୋ ପାଖ ମାଡ଼ିବୁ ନାହିଁ ।'' ସେତିକିବେଳକୁ ଯମନିକ ସମୁଦ୍ର କୂଳରେ ନୀଳସୁନ୍ଦରଗିରି ପାଖରେ ଥିଲେ । ସେ ସେହିଠାରେ 'ଯମେଶ୍ୱର' ନାମରେ ମହାଲିଙ୍ଗ ହୋଇ ରହିଲେ । ଯମନିକ ରହିବାରୁ କ୍ଷେତ୍ରର ନାମ ହେଲା ଯମନିକ କ୍ଷେତ୍ର । ଯମେଶ୍ୱର ଏହି କ୍ଷେତ୍ରର ଆଦି ଦେବତା । ଏହି ଚରିତ ସର୍ବାଂଶରେ କାଳ୍ପନିକ । ନୀଳଗିରିର 'ନୀଳସୁନ୍ଦର ଗିରି' ନାମ ମଧ୍ୟ ସାରଳାଦାସଙ୍କ ଉଦ୍ଭାବନ ।

ଜଗନ୍ନାଥଙ୍କ ପ୍ରତିଷ୍ଠା ଚରିତ ସାରଳାଦାସ ବନପର୍ବ (୨ୟ ଖଣ୍ଡ, ପୃ. ୧୮୨ରୁ)ରେ ଏକ ପ୍ରକାର ଓ ପରେ ଆଶ୍ରମିକ ଓ ମୂଷଳୀ ପର୍ବରେ ଭିନ୍ନ ପ୍ରକାର ଲେଖିଥିବା କଥା ୯ମ ଅଧ୍ୟାୟରେ ସୂଚିତ ହୋଇଛି । କବି ଆଂଚଳିକ କିଂବଦନ୍ତୀକୁ ଗ୍ରହଣ କରିଥିଲେ ଚରିତରେ ଦ୍ୱିବିଧତା ରହିନଥାନ୍ତା । ସେ ସ୍ୱକଳ୍ପନାରୁ ଉପାଖ୍ୟାନ ସୃଷ୍ଟି କରୁଥିବାରୁ ସମୟର ଦୀର୍ଘ ବ୍ୟବଧାନ ଫଳରେ ସ୍ମୃତିଭ୍ରଂଶ ସକାଶରୁ ଚରିତ ଭିନ୍ନ ଭିନ୍ନ ହୋଇଯାଇଛି । ଜଗନ୍ନାଥ ମୂଳରେ ଶବର-ଉପାସିତ ହେବା ଚରିତ ସାରଳାଦାସଙ୍କ କଳ୍ପନାରୁ ଜାତ । ତାଙ୍କ ପୂର୍ବରୁ ନାରଦପୁରାଣ, ବ୍ରହ୍ମପୁରାଣ ଆଦିରେ ଜଗନ୍ନାଥଙ୍କ ପ୍ରତିଷ୍ଠା ଆଖ୍ୟାନ ଥିଲା । କିନ୍ତୁ, ଶବର ଦ୍ୱାରା ପୂଜିତ ହେବା କଥା ସେଥିରେ ସ୍ଥାନ ପାଇ ନଥିଲା । ଦେବଦେବୀମାନେ ମୂଳରେ ଶବର-ଉପାସିତ ଥିବା ପରିକଳ୍ପନାକୁ ସାରଳାଦାସ ଅନେକଠାରେ ଲେଖିଛନ୍ତି । ତାହା ଜଗନ୍ନାଥଙ୍କ ପ୍ରତିଷ୍ଠା ବିଷୟକ ଉଭୟ ଆଖ୍ୟାନରେ ସ୍ଥାନ ପାଇଛି । ଏହି ଆଖ୍ୟାନ ଅନେକ ସ୍ତର ଦେଇ ରୂପାନ୍ତରିତ ହୋଇ ବର୍ତ୍ତମାନ ପ୍ରଚଳିତ ରୂପ ଧାରଣ କରିଛି । ପରିତାପର ବିଷୟ ଆଖ୍ୟାନଟିର କ୍ରମିକ ପରିବର୍ତ୍ତନ କଥା ନ ଜାଣି ଆଧୁନିକ ଆଲୋଚକମାନେ

ତାହାର ସାଂପ୍ରତିକ ରୂପ ଦୂର ଅତୀତରୁ ଅପରିବର୍ତ୍ତିତ ରହିଛି ବୋଲି ଧରିନେଇ ଖୁବ୍ ଅଯୁକ୍ତ ଚର୍ଚ୍ଚା କରୁଛନ୍ତି । ସାରଳାଦାସ ଜଗନ୍ନାଥଙ୍କ ପ୍ରଥମ ଉପାସକ ଜାରାଶବର ବା ତାହାର ପୁଅ ଥିବା କଥା ଲେଖିଛନ୍ତି । ଜାରାଶବର (ତାହାର ପୁଅ ଓ ପୂର୍ବପୁରୁଷଗଣ) ମହାଭାରତର ମୁଖ୍ୟ ଚରିତ୍ର । ବିଭିନ୍ନ ପର୍ବରେ ତାଙ୍କ ବିଷୟ ସ୍ଥାନପାଇଛି । ମହାଭାରତର ବିଂଶାଧିକ ଘଟଣା ସହିତ ଜାରାଶବର ସଂପୃକ୍ତ ଥିବା ହେତୁ କୌଣସି ଆଂଚଳିକ କିଂବଦନ୍ତୀ ତାଙ୍କୁ ନେଇ ଗଢ଼ା ହୋଇନପାରେ । ପରବର୍ତ୍ତୀ ସମୟରେ ଜାରା ବା ତାଙ୍କ ପୁଅ ବସୁ ଜଗନ୍ନାଥଙ୍କ ଆଦ୍ୟପୂଜକ ହୋଇ ରହିଲେ ନାହିଁ । ତାଙ୍କ ବଦଳେ ଆସିଲେ ଶବରରାଜା ବିଶ୍ୱାବସୁ (ସାରଳାଦାସଙ୍କ ବର୍ଣ୍ଣନାରେ ବିଶ୍ୱାବସୁ ନାମକ ବ୍ରାହ୍ମଣ ଇନ୍ଦ୍ରଦ୍ୟୁମ୍ନ ଗଢ଼ିବା ମନ୍ଦିରର ଶୁଭ ଦେଇଥିଲେ) । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ବ୍ରାହ୍ମଣ ଦୂତ ବିଦ୍ୟାପତି ଶବରରାଜକନ୍ୟା ଲଳିତାଙ୍କୁ ବିବାହ କରିବା ଚରିତ ସାରଳାଦାସଙ୍କ କଳ୍ପନାରେ ନଥିଲା । ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ ଜାରାଶବରର ପତ୍ନୀର ନାମ ଲଳିତା (୨ବନ, ୧୮୩) । ତାଙ୍କ ପରିକଳ୍ପନାରେ ମାଧବ ବିଧୁପତି ନାମକ ଶବରର କନ୍ୟା ଶ୍ରୀୟାଙ୍କୁ ବିବାହ କରି 'ଶବରୀ ନାରାୟଣ' ରୂପରେ ଶବର ଦ୍ୱାରା ଉପାସିତ ହୋଇଥିଲେ । କଳିଯୁଗ ହେବାରୁ, ସେହି ଶବରୀ-ନାରାୟଣ ହିଁ ପ୍ରତିମା ରୂପରେ ଦେଖାଦେଲେ 'ନୀଳମାଧବ' ନାମ ନେଇ ।

ସାରଳାଦାସଙ୍କ ବନପର୍ବୋକ୍ତ ଆଖ୍ୟାନ ଅନୁସାରେ ଶାକଲ୍ୟ ଦ୍ୱୀପର ରାଜା ସୋମବଂଶୀ ଗାଲମାଧବଙ୍କ,ପୁତ୍ର ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁ ପ୍ରତିମାର ସନ୍ଧାନ ନେବା ପାଇଁ ଦୂତ ପ୍ରେରଣ କରିଥିଲେ (୨ ବନ, ୧୮୩) । ତାଙ୍କର ମୂଷଳୀ ପର୍ବୋକ୍ତ ଆଖ୍ୟାନ ଅନୁସାରେ ହରିହର ବଂଶୀ ରାଜା ଗାଲମାଧବ ଦୂତ ପ୍ରେରଣ କରିଥିଲେ କାଞ୍ଚୀନଗରୀରୁ । ଗାଲମାଧବ ବିଷ୍ଣୁ ପ୍ରତିମା ପାଇଁ ଶବରମାନଙ୍କ ସଙ୍ଗେ ଯୁଦ୍ଧ କରିବାରୁ କୃଷ୍ଣଙ୍କ ଶାପରେ ତାଙ୍କର ବଂଶ ଲୋପ ପାଇବା ପରେ ବିରାଟ ରାଜାଙ୍କ ପୁତ୍ର ଉତ୍ତରକୁମାରଙ୍କ ପୌତ୍ର ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁ ପ୍ରତିମା ବିଷୟ ଶୁଣି ନୀଳସୁନ୍ଦର ଗିରିରେ ମନ୍ଦିର ନିର୍ମାଣ କରିଥିଲେ ।

ଜଗନ୍ନାଥଙ୍କ ପ୍ରତିଷ୍ଠା ବିଷୟକ ଆଖ୍ୟାନର ବିବିଧତା ଚର୍ଚ୍ଚା କଲେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ହେବ । 'ପୁରୀର କ୍ଷେତ୍ରମାହାତ୍ମ୍ୟ' ନାମକ (ପାଞ୍ଚଜନ୍ୟ ସାହିତ୍ୟ ପତ୍ରର ୧୯୮୪ ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ) ପ୍ରବନ୍ଧରେ ଏ ବିଷୟରେ କିଛି ଚର୍ଚ୍ଚା କରିଛି । ମୋର ଅଦ୍ୟାବଧି ଅପ୍ରକାଶିତ 'ପୁରୁଷୋତ୍ତମ ପୁରାବୃତ୍ତ' ପୁସ୍ତକରେ ଏ ସଂପର୍କରେ ଅଧିକ ଚର୍ଚ୍ଚା ମୁଁ କରିଛି । ଏଠାରେ ଏତିକି ।

ସାରଳାଦାସ ବର୍ଣ୍ଣନା କରିଥିବା ସବୁଗୁଡ଼ିକ ଆଞ୍ଚଳିକ ଆଖ୍ୟାନ କଳ୍ପନାପ୍ରସୂତ ।

—

## ଷୋଡ଼ଶ ଅଧ୍ୟାୟ

# ସାରଳା-ମହାଭାରତର ଐତିହାସିକ ଓ ଭୌଗୋଳିକ ବିମର୍ଶ

ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରକାଶିତ 'ସାରଳା ସ୍ମରଣିକା' ପୁସ୍ତକରେ ସ୍ଥାନିତ 'ସାରଳା-ମହାଭାରତର ଐତିହାସିକ ଉପାଦାନ' ଶୀର୍ଷକ ପ୍ରବନ୍ଧରେ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସାରଳା-ମହାଭାରତର ଐତିହାସିକ ଓ ଭୌଗୋଳିକ ବିମର୍ଶର ସୂତ୍ରପାତ କରିଥିଲେ । ଏହା ଖ୍ରୀ. ୧୯୫୪ ପୂର୍ବର କଥା (ସେହି ବର୍ଷ ଏହାର ନୂତନ ମୁଦ୍ରଣ ପ୍ରକାଶ ପାଇଥିଲା) । ଡଃ ପାଣିଗ୍ରାହୀ ଏଥିରେ ମତବ୍ୟକ୍ତ କରିଥିଲେ– ''କପିଳେନ୍ଦ୍ର ଦେବ ଯେଉଁ ଯେଉଁ ରାଜ୍ୟ, ଦୁର୍ଗ, ନଗର, ନଦୀ, ପର୍ବତ ଇତ୍ୟାଦି ଜୟ କରିଥିଲେ, କିମ୍ବା ଯେଉଁ ଶାସନ ଦାନ କରିଥିଲେ, ସେ ସମସ୍ତର ନାମ ସାରଳାଦାସ ଉଲ୍ଲେଖ କରିଛନ୍ତି । xxx । ଯେଉଁ ସମସାମୟିକ ରାଜାମାନଙ୍କ ସହିତ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ଯୁଦ୍ଧ କରିଥିଲେ, ସେମାନଙ୍କ ନାମମାନ ମଧ୍ୟ ସେ ପୌରାଣିକ ଆଖ୍ୟାୟିକାମାନ ସହିତ ଯୋଡ଼ି ଦେଇଛନ୍ତି'' (ସାରଳାସ୍ମରଣିକା, ୧୯୫୪, ପୃ. ୨୯) । ଏପରି ମତର ପ୍ରତିଷ୍ଠା କଳ୍ପେ ସେ ସାରଳା-ମହାଭାରତର ଏଠୁ ସେଠୁ କେତେକ ପଦର ଉଦ୍ଧୃତି ଦେଇ ସେଥିରେ ନାମିତ ଦେଶଗୁଡ଼ିକ ମଧ୍ୟରୁ କେତୋଟି ଦେଶର ଚିହ୍ନଟ ଆପଣା ମର୍ଜି ଅନୁସାରେ କରିଥିଲେ । ପରେ ଡଃ ପାଣିଗ୍ରାହୀ ସ୍ୱୀକାର କରିଥିଲେ ଯେ ସେ ସାରଳା-ସାହିତ୍ୟକୁ ସମୂହ ଭାବରେ ଅଧ୍ୟୟନ କରି ନଥିବାବେଳେ ଏହା ଲେଖିଥିବାରୁ ଏଥିରେ କେତେକ ଭ୍ରମ ରହିଛି (ସାରଳା ସାହିତ୍ୟର ଐତିହାସିକ ଚିତ୍ର, ପୃ. ୫୫, ପାଦଟୀକା) ।

ଏହାପରେ ଖ୍ରୀ. ୧୯୫୬ରେ ପ୍ରସିଦ୍ଧ ଔପନ୍ୟାସିକ ଗୋପୀନାଥ ମହାନ୍ତି 'ଝଙ୍କାର' ସାହିତ୍ୟପତ୍ରରେ ସାରଳା-ମହାଭାରତରେ ପ୍ରଦତ୍ତ କବିଙ୍କର ଆତ୍ମପରିଚୟର ପୁଂଖାନୁପୁଂଖ ବିଚାର ସହିତ ମହାଭାରତର ଭାଷା ଓ ଭାବର ଆଲୋଚନା କରି ଦ୍ୱିବିଧ ଅଭିନବ ନିର୍ଣ୍ଣୟ ଦେଲେ–

(୧) ସାରଳାଦାସଙ୍କ ବାସସ୍ଥାନ ଜଗତସିଂହପୁର ପାଖ କନକପୁର-ଝଙ୍କଡ଼ ନୁହେଁ, ତାହା ଖୁବ୍ ସମ୍ଭବ କୋଣାର୍କ କ୍ଷେତ୍ର ନିକଟସ୍ଥ 'କଣିଆ' ଗ୍ରାମ ।

(୨) ସାରଳାଦାସଙ୍କ ସମୟ ଖ୍ରୀ. ପଞ୍ଚଦଶ ଶତାବ୍ଦୀ ନୁହେଁ, ତାହା ଖ୍ରୀ. ୯ମ/୧୦ମ ଶତାବ୍ଦୀ ହେବା ସମ୍ଭବ ।

ଶ୍ରୀ ମହାନ୍ତିଙ୍କ ଦ୍ୱିତୀୟ ନିର୍ଣ୍ଣୟ ଡଃ ପାଣିଗ୍ରାହୀଙ୍କର (ତଥା ଅନ୍ୟାନ୍ୟ ଅନେକଙ୍କର) ମତର ବିରୋଧୀ ଥିଲା । ଡଃ ପାଣିଗ୍ରାହୀ ସାରଳା-ସ୍ମରଣିକାରେ ଉଦ୍ଭାବିତ ସରଣିରେ ଯାଇ ସାରଳା-ମହାଭାରତର ଅନେକ ଆଖ୍ୟାୟିକାରେ ଖ୍ରୀ. ପଞ୍ଚଦଶ ଶତାବ୍ଦୀର ନାନା ଐତିହାସିକ ଘଟନାର ପ୍ରତିଫଳନ ଦେଖାଇବା ଲକ୍ଷ୍ୟରେ ସାରଳା ସାହିତ୍ୟର ଐତିହାସିକ ଚିତ୍ର ସଂବନ୍ଧରେ ବହୁ ପ୍ରବନ୍ଧ 'ଝଙ୍କାର'ରେ ଖ୍ରୀ. ୧୯୫୭ରୁ ପ୍ରକାଶ କରି ଶ୍ରୀ ମହାନ୍ତିଙ୍କ ମତକୁ ଖଣ୍ଡନ କରିବାକୁ ଲାଗିଲେ । ତାଙ୍କର ପ୍ରବନ୍ଧଗୁଡ଼ିକ (ଅନ୍ୟ କେତେ ପ୍ରବନ୍ଧ ସହିତ) 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ପୁସ୍ତକାକାରରେ ଖ୍ରୀ. ୧୯୭୬ରେ ପ୍ରକାଶ ପାଇଛି । ଶ୍ରୀ ମହାନ୍ତି ଯେଉ ସବୁ ଯୁକ୍ତି ବାଢ଼ି ସାରଳାଦାସଙ୍କ ସମୟକୁ ୫/୬ ଶହ ବର୍ଷ ପଛକୁ ଠେଲିଛନ୍ତି ତାହାକୁ ଅନ୍ୟଥା ଖଣ୍ଡନ କରାଯାଇ ପାରିଥାନ୍ତା, କିନ୍ତୁ ଡଃ ପାଣିଗ୍ରାହୀ ନିଜେ ଉଦ୍ଭାବନ କରିଥିବା ମାର୍ଗକୁ ଆଦରିଲେ ।

ଦେଖାଯାଉଛି ସାରଳାଦାସ ଏତେଦୂର କଳ୍ପନାନୁରାଗୀ ଯେ ତାଙ୍କ ମହାଭାରତରରେ ବର୍ଣ୍ଣିତ ବିଭିନ୍ନ ପୁଣ୍ୟସ୍ଥାନ ସଂପର୍କରେ ଅଭିନବ ଆଖ୍ୟାୟିକାମାନ ସୃଷ୍ଟି କରିଛନ୍ତି ସିନା ତତ୍‌ତତ୍ ସ୍ଥାନୀୟ ପ୍ରାଚୀନ କିଂବଦନ୍ତୀଗୁଡ଼ିକୁ ଅବିକୃତ ଗ୍ରହଣ କରିନାହାନ୍ତି । ନୂତନତା ସୃଷ୍ଟି କରିବାର ଆଭିମୁଖ୍ୟ ତାଙ୍କର ପ୍ରତ୍ୟେକ ରଚନାରେ ସର୍ବତ୍ର ବଳବତ୍ତର । ଯେଉଁ କବି କଳ୍ପନାକୁ ଏତେ ପ୍ରାଧାନ୍ୟ ଦିଏ– ଅପୂର୍ବତା-ସୃଷ୍ଟିକୁ ଏତେ ମାନ୍ୟତା ଦିଏ– ସେ କିପରି ଇତିହାସ ପରିବେଷଣ କରିପାରିବ ? ଏ ପ୍ରଶ୍ନର ବିଚାର ପାଇଁ ହିଁ ଡଃ ପାଣିଗ୍ରାହୀ କରିଥିବା ସାରଳାଦାସଙ୍କ ଲେଖାର ଐତିହାସିକ ଓ ଭୌଗୋଳିକ ଅନୁସନ୍ଧାନ ପ୍ରାସଙ୍ଗିକ ହୋଇପଡୁଛି । ଅନ୍ୟଥା ସାରଳାଦାସଙ୍କ ସମୟ ସମ୍ପର୍କରେ ଡଃ ପାଣିଗ୍ରାହୀଙ୍କ ନିର୍ଣ୍ଣୟ ଯଥାର୍ଥ ।

## ମୌଳିକ ଭ୍ରମ

ଡଃ ପାଣିଗ୍ରାହୀ ତାଙ୍କର ତିନୋଟି ଭ୍ରମାତ୍ମକ ପ୍ରତ୍ୟୟକୁ ପ୍ରମାଣପୁଷ୍ଟ କରାଇବା ଲକ୍ଷ୍ୟରେ ସାରଳାଦାସଙ୍କ ସାହିତ୍ୟର ଅନୁଧ୍ୟାନରେ ପ୍ରବୃତ୍ତ ହୋଇଛନ୍ତି । ଏହାପରେ ତାଙ୍କ ବକ୍ତବ୍ୟର ଉଦ୍ଧୃତି ପରେ 'ସାରଳାସାହିତ୍ୟର ଐତିହାସିକ ଚିତ୍ର' (୧୯୮୯) ପୁସ୍ତକର ପୃଷ୍ଠା ସଂଖ୍ୟା ବନ୍ଧନୀ ମଧ୍ୟରେ ଦିଆଯାଉଛି ।

୧. ତାଙ୍କର ପ୍ରଥମ ଭ୍ରମାତ୍ମକ ପ୍ରତ୍ୟୟ ହେଲା– ସାରଳାଦାସ "ତାଙ୍କ ତ୍ରିକାଳଦର୍ଶୀ ଅନନ୍ୟସାଧାରଣ ପ୍ରତିଭା ଦ୍ୱାରା × × × ବିରାଟ ଭାଷାସାହିତ୍ୟ ଗଢ଼ି ଦେଇଥିଲେ" (ପୃ. ୨୭) । ଜଣେ ଐତିହାସିକ କାହାକୁ ତ୍ରିକାଳଦର୍ଶୀ ବୋଲି ସ୍ୱୀକାର କରିବା ଦ୍ୱାରା ନିଜର ଭାବପ୍ରବଣତାର ହିଁ ପ୍ରମାଣ ଦିଏ । ଏପରି ସ୍ୱୀକୃତି ଡଃ ପାଣିଗ୍ରାହୀଙ୍କ ଗବେଷଣାର ପଦ୍ଧତିକୁ ନିରର୍ଥକ କରିଦେଉଛି । ଯଦି ସାରଳାଦାସ ଅତୀତ ଓ ବର୍ତ୍ତମାନ ସହିତ ଭବିଷ୍ୟତ୍‌କୁ ମଧ୍ୟ ଦେଖିପାରୁଥିଲେ ବୋଲି ଧରାଯିବ ତେବେ ତ ସେ ଭବିଷ୍ୟତ୍‌ରେ

ଯାହା ଘଟିବ ତାହାକୁ ବି ଲେଖି ପାରିଥିବେ । ତେଣୁ ତାଙ୍କ ଲେଖାରେ ଯେଉଁ ସମୟର ଚିତ୍ର ଫୁଟିଛି ବୋଲି ଡଃ ପାଣିଗ୍ରାହୀ ପ୍ରମାଣିତ କରିବାକୁ ଉଦ୍ୟତ ସାରଳାଦାସ ତାହାର ଶତ ଶତ ବର୍ଷ ପୂର୍ବରୁ ତାହା ଲେଖିଥିବା ସମ୍ଭାବନାକୁ ମାନିବାକୁ ପଡ଼ିବ ।

ଏପରି ଭ୍ରମାତ୍ମକ ପ୍ରତ୍ୟୟ ଯୋଗୁଁ ଡଃ ପାଣିଗ୍ରାହୀ ସାରଳାଦାସଙ୍କ ଆଖ୍ୟାୟିକା ସହିତ ସେ ଯୋଡୁଥିବା ଐତିହାସିକ ଘଟନାର ସାମଞ୍ଜସ୍ୟ ନଥିଲେ ହେଁ କହିପାରୁଛନ୍ତି– ''ଇତିହାସରୁ ଏ କଥା ମିଳୁ ନଥିଲେ ମଧ ଏହାକୁ ଅସମ୍ଭବ ବୋଲି କହିବା ଠିକ୍ ହେବ ନାହିଁ'' (ପୃ. ୧୧) । ଯେଉଁଠି ଐତିହାସିକ ଉପାଦନ ସହିତ ସାରଳାଦାସଙ୍କ ପୌରାଣିକ ଆଖ୍ୟାନର ବିରୋଧ ଥାଏ, ସେଠାରେ ଡଃ ପାଣିଗ୍ରାହୀ ମତପୋଷଣ କରିଛନ୍ତି– ''ସାରଳାଦାସଙ୍କ ବର୍ଣ୍ଣନା ହିଁ ଅଧିକ ବିଶ୍ୱସାଯୋଗ୍ୟ ବୋଲି ପ୍ରତିପାଦିତ ହୁଏ'' (ପୃ. ୩୩) । ଏହା ସତ୍ତ୍ୱେ ଗତ ଅର୍ଦ୍ଧଶତାବ୍ଦୀ ମଧରେ ଡଃ ପାଣିଗ୍ରାହୀ ବା ଅନ୍ୟ କେହି ଐତିହାସିକ ସାରଳାଦାସଙ୍କ ରଚନାକୁ ଐତିହାସିକ ଉପାଦାନ ରୂପେ ମାନି କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମ ଦେବଙ୍କର ରାଜତ୍ୱର ଇତିହାସ ଲେଖିବାକୁ ଯାଇନାହାନ୍ତି । ଭବିଷ୍ୟତରେ ତାହା କେହି କରିବେ ବୋଲି ମୁଁ ଭାବୁନାହିଁ । ତେଣୁ ଏ ପ୍ରତ୍ୟୟ ସଂପର୍କରେ ଅଧିକ ଚର୍ଚ୍ଚା ଅନାବଶ୍ୟକ ।

## ଇତିହାସ ନିଷ୍କାସନ ପ୍ରକ୍ରିୟା

ଡଃ ପାଣିଗ୍ରାହୀଙ୍କର ଦ୍ୱିତୀୟ ଭ୍ରମାତ୍ମକ ପ୍ରତ୍ୟୟ ହେଲା– ସାରଳାଦାସ ଜଣେ ଐତିହାସିକ, ତାଙ୍କ ନିଜ ପନ୍ଥାର ଅଗ୍ରଣୀ । ସେ ଲେଖିଛନ୍ତି– ''ସାରଳାଦାସ ଖାଲି ଓଡ଼ିଆ ସାହିତ୍ୟର ଜନ୍ମଦାତା ନୁହନ୍ତି– ଓଡ଼ିଶା ଇତିହାସର ମଧ ଜନ୍ମଦାତା'' (ପୃ. ୨୯) ପୁଣି ''ସାରଳାଦାସ ମହାଭାରତ ଜରିଆରେ ସମସାମୟିକ ଓ ନିକଟ ଅତୀତର ପ୍ରଭୂତ ଇତିହାସ ଓ ଭୂଗୋଳ ଲେଖିଯାଇଛନ୍ତି'' (ପୃ. ୩୧) ।

ଡଃ ପାଣିଗ୍ରାହୀ ତାଙ୍କର ଏତାଦୃଶ ପ୍ରତ୍ୟୟକୁ ପ୍ରମାଣିତ କରିବା ସକାଶ କି ପ୍ରକାର କୌଶଳ ଅବଲମ୍ବନ କରିଛନ୍ତି ଦେଖିବାର କଥା । ସବୁ ଘଟନା ସ୍ଥାନ-କାଳ-ପାତ୍ର ସଂଶ୍ଳିଷ୍ଟ । ସାରଳା-ମହାଭାରତର ଚରିତର କାଳ ନିଶ୍ଚୟ ଐତିହାସିକ କାଳ ନୁହେଁ । ଡଃ ପାଣିଗ୍ରାହୀ ମହାଭାରତୋକ୍ତ ଆଖ୍ୟାୟିକା ସହିତ ଐତିହାସିକ ଘଟନାର ସାମଞ୍ଜସ୍ୟ ଦେଖାଇବାକୁ ଯାଇ ସଂପୃକ୍ତ ସ୍ଥାନର ନାମ ତଥା ଭୌଗୋଳିକ ଅବସ୍ଥିତିକୁ ଯଥାରୁଚି ବଦଳାଇ ଆଖ୍ୟାୟିକାର ପାତ୍ରମାନେ ଭିନ୍ନ ନାମଧାରୀ ଭିନ୍ନ ଜାତୀୟ ଐତିହାସିକ ବ୍ୟକ୍ତିଙ୍କୁ ସୂଚାଉଛନ୍ତି ବୋଲି ତର୍କଣା କରିଛନ୍ତି । ସେ ଏପରି ନାମ ବଦଳାଇବାରେ ମଧ କୌଣସି ସମନ୍ୱୟ ରକ୍ଷା କରି ପାରିନାହାନ୍ତି ।

ଉଦାହରଣ ସ୍ୱରୂପ, ସେ ବିଜୟନଗରର ଇତିହାସ ସିହତ ପୌରାଣିକ ଆଖ୍ୟାନର ସାମ୍ୟ ପ୍ରତିପାଦନ ଲକ୍ଷ୍ୟରେ ସାରଳାଦାସ ବିଜୟନଗର ରାଜ୍ୟକୁ ଠାଏଁ ବିଜୟମଣ୍ଡଳ

ନାମରେ, ଠାଏଁ କାବେରୀ ରାଜ୍ୟ ନାମରେ, ଆଉ କେଉଁଠି ସାକଲ୍ୟ ଦେଶ ନାମରେ ଅନ୍ୟତ୍ର ସାଲୁର ଦେଶ ନାମରେ, କେଉଁଠି ବା ବିଜୟନଗର ନାମରେ, ତ ଅନ୍ୟତ୍ର କରବୀରପୁର ନାମରେ ଓ ସ୍ଥାନାନ୍ତରେ ମଲ୍ଲିକା ନାମରେ ଅଭିହିତ କରିଛନ୍ତି ବୋଲି ତର୍କାଭାସ କରିଛନ୍ତି । ସେହିପରି ଡଃ ପାଣିଗ୍ରାହୀଙ୍କ ବ୍ୟାଖ୍ୟା ଅନୁସାରେ ଏକା ଦେବରକୋଣ୍ଡା ଦୁର୍ଗକୁ ସାରଳାଦାସ ଭିନ୍ନ ଭିନ୍ନ ପ୍ରସଙ୍ଗରେ ଭିନ୍ନ ଭିନ୍ନ ନାମରେ ଆଖ୍ୟାତ କରିଛନ୍ତି, ଯଥା— କୁଣ୍ଡୀନଗର, ଅମରଚୂଡ଼, ଶଙ୍ଖରପୁର, ଶଙ୍ଖଗିରି, ଜମ୍ବୁଗିରି ଇତ୍ୟାଦି । ସାରଳାଦାସଙ୍କ ବର୍ଣ୍ଣିତ କୁଣ୍ଡୀନଗରର ଅର୍ଥ ଠାଏଁ ଦେବରକୋଣ୍ଡା ଦୁର୍ଗ ତ ଆଉ ଠାଏଁ ସେହି କୁଣ୍ଡୀନଗର କୋଣ୍ଡବିଡୁକୁ ବୁଝାଉଛି ବୋଲି ଡଃ ପାଣିଗ୍ରାହୀ କହିଛନ୍ତି, ଯଦିଚ କୋଣ୍ଡବିଡୁ ଓ ଦେବରକୋଣ୍ଡା ମଧ୍ୟରେ ଶତାଧିକ ମାଇଲର ବ୍ୟବଧାନ ରହିଛି । ତାଙ୍କର ଏପରି ଯଥେଚ୍ଛ ଅର୍ଥାନ୍ତର ଆରୋପ ଦ୍ୱାରା ସାରଳାଦାସ ଅଳଂକାର ଶାସ୍ତ୍ରୋକ୍ତ ନାନା ସାହିତ୍ୟିକ ଦୋଷ (ସଂଦିଗ୍ଧତା, ବିଦ୍ୟାବରୋଧ, ବିରୁଦ୍ଧମତିକାରିତା ଆଦି) ଘଟାଇଥିବା ଆକ୍ଷେପ ସେ ପ୍ରକାରାନ୍ତରେ କରୁଛନ୍ତି । ଡଃ ପାଣିଗ୍ରାହୀ ବାରଂବାର ମତ ଦେଇଛନ୍ତି ଯେ ସାରଳାଦାସ ତାଙ୍କ ମହାଭାରତରେ ଇତିହାସ ଖୁନ୍ଦିବା ମତଲବ୍ ରଖି ଭ୍ରମ ସୃଷ୍ଟି କରି ଚାଲିଛନ୍ତି । ଦୃଷ୍ଟାନ୍ତ :—

(୧) ''କବି କୂର୍ମପର୍ବତକୁ କରଣ ପର୍ବତ, କୃଷ୍ଣଭଦ୍ରା ବା କୃଷ୍ଣା ନଦୀକୁ ଗୁଣଭଦ୍ରା ଓ କୋଣ୍ଡାବିଡୁକୁ କୁଣ୍ଡୀନଗର ବୋଲି ଲେଖିଦେଇ ଭ୍ରମ ସୃଷ୍ଟି କରିଛନ୍ତି'' (ପୃ. ୭) ।

(୨) ''ସିଧାସଳଖ ଭାବରେ ବାହାମନି ରାଜ୍ୟ ଓ ଉଦୟଗିରି ଦୁର୍ଗ ବୋଲି ନ କହି ସାରଳାଦାସ ଏଠାରେ ଭ୍ରମ ସୃଷ୍ଟି କରିବାର ଚେଷ୍ଟା କରିଛନ୍ତି'' (ପୃ.୧୧) ।

(୩) ''ଅମରଚୂଡ଼ ଅର୍ଥ ଦେବପର୍ବତ ବା ଦେବରକୋଣ୍ଡା । ସାରଳାଦାସ ପ୍ରଥମେ ଏହି ଦୁର୍ଗକୁ ଶଙ୍ଖପୁର ବୋଲି ବର୍ଣ୍ଣନା କରି ଭ୍ରମ ସୃଷ୍ଟି କରିଦେଲେ'' (ପୃ. ୧୨) । [ 'ଦେବର'ର ଦେବ ଅର୍ଥ ଓ 'ଚୂଡ଼'ର ପର୍ବତ ଅର୍ଥ ଡଃ ପାଣିଗ୍ରାହୀଙ୍କ ଉଦ୍‌ଭାବନ ।]

(୪) ''ସାରଳାଦାସ ନନ୍ଦି ନାମଟିକୁ ପାଇବା ମାତ୍ରେ ତାକୁ ଭୈରବରେ ପରିଣତ କରି ଭ୍ରମ ସୃଷ୍ଟି କରିଛନ୍ତି'' (ପୃ. ୨୧) । [କୌଣସି ଭୈରବ ନନ୍ଦି ନାମଧାରୀ ନଥିଲେ]

(୫) ''ପଦ୍ମନାଭ ମନ୍ଦିରକୁ ପଦ୍ମନାଭ ପର୍ବତ କହି ସାରଳାଦାସ ସାମାନ୍ୟ ଭ୍ରମ ସୃଷ୍ଟି କରି ଦେଇଛନ୍ତି'' (ପୃ. ୨୪) ।

(୬) ''ଶିବ ବା ରୁଦ୍ର ମନ୍ଦିରକୁ ରୁଦ୍ର ପର୍ବତ କହି ସେହିପରି ଭ୍ରମ ସୃଷ୍ଟି କରିଛନ୍ତି'' (ପୃ. ୨୫) ।

(୭) ''ସାରଳାଦାସ ମଲ୍ଲିକାର୍ଜୁନଙ୍କୁ ଶିବ ଲିଙ୍ଗରୂପେ ବର୍ଣ୍ଣନା କରି ଭ୍ରମ ସୃଷ୍ଟି କରିଦେଇଛନ୍ତି'' (ପୃ. ୨୬) । ଅପିଚ ଶ୍ରୀଶୈଳମ୍‌ର ମଲ୍ଲିକାର୍ଜୁନ ପ୍ରସିଦ୍ଧ ଶିବଲିଙ୍ଗ ।

(୮) ''ପୌଣ୍ଡ୍ରିକ ବାସୁଦେବ ××× ନାମକୁ ପୁଣ୍ଡରୀକ ବାସୁଦେବରେ ପରିଣତ କରି ସାରଳାଦାସ ଭ୍ରମ ସୃଷ୍ଟି କରିବାର ବିଚିତ୍ର କୌଶଳ ଦେଖାଇଛନ୍ତି'' (ପୃ. ୪୦) ।

(୯) ''ଐତିହାସିକ ବେଲାଲସେନ ନାମଟି ସାମାନ୍ୟ ପରିବର୍ତ୍ତନ କରି ସାରଳାଦାସ ଭ୍ରମ ସୃଷ୍ଟି କରିଛନ୍ତି'' (ପୃ. ୧୧୪)।

ଡ଼ଃ ପାଣିଗ୍ରାହୀ ମନେ କରନ୍ତି ଇତିହାସ ରଚନା ପାଇଁ ଆବଶ୍ୟକ ଏବଂବିଧ ଭ୍ରମ ସୃଷ୍ଟି କରିବା ବିଷୟରେ ସାରଳାଦାସ ଓସ୍ତାଦ୍ ଥିଲେ । କିନ୍ତୁ ବାସ୍ତବରେ ଡଃ ପାଣିଗ୍ରାହୀ ହିଁ ଭ୍ରମ ସୃଷ୍ଟି କରିଛନ୍ତି । ସାରଳାଦାସଙ୍କ ରଚନାଶୈଳୀ ଓ ସାହିତ୍ୟିକ ଆଭିମୁଖ୍ୟ ସାହିତ୍ୟରେ ଭ୍ରମ ସୃଷ୍ଟି କରାଯିବାର ଘୋର ବିରୋଧୀ । ଶ୍ରୋତାର ବୋଧଗମ୍ୟ ହୋଇ ନପାରିଲେ ବକ୍ତବ୍ୟ ବ୍ୟର୍ଥ ବୋଲି ସେ ସ୍ପଷ୍ଟ ଭାବରେ ଜଣାଇଛନ୍ତି—

ରାନ୍ଧଣା ମିଠା ଯେବେ ସୁପଂକୁ ହୋଇ ସିଝି ।
କହଣାର ମିଠା ଯେବେ ଶୁଣନ୍ତା ଲୋକ ବୁଝି ।। (୨ ସଭା ୪୫୦)

## ଇତିହାସ ନିଷ୍କର୍ଷଣର ନିଦର୍ଶନ

ଡଃ ପାଣିଗ୍ରାହୀ ଖ୍ରୀ. ୧୯୫୬ରେ ରାଧାରମଣ ପ୍ରେସ୍ ଦ୍ୱାରା ପ୍ରକାଶିତ ସାରଳା ମହାଭାରତରୁ କିପରି ଇତିହାସ କାଢ଼ିଛନ୍ତି ତାହାର ନିଦର୍ଶନଟିଏ ଦେଲେ 'ଭାତହାଣ୍ଡିରୁ ଗୋଟିଏ' ହେବ । ଡଃ ପାଣିଗ୍ରାହୀ ଗ୍ରନ୍ଥାରମ୍ଭରେ ମାନିଛନ୍ତି ଯେ ଏହାର ''ପ୍ରକାଶକ ଏଠାରେ ଦାଣ୍ଡିବୃତ୍ତକୁ ଚଉଦ ଅକ୍ଷରି ବୃତ୍ତରେ ପରିଣତ କରିବାକୁ ଯାଇ 'ସଂଶୋଧନ' ଅସ୍ତ୍ରରେ ଅର୍ଥର ବେକକୁ କାଟି ପକାଇଛନ୍ତି'' (ପୃ. ୪) । ତଥାପି ସେ ଇତିହାସ ନିଷ୍କର୍ଷଣ ପାଇଁ କୌଣସି ଦାଣ୍ଡି ଶୈଳୀର ତାଳପତ୍ର ମହାଭାରତକୁ ଆଦରି ନାହାନ୍ତି । ସେ ଇତିହାସ କାଢ଼ିଥିବା ପୁସ୍ତକରେ ଦେଇଥିବା ସର୍ବପ୍ରଥମ ଆଖ୍ୟାୟିକାଟିକୁ ନିମ୍ନରେ ଉଦ୍ଧାର କରୁଛି—

''ରାଜସୂୟ ଯଜ୍ଞ ପାଇଁ ପଶ୍ଚିମ ଦିଗ ରାଜା ନିମନ୍ତ୍ରଣ କାରଣ ଭୀମଙ୍କର ଗମନ— ସଭାପର୍ବ ପୃ. ୫୧-୫୮ । ସାରାଂଶ— ଭୀମ ସମଦଣ୍ଡ ଚଳାଇ ଯାଉଁଯାଉଁ କରଣ ନାମକ ପର୍ବତ ପାଖରେ ପହଞ୍ଚିଲେ । ସେଠାରେ ଗୁଣଭଦ୍ରା ନାମକ ନଦୀଟିଏ ବହିଚାଲିଛି । ଏହା ପାଖରେ କୁଣ୍ଡୀନଗ୍ରରେ ଭୀଷ୍ମକ ବୋଲି ଜଣେ ରାଜା ଥିଲେ । ତାଙ୍କ ଦୁଇ ପୁଅଙ୍କ ନାମ ରୁକ୍ମଣ ଓ ରୁକ୍ମାଙ୍ଗଦ । ସେମାନେ ଭୀମଙ୍କ ସଙ୍ଗେ ଯୁଦ୍ଧ କଲେ, କିନ୍ତୁ ଶେଷରେ ହାରିଯାଇ ରାଜସୂୟ ଯଜ୍ଞକୁ ଗଲେ । ଉଦ୍ଧୃତାଂଶ—

''କରଣ ନାମରେ ତହିଁ ଏକଇ ପର୍ବତ । ଗୁଣଭଦ୍ରା ବୋଲି ତହିଁ ବହେ ଏକ ତୀର୍ଥ ।।

× × ×

କୁଣ୍ଡୀନଗ୍ର ବୋଲି ତହିଁ ନଗ୍ର ଯେ ଗୋଟିଏ । ଭୀଷ୍ମକ ବୋଲି କରିଣ ତହିଁର ଯେ ରାୟେ ।।
ରୁକ୍ମଣ ଯେ ରୁକ୍ମାଙ୍ଗଦ ଏହି ପୁତ୍ର ଦୁଇ । ରୁକ୍ମିଣୀ ଦେବୀ ତାହାର ଦୁହିତା ଅଟଇ ।''

ଟୀକା— ଇତିହାସରୁ ଜଣାଯାଏ ଯେ ଗୋଦାବରୀ ଓ କୃଷ୍ଣାର ମଧ୍ୟବର୍ତ୍ତୀ ଧନଶାଳୀ ରେଡ଼ିରାଜ୍ୟ କୋଣ୍ଡବିଡୁ ଓ ରାମମହେନ୍ଦ୍ରୀକୁ କେନ୍ଦ୍ରକରି ପ୍ରତାପଶାଳୀ ହୋଇ ଉଠିଥିଲା । ଏହି ରାଜ୍ୟର ଶେଷ ପ୍ରତାପଶାଳୀ ରାଜା ଅଲାଡ଼ରେଡ଼ୀଙ୍କ ୧୪୨୩ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ

ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ଆଲ୍ଲୟବେମ ରାଜା ହେଲେ । ବୀରଭଦ୍ର ଓ ଦୋଡ଼ଡ଼ ନାମକ ତାଙ୍କର ଅନ୍ୟ ଦୁଇ ଭାଇ ରାଜ୍ୟ ଶାସନରେ ତାଙ୍କୁ ସାହାଯ୍ୟ ମଧ୍ୟ କରିଥିଲେ, ମାତ୍ର ଏକ ତରଫରୁ ବିଜୟନଗରର ରାଜା ଓ ଅନ୍ୟ ତରଫରୁ ଓଡ଼ିଶାର ରାଜା ଏହି ରାଜ୍ୟକୁ ଆକ୍ରମଣ କରିବାକୁ ଲାଗିଲେ । ବିଜୟନଗରର ରାଜା ଦ୍ୱିତୀୟ ଦେବରାୟ ୧୪୨୮ ଖ୍ରୀଷ୍ଟାବ୍ଦ ବେଳକୁ ସମସ୍ତ ତେଲୁଗୁଭାଷୀ ଉପକୂଳ ଅଞ୍ଚଳ ଅଧିକାର କରିନେଲେ । ଏହାର କିଛି ବର୍ଷ ପରେ କପିଳେଶ୍ୱର ଉତ୍କଳର ସିଂହାସନ ଅଧିକାର କଲେ ଓ ୧୪୪୭ ଖ୍ରୀଷାବ୍ଦ ବେଳକୁ ଦେବର କୋଣ୍ଡାର ବେଲାମ ରାଜବଂଶ ସାହାଯ୍ୟରେ ରେଡ଼ୀ ରାଜ୍ୟ ତଥା କୋଣ୍ଡବିଡୁ ଦୁର୍ଗ ଅଧିକାର କରିନେଇଥିଲେ ।

ଏହି ଘଟଣାବଳୀ ହିଁ ଉଲ୍ଲିଖିତ ଆଖ୍ୟାୟିକାରେ ପ୍ରଚ୍ଛନ୍ନ ଭାବରେ ପ୍ରତିଫଳିତ ହୋଇଛି । ଏଠାରେ କବି କୂର୍ମ ପର୍ବତକୁ କରଣ ପର୍ବତ, କୃଷ୍ଣଭଦ୍ରା ବା କୃଷ୍ଣାନଦୀକୁ ଗୁଣଭଦ୍ରା ଓ କୋଣ୍ଡବିଡ଼କୁ କୁଣ୍ଡୀନଗର ବୋଲି ଲେଖିଦେଇ ଭ୍ରମ ସୃଷ୍ଟି କରିଛନ୍ତି । ସାରଳାଦାସ ଏଗୁଡ଼ିକର ଯଥାଯଥ ନାମ ଯେ ଜାଣି ନଥିଲେ ଏପରି ନୁହେଁ । ତାଙ୍କ ଗ୍ରନ୍ଥର ଅନେକ ସ୍ଥାନରେ ସେ କୃଷ୍ଣନଦୀକୁ କୃଷ୍ଣା, କୃଷ୍ଣାଭଦ୍ରା, କୃଷ୍ଣବେଣା ଇତ୍ୟାଦି ରୂପେ ଲେଖିଛନ୍ତି; ଆଉ କୂର୍ମ ପର୍ବତକୁ କୂର୍ମ ପର୍ବତ ବୋଲି (ମଧ୍ୟ, ପୃ. ୨୮୯ ଓ କୋଣ୍ଡବିଡୁକୁ କୁଣ୍ଡାବେଦୀ ବୋଲି (ବିରାଟ, ପୃ. ୮୬) ମଧ୍ୟ ଲେଖିଛନ୍ତି, କିନ୍ତୁ ସମସାମୟିକ ସ୍ଥାନ ଓ ଘଟନାବଳୀକୁ ପୌରାଣିକ ଭାବରେ ଉପସ୍ଥାପିତ କରିବା ପାଇଁ ସେ ଏଠାରେ ସେଗୁଡ଼ିକୁ ପରିବର୍ତ୍ତନ କରି ଦେଇଛନ୍ତି । କୋଣ୍ଡବିଡୁ ଦୁର୍ଗର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ଗୁଣ୍ଟୁର ଠାରୁ ପ୍ରାୟ ୨୦ ମାଇଲ ଦକ୍ଷିଣ-ପୂର୍ବ ଦିଗରେ ଟେନାଲି ନିକଟରେ ଅବସ୍ଥିତ ଅଛି ଓ ବର୍ତ୍ତମାନ ସୁଦ୍ଧା ଏହା ପୂର୍ବ ନାମରେ ଅଭିହିତ ହେଉଛି । ଶ୍ରୀ କୂର୍ମ ପର୍ବତରେ ଥିବା ଶ୍ରୀକୂର୍ମେଶ୍ୱର ମନ୍ଦିର ଗାତ୍ରରେ ବହୁ ଓଡ଼ିଶା ରାଜାଙ୍କ ଓ କପିଳେଶ୍ୱରଦେବଙ୍କ ଶିଳାଲେଖ ମଧ୍ୟ ବର୍ତ୍ତମାନ ବିଦ୍ୟମାନ ଅଛି । ଏଠାରେ ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଭୀମ ଯେଉଁ ବାରୁଣାବତରୁ (ଦିଲ୍ଲୀ ଅଞ୍ଚଳରୁ) ବାହାରିଥିଲେ, ତାହାର ଠିକ୍ ଦକ୍ଷିଣକୁ ହେଉଛି କୁଣ୍ଡୀନଗର ବା କୋଣ୍ଡବିଡୁ, ମାତ୍ର ତାହା ଓଡ଼ିଶାରୁ ଠିକ୍ ପଶ୍ଚିମ ଦିଗରେ ଅବସ୍ଥିତ । କବି ଏହି ଆଖ୍ୟାୟିକା ଲେଖିବାବେଳେ ଏହି ଦୁର୍ଗ ସହିତ ଓଡ଼ିଶାର ସଂଘର୍ଷ କଥା ମନ ମଧ୍ୟରେ ରଖିଥିବାରୁ, ଭୀମ ପଶ୍ଚିମ ଦିଗର ଯେଉଁ ରାଜ୍ୟମାନ ଜୟ କରିଥିଲେ, ସେମାନଙ୍କ ମଧ୍ୟରେ କୁଣ୍ଡୀନଗରକୁ ଭର୍ତ୍ତି କରି ଦେଇଛନ୍ତି ।''

ଏ ହେଲା ଡଃ ପାଣିଗ୍ରାହୀଙ୍କ ମତରେ ସାରଳାଦାସ ବର୍ଣ୍ଣିତ ଓଡ଼ିଶାର ଇତିହାସ । ଏଠାରେ କରଣ ପର୍ବତ ଓ ଗୁଣଭଦ୍ରା ନଦୀର ଚିହ୍ନଟ ଅପ୍ରାସଙ୍ଗିକ ହୋଇ ପଡ଼ିବ ଯଦି ସେ ଶୁଦ୍ଧତର ବୋଲି ସ୍ୱୀକାର କରୁଥିବା ଦାଣ୍ଡି ରୀତିର-ପାଠକୁ ଆଦରିବେ, କାରଣ ଦାଣ୍ଡୀପାଠରେ 'କରଣ' ବଦଳେ 'କରତାର' ଓ 'ଗୁଣଭଦ୍ରା' ବଦଳେ 'ଶରଣଭଦ୍ରା'

ନାମ ରହିଛି । ସେ କୂର୍ମ ପର୍ବତ ଉପରେ ଶ୍ରୀ କୂର୍ମେଶ୍ୱର ମନ୍ଦିର ଥିବା କଥା ଲେଖିଛନ୍ତି । ଶ୍ରୀକୂର୍ମେଶ୍ୱର ମନ୍ଦିର କଳିଙ୍ଗର ଉତ୍ତରାଂଶରେ ଆଧୁନିକ ଶ୍ରୀକାକୁଲମ୍ ପାଖରେ ଅଛି, ସେଠି ପର୍ବତ କିଛି ନାହିଁ । ପୁଣି ଶ୍ରୀକାକୁଲମ୍ କସ୍ମିନ୍‌କାଳେ ଗୋଦାବରୀ ଓ କୃଷ୍ଣାର ମଧ୍ୟବର୍ତ୍ତୀ ନଥିଲା କି ତା' ପାଖରେ କୃଷ୍ଣାନଦୀ ପ୍ରବାହିତ ହେଉ ନଥିଲା । ଶ୍ରୀକୂର୍ମମ୍‌ରୁ କୃଷ୍ଣାନଦୀର ଦୂରତ୍ୱ ଅଢ଼େଇ ଶହ ମାଇଲରୁ ଅଧିକ । ମଝିରେ ୧୭୦ ମାଇଲ ଦୂରରେ କଳିଙ୍ଗର ଦକ୍ଷିଣ ସୀମାରେ ଗୋଦାବରୀ ନଦୀ (କୃଷ୍ଣା ଅପେକ୍ଷା ବୃହତ୍ତର) ପ୍ରବାହିତ ହେଉଛି । ଡଃ ପାଣିଗ୍ରାହୀ ଭୂଗୋଳକୁ ତ ମିଥ୍ୟା କରି ପାରିବେ ନାହିଁ । କୋଣ୍ଡାବିଡୁ ଓଡ଼ିଶାର ଠିକ୍ ପଶ୍ଚିମ ଦିଗରେ ବୋଲି କହିବା ଠିକ୍ ନୁହେଁ । କୋଣ୍ଡାବିଡୁର ପୂର୍ବକୁ ଓଡ଼ିଶା ତ ନାହିଁ ଓଡ଼ିଶାର ଦକ୍ଷିଣସ୍ଥ କଳିଙ୍ଗର କୌଣସି ଅଂଶ ମଧ୍ୟ ନାହିଁ ।

ସାରଳାଦାସ ବର୍ଣ୍ଣିତ କୁଣ୍ଡୀନଗରକୁ କୃଷ୍ଣାନଦୀର ଦକ୍ଷିଣ ସ୍ଥିତ କୋଣ୍ଡାବିଡୁ ସହିତ ଚିହ୍ନିତ କରିବା ଅଯୁକ୍ତିକର । ପ୍ରସିଦ୍ଧ ବିଦର୍ଭ ଦେଶର ରାଜଧାନୀ କୁଣ୍ଡିନପୁର କଥା ତଥା ତାହାର ରାଜା ଭୀଷ୍ମକଙ୍କ କନ୍ୟା ରୁକ୍ମିଣୀଙ୍କୁ ଶ୍ରୀକୃଷ୍ଣ ଅପହରଣ କରିଥିବା କଥା ସଂସ୍କୃତ ମହାଭାରତରେ ବର୍ଣ୍ଣିତ ହୋଇଛି (ବନ ୬୦; ସଭା ୧୪ ଅଧ୍ୟାୟ ସଂସ୍କୃତ) । ସାରଳାଦାସ କୁଣ୍ଡୀନଗ୍ରର ରାଜା ଭୀଷ୍ମକ, ତାଙ୍କର କନ୍ୟା ରୁକ୍ମିଣୀଙ୍କ ନାମ ଲେଖିଥିବାରୁ ସଂସ୍କୃତ ମହାଭାରତରେ ବର୍ଣ୍ଣିତ ବିଦର୍ଭର ପ୍ରାଚୀନ ରାଜଧାନୀ କଥା କହିଥିବା ନିଃସନ୍ଦେହ । ବିଦର୍ଭ ରାଜ୍ୟ ହେଉଛି ଆଧୁନିକ ବେରାର, ମହାରାଷ୍ଟ୍ର । ଡଃ ପାଣିଗ୍ରାହୀ ଶୂନ୍ୟରୁ ତୋଳିଲା ପରି ସାରଳାଦାସଙ୍କ ଆଖ୍ୟାୟିକାରୁ ଓଡ଼ିଶାର ଇତିହାସ କାଢ଼ିବାର ଅପଚେଷ୍ଟା କରିଛନ୍ତି । ସମଗ୍ର ଆଖ୍ୟାୟିକାରେ ଇତିହାସର ବିନ୍ଦୁବିସର୍ଗ ନାହିଁ ।

## ଅର୍ଥବିକ୍ଷେପର ପରଂପରା

ମନସ୍ତତ୍ତ୍ୱବିଦ୍‌ଙ୍କ ସିଦ୍ଧାନ୍ତ ଅନୁସାରେ ପ୍ରତ୍ୟେକ ମଣିଷର ଭାବନା ତାହାର ବ୍ୟକ୍ତିଗତ ପୃଷ୍ଠଭୂମି ଓ ମନସ୍ତାତ୍ତ୍ୱିକ ଅବସ୍ଥାରେ ଉପୁଜେ । ତାହାର ନିଜର ପ୍ରେରଣା, ବିଶ୍ୱାସ, ପୂର୍ବ ଅଭିଜ୍ଞତା ଓ ମାନସିକ ସ୍ଥିତି ତାହାର ଭାବନାକୁ ଉଦ୍ରେକ କରିଥାନ୍ତି । ଫଳତଃ ନିଜର ଅଭିଳାଷ ନିଜର ଭାବନାର ହେତୁ ହୋଇପଡ଼େ । ଭାବନା ସୃଷ୍ଟିଶୀଳ ହେବା ବେଳେ ତଥ୍ୟାଶ୍ରିତ ଓ ଯୁକ୍ତିଯୁକ୍ତ ହେବାକୁ ଚାହେଁ, ଅନ୍ୟକୁ ପ୍ରଭାବିତ କରିବା ଲକ୍ଷ୍ୟରେ । କିନ୍ତୁ ଯେତେବେଳେ ତାହାର ଅଭିଳାଷ ସହିତ ତଥ୍ୟର ମେଳ ହୁଏ ନାହିଁ ସେ ତଥ୍ୟକୁ ମୋଡ଼ିମାଡ଼ି ଅଭିଳାଷର ଅନୁକୂଳ କରାଇବା ପାଇଁ କଳ୍ପନାର ଆଶ୍ରୟ ନିଏ । ନିଜର ଅଭିଳାଷର ପୋଷଣ ପାଇଁ ତଥ୍ୟକୁ ବଳି ଦେଇଥାଏ । ଏହାର ସୁବିଦିତ ଦୃଷ୍ଟାନ୍ତମାନ ହେଲା– ଜଗନ୍ନାଥ ଦାସଙ୍କ ଅର୍ଥକୋଇଲି ଓ ବ୍ରହ୍ମାଣ୍ଡ ଭୂଗୋଳ, ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ ଓ ମହାମହୋପାଧ୍ୟାୟ ନରହରି ପଣ୍ଡାଙ୍କର ମେଘଦୂତର ବ୍ରହ୍ମ ପ୍ରକାଶିନୀ ଟୀକା । କେଶବ କୋଇଲି ସରଳ ସୁବୋଧ୍ୟ ବାତ୍ସଲ୍ୟରସର ରଚନା, କିନ୍ତୁ ଜଣେ କେହି ସ୍ୱପୋଷିତ

ପିଣ୍ଡବ୍ରହ୍ମାଣ୍ଡବାଦକୁ ପ୍ରଚାର କରିବା ଅଭିଳାଷରେ ଅର୍ଥବିକ୍ଷେପ ପ୍ରକ୍ରିୟା ଦ୍ୱାରା 'ଅର୍ଥକୋଇଲି' ସୃଷ୍ଟି କରିଛି । ବ୍ରହ୍ମାଣ୍ଡ ଭୂଗୋଳ ଦ୍ୱୟରେ ଭାଗବତର ଗୋପୀଭାଷାର କେତେକ ପଦର ଯଥେଚ୍ଛ ଅର୍ଥବିକ୍ଷେପ କରାଯାଇଛି । ନରହରି ପଣ୍ଡେ ସୁପ୍ରସିଦ୍ଧ ମେଘଦୂତରୁ ଜଗନ୍ନାଥଙ୍କ ରଥଯାତ୍ରା ଅର୍ଥ ନିଷ୍କର୍ଷଣ କରି ଆଂଚଳିକ ଜଗନ୍ନାଥ- ଭକ୍ତିଭାବର ପୋଷକ ହୋଇଛନ୍ତି । ଏ ଦେଶରେ ବିଜ୍ଞମଣ୍ଡଳୀରେ ସୁଦ୍ଧା ଅର୍ଥବିକ୍ଷେପ ବ୍ୟାପାର ବିଶେଷ ମାନ୍ୟତା ପାଉଛି । ଅନ୍ୟଥା, ମେଘଦୂତକୁ କଦର୍ଥ କରିବା ଲୋକ ଏଠି ମହାମହୋପାଧ୍ୟାୟ ହୁଅନ୍ତେ ନାହିଁ କି ତାଙ୍କର ଟୀକାକୁ ଓଡ଼ିଶା ସାଂସ୍କୃତିକ ବିଭାଗ ଓଡ଼ିଶାର ବିଶିଷ୍ଟ ସାହିତ୍ୟ- ସୃଷ୍ଟି ବୋଲି ଚିହ୍ନାଇ ପ୍ରକାଶିତ କରନ୍ତା ନାହିଁ ।

'ସାରଳା-ସାହିତ୍ୟର ଐତିହାସିକ ଚିତ୍ର' ମଧ୍ୟ ଅନ୍ୟ ଏକ ଅର୍ଥବିକ୍ଷେପମୟ ସୃଷ୍ଟି । ସାରଳାଦାସ ବହୁ ସ୍ଥାନ ବିଷୟରେ ଓ ବହୁ ଚରିତ୍ର ବିଷୟରେ ମହାଭାରତରେ ଲେଖିଛନ୍ତି । ଏହା ଭିତରୁ କେତେକ ସ୍ଥାନ ଓ ଚରିତ୍ର ବିଷୟ ସଂସ୍କୃତ ମହାଭାରତର ବା ଅନ୍ୟ ପୁରାଣରେ ରହିଛି ଅବଶିଷ୍ଟ ସେ ଲୋକମୁଖରୁ ଶୁଣିଥିବା ବିଷୟ ବା ସଂପୂର୍ଣ୍ଣ ମନଗଢ଼ା ବିଷୟ । ଏଣେ ଡଃ ପାଣିଗ୍ରାହୀ ଭାରତ ଇତିହାସର ବିଭିନ୍ନ ଯୁଗର ବହୁ ଘଟନା ଜାଣନ୍ତି । ସେ ଇତିହାସର ଘଟନାଗୁଡ଼ିକୁ ସାରଳା-ମହାଭାରତରେ ଦରାଣ୍ଡିଛନ୍ତି ଓ ଯାହା ପାଇଛନ୍ତି ତାହାର ସ୍ୱାଭାବିକ ଅର୍ଥକୁ ସ୍ୱ ଅଭିଳାଷର ଅନୁକୂଳ କରାଇନେବା ଲକ୍ଷ୍ୟରେ ସ୍ଥାନ- କାଳ-ବ୍ୟକ୍ତିର ନାମକୁ ବଦଳାବଦଳି କରିଛନ୍ତି । ସେ ମନେ କରନ୍ତି ଯେ ଖୋଦ୍ ସାରଳାଦାସଙ୍କୁ ଛନ୍ଦରକ୍ଷା ପାଇଁ ତାଙ୍କୁ (ସାରଳାଦାସଙ୍କୁ) କେତେକ ନାମକୁ ସଂକ୍ଷିପ୍ତ ବା ବର୍ଦ୍ଧିତ କରିବାକୁ ପଡ଼ିଛି (ପୃ. ୧୧୯) । ନିଜର ଇତିହାସ ଅନ୍ୱେଷଣ ଅଭିଳାଷର ପ୍ରଚୋଦନାରେ ଡଃ ପାଣିଗ୍ରାହୀ ଭୁଲିଗଲେ ଯେ ସାରଳାଦାସ ଦାଣ୍ଡିଶୈଳୀରେ ଲେଖିଥିଲେ । ଛନ୍ଦରକ୍ଷା ଯୁକ୍ତି ଅପ୍ରାସଙ୍ଗିକ ।

ସାରଳାଦାସଙ୍କ ରଚନାର ଗୋଟିଏ ନାମକୁ ଅନ୍ୟ ନାମରେ ବଦଳାଇଲେ ହିଁ ଡଃ ପାଣିଗ୍ରାହୀଙ୍କ ଅଭିଳାଷ ପୂରଣ ହୋଇପାରିବ । ଏହାର ଆଉ ଗୋଟିଏ ଉଦାହରଣ ଦେଇ ମୋର ସେ ସଂପୃକ୍ତ ଆଲୋଚନା ଶେଷ କରିବି, ଏହା ଭାତହାଣ୍ଡିରୁ ଗୋଟିଏ । ମୁଦ୍ରିତ ସାରଳା-ମହାଭାରତର ସଭାପର୍ବରେ ଲେଖା ଅଛି—

କାଞ୍ଚନଗଗ୍ରଂ ଅଜାନୁ ରାଜା ଚକ୍ରବର୍ତ୍ତୀ
ତାକୁ ଖଟଇ ପଞ୍ଚାଶ ସହସ୍ର ଯେ ହସ୍ତୀ ।।

ଡଃ ପାଣିଗ୍ରାହୀଙ୍କ ଟୀକାରେ (ପୃ. ୨୬) ''ଅଜାନୁରାଜା— ଏହା ଏକ ଛଦ୍ମନାମ । ×× ସାଳୁବ ନରସିଂହଙ୍କୁ ହିଁ (କବି) ଅଜାନୁ ଆଖ୍ୟା ଦେଇଛନ୍ତି । ତଥାପି ଏହି ଛଦ୍ମନାମରେ ମଧ୍ୟ ତାତ୍ପର୍ଯ୍ୟ ଅଛି । ଅଜାନୁର ଆକ୍ଷରିକ ଅର୍ଥ ହେଉଛି ଜାନୁଶୂନ୍ୟ, କିନ୍ତୁ ଏଠାରେ ଏହାର ଅର୍ଥ ନତଜାନୁ ବା ପରାଜିତ ବୋଲି ହିଁ ବୁଝିବାକୁ ହେବ । କାଞ୍ଚିରାଜା ପ୍ରକୃତରେ ଓଡ଼ିଶା ରାଜାଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ।''

ଡଃ ପାଣିଗ୍ରାହୀଙ୍କ ଅଭିଳାଷ ଅନ୍ୟଥା ହୋଇଥିଲେ ସାଳୁବ ନରସିଂହଙ୍କୁ ପରାସ୍ତ ନ କରି ବିଜୟୀ କରିପାରିଥାନ୍ତେ ଓ ସେ ଚକ୍ରବର୍ତ୍ତୀ ଥିବା ଓ ୫୦ ହଜାର ହସ୍ତୀଙ୍କ ପ୍ରଭୁ ଥିବା ବର୍ଣ୍ଣନା କବି କରିଥିବାରୁ ସେ ପରାସ୍ତ ନ ହୋଇ ବିଜୟୀ ହେବା ଅର୍ଥ ସଙ୍ଗତ ହୁଅନ୍ତି । 'ଅ'ର ଅର୍ଥ ବିଷ୍ଣୁ (ଓଁକାରର ବ୍ୟାଖ୍ୟାରେ), ତେଣୁ ଅଜର ଅର୍ଥ ବିଷ୍ଣୁଙ୍କ ଅବତାର, ଅନୁର ଅର୍ଥ ଅନାର୍ଯ୍ୟ ଜାତି । ଅତଏବ ଅଜାନୁର ଅର୍ଥ ହେଲା ଦ୍ରାବିଡ଼ ରାଜା ସାଳୁବ ନରସିଂହ । ତାଙ୍କ ପାଖରେ ଯେଉଁ ୫୦ ହଜାର ହସ୍ତୀ (ଗଜ) ଖଟୁଛନ୍ତି ସେମାନେ ହେଉଛନ୍ତି ଓଡ଼ିଶାର ଗଜପତିଙ୍କ ଲୋକ । ଏଥିରୁ ଇତିହାସ ବାହାରନ୍ତା ଯେ ପୁରୁଷୋତ୍ତମ ଦେବ ପ୍ରଥମେ ୫୦ ହଜାର ସୈନ୍ୟଙ୍କୁ ଧରି କାଞ୍ଚୀ ଉପରେ ଅଭିଯାନ ଚଳାଇଥିଲେ ଓ କାଞ୍ଚୀରାଜା ଓଡ଼ିଶାର ସୈନ୍ୟମାନଙ୍କୁ ବନ୍ଦୀ କରିଥିଲେ । କିଂବଦନ୍ତୀ ଅନୁସାରେ ପୁରୁଷୋତ୍ତମ ପ୍ରଥମ ଥର କାଞ୍ଚୀ ଅଭିଯାନ କରି ହାରିଥିଲେ କିନ୍ତୁ ପରେ ଜଗନ୍ନାଥ ବଳରାମ ତାଙ୍କ ସହାୟ ହେବାରୁ ସେ ଜିଣିଲେ । ଏ ବିଷୟ ଏତିକିରେ ରହିଲା ।

ଡଃ ପାଣିଗ୍ରାହୀ ତାଙ୍କ ପୁସ୍ତକର 'ନିବେଦନ'ରେ କହିଛନ୍ତି– ''ଇତିହାସରୁ ଯଦି ଆମ୍ଭେମାନେ ଶିକ୍ଷା ବା ପ୍ରେରଣା ପାଇବାକୁ ଚାହୁଁ, ତେବେ ତାକୁ ସତ୍ୟାଶ୍ରିତ କରିବାକୁ ପଡ଼ିବ । ତାକୁ ଭାବପ୍ରବଣତାମୟ କଲେ ସେଥିରୁ କ୍ଷଣିକ ଉତ୍ତେଜନା ଛଡ଼ା ଅନ୍ୟ କିଛି ମିଳିବ ନାହିଁ ।'' କିନ୍ତୁ ଦୁଃଖର ବିଷୟ ଡଃ ପାଣିଗ୍ରାହୀଙ୍କ ପୁସ୍ତକରେ ଭାବପ୍ରବଣତା ହିଁ ଆମୂଳାନ୍ତ ଭରପୂର ହୋଇ ରହିଛି । ତେଣୁ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଜଣେ ସୁଦ୍ଧା ଐତିହାସିକ ସାରଳା-ମହାଭାରତକୁ ଐତିହାସିକ ଉପାଦାନର ସ୍ୱୀକୃତି ଦେଇନାହାନ୍ତି ।

## ସାରଳା-ମହାଭାରତରେ ଭୌଗୋଳିକ ବିବରଣ

ଡଃ ପାଣିଗ୍ରାହୀ ସାରଳାଦାସଙ୍କ ଭୌଗୋଳିକ ଜ୍ଞାନର ତାରିଫ୍ କରି ଲେଖିଛନ୍ତି– ''ସମଗ୍ର ଭାରତର ଭୌଗୋଳିକ ଜ୍ଞାନ ଯେ ସାରଳାଦାସଙ୍କ ନଖଦର୍ପଣରେ ଥିଲା, ତାଙ୍କ ସାହିତ୍ୟର ଆଲୋଚନା ଶେଷ ହେବା ବେଳକୁ ସୁଧୀପାଠକେ ଆପେ ଆପେ ଜାଣିପାରିବେ (ପୃ. ୫୨) । ସେ ଆଉ ମଧ୍ୟ ଲେଖିଛନ୍ତି– ''ଓଡ଼ିଆ ସାହିତ୍ୟର ଜନ୍ମଦାତା ସାରଳାଦାସ ମହାଭାରତ ଜରିଆରେ ସମସାମୟିକ ଓ ନିକଟ ଅତୀତର ପ୍ରଭୂତ ଇତିହାସ ଓ ଭୂଗୋଳ ଲେଖିଯାଇଛନ୍ତି (ପୃ. ୩୧) । ସେ ଯେଉଁ ପଦ୍ଧତିରେ ଇତିହାସ ଖୋଜିଛନ୍ତି, ଭୂଗୋଳ କ୍ଷେତ୍ରରେ ମଧ୍ୟ ସେହି ପଦ୍ଧତି ଅନୁସରଣ କରିଛନ୍ତି । ସାରଳା ମହାଭାରତରେ 'କନାଉଜ' ଲେଖାଅଛି । ଦକ୍ଷିଣର ବିବରଣ ମଧ୍ୟରେ 'କନାଉଜ' ନାମ ଥିବାରୁ ଡଃ ପାଣିଗ୍ରାହୀ କହିଛନ୍ତି ''କର୍ଣ୍ଣାଟକ ସ୍ଥାନରେ କନାଉଜ ହୋଇଯାଇଥିବା ଅତ୍ୟନ୍ତ ସମ୍ଭବ'' (ପୃ. ୫୨) । ଡଃ ପାଣିଗ୍ରାହୀ (ପୃ.୧୭୦) ଆଲୋଚନାରେ ଅନେକ ଦୂର ଅଗ୍ରସର ହେବାପରେ ସ୍ୱୀକାର କରିଛନ୍ତି ଯେ ସାରଳାଦାସ ''ପଶ୍ଚିମଦିଗର ତାରମୁଖରେ ମଧ୍ୟ ଦକ୍ଷିଣାଞ୍ଚଳର ଅନେକ ଭୌଗୋଳିକ ନାମ ପ୍ରକାଶ କରିଛନ୍ତି ।'' ଭୂଗୋଳ ନଖଦର୍ପଣରେ

ଥିଲେ ଏପରି ଦିଗଭ୍ରାନ୍ତି ହୁଅନ୍ତା କାହିଁକି ? ପୁସ୍ତକର ପୃ. ୨୦୧ରେ ଡଃ ପାଣିଗ୍ରାହୀ ମାନିଛନ୍ତି– "ଆଧୁନିକ ଜ୍ଞାନବିଜ୍ଞାନ ଯୁଗର ପୁସ୍ତକମାନଙ୍କରେ ଯେଉଁ ଐତିହାସିକ ଓ ଭୌଗୋଳିକ ବିବରଣମାନ ଅଛି ସାରଳାଦାସଙ୍କ ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରୁ ଠିକ୍ ସେହିପରି ବିବରଣମାନ ଖୋଜିବା ପ୍ରାରମ୍ଭିକ ଭ୍ରମହେବ ।" 'ନଖଦର୍ପଣ' ତତ୍ତ୍ୱରେ ସେ ହିଁ ପ୍ରାରମ୍ଭିକ ଭ୍ରମ ସୃଷ୍ଟି କରିଛନ୍ତି । ପରେ ସେ ବିସ୍ମୟାଭିଭୂତ ହୋଇ ଲେଖିଛନ୍ତି–

୧. "ବର୍ଣ୍ଣିତ କାଉଁରୀଦେଶ ଯେ ଆସାମ ବା ଆସାମର ଗୌହାଟି ଅଞ୍ଚଳ ଏ ସମ୍ବନ୍ଧରେ ସନ୍ଦେହ ରହୁନାହିଁ । ମାତ୍ର (ସାରଳାଦାସ) ଆସାମକୁ ପଶ୍ଚିମ ଦିଗରେ ସ୍ଥାନ ଦେବା ବିସ୍ମୟକର" (ପୃ. ୨୦୭) ।

୨. "ସିନ୍ଧୁଦେଶ ପଶ୍ଚିମରେ ଅବସ୍ଥିତ ଥିବା ସ୍ଥଳେ କବି ଏହାକୁ ପୂର୍ବ ଦିଗର ଦେଶମାନଙ୍କ ସହିତ ବର୍ଣ୍ଣନା କରିବା ବଡ଼ ବିସ୍ମୟକର (ପୃ ୨୧୦) ।

୩. "ଗାନ୍ଧାରକୁ କିପରି ପୂର୍ବଦିଗରେ ସ୍ଥାନ ଦେଇଛନ୍ତି ତାହା ବୁଝାଯାଉନାହିଁ" (ପୃ.୨୧୫) ।

୪. "କବିଙ୍କ ବର୍ଣ୍ଣନା ଭୂଗୋଳ ସହିତ ମେଳ ଖାଉନାହିଁ ।xxx ସେ ଭୌଗୋଳିକ ସ୍ଥାନମାନଙ୍କର ଅବସ୍ଥିତି ସମ୍ବନ୍ଧରେ ଯାହା ଶୁଣିଥିଲେ ଓ ଲେଖିବାବେଳେ ଯାହା ସ୍ମରଣ କରିପାରୁଥିଲେ, ତାହାହିଁ ଲେଖିଯାଇଛନ୍ତି" (ପୃ.୧୪୧) ।

୫. "କବି କେତେବେଳେ କୁରୁପାଣ୍ଡବଙ୍କ ଲୀଳାସ୍ଥଳି ହସ୍ତିନାରୁ (ଦିଲ୍ଲୀ ଅଞ୍ଚଳରୁ) ଓ କେତେବେଳେ ତାଙ୍କ ଜନ୍ମଭୂମି ଓଡ଼ିଶାରୁ ଦିଗ୍‌ନିର୍ଣ୍ଣୟ କରିଥିବାରୁ ତାଙ୍କ ବର୍ଣ୍ଣିତ ଦେଶ ଓ ସ୍ଥାନମାନଙ୍କ କେତେକ ସ୍ଥଳରେ ଭ୍ରମାତ୍ମକ ହୋଇଛି" (ପୃ.୨୦୨) ।

୬. "କେତେକ ସ୍ଥଳରେ ଏ ବୃତ୍ତାନ୍ତମାନଙ୍କ ମଧ୍ୟରେ ଥିବା ଭୌଗୋଳିକ ବିବରଣୀରେ ଦିଗଭ୍ରାନ୍ତି ରହିଛି" (ପୃ. ୨୧୭) ।

୭. "ଜ୍ଞାନ ସ୍ୱଳ୍ପତା ହେତୁରୁ ଯେଉଁ (ସ୍ଥାନ)ଗୁଡ଼ିକୁ ଚିହ୍ନିତ କରାଯାଇପାରିନାହିଁ, ସେଗୁଡ଼ିକୁ କାଳ୍ପନିକ ବୋଲି କହିବା ସମୀଚୀନ ହେବନାହିଁ । ମାତ୍ର ଏମାନଙ୍କ ସହିତ ବର୍ଣ୍ଣିତ ଆନୁଷଙ୍ଗିକ ନାମମାନଙ୍କ ମଧ୍ୟରୁ କେତେକ ନିଶ୍ଚୟ କାଳ୍ପନିକ ××× ତାଙ୍କ ଖିଆଲକୁ ଯାହା ଆସୁଥିଲା ବେଳେ ବେଳେ ସେ ତାହାହିଁ ଲେଖିଛନ୍ତି" (ପୃ. ୨୧୭) ।

ଡଃ ପାଣିଗ୍ରାହୀ ଆଲୋଚନା ଆରମ୍ଭ କରିବା ବେଳକୁ ସାରଳାଦାସଙ୍କ ନଖଦର୍ପଣ ଥିଲା କିନ୍ତୁ ଆଲୋଚନାରେ କିଛିବାଟ ଆଗେଇ ଯିବାପରେ ନଖଦର୍ପଣଟି ମିଛ ପ୍ରତିବିମ୍ବ ଦେବା ଜାଣିଗଲେ । ସେ ସାରଳାଦାସଙ୍କ ବର୍ଣ୍ଣନାରେ ଥିବା ଭୌଗୋଳିକ ଜ୍ଞାନର ଅଭାବକୁ ଭାବପ୍ରବଣ ବାକ୍‌ପୁଷ୍ପ ଦ୍ୱାରା ଆଚ୍ଛାଦିତ କରିବାକୁ ଯତ୍ପରୋନାସ୍ତି ଉଦ୍ୟମ କରିଥିଲେ ହେଁ ସଫଳକାମ ହୋଇପାରିନାହାନ୍ତି ।

ଡଃ ପାଣିଗ୍ରାହୀ ତାଙ୍କ ଆଲୋଚନାଂ ରାଧାରମଣ ପ୍ରେସ୍ ଦ୍ୱାରା ପ୍ରକାଶିତ ସାରଳା-ମହାଭାରତର ପାଠକୁ ଆଧାରକରି କହିଛନ୍ତି ଏହାର ବିରାଟ ପର୍ବର ବର୍ଣ୍ଣନା ଅନୁସାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ସନ୍ଧାନ ନେବା ନିମନ୍ତେ ଚାରିଦିଗକୁ ଦୂତ ପ୍ରେରଣ କରିଥିଲେ । ଏହି ଦୂତମାନେ ଭିନ୍ନ ଭିନ୍ନ ଦିଗକୁ ଯାଇ ଯେଉଁ ଯେଉଁ ଦେଶକୁ ଯାଇଥିଲେ ତାହା କହିଛନ୍ତି ।

ଦକ୍ଷିଣ ଦିଗର ଚାର ଯିବା ଦେଶ ମଧ୍ୟରେ ରହିଛି— ମଗଧ, କନାଉଜ, ଭୋଟ, ଗୋମତୀ, କାମକ୍ଷୀ ଇତ୍ୟାଦି ।

ପୂର୍ବ ଦିଗକୁ ଯିବା ଚାର ନିମ୍ନଲିଖିତ ଦେଶକୁ ଯାଇଥିଲା— କର୍ଣ୍ଣାଟ, ଭ୍ରତଖଣ୍ଡ, ମଥୁରା, ଗୋପପୁର ।

ଉତ୍ତର ଦିଗକୁ ଯିବା ଚାର ଯାଇଥିବା ଦେଶ ମଧ୍ୟରେ ଥିଲା— ମହାରାଷ୍ଟ୍ର, ସୌରାଷ୍ଟ୍ର, ଶ୍ରୀହଟ୍ଟ, ଅଙ୍ଗ, ବଙ୍ଗ, କାଉଁରି, ଭୋଟ, ଅଯୋଧ୍ୟା, ପ୍ରୟାଗ, କାଶୀ, ବାରାଣସୀ ।

ପଶ୍ଚିମଦିଗକୁ ଯିବା ଚାର ନିମ୍ନ ଦେଶକୁ ଯାଇଥିଲା— କର୍ଣ୍ଣଟ, ଗୁଜରାଟ, କାଉଁରୀଦେଶ, ତେଲଙ୍ଗାଦେଶ, କାମାକ୍ଷୀ, ପଞ୍ଚବଟୀ, ଚିତ୍ରକୂଟ ।

ହସ୍ତିନାପୁରରୁ ଦକ୍ଷିଣକୁ ଗଲେ ଭୋଟ, ଉତ୍ତରକୁ ଗଲେ ବି ଭୋଟ, ସେହିପରି ପୂର୍ବକୁ ଗଲେ କର୍ଣ୍ଣାଟ ଓ ପଶ୍ଚିମକୁ ଗଲେ ବି କର୍ଣ୍ଣାଟ । ସାରଳାଦାସଙ୍କ ଭୌଗୋଳିକ ଜ୍ଞାନର ଅଭାବକୁ ସ୍ୱୀକାର କରିବାକୁ ହେଉଛି ।

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ପାଠରେ ଦିଗଭ୍ରାନ୍ତି କିଛି କମ୍ ନୁହେଁ । ସଭାପର୍ବର ବର୍ଣ୍ଣନା ଅନୁସାରେ ଭୀମ ରାଜସୂୟ ଯଜ୍ଞକୁ ନିମନ୍ତ୍ରଣ କରିବାକୁ ପଶ୍ଚିମକୁ ଯାଇଥିଲେ ଇନ୍ଦ୍ରପ୍ରସ୍ଥରୁ । ତାଙ୍କ ଯାତ୍ରାପଥରେ ପଡ଼ିଥିଲା— ସୋମନାଥ (ସୌରାଷ୍ଟ୍ର), କୁଣ୍ଡୀନଗ୍ର (ମହାରାଷ୍ଟ୍ର); ଚେଦିଦେଶ (ନର୍ମଦାତୀର), ମଗଧଦେଶ, କାଶୀ, ସୌରାଷ୍ଟ୍ର, ଅଯୋଧ୍ୟା, କର୍ଣ୍ଣାଟ, କାଉଁରୀଦେଶ, ମହାରାଷ୍ଟ୍ର ।

ଆଶ୍ଚର୍ଯ୍ୟର କଥା କବି ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଉତ୍ତର ଦିଗକୁ ଯାଇ ଅର୍ଜୁନ ପହଞ୍ଚିଥିଲେ— ବଙ୍ଗଦେଶରେ, କର୍ଣ୍ଣାଟରେ, କାଶୀରେ, ଭୂପାଳ ଦେଶରେ, ସୌରାଷ୍ଟ୍ରରେ, ରଣସ୍ତମ୍ଭଗଡ଼ (ରାଜସ୍ଥାନ)ରେ ବୋଲି ଜଣାଇଛନ୍ତି ଓ ସହଦେବ ପୂର୍ବ ଦିଗକୁ ଯାଇ ଗାନ୍ଧାରରେ ପହଞ୍ଚିଥିଲେ ।

ସାରଳାଦାସଙ୍କ ଭୌଗୋଳିକ ଜ୍ଞାନ ଜଣେ ସରଳ ଗ୍ରାମବାସୀ କୃଷକର, ତାଙ୍କର ଓଡ଼ିଶା ବାହାର ଅଞ୍ଚଳ ମଧ୍ୟରେ ଦକ୍ଷିଣ ସହିତ ପରିଚିତି ଅଧିକ ଥିଲା କାରଣ ଓଡ଼ିଶା ରାଜ୍ୟ ସୁଦୂର ଦକ୍ଷିଣକୁ ପ୍ରସାରିତ ଥିଲା । ଅବଶିଷ୍ଟ ଭାରତ ସଂପର୍କରେ ତାଙ୍କର ଜ୍ଞାନ ବିଶେଷ ନଥିଲା ।

—

# ସପ୍ତଦଶ ଅଧ୍ୟାୟ

## ସାରଳାଦାସଙ୍କ ଅନୁକାରୀ

ଗୋଟିଏ ଜାତିର ଅନୁଭବ ତାହାର ଲୋକୋକ୍ତିରେ ଫୁଟିଥାଏ । ସେହିପରି ଗୋଟିଏ ଲୋକୋକ୍ତି ରହିଛି— ଆଗ, ସୁନାପାଗ । ଯେଉଁ ମାର୍ଗରେ ହେଉପଛକେ ଯେ ଅଗ୍ରଗାମୀ ସେ ସ୍ୱତନ୍ତ୍ର ଗୌରବର ଅଧିକାରୀ ହୋଇଥାଏ, ଅଗ୍ରଗଣ୍ୟ ହୁଏ । ମନୁଷ୍ୟ ବିଶେଷଭାବରେ ପ୍ରକୃତିର ବଶବର୍ତ୍ତୀ ଓ ପ୍ରକୃତି କାଳର ଅଧୀନ । 'କାଳୋହି କୁରୁତେ ଭାବାନ୍ ସର୍ବଲୋକେ ଶୁଭାଶୁଭମ୍' (ମହାଭାରତ, ଆଦି ୧/୨୪୯) । କାଳ ଯାହାକୁ ପ୍ରଥମେ ପ୍ରେରିତ କରିଛି ସେ ଅନ୍ୟର ଅନୁସରଣୀୟ, ଅନୁକରଣୀୟ । ଲୌକିକ ଚିନ୍ତା-ଚେତନା ଉପରେ କାଳର ଏପରି ଦୁରତ୍ରିକ୍ରମ୍ୟ ପ୍ରଭାବ ରହିଛି ଯେ ମଣିଷ, ଜ୍ଞାତସାରରେ ହେଉ କି ଅଜ୍ଞାତସାରରେ ହେଉ, ଅନୁକରଣଶୀଳ ହୋଇଥାଏ । କନିଷ୍ଠ ଜ୍ୟେଷ୍ଠର ଅନୁକାରୀ । ଜ୍ୟେଷ୍ଠ ଶ୍ରେଷ୍ଠ, ସବୁଠାରେ ଜ୍ୟେଷ୍ଠାଧିକାର ସ୍ୱୀକୃତ ହୁଏ, ପ୍ରଥମ ପତ୍ନୀହୁଏ ଧର୍ମପତ୍ନୀ, ଜ୍ୟେଷ୍ଠପୁତ୍ର ପିଣ୍ଡଦାନରେ ଅଧିକାରୀ, ରାଜାର ଜ୍ୟେଷ୍ଠପୁତ୍ର ହୁଏ ଯୁବରାଜ, ଚାକିରିରେ seniority ପରି, କ୍ୟୁରେ ଆଗ ଛିଡାହେବା ଲୋକପରି, ଆଗ ସୁନାପାଗ ।

କିନ୍ତୁ, ଅନୁକରଣରେ ନୂତନତା ନଥାଏ ଓ ନୂତନତା ନଥିଲେ ସୃଷ୍ଟିର ଆକର୍ଷଣ (ପଣ୍ଡିତ ନୀଳକଣ୍ଠଙ୍କ ଭାଷାର 'ଚମକ') ନଥାଏ । ତେଣୁ ସ୍ରଷ୍ଟା ଅନୁକାରୀ ହେବା ସହିତ ନିଜସ୍ୱ ନୂତନତାର ସଂଯୋଗ କରି ନିଜ ସୃଷ୍ଟିକୁ 'ଚମକ' ଦିଏ । ସମସ୍ତଙ୍କ ଦ୍ୱାରା ଏ କାମ ସାଧ୍ୟ ହୁଏ ନାହିଁ । ସାରଳାଦାସ ମଧ୍ୟ ଅନୁକରଣର ପ୍ରଚୋଦନାରୁ ମୁକ୍ତ ନୁହନ୍ତି । କିନ୍ତୁ ତାଙ୍କ ପ୍ରତିଭା ଏତେ ବଳବତ୍ତର ଥିଲା ଯେ ସେ ଅନେକ ବିଷୟରେ ଅନୁକରଣ ନକରି ନୂତନତା ଦେଖାଇଛନ୍ତି । ଭାବରାଜ୍ୟରେ 'ଅପୂର୍ବତା' ହେଉଛି ସୃଷ୍ଟିର ପ୍ରଧାନ ଲକ୍ଷଣ । ଅପୂର୍ବତାରହିତ ଭାବ ମୂଲ୍ୟହୀନ । ସାରଳାଦାସଙ୍କ ତିନିଟିଯାକ ରଚନା ଅପୂର୍ବତାର ଆକର । ଏହି ଅପୂର୍ବତା ବଳରେ ହିଁ ସାରଳାଦାସ ଓଡ଼ିଆ ଅଞ୍ଚଳରେ ବ୍ୟାସ-ବାଲ୍ମୀକିଙ୍କ ପ୍ରଭାବକୁ ବହୁ ଭାବରେ ପ୍ରତିହତ କରିପାରିଛନ୍ତି । ତାଙ୍କର ରଚନାର ବୈଶିଷ୍ଟ୍ୟର ଖ୍ୟାତି ପ୍ରତିବେଶୀ ଅଞ୍ଚଳକୁ ମଧ୍ୟ ସଂଚରି ଯାଇଛି । ଓଡ଼ିଆ ଭାଷାର ସାରଳା-ମହାଭାରତକୁ ବୁଝିବାରେ ବଙ୍ଗଦେଶର ଲୋକଙ୍କର ବିଶେଷ ଅସୁବିଧା ନଥିଲା (କାରଣ, ସେତେବେଳେ ଓଡ଼ିଆ ଓ ବଙ୍ଗଭାଷା ମଧ୍ୟରେ ପାର୍ଥକ୍ୟ କମ୍ ଥିଲା) । ଫଳତଃ ବଙ୍ଗଲିପିରେ ସାରଳା-ମହାଭାରତର ନକଲ ପ୍ରସ୍ତୁତ ହେଉଥିଲା । ବଙ୍ଗୀୟ ଅକ୍ଷରରେ ଲିଖିତ ସାରଳା-

ମହାଭାରତର ବିରାଟପର୍ବ ବଙ୍ଗସାହିତ୍ୟ ପରିଷଦର ଗ୍ରନ୍ଥାଗାରରେ ରହିଛି । ମେଦିନୀପୁର ଅଞ୍ଚଳରେ ବଙ୍ଗୀୟ ଅକ୍ଷରରେ ମୁଦ୍ରିତ ସାରଳା-ମହାଭାରତର ପ୍ରସାର ଥିଲା । କେହି କେହି ଲେଖିଛନ୍ତି ଯେ ସାରଳା-ମହାଭାରତର ଅନୁବାଦ ତେଲୁଗୁ ଭାଷାରେ ହୋଇଥିଲା (ତେଲୁଗୁ ଅନୁବାଦର ସନ୍ଧାନ ମୁଁ ପାଇପାରିନାହିଁ) । ସିଦ୍ଧେଶ୍ୱର ଦାସ ବିରଚିତ ବିଚିତ୍ର ରାମାୟଣର ତେଲୁଗୁ ଅନୁବାଦ ଗଦ୍ୟ, ପଦ୍ୟ ଓ ଚମ୍ପୂ ରୂପରେ ଖୁବ୍ ବ୍ୟାପକ ଭାବରେ ରହିଥିବା ବିଷୟ ଇତିପୂର୍ବେ ଆଲୋଚିତ ହୋଇଛି (ଅଷ୍ଟମ ଅଧ୍ୟାୟରେ) ।

ବଙ୍ଗୀୟ କବି କାଶୀରାମ ଦାସ ଖ୍ରୀ. ୧୭ ଶତାବ୍ଦୀର ଆରମ୍ଭରେ ମହାଭାରତର ପ୍ରଥମ ଚାରିପର୍ବ ରଚନା କରିଥିଲେ, ଯାହାକୁ ଅନ୍ୟମାନେ ସେ ଶତାବ୍ଦୀର ଶେଷ ସୁଦ୍ଧା ପୂରଣ କରିଥିଲେ । ସାରଳା-ମହାଭାରତର ଚରିତର ଅଭିନବତା କାଶୀରାମ ଦାସ ଓ ତାଙ୍କ ପରବର୍ତ୍ତୀ କବିମାନଙ୍କୁ ମୁଗ୍ଧ କରିନଥିଲେ ତତ୍ରତ୍ୟ ଅନେକ ଅଭିନବ ଆଖ୍ୟାନକୁ ସେମାନେ ନିଜର କରିନଥାନ୍ତେ । ପଣ୍ଡିତ ଶ୍ରୀ.ଗୋପୀନାଥ ନନ୍ଦ ଶର୍ମା ତାଙ୍କର ''ଶ୍ରୀଭାରତ ଦର୍ପଣ'' ଗ୍ରନ୍ଥରେ (ଓ ତାଙ୍କୁ ଅନୁସରଣ କରି ଶ୍ରୀ ସୁରେନ୍ଦ୍ର ମହାନ୍ତି ତାଙ୍କର ଓଡ଼ିଆ ସାହିତ୍ୟର ଆଦିପର୍ବ ଗ୍ରନ୍ଥରେ) ବଙ୍ଗୀୟ ମହାଭାରତରେ ବର୍ଣ୍ଣିତ (କ) ଜରାସନ୍ଧ ବଧବେଳେ କୃଷ୍ଣ ଗୋଟିଏ ବସ୍ତ୍ରକୁ ଚିରି ଏହିପରି ଚିରିଲେ ଜରାସନ୍ଧ ମରିବ ବୋଲି ଭୀମଙ୍କୁ ଚେତାଇ ଦେବା ଆଖ୍ୟାନ, (ଖ) ପାଣ୍ଡବମାନେ ନିଜ ନିଜର ଗୋପନ ଅଭିଳାଷ ପ୍ରକଟ କରି ଅଦିନରେ ଆମ୍ବ ଫଳାଇବା ଆଖ୍ୟାନ, (ଗ) ଭୀମପତ୍ନୀ ହିଡ଼ିମ୍ବା ଓ ଦ୍ରୌପଦୀ ମଧ୍ୟରେ ସାପତ୍ନ୍ୟ ଗାଳି ଦିଆଦେଇ ଆଖ୍ୟାନ ଓ ଅନ୍ୟ କେତେ ଆଖ୍ୟାନ ମୂଳତଃ ସାରଳାଦାସଙ୍କ କଳ୍ପନାପ୍ରସୂତ ଥିବା ଦର୍ଶାଇଛନ୍ତି ।

ଆଦିକବିଙ୍କ ଆଦିସମୀକ୍ଷକ ପଣ୍ଡିତ ନନ୍ଦ ଶର୍ମା ସଂସ୍କୃତ ଓ ଓଡ଼ିଆ ମହାଭାରତର ବିଶଦ ତୁଳନାତ୍ମକ ବିଚାର ପୂର୍ବକ ସାରଳାଦାସଙ୍କ ସୃଷ୍ଟିର ମୂଲ୍ୟାଙ୍କନ କରି କହିଛନ୍ତି– (୧) ମୂଳଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଆମୂଳାନ୍ତ ଘଟନାଂଶମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ୍ତ ରଖି ଅସାମାନ୍ୟ କଳ୍ପନାଶକ୍ତି ଓ ବିଷୟ ସଂବିଧାନ ପ୍ରବୀଣତାର ବଳରେ ବଳୀୟାନ ହୋଇ ଅଙ୍ଗୀକରଣ, ବିସ୍ତୃତୀକରଣ ଅନୁକ୍ତପ୍ରକ୍ଷେପ ଓ ଉକ୍ତ ନିକ୍ଷେପ୍ତାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖିଯାଇ ଅଛନ୍ତି (ପୃ୧୦), (୨) ସାରଳା ମହାଭାରତରେ ''ମୂଳର ତତ୍ତ୍ୱଜ୍ଞାନ ପ୍ରତିପାଦକ ବିଷୟମାନ ଆଦୌ ନାହିଁ କିହଲେ ଚଳେ'' (ପୃ.୧୧) ଓ (୩) ''ମୂଳ ମହାଭାରତରେ କଥିତ ନାହିଁ ସତ୍ୟ, ମାତ୍ର ଏତାବତୀୟ ଘଟଣାମାନଙ୍କରୁ କେତେକ ଅନ୍ୟାନ୍ୟ ପୁରାଣାଦିରେ ସମୁଦିତ ବୋଲି ପ୍ରତୀତି ଜନ୍ମେ (ପୃ.୭୦) । ନନ୍ଦ ମହାଶୟ ସାରଳା-ମହାଭାରତର ଅଭିନବ ଆଖ୍ୟାନଗୁଡ଼ିକର ସୂଚନା ଦେଇଛନ୍ତି । ଏଥିରୁ ପାଠକେ ସାରଳାଦାସଙ୍କ ସୃଷ୍ଟିର ଅପୂର୍ବତା ବିଷୟରେ ଅବହିତ ହୋଇପାରିବେ । ମୋ ବିଚାରରେ

ତାହା ଯଥେଷ୍ଟ । ସାରଳାଦାସଙ୍କର ସବୁଗୁଡ଼ିକ ଅଭିନବ ଆଖ୍ୟାନର ପୂର୍ଣ୍ଣାଙ୍ଗ ତାଲିକା କଲେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ହେବ । ଅଳମତିବିସ୍ତରେଣ ।

ସାରଳାଦାସଙ୍କ ଅଭିନବ ଆଖ୍ୟାନଗୁଡ଼ିକ ମଧ୍ୟରୁ ଅନେକ ଓଡ଼ିଶାରେ ତ ଲୋକପ୍ରିୟତା ଅର୍ଜନ କରିଛି, ତାହା ବଙ୍ଗ ଓ ତ୍ରୈଲଙ୍ଗ ଦେଶକୁ ମଧ ପ୍ରସାରିତ ହୋଇଛି । ସାରଳାଦାସ ଭୀମଙ୍କୁ ଉଦରପରାୟଣ, ଚିରରିରଂସୁ ଓ ସଂଗ୍ରାମରେ ଚିର ଅତୃପ୍ତ ଭାବରେ ଚିତ୍ରଣ କରିଛନ୍ତି । ଭୀମ ଚରିତ୍ରର ଏହି ବିଶେଷତା ସମଗ୍ର ପୂର୍ବ ଭାରତରେ ଲୋକ ସମାଦର ପାଇଛି । ସାରଳାଦାସଙ୍କ କଳ୍ପନାର ଭୀମ ସର୍ବଦା ପ୍ରଥମଯୁଦ୍ଧରେ ହାରନ୍ତି ।

ସାରଳାଦାସ ଯେଉଁ ଅଭିନବ ଚରିତ୍ରଗୁଡ଼ିକ ସୃଷ୍ଟି କରିଛନ୍ତି ସେସବୁ ମଧ୍ୟରେ ଜାରା ମୁଖ୍ୟ । ଜାରାର ଚରିତ ମହାଭାରତର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବିଭିନ୍ନ ପର୍ବରେ ଗୁରୁତ୍ୱର ସହିତ ସ୍ଥାନ ପାଇଛି । ସେହି ଜାରା ହିଁ ହୋଇଛି ଶେଷରେ ପୁରୀରେ ଜଗନ୍ନାଥ-ଉପାସନାର ପ୍ରବର୍ତ୍ତକ; ଜଗନ୍ନାଥ ମୂଳରେ ଶବର ଉପାସିତ ଥିବା ଆଖ୍ୟାନର ଜନକ ସାରଳାଦାସ । ତାଙ୍କ ଚରିତକୁ ଅନୁସରଣ କରି ବିଖ୍ୟାତ କବି ଜଗନ୍ନାଥଦାସ **ଦାରୁବ୍ରହ୍ମଗୀତା** ରଚନା କରିଥିଲେ । ପରେ ସ୍କନ୍ଦପୁରାଣ ଉତ୍କଳଖଣ୍ଡ ଓ ଦେଉଳତୋଳା ଆଦିରେ ଏହି ଆଖ୍ୟାନରେ କ୍ରମିକ ପରିବର୍ତ୍ତନ ଘଟିଥିଲେ ସୁଦ୍ଧା ଜଗନ୍ନାଥ ମୂଳତଃ ଶବରପୂଜିତ ଥିବା ବିଶ୍ୱାସଟି ଓଡ଼ିଶାରେ ସର୍ବଜନଗ୍ରାହ୍ୟ ହୋଇରହିଛି ।

କର୍ଣ୍ଣର ଦାତାପଣର ପରୀକ୍ଷା ନେବାପାଇଁ ଭଗବାନ ଅତିଥି ରୂପରେ କର୍ଣ୍ଣଗୃହରେ ଉପସ୍ଥିତ ହୋଇ କର୍ଣ୍ଣର ୧୨ ବର୍ଷ ବୟସର ଏକମାତ୍ର ପୁଅ ବିଶିକେସନର ମାଂସ ଖାଇବାକୁ ଇଚ୍ଛା ବ୍ୟକ୍ତ କରିଥିଲେ ଓ କର୍ଣ୍ଣ ଅତିଥିଙ୍କୁ ନିରାଶ ନ କରିବା ପାଇଁ ନିଜେ ପୁଅକୁ ହାଣି ତାହାର ମାଂସ ନିଜ ପତ୍ନୀ ଦ୍ୱାରା ରନ୍ଧାଇ ପରିବେଷଣ କରିଥିବା ଓ ଭଗବାନ କର୍ଣ୍ଣର ଦାତାପଣର ପରାକାଷ୍ଠାରେ ସନ୍ତୁଷ୍ଟ ହୋଇ ବିଶିକେସନକୁ ଜୀଆଇ ଥିବା ଆଖ୍ୟାନ ସାରଳାଦାସ ବର୍ଣ୍ଣନା କରିଛନ୍ତି (ବନ ୧/୨୪୭) । ଆଖ୍ୟାନଟି ଓଡ଼ିଶାରେ ସୁପ୍ରଚାରିତ । କବି କେଶବ ଦାସ ଏହି ଆଖ୍ୟାନକୁ ନେଇ ଓଡ଼ିଆ ପଦ୍ୟକାରରେ **'ବିଶିକେସନ ବୋଲି'** ରଚନା କରିଛନ୍ତି (ସମୟ ଅନ୍ଦାଜ ୧୮ଶ ଶତାବ୍ଦୀ), ଦାର୍ଢ୍ୟତାଭକ୍ତି ପ୍ରଣେତା ରାମଦାସ ତାଙ୍କ ଗ୍ରନ୍ଥରେ ମାତ୍ର ତିନୋଟି ପୌରାଣିକ ଚରିତ ଦେଇଛନ୍ତି । ଏହି ପୌରାଣିକ ଚରିତ ଭାବରେ ସେ **କର୍ଣ୍ଣରାଜା** ଚରିତ ନାମରେ (୩ୟ ଅଧ୍ୟାୟରେ) ଏହି ଚରିତକୁ ସ୍ଥାନ ଦେଇଛନ୍ତି । ଆଖ୍ୟାନଟି ଦାକ୍ଷିଣାତ୍ୟରେ ଭିନ୍ନ ରୂପରେ ପ୍ରଚାରିତ । ଆନ୍ଧ୍ରପ୍ରଦେଶର ଲେପାକ୍ଷୀର ବୀରଭଦ୍ର ମନ୍ଦିର ଗାତ୍ରରେ ଶ୍ରୀୟଳ ଉପାଖ୍ୟାନ ଖୋଦିତ ହୋଇଛି । ଶ୍ରୀୟଳର ପିତାମାତା ନିଷ୍ପାପର ଶିବ ଭକ୍ତ ଓ ଅତିଥି ସେବାପରାୟଣ ଥିଲେ । ଶିବ ତାଙ୍କ ଅତିଥିସେବାରେ ନିଷ୍ଠା ପରୀକ୍ଷା କରିବା ଉଦ୍ଦେଶ୍ୟରେ ଜଣେ ବୃଦ୍ଧ ଯୋଗୀ ବେଶରେ ତାଙ୍କ ଘରେ ଅତିଥି ହେଲେ ଓ ଗୃହସ୍ୱାମୀଙ୍କ ଏକମାତ୍ର ପୁତ୍ର ଶ୍ରୀୟଳକୁ ମାରି ତାହାର

ମାଂସ ଖାଇବାକୁ ଅଭିଳାଷ ବ୍ୟକ୍ତ କଲେ । ଅତିଥିଙ୍କୁ ସନ୍ତୁଷ୍ଟ କରିବା ପାଇଁ ପିତାମାତାଙ୍କ ପୁଅକୁ ମାରି ମାଂସ ରାନ୍ଧି ଅତିଥିଙ୍କୁ ପରଷିଲେ । ଯୋଗୀ ଖାଇବା ପୂର୍ବରୁ ଶ୍ରୀୟଳକୁ ଡକାଇବାରୁ ଶ୍ରୀୟଳ ଦାଣ୍ଡରୁ ଘରକୁ ଦୌଡ଼ି ଆସିଲା । ତେଲୁଗୁ ହରବିଳାସ ଗ୍ରନ୍ଥରେ ଏହି ଆଖ୍ୟାନଟି ସାମାନ୍ୟ ପରିବର୍ତ୍ତିତ ରୂପରେ ସ୍ଥାନ ପାଇଛି । ସେଠାରେ ଅତିଥି ଜଣେ ଯୋଗୀ ନହୋଇ ବୁଢ଼ାବୁଢ଼ୀ ଦୁଇଜଣ । କାଞ୍ଚୀନଗରୀର ଶିବଭକ୍ତ ଚିରତଣ୍ଡଙ୍କ ଦାନଶୀଳତାର ପରୀକ୍ଷା ନେବାପାଇଁ ଈଶ୍ୱର-ପାର୍ବତୀ ବୁଢ଼ାବୁଢ଼ୀ ବେଶରେ ଆସି ତାଙ୍କର ଏକମାତ୍ର ପୁତ୍ର ସିରିୟାଲ (ଶ୍ରୀୟଳ)ଙ୍କ ମାଂସ ଖାଇବାକୁ ଚାହିଁଥିଲେ । ମାତାପିତା ସିରିୟାଲକୁ ମାରି ତା ମାଂସ ରାନ୍ଧି ବାଢ଼ିବାପରେ ଶିବ-ପାର୍ବତୀ ତାକୁ ପୁନର୍ଜୀବିତ କରାଇ ନିଜର ପରିଚୟ ଦେଇ ସିରିୟାଲ୍ ତାଙ୍କର ପୁତ୍ର କୁମାରସ୍ୱାମୀ (କାର୍ତ୍ତିକେୟ)ଙ୍କ ଅବତାର ବୋଲି ଜଣାଇଥିଲେ । ଅନୁମିତ ହୁଏ ସାରଳାଦାସ ଆଖ୍ୟାନଟିକୁ ଦାକ୍ଷିଣାତ୍ୟରୁ ଆଣି ଜଣେ ଦାନୀ ଭାବରେ କର୍ଣ୍ଣଙ୍କର ଖ୍ୟାତିଥିବାରୁ ତାଙ୍କଠାରେ ଯୋଖିଥିଲେ । ସାରଳାଦାସଙ୍କ ସମୟରେ ଅଧିକାଂଶ ତେଲୁଗୁଭାଷୀ ଅଞ୍ଚଳ ଓଡ଼ିଶାର ଅନ୍ତର୍ଗତଥିବାରୁ ସେ ଆଖ୍ୟାନଟିକୁ ଶୁଣିବା ସମ୍ଭବ ହୋଇଥିଲା । ସାରଳାଦାସ ତାଙ୍କ ମହାଭାରତର ମଧ୍ୟପର୍ବ ଓ ବନପର୍ବରେ ବିଭିନ୍ନ ହରଣାଖ୍ୟ ଚରିତ୍ର ବର୍ଣ୍ଣିଛନ୍ତି— ସୁଭଦ୍ରା ହରଣ, ସୁଗନ୍ଧିକା ହରଣ, ନୀଳେନ୍ଦ୍ରୀ ହରଣ, ଚନ୍ଦ୍ରାବତୀ ହରଣ, ଉଷାହରଣ, ସୁରେଖାହରଣ, ଶୋଭାବତୀ ହରଣ ଓ ସଚଳା ହରଣ । ହରଣ ଚରିତ ମଧ୍ୟରୁ ଅଧିକାଂଶ ସାରଳାଦାସଙ୍କ କଳ୍ପିତ । ଏଥିରେ ଶୃଙ୍ଗାରରସ ସହିତ ବୀରରସର ସଂଯୋଗ ଥିବାରୁ ସାଧାରଣ ଜନତାଙ୍କ ଉପଭୋଗ୍ୟ ହେବା ଯୋଗୁଁ ଗଞ୍ଜାମର ଦାସକାଠିଆ ଦଳମାନେ ବିଭିନ୍ନ ହରଣ ପରିବେଷଣ କରନ୍ତି । ଦାସକାଠିଆ ଦଳମାନେ ମୋଟ ୧୮ଟି ହରଣ ଥିବା କଥା କହନ୍ତି । ସଂଖ୍ୟାଟି ମହାଭାରତ ପାଇଁ ସ୍ୱତନ୍ତ୍ର । ସାରଳା-ମହାଭାରତରେ ଏତେ ସଂଖ୍ୟକ ହରଣ ନଥିଲେ ହେଁ ଅନେକ ଅର୍ବାଚୀନ କବି ସାରଳାଦାସଙ୍କ ନାମରେ ଭଣିତା ଦେଇ କିଛି ଅଭିନବ ହରଣ ରଚନା କରିଛନ୍ତି, ଯଥା— **ଚନ୍ଦ୍ରକଳା ହରଣ** । ଏସବୁ ମହାଭାରତର ଅଂଗୀଭୂତ ହେବା ଢଙ୍ଗରେ ରଚିତ ହେଲେ ହେଁ ସାରଳା-ମହାଭାରତର ତାଳପତ୍ର ପାଣ୍ଡୁଲିପିଭୁକ୍ତ ନୁହନ୍ତି । କେବଳ ଅନୁକାରୀର ସୃଷ୍ଟି, ସାରଳାଦାସଙ୍କ ହରଣ ଚରିତ ଛାଞ୍ଚରେ ଢଳା । ''ଚନ୍ଦ୍ରାବତୀ'' ହରଣ ଯହୁଁ ହୋଇଲା ଶେଷ । ଚନ୍ଦ୍ରକଳା ହରଣ ଶୁଣିମା ଦିବ୍ୟରସ ।''

ସାରଳା ମହାଭାରତରେ ବେଶ୍ୟାସକ୍ତ ବ୍ରାହ୍ମଣ କୌଶିକ ଓ ତାହାର ପତିବ୍ରତା ପତ୍ନୀ ସତ୍ୟାର ଚରିତ ସ୍ଥାନ ପାଇଛି (୨ ବନ ୩୮୩) । ପତ୍ନୀର ସତୀତ୍ୱ ଯୋଗେ ପତିର କିପରି ଜୀବନରକ୍ଷା ହେଲା ଓ ରୋଗମୁକ୍ତି ସମ୍ଭବିଲା ତାହା **'ନ ପାହୁ ରାତି ନମରୁ ପତି'** ନାମକ ନାଟକରେ ରୂପାୟିତ ହୋଇଛି । ଏହାର ମୂଳ ମାର୍କଣ୍ଡେୟ ପୁରାଣରେ କୌଶିକ-ସୁମତି କଥାରେ ରହିଛି ।

ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ଉପାଖ୍ୟାନ ସାରଳା ଦାସଙ୍କ ପ୍ରଚଣ୍ଡ ସାହିତ୍ୟିକ ପ୍ରତିଭାର ତୁଙ୍ଗିମାକୁ ସ୍ପର୍ଶ କରୁଛି । ଏ ସମ୍ପର୍କରେ ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ କହିଛନ୍ତି– ''ସାହିତ୍ୟର ରସୋତ୍ତୀର୍ଣ୍ଣତା ଓ କାବ୍ୟସୌନ୍ଦର୍ଯ୍ୟ ଦୃଷ୍ଟିରୁ କେବଳ ନୁହେଁ, ପରିକଳ୍ପନାର ପ୍ରଚଣ୍ଡତା ଓ ଟ୍ରାଜେଡିର ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ମଧ୍ୟ ସାରଳା (ଦାସ) ଏହି ଉପାଖ୍ୟାନର ବର୍ଣ୍ଣନାରେ ଯେଉଁ କାବ୍ୟସିଦ୍ଧିର ପରିଚୟ ଦେଇଅଛନ୍ତି, ତାହା ଅତୁଳନୀୟ । ଊନବିଂଶ ଶତାବ୍ଦୀର ଶେଷ ପାଦରେ ରାଧାନାଥ ରାୟ ଏହି ପ୍ରସଙ୍ଗ ଅବଲମ୍ବନ କରି **''ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ''** ଶୀର୍ଷକ ଏକ ପଦ୍ୟ ରଚନା କରିଥିଲେ ହେଁ, ସାରଳା (ଦାସ)ଙ୍କ ରଚନାର ଅନନ୍ୟତା ଉଲ୍ଲେଖ କରି ଲେଖିଛନ୍ତି, ''ସମଗ୍ର ଉତ୍କଳ ସାହିତ୍ୟରେ, କେବଳ ଉତ୍କଳସାହିତ୍ୟ କାହିଁକି, ଯେକୌଣସି ସାହିତ୍ୟରେ ଏହା ଅତୁଳନୀୟ ବିବେଚିତ ହେବ ।'' (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ.୨୨୦) ।''

ସାରଳାଦାସଙ୍କ ଅନେକ ଆଖ୍ୟାନ (ଯଥା– ଅଳସୁଆ ମେଳକାଚରିତ) ଅନ୍ୟ ପୁରାଣରୁ, କଥା ପୁସ୍ତକରୁ ଓ ଲୋକକଥାରୁ ସଂଗୃହୀତ । ତେବେ କବି ଉଧାର ଆଣିବା ଆଖ୍ୟାନକୁ ଅବିକଳ ନ ଦେଇ ପରିବର୍ତ୍ତନ କରି ଦେଇଛନ୍ତି । ଭାଗବତୋକ୍ତ ଲକ୍ଷଣା ହରଣ (ଦଶମ ସ୍କନ୍ଧ ୭୩ ଅଧ୍ୟାୟ) ହୋଇଛି ଚନ୍ଦ୍ରାବତୀ ହରଣ । ଅଳସୁଆ ମେଳକା (ଉଦ୍‌ଯୋଗ, ୨୨୫) ଚରିତକୁ କବି ଆଣିଛନ୍ତି 'ଶୁକସପ୍ତତୀ' ନାମକ ସଂସ୍କୃତ କଥାପୁସ୍ତକର ୬ଷ୍ଠ କଥାରୁ । ତାଙ୍କର ବାବନାଭୂତ କଥା (ଉଦ୍‌ଯୋଗ, ୧୬୭) ଏକ ଲୋକକଥା ରୂପରେ ଓଡ଼ିଶାରେ ପ୍ରଚଳିତ । ବନପର୍ବ (ପୃ. ୩୬୧)ରେ ବର୍ଣ୍ଣିତ ନକୁଳର ସତ୍ୟରକ୍ଷା ଚରିତ ଓଡ଼ିଶାରେ ତଥା ପଡ଼ୋଶୀ ତେଲୁଗୁ ଅଞ୍ଚଳରେ ସୁପ୍ରଚଳିତ ବଉଳା ଗାଈ ଚରିତର ରୂପାନ୍ତର । ଏହି ପ୍ରକାରେ ସାରଳାଦାସ ତାଙ୍କ ମହାଭାରତ ମଧ୍ୟରେ ପ୍ରସଙ୍ଗକ୍ରମେ (ବା ଆଖ୍ୟାନ କହିବା ପାଇଁ ପ୍ରସଙ୍ଗ ସୃଷ୍ଟିକରି) ରାମାୟଣ, ବିଭିନ୍ନ ପୁରାଣ, ନାନା ପ୍ରାଚୀନ କଥାପୁସ୍ତକ, ଲୋକକଥା ବା ତୀର୍ଥମାହାତ୍ମ୍ୟରୁ ଆଖ୍ୟାନ ଚୟନ କରି ଭିତ୍ତି କରିଛନ୍ତି ଓ ତାହା ମଧ୍ୟରେ ନିଜ କଳ୍ପନାରୁ ଜାତ ନାନାବିଧ ଅପୂର୍ବ ଚରିତ ପରିବେଷଣ କରିଛନ୍ତି ।

ସାରଳାଦାସଙ୍କ ନିଜସ୍ୱ କଳ୍ପନାପ୍ରସୂତ-ଆଖ୍ୟାନଗୁଡ଼ିକ ତାଙ୍କ ବ୍ୟକ୍ତିଗତ ବିଚାର-କକ୍ଷକୁ ଦେଖିବାର ପ୍ରକୃଷ୍ଟ ଗବାକ୍ଷ । ମୋତେ ତାଙ୍କର ଦୁଇଟି ଆଖ୍ୟାନ ତାଙ୍କର ଅକୁତୋଭୟ ସ୍ୱଭାବର ବିସ୍ମୟକର ପ୍ରକାଶ ଭଳି ପ୍ରତୀତ ହୁଏ । ଗୋଟିଏ ଆଖ୍ୟାନ ଖଲ୍ୟକାର ଜନ୍ମ ବିଷୟକ । ସାରଳାଦାସ ପରଦାରାସକ୍ତିର ନିନ୍ଦା ବହୁ ଆଖ୍ୟାନରେ କରିଛନ୍ତି । ମହାଭାରତର ପ୍ରକୃତ ନାୟକ କୃଷ୍ଣ ପରଦାରା ରାଧା (ନାମାନ୍ତର ଚନ୍ଦ୍ରାବଳୀ) ପ୍ରତି ଆସକ୍ତ । କୃଷ୍ଣଙ୍କୁ ଭତ୍ସିତ କରିବା ଉଦ୍ଦେଶ୍ୟକୁ ସାରଳାଦାସ ଲୁଚାଇ ରଖି ପାରିନଥିଲେ । ସେହି ଉଦ୍ଦେଶ୍ୟରେ ଗୋଟିଏ ବୁଢ଼ୀ କାଳୀ ଦାସୀ 'ସରହସୁନ୍ଦରୀ'କୁ

କୃଷ୍ଣ କାମୋଦ୍‌ବେଗରେ ରାଧା ବୋଲି ଭୁଲ୍‌ରେ ଭାବି ସମ୍ଭୋଗ କରିବା ଓ ସେହି ସମ୍ଭୋଗରୁ କୃଷ୍ଣଙ୍କ ପୁତ୍ର ଭାବେ ଖଲ୍ୟକାର ନାମକ ସିନ୍ଧିକଟା ଚୋର ଜନ୍ମଲାଭ କରିବା ଆଖ୍ୟାନଟି ସାରଳାଦାସଙ୍କ ମନୋବଳର ଦୃଢ଼ତାକୁ ପ୍ରକଟ କରିଛି । ଏହି ସମ୍ଭୋଗ ପରେ କୃଷ୍ଣ ନିଜର ପରଦାରାସକ୍ତିକୁ ଅତି କଠୋର ଭାଷାରେ ନିନ୍ଦା କରିଛନ୍ତି । ଆଖ୍ୟାନଟି କୃଷ୍ଣଙ୍କ ଆତ୍ମନିନ୍ଦା ଓ ଭବିଷ୍ୟତ୍‌ରେ ପରଦାରା ନ କରିବାକୁ ସଂକଳ୍ପରେ ସରିଥିଲେ ଅତି ଶକ୍ତିଶାଳୀ ହୋଇ ପ୍ରଭାବ ପକାଇ ପାରନ୍ତା । କିନ୍ତୁ, କୃଷ୍ଣ ଏହି ଦୁର୍ଘଟନା ପରେ ମଧ୍ୟ ପରଦାରାସକ୍ତ ରହି ପରଦାରାର ଶୟନକକ୍ଷକୁ ସୁଡ଼ଙ୍ଗ ଖୋଳାଇବା କର୍ମରେ ନିଜ ପୁଅକୁ ଖଟାଇ ଆଖ୍ୟାନକୁ ନଷ୍ଟ କରିଛନ୍ତି । ତାଳପତ୍ର ପୋଥିରେ କୁତ୍ସିତରୂପା ଏହି ବୁଢ଼ୀ ଦାସୀର ନାମ 'ସରହସୁନ୍ଦରୀ' । ଏହାର ଅର୍ଥ ରହଃକାଳ ବା ସମ୍ଭୋଗ ବେଳର 'ସୁନ୍ଦରୀ' (ବ୍ୟାଜସ୍ତୁତି) । ସଂପାଦନା ପୂର୍ବେ ମୁଦ୍ରିତ ୧୪ ଅକ୍ଷରୀ ମହାଭାରତରେ ସେ କେଉଁଠି ସରଗସୁନ୍ଦରୀ ତ କେଉଁଠି ସହଜସୁନ୍ଦରୀ । 'ସହଜସୁନ୍ଦରୀ'ର ତାତ୍ପର୍ଯ୍ୟାର୍ଥ ଯେଉଁ ନାରୀର ସୌନ୍ଦର୍ଯ୍ୟ ସହଜାତ, ହୋଇପାରିଥାନ୍ତା । କିନ୍ତୁ ସୁରେନ୍ଦ୍ର ମହାନ୍ତି ଓଡ଼ିଆ ସାହିତ୍ୟର ଆଦିପର୍ବ (ପୃ.୧୭୩)ରେ ସହଜ ଶବ୍ଦକୁ ବୌଦ୍ଧ ସହଜଯାନ ସହିତ ଯୋଡ଼ି ଚର୍ଚ୍ଚା କରିଛନ୍ତି, ଯାହା ପୋଥିର 'ସରହ ସୁନ୍ଦରୀ' ନାମ ଦୃଷ୍ଟିରୁ ମୂଲ୍ୟହୀନ ହୋଇପଡୁଛି । ପରଦାରାସକ୍ତି ସାରଳାଦାସଙ୍କ ପୂର୍ବରୁ ଓ ପରେ ସମାଜର କି ଶୈବ କି ଶାକ୍ତ କି ବୈଷ୍ଣବ କି ବୌଦ୍ଧ ସବୁ ଗୋଷ୍ଠୀରେ ଥିଲା । ସେଥିପାଇଁ କେବଳ ସହଜିଆଙ୍କ ଉପରେ କଷାଘାତ ଦେଲେ ଭେଦଭାବ ପରିସ୍ଫୁଟ ହେବ ।

ସାରଳାଦାସଙ୍କର କଳ୍ପନାଜାତ ଅନ୍ୟ ଏକ ବିସ୍ମୟକର ଚରିତ୍ର ଦୁର୍ଦକ୍ଷ । ତାଙ୍କ କହିବା ଅନୁସାରେ ଧୃତରାଷ୍ଟ୍ର-ଗାନ୍ଧାରୀଙ୍କର ଏକ ଶତ ପୁତ୍ର ଜନ୍ମ ହେବା ପରେ ବ୍ୟାସ ଏମାନେ ସମସ୍ତେ ଦୁଷ୍ଟ ପ୍ରକୃତିର ହେବେ ବୋଲି ଭବିଷ୍ୟତ୍ ବାଣୀ କହିବାରୁ ଗାନ୍ଧାରୀ ଦୁର୍ବାସା ମୁନିଙ୍କୁ ଗୋଟିଏ ଶାନ୍ତପ୍ରକୃତିର ପୁଅ ଦେବା ପାଇଁ ବର ମାଗିଲେ । ଦୁର୍ବାସାଙ୍କ ବର ଫଳରେ ଗାନ୍ଧାରୀଙ୍କର ୧୦୧ତମ ପୁତ୍ର ଭାବେ ଦୁର୍ଦକ୍ଷ ଜନ୍ମଲାଭ କଲା । ''ଯେମନ୍ତ ଧୃତରାଷ୍ଟ୍ରର ଯେକଉତ୍ତର ଶତେ ପୁତ୍ର'' (ଆଦି ୧/୨୪୬) । ମହାଭାରତ ଯୁଦ୍ଧ ବେଳେ ଏହି ଦୁର୍ଦକ୍ଷ କୌରବ ପକ୍ଷରେ ନ ରହି ପାଣ୍ଡବଙ୍କ ଶରଣ ପଶିଲା । ତେଣୁ ତାହାର ୧୦୦ ବଡ଼ ଭାଇଙ୍କୁ ଭୀମ ମାରିଥିଲେ ହେଁ ସେ ରକ୍ଷାପାଇଥିଲା । ଯୁଦ୍ଧ ପରେ ଦୁର୍ଦକ୍ଷ ଓ ପାଣ୍ଡବମାନେ କୃଷ୍ଣଙ୍କ ସହ ଧୃତରାଷ୍ଟ୍ର-ଗାନ୍ଧାରୀଙ୍କ ପାଖକୁ ଯାଇଥିଲେ । ପୁତ୍ରମାନଙ୍କ ମୃତ୍ୟୁ ହେତୁ ମ୍ରିୟମାଣା ଗାନ୍ଧାରୀ ବିଜୟୀ ପାଣ୍ଡବମାନଙ୍କୁ ଥରେ ଦେଖିବା ପାଇଁ ତାଙ୍କ ଅନ୍ଧପଟଳଟିକୁ ଖୋଲିଦେବା ଲାଗି ଯୁଧିଷ୍ଠିରଙ୍କୁ କହିଲେ । ଗାନ୍ଧାରୀଙ୍କ ଦୁରଭିପ୍ରାୟ ସନ୍ଦେହ କରି କୃଷ୍ଣ ଅନ୍ଧପଟଳ ଖୋଲିବାକୁ ଗାନ୍ଧାରୀଙ୍କ ଏକମାତ୍ର ଜୀବିତପୁତ୍ର ଦୁର୍ଦକ୍ଷଙ୍କୁ ପଠାଇଲେ । ଦୁର୍ଦକ୍ଷ ଅନ୍ଧପଟଳ ଖୋଲିବାମାତ୍ରେ ମାତାଙ୍କ ଦୃଷ୍ଟିରେ ପଡ଼ି ମୃତ ହେଲେ ।

ରାମାୟଣର ବିଭୀଷଣ ପରି ଦୁର୍ଦକ୍ଷ ନିଜ ସହୋଦରଙ୍କ ପ୍ରତିପକ୍ଷ ହେଲା । ବିଭୀଷଣ ଯୁଦ୍ଧରୁ ବଞ୍ଚିଯାଇ ରାଜ୍ୟ ଭୋଗ କଲା, ଭାଉଜକୁ ପତ୍ନୀ କଲା । ସାରଳାଦାସଙ୍କ ବିଚାରରେ ଏହା ଧୋକାବାଜିକୁ ପୁରସ୍କାର ସ୍ୱରୂପ ହେଲା । ପୁଅ ଦୁଷ୍ଟ ହେଉ କି ଶିଷ୍ଟ ହେଉ, ମାତାର ଦୃଷ୍ଟିରେ ପୁଅ ପୁଅ ମଧ୍ୟରେ ବିବାଦ ମର୍ମାନ୍ତିକ । ତେଣୁ ସାରଳାଦାସ ଦୁର୍ଦକ୍ଷକୁ ନିଜର ସହୋଦରଙ୍କ ବିରୋଧୀ କରାଇ ଗର୍ଭଧାରିଣୀଙ୍କ ଦୃଷ୍ଟିରେ ମରାଇଛନ୍ତି । ଦୁର୍ଦକ୍ଷ ଆଲୋଚକଙ୍କ ଚର୍ଚ୍ଚାର ବିଷୟ ହୋଇନାହିଁ, ହେବା ଉଚିତ ।

ସାରଳାଦାସଙ୍କ ପରବର୍ତ୍ତୀ ସମୟରେ ଅନେକ କବି ମହାଭାରତ ଚରିତ ପାଇଁ ସଂସ୍କୃତର ଅନୁଗାମୀ ନ ହୋଇ ସାରଳା-ମହାଭାରତର ଅନୁଗାମୀ ହୋଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ପରି ସଂସ୍କୃତଜ୍ଞ କବି ମଧ୍ୟ ସୁଭଦ୍ରା ପରିଣୟ ଚରିତକୁ ସଂସ୍କୃତ ମହାଭାରତ ଅନୁସାରୀ କରିନାହାନ୍ତି ଓ ସେ ବୈଦେହୀଶ ବିଳାସରେ 'କୃପାସିନ୍ଧାଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା, ବୋଲି ଯାହା ଲେଖିଛନ୍ତି ସେଥିର 'କୃପାସିନ୍ଧା' କେବଳ ବଳରାମ ଦାସଙ୍କୁ ନ ବୁଝାଇ ସାରଳାଦାସଙ୍କୁ ମଧ୍ୟ ବୁଝାଉଛି, କାରଣ କୃପାସିନ୍ଧା କୃପାସିନ୍ଧର ବହୁବଚନ ପୁଂଲିଙ୍ଗ ରୂପ ହେବା ସମୀଚୀନ । ଉପେନ୍ଦ୍ରଭଞ୍ଜ ଋଷ୍ୟଶୃଙ୍ଗଙ୍କୁ ଅଙ୍ଗଦେଶକୁ ଅଣାଇବାପାଇଁ ଲୋମପାଦ ପଠାଇଥିବା ବେଶ୍ୟାର ନାମ ରଖିଛନ୍ତି ଜରତା । ସଂସ୍କୃତ ରାମାୟଣାଦି ଗ୍ରନ୍ଥରେ ଏହି ବେଶ୍ୟାର ନାମ ଦିଆଯାଇନାହିଁ । ବିଚିତ୍ର ରାମାୟଣରେ ଏହି ବେଶ୍ୟାର ନାମ ରହିଛି ଜରତାକୋଶା । ହେମଚନ୍ଦ୍ରଙ୍କ ପରିଶିଷ୍ଟ ପର୍ବରେ କୋଶା ଏକ ବେଶ୍ୟାର ନାମ । ସାରଳା ମହାଭାରତରେ ବେଶ୍ୟାର ନାମ ରହିଛି କେବଳ ଜରତା : ''ଜରତା ନାମେଣ ବେଶ୍ୟା ଯେକଇ ପୀନସ୍ତନୀ'' (୨ ବନ ୨୦୬) । ଅନେକ ଓଡ଼ିଆ କବି ସମଗ୍ର ସାରଳା ମହାଭାରତକୁ ସଂକ୍ଷିପ୍ତ ରୂପରେ ବା ବିଭିନ୍ନ ଛନ୍ଦରେ ବା ନବାକ୍ଷରୀ ବୃତ୍ତରେ ପ୍ରକାଶ କରିଛନ୍ତି । ଆନୁମାନିକ ୧୮ଶ ଶତାବ୍ଦୀରେ ଭୀମାଧୀବର ପ୍ରଣୀତ ପ୍ରସିଦ୍ଧ ଛାନ୍ଦ କାବ୍ୟ 'କପଟପାଶା' ସାରଳାଦାସଙ୍କ ବର୍ଣ୍ଣନାର ଅନୁସାରୀ ।

## ୧. ଗୋପୀଦାସ

ଗୋପୀଦାସଙ୍କ 'ଅଷ୍ଟାଦଶ ପର୍ବ' ମୋଟାମୋଟି ଭାବରେ ସାରଳା ମହାଭାରତର ସଂକ୍ଷିପ୍ତ ରୂପ କହିଲେ ଚଳେ । ପର୍ବମାନଙ୍କର ନାମକରଣରେ ସାମାନ୍ୟ ପାର୍ଥକ୍ୟ ଥିବା ସତ୍ତ୍ୱେ ଚରିତ୍ର ସାରଳା-ମହାଭାରତର ଅନୁଗାମୀ । ଗୋପୀଦାସ ଠାଏଁ ଠାଏଁ ସାରଳାଦାସଙ୍କ ଉକ୍ତିକୁ ଅବିକୃତ ରଖିଛନ୍ତି, ଯଥା– 'ଗଙ୍ଗା ବୋଇଲେ ଥିବି ଗାଙ୍ଗି ବୋଇଲେ ଯିବି' । କୃଷ୍ଣ ମହାଭାରତ ଯୁଦ୍ଧର ପରିସମାପ୍ତି ପରେ ତାଙ୍କ ପିତା ଓ ଅନ୍ୟାନ୍ୟଙ୍କୁ ମହାଭାରତ ଚରିତ ଠିକେ ଠିକେ ଶୁଣାଇବା ଭଳି 'ଅଷ୍ଟାଦଶ ପର୍ବ' ରଚିତ ହୋଇଛି । ଏହା ମହାଭାରତର ସଂକ୍ଷିପ୍ତସାର ହେବା ଯୋଗୁଁ ଏହାର ନାମାନ୍ତର ''ଟୀକା ମହାଭାରତ'' ।

ଗୋପୀଦାସଙ୍କ ସ୍ଥାନ କାଳ ସଂପର୍କରେ ତାଙ୍କ ରଚନାରୁ କିଛି ହିଁ ସୂଚନା ମିଳେ ନାହିଁ । କବି ବ୍ରାହ୍ମଣ ଥିବା କଥା ମାତ୍ର ଜଣାଇଛନ୍ତି । କବିଙ୍କର ଭାଷା ଦୃଷ୍ଟିରୁ ତାଙ୍କ ସମୟ ଖ୍ରୀ. ସପ୍ତଦଶ ଶତାବ୍ଦୀ ବୋଲି ଅନୁମାନ କରାଯାଇପାରେ । ଦୁର୍ଗାସ୍ତୁତିର ରଚୟିତା ବିପ୍ର ଗୋପୀଦାସ ଓ ଅଷ୍ଟାଦଶପର୍ବର ପ୍ରଣେତା ଜଣେ ବ୍ୟକ୍ତି ହେବା ସମ୍ଭବ ।

## ୨. ଜଗନ୍ନାଥ ଦାସ

ଜନୈକ ଶ୍ରୀ ଜଗନ୍ନାଥ 'ବିପ୍ରବର' ଶ୍ରୀ ମହାଭାରତ ସୂତ୍ରୋପାଖ୍ୟାନ ନାମରେ ଏକ ଗ୍ରନ୍ଥ ରଚନା କରିଥିଲେ ! ତାଙ୍କର ଏହି ଗ୍ରନ୍ଥଟି ପ୍ରସିଦ୍ଧ ଭାଗବତ ପରି ନବାକ୍ଷରୀ ବୃତ୍ତରେ ରଚିତ କିନ୍ତୁ ଏହାର କବି ନଜିକ, ହଜାର ଆଦି ଯାବନିକ ଶବ୍ଦ ପ୍ରୟୋଗ କରିଥିବାରୁ ସେ ନିଶ୍ଚୟ ଭାଗବତକାର ଜଗନ୍ନାଥ ଦାସ ନୁହନ୍ତି । ତାଙ୍କର ରଚନାଟି କଟକର ସତ୍ୟବାଦୀ ପ୍ରେସ୍‌ରେ ଖ୍ରୀ.୧୯୨୮ରେ 'ମହାଭାରତ' ନାମରେ ପ୍ରକାଶପାଇଛି । କବି ଭାରତକୁ ସଂକ୍ଷେପରେ ଲେଖିବା ଉଦ୍ଦେଶ୍ୟରେ ଏହା ଲେଖିଥିବା କଥା ଜଣାଇଛନ୍ତି—

''କହଇ ବିପ୍ର ଜଗନ୍ନାଥ । ଭାରତ ସୂତ୍ର ଭାଷାକୃତ ।।'' (ଭୀଷ୍ମ ପୃ.୬୯)
''ଭାରତ ଅନେକ ବିସ୍ତାର । କହିଲି ସୂକ୍ଷ୍ମ ଯେ ବିଚାର ।।'' (ଦ୍ରୋଣ ପୃ.୧୩୮)

ଜଗନ୍ନାଥ ଦାସ ସାରଳା-ମହାଭାରତର ଚରିତକୁ ଅନୁସରଣ କରିଥିଲେ ହେଁ କେତେକ ଚରିତ୍ରର ନାମକୁ ବଦଳାଇଛନ୍ତି । ସାରଳା-ମହାଭାରତର ବର୍ଣ୍ଣନା (ଭୀଷ୍ମ, ୧୪୩) ହେଲା—

ଶୁକ୍ର ବୋଲି କରି ଯେ ତାହାର ସନ୍ତତି ।
ପଦ୍ମ ଦ୍ୱୀପରେ ସେ ଅଟଇ ଆଧିପତି ।।
ବଡ଼ାଇ ବିଖ୍ୟାତ ସେ ଶୁକ୍ର ନାମେ ମହାରାଜା ।
ବ୍ରହ୍ମବତୀ ବୋଲି ଯେ ତାହାର ଭାରିଯା ।।
ସତ୍ୟ ହୁଂ ମିଥ୍ୟା ସେ ନ କହଇ ସର୍ବକାଳେ ।
ଚାରିପୁତ୍ର ଉପୁଜିଲେ ତା ଗର୍ଭ ମଣ୍ଡଳେ ।।
ସାର, ସୁର, ସର, ସିର ଯେହି ଚାରିବଳା ।
ପର୍ଶୁରାମ ସାରିକ୍ଷେ ତାହାଙ୍କ ତେଜ କୃଷ୍ଣବର୍ଣ୍ଣ କଳା ।।
ଶ୍ୱେତ ଦ୍ୱୀପ କ୍ରଉଞ୍ଚ ଦ୍ୱୀପ ଶାକଲ୍ୟ ଯେ କୁଶ ଦ୍ୱୀପ ।
ଯେ ଚାରିଦ୍ୱୀପେ ଚାରିଭାଇ ହୋଇଲେକ ନୃପ ।।
ପଦ୍ମ ଦ୍ୱୀପେ ସେ ଯେ ଶୁକ୍ର ମହାରାଜା ।
ଆପଣା ଇଚ୍ଛାୟେ ସେ ପାଳଇ ଜନପ୍ରଜା ।।

ଏହାକୁ ସାମାନ୍ୟ ବଦଳାଇ ଜଗନ୍ନାଥ ଦାସ ଭୀଷ୍ମପର୍ବ (ପୃ.୨୫)ରେ ଲେଖିଛନ୍ତି—

''ପଦ୍ମ ଦ୍ୱୀପରେ ଶୁକ୍ର ରାଜା । ପଦ୍ମଆସନୀ ତା ଭାରିଯା ।।
ଚାରି ଯେ ପୁତ୍ର ସେ ରାଜାର । ନାମ ତା ଶ୍ରୀକର ଶ୍ରୀଧର ।।
ସୁରଥ ଶ୍ରୀପତି ଉତ୍ତମ । ଚାରି ପୁତ୍ରର ଏହି ନାମ ।।
ପ୍ଲକ୍ଷ ଯେ ଦ୍ୱୀପ କୁଶ ଦ୍ୱୀପ । କ୍ରଉଞ୍ଚ ଦ୍ୱୀପ ଶାକ ଦ୍ୱୀପ ।।
ଏ ଚାରି ଦ୍ୱୀପେ ଚାରି ଜାଣେ । ରାଜା ହୋଇଲେ କ୍ଷତ୍ରି ପଣେ ।।
ଆପଣେ ପଦ୍ମ ଦ୍ୱୀପେ ଥାଇ । ଧାର୍ମିକ ପଣେ ଦିନ ନେଇ ।।''

ସେହି ଭୀଷ୍ମପର୍ବରେ ସାରଳାଦାସ ବର୍ଣ୍ଣିଛନ୍ତି (ଭୀଷ୍ମ ୧୪-୪୫)—

''ସେ ଦିନ ନୃପତିର ହବିଷ୍ୟ ପାରଣାର କାଳେ ।
ଅତି ଅନୀତି ହୋଇଲା ପଛିମ ସମୁଦ୍ରର କୂଳେ ।।
ମେରୁ ନାଭିଖଣ୍ଡରେ ମନ୍ଦର ବୋଲି ଗ୍ରାମ ।
ବଇଶ୍ୟାନର ବୋଲି ଯେକ ବଶ୍ୟର ଯେ ନାମ ।।
ସେ ବଇଶ୍ୟାନର ଭାରିଯା ନାମ ଯେ ମାଳତୀ ।
ଅତିଅନ୍ତ ସୁନ୍ଦରୀ ସ୍ୱତୀ ସେ ସ୍ୱାମୀରେ ଭଗତି ।।
ବଇଶ୍ୟାନର ଭାରିଯାର ପାକାଶୁଦ୍ଧି କାଳେ ।
ସ୍ନାନ କରିଗଲା ପଦ୍ମାବତୀ ତୀର୍ଥ ଜଳେ ।।
ବିଶିକେସନ ବୋଲି ଯେକଇ ଶୂଦ୍ର ଜାତି ।
ବଳକ୍କାରେ ଧଇଲା ତାକୁ ପ୍ରଥମ ଘଡ଼ିରାତି ।।

ଜଗନ୍ନାଥ ଦାସ ତାଙ୍କ ଭୀଷ୍ମପର୍ବ (ପୃ/୨୬)ରେ ଏହାକୁ ସାମାନ୍ୟ ବଦଳାଇ ଲେଖିଛନ୍ତି—

କନ୍ୟ ଯେ ପୂର୍ଣ୍ଣିମାର ଦିନ । କରୁଛି ଫଳ ସେ ଭୋଜନ ।।
ପଶ୍ଚିମ ସିନ୍ଧୁର ନଯିକ । ହୋଇଲା ଅନୀତି ଯେ ଏକ ।।
ବଣିଆ ନାମେ ବୈଶ୍ୱାନର । ଭାରିଯା ମାଳାବତୀ ତାର ।।
ପଦ୍ମାତୋଳା ଯେ ନଦୀ ତହୁଁ । ଆସଇ ସ୍ନାନ କରି ତହୁଁ ।।
ବିଷ୍ୱେକସେନ ଶୂଦ୍ରନଷ୍ଟେ । ବଳେଣ ଆକର୍ଷିଲା ବାଟେ ।।

ଜଗନ୍ନାଥ ଦାସଙ୍କ କବିତ୍ୱଶକ୍ତି ଦୁର୍ବଳ, ସେ କେବଳ ସାରଳାଦାସଙ୍କ ପଦାଙ୍କ ଅନୁସରଣ କରିବାକୁଁ ବ୍ୟାକୁଳ, ଠାଏଁ ଠାଏଁ ଅର୍ଥ ନବୁଝି ମଧ । ସାରଳାଦାସଙ୍କ ପଦ ହେଲା—

ବହୁତ ଇନ୍ଦୁରେ ନ ମରଇ ମଞ୍ଜାରୀ ଯେକଇଂ ।।
ବହୁତ ଗାବ ଯେକା ନାଶନ୍ତି କି ଷଣ୍ଢ ।

ମୁହିଁ ଅବା ନ ଜାଣି ବହୁତ କଲି ରୁଣ୍ଡ ।
ଛାଗଳ ପଲ ଜାଣି ହୋଇଲା ମୋର ଥାଠ ।
ଯେକା ମତ୍ତବ୍ୟାଘ୍ର ହୋଇଲା ବିରାଟର ଟାଟ ।।
ହାଥୀ ଉପରେ ଥାଇ ଦେଖିଇ ମୋର ଥାଠ ।
ସେହି ସରୂପେ ମୋହୋର ସଇନି ହୋଇଲେ ଭଗନସ୍ତ । (ଭୀଷ୍ମ, ୨୩୨)

ଏହାକୁ ଜଗନ୍ନାଥ ଦାସ ନିମ୍ନୋକ୍ତ ଭାଷାରେ ପ୍ରକାଶିଛନ୍ତି (ଭୀଷ୍ମ.୪୩)—

ବହୁତ ମୂଷିକ ହୋଇଲେ । ମଞ୍ଜାରୀ ଜିଣନ୍ତି କି ଭଲେ ।।
ନ ଜାଣି ମୁହିଁ କଲି ରୁଣ୍ଡ । ଗାଈପଲଲେ ଗର୍ବେ ଷଣ୍ଢ ।।
ଛାଗଳ ଜାଣି ମୋର ଥାଟ । ବ୍ୟାଘ୍ର ସେ ବିରାଟର ସୁତ ।।
ହସ୍ତୀ ଉପରେ ଦେଖୁଅଛି । ମୋ ସୈନ୍ୟ ବିକଳେ ଭାଙ୍ଗୁଛି ।।

ଠାଏଁ ଠାଏଁ ଜଗନ୍ନାଥ ଦାସ ସାରଳା-ମହାଭାରତର ବହୁ ପଦକୁ ଅତି ସଂକ୍ଷିପ୍ତ ଆକାରରେ ପ୍ରକାଶ କରିଛନ୍ତି । ଠାଏଁ ଠାଏଁ ସାରଳା-ମହାଭାରତର ପଦକୁ ବିଶେଷ ବଦଳାଇ ନାହାନ୍ତି । ସାରଳା-ମହାଭାରତର ପଦ—

ବେଶ୍ୟା ପ୍ରସଙ୍ଗ ହାଦେ ଶିରୀ ନାଶ ଯାଇଂ ।
ତସ୍କର ପ୍ରସଙ୍ଗେ ବଢ଼ିଲେ ଧର୍ମଯଶ ହରଇ ।। (ଭୀଷ୍ମ ୨୩୩)

ସାରଳାଦାସଙ୍କ ଶିରୀ ବେଶ୍ୟାସକ୍ତ ପୁରୁଷର ଶ୍ରୀ । ଜଗନ୍ନାଥ ଦାସ ଶ୍ରୀକୁ ସ୍ତ୍ରୀଭାବରେ ଗ୍ରହଣ କରି ଭ୍ରମରେ ପଡ଼ିଛନ୍ତି—

ବେଶ୍ୟା ପ୍ରସଙ୍ଗେ ସ୍ତିରୀ ନାଶ । ଚୋର ସଙ୍ଗେ ଧର୍ମ ବିନାଶ ।। (ଭୀଷ୍ମ ୪୩)

ଜଗନ୍ନାଥ ଦାସଙ୍କ ଭାଷା ଖ୍ରୀ. ଅଷ୍ଟାଦଶ ଶତାବ୍ଦୀ ପୂର୍ବର ନୁହେଁ । ଏହା ତାଳପତ୍ର ପୋଥି ଆକାରରେ କେଉଁଠାରେ ଥିବା ଜଣାଯାଇନାହିଁ ।

## ୩. ମହେଶ୍ୱର ଦାସ

କବି ମହେଶ୍ୱର ଦାସ (ଲାବଣ୍ୟ ମହାପାତ୍ରଙ୍କ ଜ୍ୟେଷ୍ଠପୁତ୍ର) ସାରଳା-ମହାଭାରତର ଚରିତକୁ ସଂକ୍ଷିପ୍ତ ଆକାରରେ ୧୪ ଅକ୍ଷରୀ ବୃତ୍ତରେ ପ୍ରକାଶ କରି ତାହାର ନାମ ରଖିଛନ୍ତି 'ସଭାବିନୋଦ' । ପୁରାଣ ସଭାର ବିନୋଦ ସଂପାଦନ କବିଙ୍କ ଉଦ୍ଦେଶ୍ୟ । କବି ଜାତିରେ ବ୍ରାହ୍ମଣ ଓ ସେ ପୁରାଣପଣ୍ଡା ଭାବରେ ଜୀବିକାର୍ଜନ କରୁଥିଲେ । କବି ବଳରାମ ଦାସଙ୍କ ଜଗମୋହନ ରାମାୟଣକୁ ମଧ୍ୟ ସଂକ୍ଷିପ୍ତ ଭାବରେ ରଚନା କରି ତାହାର ନାମ ରଖିଛନ୍ତି 'ଟୀକା ରାମାୟଣ' । କବିଙ୍କର ଅନ୍ୟ ଏକ ରଚନା ଲକ୍ଷ୍ମୀ ନାରାୟଣ ବଚନିକା । ସଭାବିନୋଦର ରଚନାକାଳ ଖ୍ରୀ. ୧୭୪୨-୪୩, ମୁଦ୍ରିତ ପୁସ୍ତକଟି ୧୬୦ ପୃଷ୍ଠା ବିଶିଷ୍ଟ ।

## ୪. କେଶବ ଶ୍ରୀଚନ୍ଦନ ପଟ୍ଟନାୟକ

କେଶବ ଶ୍ରୀଚନ୍ଦନ ପଟ୍ଟନାୟକ ଗଞ୍ଜାମର ଆଠଗଡ଼ ରାଜ୍ୟର ଅଧିବାସୀ ଥିଲେ । କବିଙ୍କ କୌଳିକ ସାଂଜ୍ଞା ପୁରୁଷାନୁକ୍ରମେ ପଟ୍ଟନାୟକ ଥିଲେ ହେଁ ସେ ସୂର୍ଯ୍ୟବଂଶୀୟ କ୍ଷତ୍ରିୟ କୁଳୋଦ୍ଭବ ଥିଲେ ଓ ତାଙ୍କ ବୃଦ୍ଧପ୍ରପିତାମହ ନରହରି ଦାସ ଆଠଗଡ଼ର ରାଜଭ୍ରାତା କୁଳଶେଖର ଜଗଦ୍ଦେବଙ୍କ ଝିଅକୁ ବିବାହ କରିଥିଲେ । କବିଙ୍କ ପିତୃପିତାମହାଦି ଆଠଗଡ଼ ରାଜ୍ୟର ବ୍ୟବହାରୀ ଭାବରେ ପ୍ରଭାବଶାଳୀ ଥିଲେ । କବି ମଧ୍ୟ ଶ୍ରୀଚନ୍ଦନ ଉପାଧି ପାଇଥିଲେ ।

କବି ପୁରୁଷୋତ୍ତମ ପଟ୍ଟନାୟକଙ୍କ ପୌତ୍ର ଓ କୃପାସିନ୍ଧୁଙ୍କ ପୁତ୍ର । କବିଙ୍କ ମାତାଙ୍କ ନାମ ଦେବକୀ । କବି ବିଭିନ୍ନ ବୃତ୍ତାଶ୍ରିତ ଛାନ୍ଦ ଆକାରରେ ମହାଭାରତକୁ ପ୍ରକାଶ କରିଥିବାରୁ ଗ୍ରନ୍ଥର ନାମ ରଖିଥିଲେ 'ଛାନ୍ଦ ଭାରତ' । କବିଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀ । କବି ସାଧାରଣ ଭାବରେ ସାରଳା ମହାଭାରତର ଚରିତକୁ ଅନୁସରଣ କରିଥିଲେ । କବିଙ୍କର ସଂସ୍କୃତ ଭାଷାରେ ବିଶେଷ ଦକ୍ଷତା ନଥିଲେ ହେଁ ତାଙ୍କ ପଦାବଳୀ ବଡ଼ ଲଳିତ ଓ ସୁଖବୋଧ୍ୟ ।

'ଛାନ୍ଦ ଭାରତ' ରଚନାର ପୃଷ୍ଠଭୂମି ବିଚିତ୍ର । କବିଙ୍କୁ ମାତ୍ର ୨୨ ବର୍ଷ ହୋଇଥିବାବେଳେ ଜ୍ୟୋତିଷୀ ତାଙ୍କ ଜାତକ କୋଷ୍ଠୀ ଗଣନା କରି ତାଙ୍କୁ କହିଥିଲା ଯେ ସେ ଅପୁତ୍ରିକ ହେବେ । କଳିଙ୍ଗର ତେଲୁଗୁଭାଷୀ ଅଞ୍ଚଳରେ ଗ୍ରନ୍ଥକୁ ଏକତମ ପୁତ୍ର ଭାବରେ ପରଂପରାକ୍ରମେ ଗଣନା କରାଯିବା ପ୍ରଥା ଚଳୁଥିଲା । ତେଣୁ କବି ମହାଭାରତକୁ ଛାନ୍ଦ ଆକାରରେ ରଚନା କରିବା ଆରମ୍ଭ କଲେ । କବି ଆଦ୍ୟପର୍ବ ରଚନା କରିବାବେଳେ ନାନା ବିଘ୍ନ ଦେଖାଦେବାରୁ କର୍ଣ୍ଣାଦି ଦଶପର୍ବ ସାରିଲେ ଓ ପରେ ଆଦ୍ୟ ପର୍ବର ଅବଶିଷ୍ଟାଂଶ ଓ ମଧ୍ୟପର୍ବ ଓ ସଭାପର୍ବ ରଚନା କଲେ । ସେତେବେଳେ ତାଙ୍କର ପୁତ୍ର ପ୍ରାପ୍ତି ହେଲା । ପୁତ୍ରର ନାମ ରଖିଲେ ଗଙ୍ଗାଧର । ପୁତ୍ର ଅପେକ୍ଷା ଗ୍ରନ୍ଥ ଅଧିକ ଯଶ ଦେବ ଭାବି କବି 'ଛାନ୍ଦ ଭାରତ' ରଚନା ସଂପୂର୍ଣ୍ଣ କରିଥିଲେ । କବିଙ୍କ ପୁତ୍ର ଗଙ୍ଗାଧର ମଧ୍ୟ ଜଣେ କବି ଥିଲେ । କବି ଛାନ୍ଦ ଭାରତର ସଭାପର୍ବ ଶେଷକୁ (୪୮ ଛାନ୍ଦରେ) ଜଣାଇଛନ୍ତି—

ଆଦ୍ୟେ ଆଦିପର୍ବ କଲି, ବିଘ୍ନ ପଡ଼ିଲା ଜାଣିଲି,
ମଧ୍ୟ ପର୍ବମାନ ଛାଡ଼ି କର୍ଣ୍ଣ ଆଦି ଦଶ ପର୍ବକୁ ସାରିଲି, ମନେ ଭାଳିଲି ।।୫୩।।
ପୁଣି ମଧ୍ୟ ପର୍ବ ହେଲା, ସଭା ହିଁ ଏବେ ସରିଲା,
ଯେଉଁ ଦିନେ ଗୀତ ଆରମ୍ଭିଲି ମୋ ବୟସ ଦ୍ୱାବିଂଶ ହୋଇଥିଲା, ଚିତ୍ତେ ସ୍ମରିଲା ।।୫୪।।
ମୋର କୋଷ୍ଠି ଦେଖାଇଲି, ସନ୍ତତିହୀନ ଶୁଣିଲି,
ଯେଣୁ ସେ କାଳେ ଏ ଭାରତ ଚରିତ ଛାନ୍ଦ କରି ଆରମ୍ଭିଲି, ମନେ ଭାଳିଲି ।।୫୫।।

ବିଚାରିଲି ଥିଲେ ଗ୍ରନ୍ଥ, ହେବ ଅଂଶ ଥିଲା ବତ,
ନୋହିଲେ ଅବା ଶ୍ରୀକୃଷ୍ଣ କୃପା କଲେ ହୋଇବ କୁଳ ଉଦିତ, ପାଞ୍ଚଲି ଚିତ୍ତ ।।୫୬।।
ମୋ ମନୋରଥ ହେବାରୁ, ମନୋରଥ କଳ୍ପତରୁ,
ସେହି ରୂପେ ଆଦ୍ୟ କର୍ଣ୍ଣ ଆଦି [ଶେଷ] ଦଶ ପର୍ବ ସମ୍ପୂର୍ଣ୍ଣରୁ, ମୋହ ଚିନ୍ତାରୁ ।୫୭।।
ଗଙ୍ଗାଧର ନାମେ ସୁତ, ହୋଇଲା ମୋର ଉଦିତ, × × × ।।୫୮।।
ଦୟା କଲେ ଭଗବାନ, ଆଉ ପଞ୍ଚପର୍ବ ମାନ,
ନିର୍ଭା ହେବ ଆହେ ସନ୍ତଜନ × × × ।।୬୦।।

## ୫. ବ୍ରଜସୁନ୍ଦର ମହାରଥା ପାତ୍ର

କବି ବ୍ରଜସୁନ୍ଦର ମହାରଥା ପାତ୍ର ଗଞ୍ଜାମ ଜିଲାର ଆଠଗଡ଼ ରାଜ୍ୟର ବାଲିଛାଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବ୍ରଜସୁନ୍ଦରଙ୍କ ବୃଦ୍ଧପ୍ରପିତାମହ ତ୍ରିଲୋଚନ ଦାସ ଯାଜପୁରରୁ ଆଠଗଡ଼ ରାଜ୍ୟକୁ ଘୁଞ୍ଚି ଆସିଥିଲେ । କବିଙ୍କ ପ୍ରପିତାମହ ରାମଚନ୍ଦ୍ର ଦାସ, ପିତାମହ ବଳଭଦ୍ର ଦାସ ଓ ପିତା ବନମାଳି ଦାସ ବାଲିଛାଇରେ ରହିଥିଲେ । ବ୍ରଜସୁନ୍ଦର ପ୍ରୌଢ଼ ଅବସ୍ଥାରେ ନନ୍ଦପୁର (ଜୟପୁର) ରାଜା ବିକ୍ରମଦେବ (୧୮୨୫-୬୦)ଙ୍କ ପୃଷ୍ଠପୋଷକତା ସହ ମହାରଥା ପାତ୍ର ପଦ ଲାଭ କରି ରାଇଗଡ଼ରେ ବସବାସ କଲେ । ସେଠାରେ ସେ ବସତି ଗୃହ ସହ ଜମିବାଡ଼ି ରାଜାନୁଗ୍ରହରୁ ପାଇଥିଲେ ।

କବି ସାରଳା-ମହାଭାରତକୁ ନବାକ୍ଷରୀ ବୃତ୍ତରେ ୪୬୪ଟି ଅଧ୍ୟାୟରେ ରଚନା କରିଛନ୍ତି । ଏହାର ପ୍ରତ୍ୟେକ ଅଧ୍ୟାୟରେ ୧୨୦ଟି ଲେଖା ପଦ ରହିଛି । ସେ ସାରଳାଦାସଙ୍କ ପର୍ବକ୍ରମକୁ ଗ୍ରହଣ କରି ଆଦିରୁ ଉଦ୍‌ଯୋଗ ପର୍ବ ରାଜସିକ ଗୁଣଯୁକ୍ତ, ଭୀଷ୍ମରୁ ଗଦା ପର୍ବ ତାମସିକ ଗୁଣଯୁକ୍ତ ଓ ଶେଷ ଛଅପର୍ବ ସାତ୍ତ୍ୱିକ ଗୁଣଯୁକ୍ତ ହେବାରୁ ତାଙ୍କ ଗ୍ରନ୍ଥଟିକୁ **ତ୍ରିଗୁଣ ଭାରତ** ବା ତ୍ରିଗୁଣ ମହାଭାରତ ନାମ ଦେଇଥିଲେ ।

ସେପରି ଆଦି ଉଦଯୋଗ । ପର୍ଯ୍ୟନ୍ତେ ରାଜସ ସମ୍ଭବ ।।
ଭୀଷ୍ମରୁ ଗଦା ପର୍ବ ଯାଏଁ । ପ୍ରଧାନ ତାମସ ଏ ହୋଏ ।।
ତହିଁ ଉତ୍ତାରୁ ଷଡ଼ ପର୍ବ । କେବଳ ସାତ୍ତ୍ୱିକ ଏ ଭାବ ।।
× × ×
ଏଣୁ ଏ ତ୍ରିଗୁଣ ଭାରତ । ବୋଲି ତା ନାମ ହେଲା ଖ୍ୟାତ ।।

କବି ରାଇଗଡ଼ରେ ଥାଇ ଖ୍ରୀ: ୧୮୩୦ ପୂର୍ବରୁ ତ୍ରିଗୁଣ ଭାରତ ରଚନା ଆରମ୍ଭ କରିଥିଲେ । ଖ୍ରୀ: ୧୮୩୧ ବେଳକୁ ସେ ଦ୍ରୋଣ ପର୍ବ ରଚନା କରୁଥିଲେ—

ଶକାବ୍ଦ ଶ୍ରୀ ଶାଳିବାହନ । ସତର ଶତ ଯେ ତେପନ ।।
ଖର ନାମେ ଯେ ସମ୍ବତ୍ସର । ଆଶ୍ୱିନ ଶୁଦ୍ଧ ତ୍ରିଦଶର ।।

ସେହି ସମ୍ବତ୍ସରର ଦୋଳପୂର୍ଣ୍ଣିମା ଦିନ ଏହି ଗ୍ରନ୍ଥର ସ୍ୱର୍ଗାରୋହଣ ପର୍ବର ରଚନା ସମାପ୍ତ ହୋଇଥିଲା । ଏହାର ୧୩ ବର୍ଷ ପରେ ଖ୍ରୀ. ୧୮୪୪ରେ ତ୍ରିଗୁଣ ଭାରତକୁ ସଂଶୋଧନ କରିଥିଲେ ।

ଶ୍ରୀ ନନ୍ଦପୁର ଅଧିପତି । ବିକ୍ରମଦେବ ନରପତି ।
କ୍ରୋଧିତ ନାମ ସଂବତ୍ସର । ଶ୍ରାବଣ ଅଧିକ ମାସର ।।

କ୍ରୋଧୀ ନାମକ ସଂବତ୍ସର ଖ୍ରୀ. ୧୮୪୪-୪୫ରେ ପଡ଼ିଥିଲା ଓ ସେହି ବର୍ଷ ଯୋଡ଼ା ଶ୍ରାବଣ ପଡ଼ିଥିଲା । କବି ନିଜେ ରାଧାକୃଷ୍ଣ ଭକ୍ତ ଥିଲେ ହେଁ ସାରଳା ମହାଭାରତକୁ ନବାକ୍ଷରୀ ବୃତ୍ତରେ ରୂପାନ୍ତରିତ କରିଥିଲେ ।

—

# ଅଷ୍ଟାଦଶ ଅଧ୍ୟାୟ

## ସାରଳା-ମହାଭାରତର ସଂପାଦନାରେ ତ୍ରୁଟି

ଭାରତ ସରକାରଙ୍କର ଆର୍ଥିକ ସାହାଯ୍ୟରେ ଓଡ଼ିଶା ସରକାର ସାରଳା ମହାଭାରତର "ଶୁଦ୍ଧ ସଂସ୍କରଣ" ପ୍ରକାଶ କରିବା ଯୋଜନା କରି ତାହାର ମୁଖ୍ୟ ସଂକଳକ ଦାୟିତ୍ୱ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଦେଲେ । ବହୁ ଆୟାସସାଧ୍ୟ ଏପରି ଗୋଟିଏ କାର୍ଯ୍ୟକୁ ନିଷ୍ପନ୍ନ କରିବା ପାଇଁ କାର୍ଯ୍ୟଧାରାର ସୁବିଚାରିତ ପୂର୍ବନିର୍ଦ୍ଧାରଣ ଓ ଆବଶ୍ୟକ ଆନୁଷ୍ଠାନିକ ସହଯୋଗର ଅଭାବ ମୂଳରୁ ରହିଥିଲା । ଶୁଦ୍ଧ ସଂସ୍କରଣ ବୋଲି ଦାବି କରୁଥିବା ଏହି ଗ୍ରନ୍ଥର ଆଦିପର୍ବରୁ ହିଁ ଅବ୍ୟବସ୍ଥା ଓ ବିଶୃଙ୍ଖଳା ମଧ୍ୟରେ ତାହା ପ୍ରକାଶ ପାଉଥିବା କଥା ସ୍ପଷ୍ଟ ହୋଇଥାଏ ।

ଆଦିପର୍ବର ୧ମ ଖଣ୍ଡର ପ୍ରଥମ ମୁଦ୍ରଣ କାଳ ୧୯୬୫ ବୋଲି ଶିରୋନାମ ପୃଷ୍ଠାର ପଛପଟେ ଲେଖାଅଛି । କିନ୍ତୁ ଆଦିପର୍ବର ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ଏକକାଳୀନ କ୍ରମିକ ପୃଷ୍ଠା ଥାଇ ୧୯୬୩ରେ ମୁଦ୍ରିତ ହୋଇଥିବା କଥା ଆଦିପର୍ବ ଶେଷ ପୃଷ୍ଠା ୧୦୩୬ରେ ଲେଖାଅଛି । ସେହି ପୃଷ୍ଠାରେ ଆଦି ପର୍ବ ଦ୍ୱିତୀୟ ଖଣ୍ଡ ସମାପ୍ତ ବୋଲି ଲେଖାଯିବା ପରେ 'ଆଦିପର୍ବର ପରିଶିଷ୍ଟ' ଭାବରେ ବିଭିନ୍ନ ଶୀର୍ଷକ ତଳେ ୪୨ ପୃଷ୍ଠା ମୁଦ୍ରିତ ହୋଇଛି । ଏହା ସୂଚାଉଛି ଯେ ପାଣ୍ଡୁଲିପି ପ୍ରସ୍ତୁତି ନସରୁଣୁ ତାକୁ ପ୍ରେସ୍‌କୁ ପଠାଯାଉଥିଲା । ବିସ୍ମୟର କଥା ପ୍ରଥମ ମୁଦ୍ରଣ ୧୯୬୫ ବୋଲି ଜଣାଇଦେବା ପରେ ଆଦିପର୍ବ ୧ମ ଖଣ୍ଡରେ ୧୯୬୬ରେ ଲିଖିତ ମୁଖ୍ୟମନ୍ତ୍ରୀଙ୍କ ଶୁଭେଚ୍ଛା ଓ ବିଭାଗୀୟ ଉପମନ୍ତ୍ରୀଙ୍କ ଉପୋଦ୍‌ଘାତ ଓ ୧୯୬୭ରେ ଲିଖିତ ବିଭାଗୀୟ ନିର୍ଦ୍ଦେଶକଙ୍କ ନିବେଦନ ଓ ଭାରପ୍ରାପ୍ତ-ସଂପାଦକ ଗୌରୀକୁମାର ବ୍ରହ୍ମା ତାରିଖ ନଦେଇ ଲେଖିଥିବା 'ଅବତରଣିକା' ସନ୍ନିବିଷ୍ଟ ହୋଇଛି । ଏହାର ଶିରୋନାମପୃଷ୍ଠାରେ ଘୋଷିତ ହୋଇଛି ଯେ ଏହାର ମୁଖ୍ୟ ସଂକଳକ ଓ ସଂଗ୍ରାହକ ପଦ୍ମଶ୍ରୀ ଡକ୍ଟର ୰ଆର୍ତ୍ତବଲ୍ଲଭ ମହାନ୍ତି ଓ ଭାରତପ୍ରାପ୍ତ ସଂପାଦକ ଶ୍ରୀ ଗୌରୀକୁମାର ବ୍ରହ୍ମା । ଏଥିରୁ ଅଧ୍ୟାପକ ମହାନ୍ତି ସାରଳା-ମହାଭାରତର ମୁଖ୍ୟ ସଂକଳକ ଓ ସଂଗ୍ରାହକ ସିନା ସଂପାଦକ ନଥିବା କଥା ପ୍ରକାଶ ପାଉଛି । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ 'ଶୁଭେଚ୍ଛା'ରେ ସେ ସଂପାଦକ ଥିବା କଥା ଲେଖାଅଛି– "ଓଡ଼ିଶାର ସାଧକ ପ୍ରବର ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ହୋଇ ଏହା ପ୍ରକାଶ ଲାଭ କରିଥିବାରୁ ମୁଁ ଗଭୀର ଆନନ୍ଦ ଅନୁଭବ କରୁଅଛି ।"

ଆଦିପର୍ବର ଆରମ୍ଭରେ ଭାରପ୍ରାପ୍ତ ସମ୍ପାଦକ ଏହି ସଂସ୍କରଣର ପ୍ରସ୍ତୁତି ବ୍ୟବସ୍ଥା ସମ୍ପର୍କରେ ଯତ୍‌କିଞ୍ଚିତ୍ ସୂଚନା ତାଙ୍କର କ୍ଷୁଦ୍ର ଅବତରଣିକାରେ ପ୍ରଦାନ କରିଛନ୍ତି । ଅବତରଣିକାଟି ନଥିଲେ ପାଠକମାନେ ପ୍ରସ୍ତୁତି ବିଷୟରେ ଜମା କିଛି ଜାଣିପାରିନଥାନ୍ତେ । ଅବତରଣିକାରୁ ପ୍ରକାଶ ପାଉଛି :—

୧. ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ରାଜ୍ୟ ସରକାରଙ୍କ ଦ୍ୱାରା ଏହାର 'ମୁଖ୍ୟ ସଂକଳକ' ରୂପେ ନିଯୁକ୍ତ ହୋଇଥିଲେ । ଏଥିରୁ ଜଣାଯାଉଛି ତାଙ୍କୁ ବା ଅନ୍ୟ କାହାରିକୁ ସମ୍ପାଦକ ରୂପେ ନିଯୁକ୍ତି ଦିଆଯାଇନଥିଲା । ପୁଣି ସଂକଳକ ରୂପେ ମଧ୍ୟ କେହି ନିଯୁକ୍ତ ହୋଇନଥିଲେ । ତେଣୁ 'ମୁଖ୍ୟ ସଂକଳକ' ପ୍ରକୃତରେ ସଂକଳକ ମାତ୍ର ।

୨. ମୁଖ୍ୟ ସଂକଳକ ୧୯୫୯ର ନଭେମ୍ବର ମାସରୁ କାର୍ଯ୍ୟାରମ୍ଭ କରିଥିଲେ । "ସ୍ୱର୍ଗାରୋହଣ ପର୍ବର ସଂକଳନ ଓ ସଂଶୋଧନ କାର୍ଯ୍ୟ ଶେଷ କରିବା ପରେ ହିଁ ଆର୍ତ୍ତବାବୁ ସ୍ୱର୍ଗାରୋହଣ କଲେ (ଦିବା ୯ ଘଟିକା, ସେପ୍ଟେମ୍ବର ୩୦, ୧୯୬୩) ।" ଆର୍ତ୍ତବାବୁ ଜୀବିତ ଥିବା ସମୟରୁ ହିଁ ପ୍ରୁଫ୍ ସଂଶୋଧନ କାର୍ଯ୍ୟ ଚାଲୁଥିଲା ।

୩. ଆର୍ତ୍ତବାବୁଙ୍କର ପରିକଳ୍ପନା ଅନୁଯାୟୀ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମହାଭାରତର ପୋଥିମାନ ସଂଗ୍ରହ କରାଗଲା । ସର୍ବମୋଟ ପ୍ରାୟ ୨୨ ଖଣ୍ଡ ପୋଥି ସଂଗୃହୀତ ହୋଇଥିଲା । ଏହି ପୋଥିଗୁଡ଼ିକ କେଉଁ କେଉଁ ଅଞ୍ଚଳରୁ ସଂଗୃହୀତ ହୋଇଥିଲା, ସେଗୁଡ଼ିକର ନକଲ ସମୟ କେବେ ଓ ନକଲକାରର ଲିପିର ରୂପ ଓ ବନାନର ରୀତି ସମ୍ପର୍କରେ ଜମାରୁ କିଛି ଜଣାଇ ଦିଆଯାଇନାହିଁ । 'ଆର୍ତ୍ତବାବୁଙ୍କ ପରିକଳ୍ପନା' ବକ୍ତବ୍ୟରୁ ପୋଥି ସଂଗ୍ରହ ପାଇଁ ଅନୁସୃତ ନୀତି କଣ ଥିଲା ଜଣାଯାଉନାହିଁ । ଦକ୍ଷିଣ ଓଡ଼ିଶାରେ ସାରଳା-ମହାଭାରତର ପୋଥିରେ ଭିନ୍ନ ପାଠଥିବା କଥା ଶ୍ୟାମସୁନ୍ଦର ରାଜଗୁରୁଙ୍କ ଆଲୋଚନାରୁ (ପ୍ରବନ୍ଧାବଳୀ ଦ୍ରଷ୍ଟବ୍ୟ) ଓ ଗୋପୀନାଥ ନନ୍ଦଶର୍ମାଙ୍କ ଶ୍ରୀଭାରତ ଦର୍ପଣରୁ ପ୍ରକାଶ ପାଇଥିଲା । ଆର୍ତ୍ତବାବୁଙ୍କ ପରିକଳ୍ପନା ଭିତରେ ଦକ୍ଷିଣ ଓଡ଼ିଶାର ପୋଥି ସ୍ଥାନ ପାଇବା କଥା କିନ୍ତୁ ପାଇନାହିଁ । ଏହା ସଂକଳକଙ୍କର ମନମୁଖିଆ କାରବାର; ମନସ୍ୱିତାର ପରିଚୟ ମିଳୁନାହିଁ । 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ପୁସ୍ତକର ଭୂମିକାରେ ଶ୍ରୀହରେକୃଷ୍ଣ ମହତାବ୍ ଅଧ୍ୟାପକ ମହାନ୍ତିଙ୍କ ଦ୍ୱାରା ସଂକଳିତ ସାରଳା-ମହାଭାରତର ପ୍ରଥମ ତ୍ରୁଟି ଭାବରେ ପୋଥି ସଂଗ୍ରହ କଥା ଲେଖିଛନ୍ତି— "ବିଭିନ୍ନ ଅଞ୍ଚଳରୁ ପୋଥି ବା ମୁଦ୍ରିତ ପୁସ୍ତକ ସଂଗୃହୀତ ହୋଇନାହିଁ । ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଷାର ସାରଳା-ମହାଭାରତର ବିରାଟପର୍ବ ବଙ୍ଗ ସାହିତ୍ୟ ପରିଷଦ ପୁସ୍ତକାଗାରରେ ଅଛି । ମେଦିନୀପୁର ଅଞ୍ଚଳରେ ଓଡ଼ିଆ ସାରଳାଦାସ ମହାଭାରତ ବଙ୍ଗଳା ଅକ୍ଷରରେ ମୁଦ୍ରିତ ହୋଇ ବହୁକାଳ ଚାଲିଥିଲା । ସାରଳାଦାସ ମହାଭାରତର ଅନୁବାଦ ତେଲୁଗୁ ଭାଷାରେ ମଧ୍ୟ ହୋଇଥିଲା । ଏତଦ୍‌ବ୍ୟତୀତ ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରେ ଏ ମହାଭାରତ ପ୍ରଚଳିତ ଥିଲା । ଏସବୁ ସଂଗୃହୀତ ହୋଇ ସଂସ୍କରଣଟି ସମ୍ପାଦିତ ହୋଇଥିଲେ ଭଲ ହୋଇଥାନ୍ତା ।"

୪. ଅବତରଣିକାରେ ଭାରପ୍ରାପ୍ତ ସଂପାଦକ ଲେଖିଛନ୍ତି– ''ବିଭିନ୍ନ ପୋଥିର ପାଠରେ ଅମେଳ ଘଟୁଥିବାର ଲକ୍ଷ୍ୟ କରାଯିବାରୁ ତାଳପତ୍ର ପୋଥିଗୁଡ଼ିକ 'କ' 'ଖ' କ୍ରମରେ ନାମିତ କରାଯାଇ କେଉଁ ପୋଥିରେ କେଉଁ ପ୍ରସଙ୍ଗରେ କେତେ ଧାଡ଼ି ବା କେଉଁ ଅଂଶ ଅଧିକା ରହିଛି, ତାହା ସବୁ ସଂକଳନ କରାଯାଇ ଉପଯୁକ୍ତ ସ୍ଥାନରେ ପାଦଟୀକାରେ ସମାବେଶିତ କରାଗଲା ।'' ଭାରପ୍ରାପ୍ତ ସମ୍ପାଦକ ଆଉ ମଧ୍ୟ ଜଣାଇଛନ୍ତି ଯେ ''ପାଣ୍ଡୁଲିପିଗୁଡ଼ିକୁ ପଢ଼ି ପାଠର ନ୍ୟୂନତା ବା ଆଧିକ୍ୟ ପ୍ରତି ମୁଖ୍ୟ ସଂଗ୍ରାହକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ୧୧ ଜଣ ନିଯୁକ୍ତି ପାଇଥିଲେ ।'' ଏହା ସଂକଳନ ସମ୍ପର୍କରେ ଭ୍ରମପୂର୍ଣ୍ଣ ବିବରଣ ଦେଉଛି । ସମଗ୍ର ଆଦିପର୍ବରେ ଠାଏଁ ସୁଦ୍ଧା 'କ', 'ଖ' ଆଦି ପୋଥିର ଉଲ୍ଲେଖ ନାହିଁ, କେବଳ ପାଦଟୀକାରେ କେତେକ ପାଠାନ୍ତର ଥିବାର ସୂଚନା ଦିଆଯାଇଛି ସିନା ପାଠାନ୍ତର କେଉଁ ପୋଥିର ସେ ସମ୍ପର୍କରେ ଜଣାଇ ଦିଆଯାଇନାହିଁ । ପୋଥିର କ, ଖ ନାମର ବ୍ୟବହାର ପ୍ରଥା ଆରମ୍ଭ ହୋଇଛି ମଧ୍ୟପର୍ବରୁ । ପ୍ରଥମେ ନୀତି ନିର୍ଦ୍ଧାରଣ ନ କରି ପାଠ ପ୍ରସ୍ତୁତ କରିବାରୁ ଏପରି ଅବସ୍ଥା ଘଟିଛି । ଜଣାଯାଉଛି ମୁଖ୍ୟ ସଙ୍କଳକଙ୍କ ସହାୟକ ୧୧ ଜଣ ତାଙ୍କ ଦୃଷ୍ଟିକୁ ପାଠର ଊନାଧିକ୍ୟ ଆଣୁଥିଲେ ଓ ମୁଖ୍ୟ ସଙ୍କଳକ ପାଠାନ୍ତର ଭାବେ ତାହା ଉଲ୍ଲେଖନୀୟ କି ନୁହେଁ ସ୍ଥିର କରୁଥିଲେ । ପାଠାନ୍ତର ଗ୍ରହଣ-ବର୍ଜନର କୌଣସି ନୀତି ଥିଲା କି ନାହିଁ ମୁଖ୍ୟ ସଂକଳକ ହିଁ ଜାଣୁଥିଲେ ।

୫. ଶୁଦ୍ଧ ସଂସ୍କରଣର ସମ୍ପାଦକ ଦାୟିତ୍ୱ କାହାକୁ ଦିଆଯାଇନଥିଲା । ଗୌରୀକୁମାର ବ୍ରହ୍ମା ଭାରପ୍ରାପ୍ତ-ସଂପାଦକ ରହି ଅବତରଣିକା ଲେଖିଥିଲେ । ଆଶ୍ଚର୍ଯ୍ୟର କଥା ଆଦିପର୍ବର ପ୍ରଥମ ଖଣ୍ଡରେ ଶ୍ରୀ ବ୍ରହ୍ମା ଭାରପ୍ରାପ୍ତ ସମ୍ପାଦକ ବୋଲି ଘୋଷିତ ହେଲେ ହେଁ ଆଦିପର୍ବର ଦ୍ୱିତୀୟ ଖଣ୍ଡରୁ ତେଣିକି ସବୁ ପର୍ବରେ ତାଙ୍କୁ ଭାରପ୍ରାପ୍ତ ସମ୍ପାଦକ ଭାବେ ସ୍ଥାନ ଦିଆଗଲା ନାହିଁ । ଯେଉଁଠାରେ ସେ ଭାରପ୍ରାପ୍ତ ସମ୍ପାଦକ ବୋଲି ମୁଦ୍ରିତ ହୋଇ ସାରିଥିଲା ସେଠାରେ କାଗଜ ମଡ଼ାଇ ଜଣାଇ ଦିଆଗଲା ଯେ ଏହାର ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସମ୍ପାଦକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି । ଶ୍ରୀ ବ୍ରହ୍ମା ଭାରପ୍ରାପ୍ତ-ସମ୍ପାଦକ ବୋଲି ବିଭିନ୍ନ ପର୍ବରେ ମୁଦ୍ରିତ ହେବା ପରେ ତାହାକୁ କାଗଜ ପଟି ମଡ଼ାଇ ଅଧ୍ୟାପକ ମହାନ୍ତିଙ୍କୁ ସମ୍ପାଦକ ବୋଲି ଘୋଷଣା କରାଯିବାରୁ ସ୍ପଷ୍ଟ ହେଉଛି ଯେ ତାଙ୍କୁ ମରଣୋତ୍ତର ସମ୍ମାନ ସ୍ୱରୂପ ସମ୍ପାଦକ କରାଯାଇଛି !

ଏପରି ଅବ୍ୟବସ୍ଥା ମଧ୍ୟରେ କେହି ସମ୍ପାଦକ ନଥାଉଣୁ 'ଶୁଦ୍ଧ ସଂସ୍କରଣ'ର ପ୍ରସ୍ତୁତି ପର୍ବ ଆରମ୍ଭ ହେଲା ଓ କାର୍ଯ୍ୟସମ୍ପାଦନର ନୀତି ନିର୍ଦ୍ଧାରିତ ହୋଇନଥିବାରୁ ବିଶୃଙ୍ଖଳା ଲାଗି ରହିଥିଲା । 'ଶୁଦ୍ଧପାଠ' ନିର୍ଣ୍ଣୟ ଓ ପାଠାନ୍ତରର ଗ୍ରହଣ-ବର୍ଜନ କ୍ରିୟା ଏକମାତ୍ର ଆର୍ତ୍ତବାବୁଙ୍କ ମର୍ଜି ଉପରେ ନିର୍ଭର କଲା । ପୋଥିର 'କ', 'ଖ' ନାମକରଣର ପ୍ରୟୋଜନ ଅନୁଭୂତ ହେବା ବେଳକୁ ସମଗ୍ର ଆଦିପର୍ବ ପାଣ୍ଡଲିପି ପ୍ରେସ୍‌କୁ ଚାଲିଗଲାଣି । ପୋଥିର

ସଂଖ୍ୟା ନିର୍ଦ୍ଦିଷ୍ଟ ନଥିଲା । ପାଦଟୀକାର ସୂଚନା ଦେଖିଲେ ଜଣାପଡୁଛି ମଧ୍ୟ ପର୍ବର ପାଠ ନିର୍ଣ୍ଣିତ ହେବା ଆରମ୍ଭ ହେବା ବେଳକୁ ସଂଗୃହୀତ ପୋଥିର ସଂଖ୍ୟା ଥିଲା ୧୦ କି ୧୨, ତାହା ଭିତରୁ 'ଠ' ପୋଥି ସମେତ କେତୋଟି ମୁଦ୍ରିତ ପୁସ୍ତକ ମଧ୍ୟ ଥିଲା । ଏଣେ 'ଶୁଦ୍ଧପାଠ' ନିର୍ଣ୍ଣୟ ପ୍ରକ୍ରିୟା ଚାଲିଥାଏ, ତେଣେ ପୋଥି ସଂଗ୍ରହ ମଧ୍ୟ ଚାଲିଥାଏ । ପଛରେ ସଂଗୃହୀତ ପୋଥିର ପାଠ-ଫାଏଦା ପୂର୍ବରୁ ନିର୍ଣ୍ଣିତ 'ଶୁଦ୍ଧ-ପାଠ' ପାଇଲା ନାହିଁ । ଏପରି ବିଶୃଙ୍ଖଳା ମଧ୍ୟରେ ଅନିର୍ଦ୍ଦିଷ୍ଟ ସଂଖ୍ୟକ ତାଳପତ୍ର ଓ ମୁଦ୍ରିତ ପୋଥିର ଘାଣ୍ଟକୁ ଖାଣ୍ଟି ବୋଲି କହି ପରିବେଷଣ କରାଗଲା ।

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ବୋଧହୁଏ କୌଣସି ତାଳପତ୍ର ପୋଥି ପାଇ ନପାରି, ରାଧାରମଣ ପ୍ରେସର ମୁଦ୍ରିତ ଚଉଦ-ଅକ୍ଷରୀ ପାଠ ଉପରେ ନିର୍ଭର କରି ତାଙ୍କର 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ପ୍ରବନ୍ଧ-ପର୍ଯ୍ୟାୟ ଲେଖିଲେ, ଯଦିବା ସେ ଅବହିତ ଥିଲେ ଯେ ''ପ୍ରକାଶକ ଏଠାରେ ଦାଣ୍ଡିବୃତ୍ତକୁ ଚଉଦ-ଅକ୍ଷରି ବୃତ୍ତରେ ପରିଣତ କରିବାକୁ ଯାଇ ସଂଶୋଧନ ଅସ୍ତ୍ରରେ ଅର୍ଥର ବେକକୁ କାଟି ପକାଇଛନ୍ତି'' (ପୃ. ୪) । ଡଃ. ପାଣିଗ୍ରାହୀ ବିକୃତ ପାଠ ଉପରେ ଭରସା ରଖିଥିବା ଯୋଗୁଁ ପ୍ରତିଶ୍ରୁତି ଦେଇଥିଲେ– ''ଶୁଦ୍ଧ-ସଂସ୍କରଣ ସାହାଯ୍ୟ ନ ନେଇଥିବାରୁ ଏହି ଆଲୋଚନାରେ ଯଦି ଭ୍ରମପ୍ରମାଦ ରହେ ତେବେ ଏହା 'ଶୁଦ୍ଧ-ସଂସ୍କରଣ' ହେବା ମାତ୍ରେ ସଂଶୋଧନ କରାଯିବ ଓ ଭ୍ରମସ୍ୱୀକାର କରାଯିବ'' (ପୃ. ୯୬) । ଶୁଦ୍ଧ ସଂସ୍କରଣ ପାଠାନ୍ତେ କେତେକ ତାଳପତ୍ର ପୋଥିର ପ୍ରାସଙ୍ଗିକ ଅଂଶ ଦେଖିନେବା ପରେ ଡଃ ପାଣିଗ୍ରାହୀଙ୍କ ହୃଦ୍‌ବୋଧ ହେଲା ଯେ ଶୁଦ୍ଧ ସଂସ୍କରଣ ପ୍ରକୃତରେ ଶୁଦ୍ଧ ନୁହେଁ । ସେ ଦେଖାଇଦେଲେ ଯେ ବିରାଟ ପର୍ବର ଦୀର୍ଘ ଭୌଗୋଳିକ ବିବରଣ ଥିବା ଅଂଶକୁ ଉଦ୍ଦେଶ୍ୟମୂଳକ ଭାବରେ ସେଥିରେ ସ୍ଥାନ ଦିଆଯାଇନାହିଁ । ''କୂଟକପଟ ପ୍ରୟୋଗ ଦ୍ୱାରା ତଥାକଥିତ ଶୁଦ୍ଧ-ସଂସ୍କରଣରେ ସାରଳା-ମହାଭାରତର ମୌଳିକ ଲେଖାର ବହୁସ୍ଥାନରେ ଅଙ୍ଗଚ୍ଛେଦ ଓ ଅଙ୍ଗବୃଦ୍ଧି କରାଯାଇଛି'' (ଐତିହାସିକ ଚିତ୍ର, ପୃ.୨୮୧) ।

ଡଃ ପାଣିଗ୍ରାହୀଙ୍କ ବିଶ୍ୱାସ ଜନ୍ମିଚି ଯେ ସାରଳା-ମହାଭାରତର ଅଙ୍ଗଚ୍ଛେଦ ଅଧ୍ୟାପକ ମହାନ୍ତିଙ୍କ ମୃତ୍ୟୁ ପରେ ଅନ୍ୟମାନେ କରିଛନ୍ତି । ସେ ତାଙ୍କର ଆତ୍ମଜୀବନୀ 'ମୋ ସମୟର ଓଡ଼ିଶା'ର ପୃ. ୧୯୯ରେ ଲେଖିଛନ୍ତି– ''ସ୍ୱର୍ଗତ ମହାନ୍ତି ଯେଉଁ ପାଣ୍ଡୁଲିପି ତିଆରି କରିଥିଲେ ତାହା ଅବିକଳ ଭାବରେ ଛାପାହୋଇଛି ବୋଲି ମନେହେଉନାହିଁ । ଏହାର କେତେକ ଗୁରୁତ୍ୱପୂର୍ଣ୍ଣ ଅଂଶ କାଟି ବାଦ୍ କରିଦିଆଯାଇଛି ଏବଂ ଏହାର କେତେକ ଅଂଶ ଏପରି ଖାପଛଡ଼ା ହୋଇଛି ଯେ ସେଗୁଡ଼ିକ ସ୍ୱର୍ଗତ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ହୋଇଥିବ ବୋଲି ମନେହେଉନାହିଁ । ଜଣେ କର୍ମନିଷ୍ଠ ମହାନ୍ ପଣ୍ଡିତ ମୃତ୍ୟୁ ପର୍ଯ୍ୟନ୍ତ ଚେଷ୍ଟା କରି ବହୁ ପଣ୍ଡିତ ଓ ବହୁ ପୋଥି ସାହାଯ୍ୟରେ ସାରଳା ମହାଭାରତର ଯେଉଁ ପାଣ୍ଡୁଲିପି ତିଆରି

କରିଥିଲେ, ତାହାକୁ ନ ଛପାଇ, ମନମୁଖି ପାଣ୍ଡୁଲିପି ତିଆରି, ତାହାକୁ ହିଁ ଛପାଇ ଦିଆଯାଇଛି ।'' ତେବେ ଅଧ୍ୟାପକ ମହାନ୍ତି ପ୍ରସ୍ତୁତ କରିଥିବା ପାଣ୍ଡୁଲିପି ଗଲା କୁଆଡ଼େ ?

ଖ୍ରୀ. ୧୯୭୫ର ବିଷୁବ ମିଳନରେ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରାଚୀବିଦ୍ୟା ଅଧ୍ୟାପକ ଡକ୍ଟର ଜନ୍ ବୋଲ୍‌ଟନ୍ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଏକ ଅଭିନବ ମତ ଉପସ୍ଥାପନ କରିଥିଲେ । ତାଙ୍କର ଅଭିଭାଷଣଟି 'ଝଙ୍କାର'ର ଖ୍ରୀ. ୧୯୭୫ ସଂଖ୍ୟାରେ ପ୍ରକାଶ ପାଇଛି । ସେ କହିଥିଲେ ଯେ ନାଟକ ଯେପରି ବାରମ୍ବାର ଅଭିନୀତ ହେବା ମଧ୍ୟରେ ଅଭିନେତା ଓ ନିର୍ଦ୍ଦେଶକଙ୍କ ଦ୍ୱାରା ରୂପାନ୍ତରିତ ହୋଇ ଲାଗୁଥିଲା ଯାହା ଫଳରେ ସେକସ୍‌ପିଅରଙ୍କ ସର୍ବସମ୍ମତ ସଂସ୍କରଣ ବାହାର କରିବାକୁ ନିଜେ ସେକସ୍‌ପିଅରଙ୍କ ଦୁଃସାହସ ହେବ କି ନାହିଁ ସନ୍ଦେହ, ସେହିପରି ସାରଳାଦାସଙ୍କ ଲେଖାର ଭିନ୍ନ ଭିନ୍ନ ରୂପାନ୍ତର ହୋଇଥିବା ସ୍ୱାଭାବିକ । ''ଆଧୁନିକ ସମାଲୋଚକଙ୍କ ପକ୍ଷରେ ସାରଳା ଦାସଙ୍କ ମହାକାବ୍ୟ ସମ୍ପାଦନା କରିବାର ଚେଷ୍ଟା ଦୁଃସାହସ ଛଡ଼ା ଆଉ କ'ଣ ହୋଇପାରେ ? ସେ ମହାକାବ୍ୟର ଗୋଟିଏ ମାତ୍ର ସର୍ବସମ୍ମତ ସଂସ୍କରଣ ଆଉ ସମ୍ଭବ ନୁହେଁ'' । ବୋଲ୍‌ଟନ୍ ମହାଶୟଙ୍କ ଏହି ମତ ସାରଳାଦାସଙ୍କ ପ୍ରତି ଯେପରି ପ୍ରଯୁଜ୍ୟ ବଳରାମ ଦାସଙ୍କ ଠାରୁ ବଳଦେବ ରଥଙ୍କ ପର୍ଯ୍ୟନ୍ତ ତାଳପତ୍ର ପୋଥିର ନକଲକାରଙ୍କୁ ଆଶ୍ରା କରି ପ୍ରଚାରିତ ସବୁ କବିଙ୍କ ପ୍ରତି ସେହିପରି ପ୍ରଯୁଜ୍ୟ । ଏହି ମତକୁ ଗ୍ରହଣ କରି ଡଃ ପାଣିଗ୍ରାହୀ ଲେଖିଛନ୍ତି—

''କୌଣସି ବା କେତେକ ତାଳପତ୍ର ପୋଥି ଲେଖାରେ ଥିବା ସାରଳା ମହାଭାରତରେ କୌଣସି ବା କେତେକ ପଣ୍ଡିତଙ୍କ ହାତର ସ୍ୱର୍ଣ୍ଣସ୍ପର୍ଶ ବାଜିଗଲେ ଯେ ତାହା ସାରଳାଦାସଙ୍କ ମୌଳିକ ଲେଖା ହୋଇଯିବ, ଏପରି ଧାରଣା ମୋର ମୂଳରୁ ନଥିଲା । ଏ ରାଜ୍ୟରେ ପୋଥିସର୍ବସ୍ୱ ପାଣ୍ଡିତ୍ୟ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରୁଛି । ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ସାରଳା-ମହାଭାରତର ଏହି ଗ୍ରନ୍ଥର ବହୁ ସଂସ୍କରଣ ମଧ୍ୟରୁ ଗୋଟିଏ ସଂସ୍କରଣ ହୋଇ ରହିବ; କିନ୍ତୁ ଏହାକୁ 'ଶୁଦ୍ଧ ସଂସ୍କରଣ' ବୋଲି କୁହାଯାଇ ପାରିବ ନାହିଁ (ଐତିହାସିକ ଚିତ୍ର, ପୃ. ୨୮୪) ।

ଡଃ ପାଣିଗ୍ରାହୀଙ୍କ 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ପୁସ୍ତକର ଭୂମିକା ଲେଖିଛନ୍ତି ଡକ୍ଟର ହରେକୃଷ୍ଣ ମହତାବ୍ । 'ଶୁଦ୍ଧ ସଂସ୍କରଣ' ପ୍ରଚେଷ୍ଟା ସହିତ ସେ ମୂଳରୁ ସଂଶ୍ଳିଷ୍ଟ । ତାଙ୍କର ଏ ବିଷୟରେ ଅଭିମତ ସୁଚିନ୍ତିତ । ସେ ଏହି ଭୂମିକାରେ ଜଣାଇଛନ୍ତି ଯେ ''ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ପୁସ୍ତକର ସମ୍ପାଦନାର ଦାୟିତ୍ୱ ଅର୍ପଣ କଲାବେଳେ ସେ ଜିଦ୍ କରି କହିଥିଲେ ମୋତେ ଭୂମିକା ଲେଖିଦେବାକୁ ଏବଂ ସମ୍ପାଦନାରେ ସାହାଯ୍ୟ କରିବାକୁ । ସମ୍ପାଦନାରେ ସାହାଯ୍ୟ ତ କରିପାରିଲି ନାହିଁ, ଭୂମିକା ମଧ୍ୟ ଲେଖିବାର ସୁଯୋଗ ଘଟିଲା ନାହିଁ । ତେଣୁ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ଆର୍ତ୍ତବଲ୍ଲଭ ସମ୍ପାଦିତ ସାରଳାଦାସ ମହାଭାରତର ଯେଉଁ ତ୍ରୁଟି ରହିଯାଇଛି, ସେଥିପାଇଁ ମୁଁ ମଧ୍ୟ ଦାୟୀ'' ।

''ଆର୍ତ୍ତବାବୁଙ୍କୁ ଦେଇଥିବା ପ୍ରତିଶ୍ରୁତି ମୁଁ ପାଳନ କରିଛି ତାଙ୍କର ସ୍ମୃତିକୁ ମାନସପଟରେ ରଖି । ଭୂମିକା ମଧ୍ୟ ଲେଖିଛି । ଯଥାଶୀଘ୍ର ପ୍ରକାଶିତ ହେବ ।'' ମୁଁ ଡଃ ମହତାବଙ୍କ ଲିଖିତ ଭୂମିକା ଗତ ୨୯ ବର୍ଷ ମଧ୍ୟରେ ପ୍ରକାଶିତ ହେବା ଜାଣେ ନାହିଁ । 'ଅବତରଣିକା' ଅନୁସାରେ ଆର୍ତ୍ତବାବୁଙ୍କୁ ସମ୍ପାଦକ ଭାବରେ ନିଯୁକ୍ତି ଦିଆଯାଇନଥିଲା । ତେଣୁ ସେ ଭୂମିକା ଲେଖିବାକୁ ଇଚ୍ଛା ପ୍ରକାଶ କରିନଥିବା ସମ୍ଭବ । ପ୍ରାଚୀନ ଗ୍ରନ୍ଥର ସମ୍ପାଦନାର ଉପାଦାନ ଚୟନ ଓ ପାଠ ପ୍ରସ୍ତୁତିର ନୀତି ନିୟମ ସମ୍ପର୍କରେ ସମ୍ପାଦକଙ୍କ ବକ୍ତବ୍ୟହିଁ ମୂଲ୍ୟବାନ । ମୁଁ ଶୁଣିଥିଲି 'ଭାରପ୍ରାପ୍ତ ସମ୍ପାଦକ' ଶ୍ରୀ ଗୌରୀକୁମାର ବ୍ରହ୍ମା ମୁଖବନ୍ଧ ଲେଖିବାକୁ ଉଦ୍ୟତ ଥିଲେ । ଆର୍ତ୍ତବଲ୍ଲଭଙ୍କ ପ୍ରିୟ ଶିଷ୍ୟ ଅଧ୍ୟାପକ ବଂଶୀଧର ମହାନ୍ତି ମୁଖବନ୍ଧ ଲେଖିବେ ବୋଲି ମୋତେ କଥାପ୍ରସଙ୍ଗରେ କହୁଥିଲେ । କିନ୍ତୁ ମୋ ମତରେ ସମ୍ପାଦକ ମୁଖବନ୍ଧ ଲେଖିବା ସମୀଚୀନ । ଅନ୍ୟ କିଏ ଲେଖିଲେ ତାହା ସାରଳାଦାସଙ୍କ ସମ୍ପର୍କରେ ଆଲୋଚନା ଗ୍ରନ୍ଥହିଁ ହେବ ।

ଡଃ ମହତାବ୍ ଡଃ ବୋଲ୍‌ଟନ୍‌ଙ୍କ ମତକୁ ଆଂଶିକ ସମର୍ଥନ ଜଣାଇ ଲେଖିଛନ୍ତି— ''ମହାଭାରତ ବା ସେ ସମୟକାର ସାହିତ୍ୟର କୌଣସି ସଂସ୍କରଣକୁ ଲେଖକଙ୍କ ସମ୍ପୂର୍ଣ୍ଣ ଲେଖା ବୋଲି କହିହେବ ନାହିଁ । କାରଣ ମୂଳଲେଖାରୁ ପ୍ରତିଲିପି ଶତ ଶତ ନୁହେଁ, ସହସ୍ର ସହସ୍ର ହସ୍ତ ମଧ୍ୟ ଦେଇ ଆମଠାରେ ପହଞ୍ଚିଛି । xxx ତଥାପି ମୋଟାମୋଟି ଏକ ଶୁଦ୍ଧ ସଂସ୍କରଣ ଯେ ପ୍ରକାଶିତ ହେଲା ଏବଂ ଭବିଷ୍ୟତ ଗବେଷଣା ପାଇଁ ବିଶ୍ୱାସଯୋଗ୍ୟ ଉପାଦାନ ମିଳିଲା, ଏଥିପାଇଁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ତାଙ୍କର ସହାୟକମାନେ ଏବଂ ପ୍ରକାଶକ ଓଡ଼ିଶା ସରକାର ଧନ୍ୟବାଦର ପାତ୍ର ।''

ଏହା ସତ୍ୟ ହୋଇପାରେ ଯେ ଅନେକ ଲେଖନକାର-ପୁରାଣପଣ୍ଡା, ରାତିରେ ପୁରାଣ ଶୁଣା ଦକ୍ଷିଣା ସଂଗ୍ରହ କରିଥାନ୍ତି ଓ ଦିନବେଳେ ତାଳପତ୍ର ପୋଥି ଉତାରିଥା'ନ୍ତି । ଏହା ତାଙ୍କର ବୃତ୍ତି ହୋଇଥିବା ଯୋଗୁଁ ଲେଖାଟି କିପରି ହୋଇଥିଲେ ପୁରାଣସଭାର ଶ୍ରୋତାଙ୍କ ଚିତ୍ତାକର୍ଷକ ହେବ ଓ ତଦ୍ଦ୍ୱାରା ଅଧିକ ଶ୍ରୋତା ସଭାକୁ ଆକୃଷ୍ଟ ହୋଇ ଦକ୍ଷିଣା ଦେବେ ସେହି ଲକ୍ଷ୍ୟରେ ଠିକ୍ ନକଲ ନକରି ଯୋଗବିଯୋଗ କରିଥାନ୍ତି । ପେଟପୋଷ ନାହିଁ ଦୋଷ । ତେଣୁ ନକଲକାର ମୂଳ ଲେଖାକୁ ଠାଏଁ ଠାଏଁ ବଦଳାଇ ଦିଅନ୍ତି, ବଢ଼ାଇ ଦିଅନ୍ତି । ମୁଦ୍ରାଯନ୍ତ୍ରର ପ୍ରବର୍ତ୍ତନ ପର୍ଯ୍ୟନ୍ତ ତାଳପତ୍ର ପୋଥିର ନକଲ ପ୍ରକ୍ରିୟାକୁ ଧରି ସାହିତ୍ୟ ରହିଥିଲା ଓ ପୁରାଣ ସଭାରେ ପରିବେଷିତ ସାହିତ୍ୟ ପୁରାଣପଣ୍ଡା-ନକଲକାରର ହସ୍ତକ୍ଷେପରୁ ମୁକ୍ତ ହେବା ସମ୍ଭବପର ନଥିଲା । ସାରଳାଦାସଙ୍କ ସମୟରୁ ମୁଦ୍ରାଯନ୍ତ୍ରର ପ୍ରଚଳନ ମଧ୍ୟରେ ପ୍ରାୟ ଚାରିଶହ ବର୍ଷର ବ୍ୟବଧାନ । ଓଡ଼ିଶାର ଆର୍ଦ୍ର ବାତାବରଣ ଯୋଗୁଁ ଗୋଟିଏ ତାଳପତ୍ର ପୋଥିର ଆୟୁଷ ୨ ଶହ ବର୍ଷରୁ ଟପିଲେ ବଡ଼ କଥା । ତେଣୁ ହାରାହାରି ଶହେ ବର୍ଷରେ ତାଳପତ୍ର ପୋଥିର ନକଲ ହେଉଥିଲା ବୋଲି ଧରିଲେ ବିଦ୍ୟମାନ ପ୍ରତ୍ୟେକ

ତାଳପତ୍ର ପୋଥି ଅତିକମ୍‌ରେ ଚାରି ସ୍ତରରେ ରୂପାନ୍ତରିତ ହୋଇ ଆମ ପାଖରେ ପହଞ୍ଚିଛି ବୋଲି କୁହାଯାଇପାରେ । ଏହି ପରିସ୍ଥିତିରେ ପ୍ରାଚୀନ ସାହିତ୍ୟର ମୌଳିକ ରୂପର ସନ୍ଧାନ ପାଇଁ କେବଳ ସଂଖ୍ୟାଧିକ ପୋଥିର ପାଠ ଉପରେ ନିର୍ଭର କରିବା ସୁବିଚାର ନୁହେଁ । ବସ୍ତୁର ଗୁଣାଗୁଣ ସହିତ ସଂଖ୍ୟାର କିଛି ସମ୍ପର୍କ ନାହିଁ । ସବୁ ଲେଖନକାର ସମାନ ଭାବରେ ବିଦ୍ୱାନ୍ କି ପୋଖତ ନୁହନ୍ତି । ପୋଥିର ଲେଖନକାରର ସାମର୍ଥ୍ୟର ଆକଳନ, ତାହାର ପ୍ରାଚୀନତା, ପୋଥି ମିଳିବା ସ୍ଥାନର ପ୍ରାଧାନ୍ୟ ଆଦି ବହୁ କଥା ବିଚାର ପରେ ପୋଥିର ମୂଲ୍ୟାଙ୍କନ କରିବାକୁ ପଡ଼ିବ । ତାହା ନ କରି ସବୁ ପୋଥିକୁ ସମାନ ମୂଲ୍ୟ ଦେବା ଯଥାର୍ଥ ବିଚାର ନୁହେଁ । ଉପସ୍ଥିତ କ୍ଷେତ୍ରରେ ଆର୍ତ୍ତବାବୁ ଶୁଦ୍ଧପାଠ ପ୍ରସ୍ତୁତି ପାଇଁ ବ୍ୟକ୍ତିଗତ ମର୍ଜିକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ତାହା ନକରି ସେ ସଂଗୃହୀତ ବିଭିନ୍ନ ପୋଥି ମଧ୍ୟରୁ ଗୋଟିକୁ ସର୍ବୋତ୍ତମ ବୋଲି ଯୁକ୍ତିସିଦ୍ଧ ଭାବରେ ଗ୍ରହଣ ପରେ ତାହାକୁ ଆଧୁନିକ ବନାନ ଓ ଲିପି ପଦ୍ଧତି ଅନୁସାରେ ମୁଦ୍ରିତ କରି ଅନ୍ୟ ପୋଥିର ଗୁରୁତ୍ୱପୂର୍ଣ୍ଣ ପାଠାନ୍ତର ବା ଅଧିକ ପାଠକୁ ପାଦଟୀକାରେ ଛାପିଥିଲେ ସମ୍ପାଦନାଟି ଅଧିକ ସୁସଙ୍ଗତ ହୋଇପାରନ୍ତା ।

## ଅର୍ଥପ୍ରଦାନରେ ଭ୍ରମ

ଆଲୋଚ୍ୟ ସଂସ୍କରଣରେ କେତେକ ପ୍ରାଚୀନ ଶବ୍ଦର ଅର୍ଥ ପାଦଟୀକାରେ ଦିଆଯାଇଛି । ଯେଉଁସବୁ ପ୍ରାଚୀନ ଶବ୍ଦର ଅର୍ଥ ପାଠକ ପୂର୍ବାପର ପ୍ରସଙ୍ଗକୁ ଧରି ଅନୁମାନ କରିପାରନ୍ତା ତାହାର ଅର୍ଥ ନ ଦେଲେ ବି ଚଳିଥା'ନ୍ତା । ସାରଳାଦାସଙ୍କ ଭାଷା ପ୍ରାକୃତର ନିକଟତର ହେବା ଯୋଗୁଁ ସେଥିରେ ପ୍ରାଚୀନ ଶବ୍ଦର ବହୁଳ ବ୍ୟବହାର ଅଛି ଓ ଅଳ୍ପକେତୋଟିର ଅର୍ଥ ହିଁ ଦିଆଯାଇପାରିଛି । ତନ୍ମଧ୍ୟରୁ ଅନେକ ଶବ୍ଦର ଅର୍ଥ ଠିକ୍ ନୁହେଁ । ତଳେ ଅଳ୍ପ କେତୋଟି ଭୁଲ୍ ଅର୍ଥର ସୂଚନା ଦିଆଯାଉଛି ।

ବତିଶ ଗୁଣ (ଆଦି ୧/୩) ଶବ୍ଦର ଅର୍ଥ ଦିଆଯାଇଛି– "ଗୁଣ ଜାତ ସତ୍ ଲକ୍ଷଣ, ୭ ସ୍ଥାନରେ ରକ୍ତିମା, ୬ ରେ ତୁଙ୍ଗତା, ୩ରେ ବିସ୍ତାର, ୩ରେ ଖର୍ବତା, ୩ରେ ଗମ୍ଭୀରତା, ୫ରେ ଦୀର୍ଘତା, ୫ରେ ସୂକ୍ଷ୍ମତା ଅଙ୍ଗବିଶେଷମାନଙ୍କର ।" ଗୁଣ ଅନ୍ତଃସ୍ଥ ମାତ୍ର ଲକ୍ଷଣ ବହିଃସ୍ଥ ବ୍ୟାପାର । ଗୁଣକୁ ଲକ୍ଷଣ ବୋଲି ବୁଝାଇବା ଠିକ୍ ନୁହେଁ । ଓଡ଼ିଆ ଲୋକ- କାହାଣୀରେ ବତିଶଗୁଣେ ରାଜା, ଚଉତିଶି ଗୁଣେ ମନ୍ତ୍ରୀ ବୋଲି କୁହାଯାଇଛି । ଏ ବତିଶ ଗୁଣର ତାଲିକା କେହି କରିନାହାନ୍ତି । ବତିଶ ଲକ୍ଷଣର ଏଠାରେ ପ୍ରଦତ୍ତ ବ୍ୟାଖ୍ୟା ମନଗଢ଼ା ।

ପ୍ରତ୍ୟେକ ପୃଷ୍ଠାର ପାଦଟୀକା ଭାବରେ ଅର୍ଥ ନଦେଇ ସମଗ୍ର ଗ୍ରନ୍ଥର ପ୍ରାଚୀନ ଶବ୍ଦର ଅର୍ଥ ଅକ୍ଷରାନୁକ୍ରମେ ଏକ ପୁସ୍ତିକା ରୂପରେ ଦେଇଥିଲେ ଅନେକ ଭ୍ରମ ରହି ନଥା'ନ୍ତା । ପାଦଟୀକାରେ ଏକା ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ଲେଖାଅଛି । ଯେପରିକି 'ତୋୟା'ର ଅର୍ଥ ଠାଏଁ (ଆଦି ୧/୧୭) ଗଙ୍ଗାଦେବୀ ତ ଅନ୍ୟତ୍ର ନଦୀ (ଆଦି ୧/୮୨) । ତୋୟ ଏକ

ସଂସ୍କୃତ ଶବ୍ଦ, ଯାହାର ଅର୍ଥ ଜଳ, ଏହା ସ୍ତ୍ରୀଲିଙ୍ଗରେ ତୋୟା ଅର୍ଥାତ୍ ଜଳପୂର୍ଣ୍ଣା । ମୁରାଟର ଅର୍ଥ ଠାଏଁ (ଆଦି ୧/୨୬) 'ବିରତ୍ୱ ପ୍ରକାଶ କରି' ତ ଅନ୍ୟତ୍ର (ଆଦି ୧/୫୪) 'ତେଜିୟାନ' । ଏହି ଶବ୍ଦର ଅର୍ଥ ପ୍ରଚଳିତ ଓଡ଼ିଆ ଅଭିଧାନରେ ଥିବା ଯୋଗୁଁ ପାଦଟୀକାରେ ଲେଖିବାର ପ୍ରୟୋଜନ ନଥିଲା । ପଲାଣି ଶବ୍ଦ ଗୋଟିଏ ପୃଷ୍ଠାରେ (ଆଦି୧/୧୬୧) ଦୁଇ ଥର ବ୍ୟବହୃତ ହୋଇଛି ଓ ଦୁଇ ପ୍ରକାରେ ଅର୍ଥ କରାଯାଇଛି– (କ) 'ଯାତ୍ରା ନିମନ୍ତେ ସାଜିବା' ଓ (ଖ) 'ବେଗରେ ଗମନ କରି' । ଦୁଇଟିଯାକ ଅର୍ଥ ଭୁଲ୍ ।

ଅନେକତ୍ର ଅର୍ଥ ଭ୍ରମାତ୍ମକ । ଯଥା– ବିଧ୍ୱଂସ (ଆଦି ୧/୧୯୨)ର ଅର୍ଥ ଦିଆଯାଇଛି "ଶତ୍ରୁଭାବାପନ୍ନ, ବିନାଶଶୀଳ" । ବିନାଶଶୀଳର ଅର୍ଥ ନଶ୍ୱର ହୋଇପାରେ କିନ୍ତୁ ଶତ୍ରୁ ନୁହେଁ । ବିଧ୍ୱଂସର ପ୍ରକୃତ ଅର୍ଥ ବିଦୁ (ପଣ୍ଡିତ)ଙ୍କ ଅଂଶ ଅର୍ଥାତ୍ ବିଦ୍ୱାନ୍ । ଦୁର ଦଛ (ଆଦି ୧/୧୪୬)ର ଅର୍ଥ ଦିଆଯାଇଛି 'ଅତିଶୟ ଦକ୍ଷ' । କିନ୍ତୁ ପ୍ରକୃତ ଅର୍ଥ (ଦୁଃ = ଦୁର୍ + ଦକ୍ଷ) ନିପାରିଲା । ଯାୟେ (ଆଦି ୧/୩୨୪)ର ଅର୍ଥ ଦିଆଯାଇଛି "ଯାତା– ଭାଇଙ୍କର ସ୍ତ୍ରୀ" । ଯାୟେର ଅର୍ଥ ଜାଆମାନେ । ଜାଆ ଯାତା ଶବ୍ଦଜ କିନ୍ତୁ ତାହାର ଅର୍ଥ ଭାଇଙ୍କର **ସ୍ତ୍ରୀ** ନୁହେଁ, ଭାଇଙ୍କର ସ୍ତ୍ରୀ ଭାଉଜ ବା ଭାଇବହୂ କିନ୍ତୁ ଜାଆ ନୁହେଁ । ଅଭିଳାଷ (ଆଦି ୧/୪୦୫)ର ଅର୍ଥ ଦିଆଯାଇଛି "ସ୍ପୃହା, ଅନୁରାଗ, ଲୋଭ" । ପ୍ରାଚୀନ ଓଡ଼ିଆ ଭାଷାରେ ଏହାର ଅର୍ଥ କିନ୍ତୁ ଭୋଗ, ବିଳାସ । ଆହୁଟ (ମଧ ୧/୩୫୨)ର ଅର୍ଥ ଦିଆଯାଇଛି "ଚାରିଆଢ଼େ, ଚକ୍ରାକୃତି ବା ଶଙ୍ଖାକୃତି କ୍ଷେତ୍ର" । ଏହାର ପ୍ରକୃତ ଅର୍ଥ ସାଢ଼େତିନି ("ଆହୁଟ ହାଥ କଳେବର") । ସାରଳାଦାସ ଉତ୍ତାନସାହୀ, ବିବସନସାହୀ, ବ୍ରହ୍ମସାହୀ ଆଦି ଶବ୍ଦ ବ୍ୟବହାର କରିଛନ୍ତି । ଆଲୋଚ୍ୟ ପାଠରେ ସାହୀକୁ 'ଶାୟୀ' ରୂପେ ଗ୍ରହଣ କରି ତାହା ଶାୟୀ (ଅର୍ଥାତ୍ ଶାୟିତ) ଶବ୍ଦଜ ବୋଲି ନିରୂପିତ ହୋଇଛି । କିନ୍ତୁ ଶାୟିତ ଅର୍ଥ ବିବସନସାୟୀ କି ବ୍ରହ୍ମସାୟୀରେ ଖଟିବ ନାହିଁ । ଶବ୍ଦଟି ଆସିଛି ସଂସ୍କୃତ 'ସାଧୀ' ଶବ୍ଦରୁ ଯାହାର ଅର୍ଥ ସାଧନକାରୀ । ଆଦି ୧/୧୯୩ରେ ମଧୁପିଙ୍ଗଳର ଅର୍ଥ ଦିଆଯାଇଛି– "ମଧୁ-ମଦମତ୍ତ, ପିଙ୍ଗଳ - ଯେ ଅସାଧୁ ଓ ବିରକ୍ତିପ୍ରଦ କଥା କହେ ।" ବାସ୍ତବରେ ମଧୁ ବିଶେଷ୍ୟ ପଦ ଯାହାର ଅର୍ଥ ମହୁ ଓ ମଦ୍ୟ, ତାହା ବିଶେଷଣ ମଦମତ୍ତ ନୁହେଁ । ମଧୁପିଙ୍ଗଳର ଅର୍ଥ ମଧୁ ପରି ପିଙ୍ଗଳବର୍ଣ୍ଣ ।

କେତେକ ପଦ ପାଠରେ ନଥିଲେ ହେଁ ପାଦଟୀକାରେ ତାହାର ଅର୍ଥ ପ୍ରଦତ୍ତ ହେବା ସଂପାଦକଙ୍କ ଅନବଧାନତାର ପ୍ରମାଣ ଦିଏ । ଆଦି ୧/୧୭୧ରେ ପାଦଟୀକାରେ 'କାସିକା' ଶବ୍ଦର ଅର୍ଥ ଘଡ଼ି, କଳସ ବୋଲି ଦିଆଯାଇଛି, କିନ୍ତୁ କାସିକା ଶବ୍ଦ ପାଠରେ ନାହିଁ । ସେହିପରି ଆଦି ୧/୩୦୪ରେ 'କୋଥ' ଶବ୍ଦର ଅର୍ଥ ଆମ୍ବଟାକୁଆରେ ଖେଳ ବୋଲି ଲେଖାଅଛି କିନ୍ତୁ 'କୋଥ' ଶବ୍ଦ ପାଠରେ ବ୍ୟବହୃତ ହୋଇନାହିଁ ।

ଆଦି (୧/୫୦)ରେ 'ଭରହର' ଶବ୍ଦର ଅର୍ଥ ଉତ୍କୃଷ୍ଟ ବୋଲି ଲେଖାଅଛି । ଉତ୍କୃଷ୍ଟ ଅର୍ଥରେ ଭରହର ଶବ୍ଦର ପ୍ରୟୋଗ ଅନ୍ୟତ୍ର ନାହିଁ । ସାରଳାଦାସ ଭରହ ଶବ୍ଦଟିକୁ ସଂଗୀତ ଅର୍ଥରେ ପ୍ରୟୋଗ କରିଛନ୍ତି— "ଭରହ ମିଠା ଯେବେ କୋକିଳ ପ୍ରାୟେ ଶୁଭଇ ବାଣୀ" (ସଭା ୨/୪୫୦) । ଭରହ ଶବ୍ଦ ଭରତ (ନାଟ୍ୟଶାସ୍ତ୍ର ପ୍ରଣେତା)ର ଅପଭ୍ରଂଶ । ଏଠାରେ 'ଭରହର'ର ଅର୍ଥ ସଂଗୀତର ହେବା ସମୀଚୀନ । ମୋଟଉପରେ କହିବାକୁ ଗଲେ ପାଦଟୀକାରେ ପ୍ରଦତ୍ତ ଅର୍ଥ ଅନେକତ୍ର ଅବବୋଧର ସହାୟକ ନହୋଇ ବାଧକ ହେଉଛି ।

## ପାଠୋଦ୍ଧାରରେ ତ୍ରୁଟି

ଆଲୋଚ୍ୟ ସଂସ୍କରଣରେ ଅନେକ ଶବ୍ଦର ରୂପ ତ୍ରୁଟିପୂର୍ଣ୍ଣ । ଏହା ଭିତରୁ କେତୋଟି ମୁଦ୍ରଣ-ପ୍ରମାଦ ହୋଇଥାଇପାରେ । ମୂଳ ପୋଥିଗୁଡ଼ିକୁ ପରୀକ୍ଷା କଲେ ବହୁତର ପାଠୋଦ୍ଧାର-ତ୍ରୁଟି ମିଳିପାରେ । ପୋଥି ନଦେଖି ମଧ୍ୟ ପାଠର ଅର୍ଥ ବୁଝିବାକୁ ଉଦ୍ୟମ କଲେ କେତେକ ତ୍ରୁଟିପୂର୍ଣ୍ଣ ପାଠ ନଜରରେ ପଡ଼େ । ନିମ୍ନରେ ଦୃଷ୍ଟାନ୍ତ ରୂପେ ଆଦିପର୍ବର ପ୍ରଥମ ଖଣ୍ଡର ପ୍ରାଥମିକ ପୃଷ୍ଠାଗୁଡ଼ିକର କତିପୟ ତ୍ରୁଟି ଦର୍ଶାଉଛି (ସମ୍ମୁଖସ୍ଥ ବନ୍ଧନୀ ମଧ୍ୟରେ ଅନୁମାନ କରି ଶୁଦ୍ଧପାଠ ଲେଖିଛି) :—

| | |
|---|---|
| ପୃ.୨୯. ଲଗାଇ (ଲାଗଇ) | ପୃ.୩୧. ପଢ଼ାଉ (ପ୍ରତାରୁ) |
| ପୃ.୪୨. ଚିତ୍ରବିଚିତ୍ର (ଚିତ୍ରବିରିଞ୍ଚ) | ପୃ. ୭୦. କାହା କର (କହାକର) |
| ପୃ. ୭୩. ପରମଦାରା (ପରଦାରା) | ପୃ. ୮୬. ପଢ଼ିଲା (ପୀଢ଼ିଲା) |
| ପୃ. ୮୭. ଚଳଇ (ଟଳଇ) | ପୃ. ୯୯. ରୁଦ୍ରଚାରୁ (ରୁଦ୍ରେଶ୍ୱର) |
| ପୃ. ୧୬୫. ଗୁଣ (ଘୁଣ) | ପୃ. ୧୭୦. ପରମାଦେ (ପରସାଦେ) |
| ପୃ. ୧୭୧. ରେତ (ରତ) | ପୃ. ୨୨୯. ନିକଟେ ଶେଷ (ଶେଷ ନିକଟେ) |

ଆଦିପର୍ବ (୨/୭୧୭)ରେ ନିମ୍ନୋକ୍ତ ପାଠ ରହିଛି—

"ଯେକଚକ୍ରା ନଗ୍ରେ ବସଇ ଯେଗାର ସହସ୍ର ନଉ ଷାଠିଏ ଘର ।।

× × ×

ଯେଗାର ସହସ୍ର ନଉ ଷାଠିଏ ଘର ।
ପାଳି ପଡ଼ଇ ତେତିଶ ବରଷ ଦୁଇ ମାସ କୋଡ଼ିଏ ଦିନର ।।"[୨]

ଉଦ୍ଧୃତ ପାଠରେ ଦ୍ୱିବାର 'ନଉ ଷାଠିଏ' ଲେଖାଥିବାରୁ ତ୍ରୁଟି ନିଶ୍ଚୟ ପାଠୋଦ୍ଧାରର । 'ନଉ ଷାଠିଏ' ଅର୍ଥ ହୀନ । ଏହା 'ନ'ଶ ଷାଠିଏ' (୯୬୦) ହେବା କଥା । ୧୧,୯୬୦ ଦିନ ହେଉଛି ୩୩ ବର୍ଷ ୨ ମାସ ୨୦ ଦିନ (ସାବନ ବର୍ଷକ ୩୬୦ ଦିନ ହେବାରୁ) ।

ସାରଳାଦାସଙ୍କ ବର୍ଣ୍ଣନାରେ ୭ ମାନବ-ଯୋଜନ ସହିତ ୧ ଦେବ ଯୋଜନ ସମାନ (ଉଦ୍ୟୋଗ ୨୮୯) । ସେ ଲେଖିଛନ୍ତି ଯେ ହାତୀର ଦୈର୍ଘ୍ୟ ୧ ଦେବଯୋଜନ ଓ ତା'ର

ଘଣ୍ଟାର ବିସ୍ତାର ୧ ମାନବ-ଯୋଜନ । ପାଠୋଦ୍ଧାରରେ ମାନବ ଜୁଣ (ଅର୍ଥାତ୍ ମାନବ-ଯୋଜନ)ର ଅଦ୍ୟାକ୍ଷରକୁ ଛାଡ଼ି 'ନବଜୁଣ' ଲେଖାଯିବାରୁ ଅର୍ଥ ଦୁର୍ବୋଧ୍ୟ ହୋଇପଡ଼ିଛି । ଏପରି ତ୍ରୁଟି ଅନେକ ସ୍ଥାନରେ ରହିଛି ।

ସାରଳା-ମହାଭାରତର ପୁନର୍ମୁଦ୍ରଣ ହେଉଛି । କିନ୍ତୁ ପୁନର୍ମୁଦ୍ରଣ ବେଳେ ପାଠକୁ ସୁଧାରିବା ଉଦ୍ୟମ ହେବ ବୋଲି ଆଶା ରଖୁନାହିଁ ।

## ଭ୍ରାନ୍ତ ଶିରୋନାମ ପ୍ରଦାନ

ତାଳପତ୍ର ପୋଥିର ସାରଳା-ମହାଭାରତରେ କେବଳ ପର୍ବ ବିଭାଗ ଥାଏ; ପର୍ବ ମଧ୍ୟରେ ଅଧ୍ୟାୟ-ବିଭାଗ ନଥାଏ କି ସେଥିରେ ବର୍ଣ୍ଣିତ ବିଷୟଗୁଡ଼ିକର ଶିରୋନାମ ନଥାଏ । ଗୋଟିଏ ବିଷୟ ସାରିଲେ ପରବର୍ତ୍ତୀ ବିଷୟ ଆରମ୍ଭ କରିବା ପୂର୍ବେ ସାରଳାଦାସ ଦେବସ୍ତୁତି ସହିତ ଭଣିତି ଦେଇଥାନ୍ତି । ମୁଦ୍ରିତ ପୁସ୍ତକରେ ପରବର୍ତ୍ତୀ ବିଷୟ ସୂଚାଇ ଶିରୋନାମ ଯୋଗାଇ ଦିଆଯାଇଥାଏ, ଆଲୋଚ୍ୟ ସଂସ୍କରଣରେ ମଧ୍ୟ ତାହା କରାଯାଇଛି । ପ୍ରତ୍ୟେକ ପର୍ବ (ବା ତାହାର ଖଣ୍ଡ) ଆରମ୍ଭରେ ଏହି ଶିରୋନାମ ଯୋଗାଇ ଦିଆଯାଇଥାଏ, ଆଲୋଚ୍ୟ ସଂସ୍କରଣରେ ମଧ୍ୟ ତାହା କରାଯାଇଛି । ପ୍ରତ୍ୟେକ ପର୍ବ (ବା ତାହାର ଖଣ୍ଡ) ଆରମ୍ଭରେ ଏହି ଶିରୋନାମଗୁଡ଼ିକର ସୂଚୀପତ୍ର ମଧ୍ୟ ରହେ । କିନ୍ତୁ ସବୁସ୍ଥଳେ ସୂଚୀପତ୍ର ସଂପୂର୍ଣ୍ଣ ନୁହେଁ । ବନପର୍ବର ୨ୟ ଖଣ୍ଡ ଶେଷରେ ''ସତୀସ୍ତ୍ରୀର ଉପାଖ୍ୟାନ'' (ପୃ. ୩୭୯) ଓ ''ତ୍ରିପୁରମୋହିନୀ ହରଣ ଓ ମେରୁଶୂଳ ବଧ କଥା'' (ପୃ. ୩୯୨) ଶିରୋନାମାଙ୍କିତ ବିଷୟ ରହିଛି, କିନ୍ତୁ ତାହା ସୂଚୀପତ୍ରରେ ସ୍ଥାନ ପାଇନାହିଁ ।

ଶିରୋନାମର ଅଭିବ୍ୟକ୍ତି ବେଳେବେଳେ ତ୍ରୁଟିପୂର୍ଣ୍ଣ । ଆଦି (୧/୮୯)ରେ ଗୋଟିଏ ଶିରୋନାମ ରହିଛି– ''ସତ୍ୟବତୀଙ୍କ ଦ୍ୱାରା ବ୍ୟାସଙ୍କ ଆଗମନ'' । ଏହା ଏକେତ ''ସତ୍ୟବତୀଙ୍କ ଅନୁରୋଧରେ ବ୍ୟାସଙ୍କ ଆଗମନ'' ଅଥବା ''ସତ୍ୟବତୀଙ୍କ ଦ୍ୱାରା ବ୍ୟାସଙ୍କ ଆନୟନ'' ହୋଇଥିଲେ ଠିକ୍ ହୁଅନ୍ତା ।

ଠାଏଁ ଠାଏଁ ଶିରୋନାମ ଅଶୁଦ୍ଧ ମଧ୍ୟ । ଆଦି (୧/୩୩୧)ରେ ବର୍ଣ୍ଣିତ ବିଷୟର ଶିରୋନାମ ଦିଆଯାଇଛି– ''ଏକଲବ୍ୟ ଉପାଖ୍ୟାନ ।'' ସାରଳା ମହାଭାରତରେ ଏକଲବ୍ୟ ନାମଧେୟ ଚରିତ୍ର ନାହିଁ । ଏକଲବ୍ୟ ସଂସ୍କୃତ ମହାଭାରତର ଚରିତ୍ର । ସାରଳାଦାସଙ୍କ ଉପାଖ୍ୟାନଟି ଜାରାଶବର ବିଷୟକ ।

ଅଶ୍ୱମେଧ ପର୍ବର ପୃ. ୩ରେ ''ଯଦୁବଂଶ ଧ୍ୱଂସ ବିବରଣ'' ଶିରୋନାମଟି ଅସ୍ଥାନରେ ଲାଗିଛି । ସେଠାରେ ବର୍ଣ୍ଣିତ ବିଷୟ ଅଶ୍ୱମେଧ ଯଜ୍ଞର ଆୟୋଜନ । ଯଦୁବଂଶ ଧ୍ୱଂସ ବିବରଣ ରହିଛି ମୂଷଳୀ ପର୍ବର ପୃ. ୧୧ ଠାରୁ ।

## ସମ୍ପାଦନାରେ ତ୍ରୁଟି : (କ) ଉପାଦାନ

ଆଲୋଚ୍ୟ ସଂସ୍କରଣର ପ୍ରସ୍ତୁତି ପାଇଁ ଉପାଦାନ ରୂପେ ମୁଦ୍ରିତ ପୁସ୍ତକକୁ ଗ୍ରହଣ କରିବା ସମୀଚୀନ ହୋଇନାହିଁ । ଚଉଦ ଅକ୍ଷରୀ ମୁଦ୍ରିତ ପାଠ ମୂଳାନୁସାରୀ ନଥିବା କଥା ସୁବିଦିତ ଥିଲା । ସଂସ୍କୃତ ମହାଭାରତର ଛାଞ୍ଚରେ ଢାଳିବା ପାଇଁ କୃଷ୍ଣ ସିଂହଙ୍କ ଖ୍ରୀ. ୧୭୮୪ରେ ରଚିତ ମହାଭାରତର ଭଗବଦ୍‌ଗୀତାକୁ ଚଉଦଅକ୍ଷରୀ ସାରଳା-ମହାଭାରତ ମଧ୍ୟରେ ଗୁଞ୍ଜି ଦିଆଯାଇଛି । ମୁଦ୍ରିତ ପୁସ୍ତକକୁ ଛାଡ଼ି ତାଳପତ୍ର ପୋଥିକୁ ହିଁ ଉପାଦାନ ରୂପେ ଧରିଥିଲେ ପାଠକମାନେ ସାରଳାଦାସଙ୍କ ନିକଟତର ହେବାର ସୁଯୋଗ ପାଇପାରନ୍ତେ । ଗଦାପର୍ବ ଶେଷର ପ୍ରାୟ ଶହେ ପଦ (ପୃ. ୧୦୪ରୁ) ଅଧିକାଂଶ ତାଳପତ୍ର ପୋଥିରେ ନଥିବା କଥା ସ୍ୱୀକାର କରାଗଲେ ମଧ୍ୟ ମୁଦ୍ରିତ ମହାଭାରତ ଦ୍ୱୟରେ ଥିବା ସଂସ୍କୃତ ମହାଭାରତର ଛାୟାରେ ଲିଖିତ ଚଉଦ ଅକ୍ଷରୀ ପଦଗୁଡ଼ିକୁ ସାରଳାଦାସଙ୍କ ମହାଭାରତର ଅଂଶ ବୋଲି ଉପସ୍ଥାପନ କରାଯିବା ଅଯୁକ୍ତିକର ।

ପ୍ରାଚୀନ ଓଡ଼ିଆ କବିଙ୍କ ଲେଖାକୁ ସଂସ୍କୃତାନୁସାରୀ କରାଇବା ବ୍ୟାଧି ଏବେ ଜଗନ୍ନାଥ ଦାସଙ୍କ ଭାଗବତକୁ ସଂକ୍ରମିତ ହୋଇଛି । ଜଗନ୍ନାଥ ଦାସ ଧରିଥିବା ସଂସ୍କୃତ ଭାଗବତ ଓ ଶ୍ରୀଧର ସ୍ୱାମୀ କୃତ ଟୀକାକୁ ମାନି କିମ୍ବା ନିଜର ଅବଧାରଣ ଅନୁସାରେ ତାଙ୍କ ଗ୍ରନ୍ଥଟିକୁ ପ୍ରସ୍ତୁତ କରିଛନ୍ତି । ତାହା ସଂସ୍କୃତାନୁସାରୀ ନୁହେଁ ବୋଲି ତାଙ୍କ ଲେଖାକୁ ପରିବର୍ତ୍ତନ କି ପରିବର୍ଦ୍ଧନ କଲେ ଜଗନ୍ନାଥ ଦାସଙ୍କ ପ୍ରତି ଅବଜ୍ଞା ହେବ ।

## ସମ୍ପାଦନାରେ ତ୍ରୁଟି : (ଖ) ପୁନରୁକ୍ତି

ଆଲୋଚ୍ୟ ସଂସ୍କରଣରେ କେତେଠାରେ ପୁନରୁକ୍ତି ରହିଛି । ସମ୍ପାଦକଙ୍କ ଅନବଧାନତା ଯୋଗୁଁ ପୋଥି ବିଶେଷରେ ଥିବା ପାଠକୁ ସବୁପୋଥିର ପାଠ ବୋଲି ଗ୍ରହଣ କରିବାରୁ ପୁନରୁକ୍ତି ଘଟିଛି । ଏହା ସୂଚାଉଛି ଯେ ପାଦଟୀକାରେ ଏକଥାର ସୂଚନା ନଥିଲେ ହେଁ ସର୍ବତ୍ର ଗୃହୀତ ପାଠ ସାଧାରଣ-ପାଠ ନୁହେଁ ।

ମଧ୍ୟପର୍ବ ପ୍ରଥମ ଖଣ୍ଡର ସୁଗନ୍ଧିକା ହରଣ (ପୃ. ୪୦୦-୪୦୧) ଶେଷରେ ପ୍ରଦତ୍ତ ଶବରୀ-ନାରାୟଣଙ୍କ ସ୍ତବଟି ଦ୍ୱିତୀୟ ଖଣ୍ଡରେ (ପୃ. ୮୭୮-୮୭୯) ପୁନରୁକ୍ତ ହୋଇଛି ।

ଭୀଷ୍ମପର୍ବର ଅଧିକା ପାଠ ରୂପେ ପ୍ରଦତ୍ତ ଅଂଶର ୨୧୭ ପଦରୁ ୨୪୮ ପଦ ଯାଏଁ ଦ୍ରୋଣପର୍ବର ଆରମ୍ଭରେ ପୁନରୁକ୍ତ ହୋଇଛି ।

ଆଶ୍ରମିକ ପର୍ବ (ପୃ. ୧୯) ଧୃତରାଷ୍ଟ୍ରଙ୍କ ବନଗମନୋଦ୍‌ଗମ ପ୍ରସଙ୍ଗରେ ପଞ୍ଚାଙ୍ଗ-ଜ୍ଞାପକ ତିନି ପଦ ରହିଛି । ଏହି ପଦତ୍ରୟର ପ୍ରାସଙ୍ଗିକତା ଏଠାରେ ଜମାରୁ ନାହିଁ । ପଞ୍ଚାଙ୍ଗର ପ୍ରକୃତ ସ୍ଥାନ ପୃ. ୩୪ ଓ ସେଠାରେ ଯଥାସ୍ଥାନରେ ତିନୋଟିଯାକ ପଦ ରହିଛି ।

## ସମ୍ପାଦନାରେ ତ୍ରୁଟି : (ଗ) କ୍ରମଭଙ୍ଗ

ଆଲୋଚ୍ୟ ସଂସ୍କରଣର ଚରିତକ୍ରମ ଠାଏଁ ଠାଏଁ ବିପର୍ଯ୍ୟସ୍ତ । ନମୁନା ସ୍ୱରୂପ ଦର୍ଶାଯାଇପାରେ– ମଧ୍ୟପର୍ବ ୨ୟ ଖଣ୍ଡର ସୁରେଖା ହରଣ ଚରିତ କଙ୍କାସୁରବଧ ପରେ ରହିବା କଥା– ''କଙ୍କାସୁର ବଧ ଅନ୍ତରେଣ ଯଉଁ କଥା'' (ପୃ. ୭୧୧) । ପୃ. ୭୧୧ରେ ସୁରେଖା ହରଣ ରହିଛି କିନ୍ତୁ କଙ୍କାସୁର ବଧ ଚରିତ ରହିଛି ପୃ. ୭୮୩ରେ । ସେହି ମଧ୍ୟପର୍ବ ଦ୍ୱିତୀୟ ଖଣ୍ଡର ଶୋଭାବତୀ ହରଣର ପ୍ରକୃତ ସ୍ଥାନ କୁମ୍ଭକ ଦୈତ୍ୟ ବଧର ପରେ ପରେ । କିନ୍ତୁ କୁମ୍ଭକ ଦୈତ୍ୟ ବଧ ଓ ଶୋଭାବତୀ ହରଣ ମଧ୍ୟରେ ଧର୍ମଯଜ୍ଞର ବିସ୍ତାରିତ ବିବରଣ ପଶିଯାଇଛି । ଅଶ୍ୱମେଧ ପର୍ବର ପୃ. ୨୦ରେ ଲେଖାଅଛି ଯେ ଅର୍ଜୁନ ମୋଢ଼ାସୁରକୁ ଅଶ୍ୱମେଧ ଯଜ୍ଞ ପୂର୍ବରୁ ମାରିଥିଲେ । କିନ୍ତୁ ମୋଢ଼ାସୁର ବଧ ବିଷୟ ପୃ. ୯୪ରେ ସ୍ଥାନ ପାଇଛି ।

## ସମ୍ପାଦନାରେ ତ୍ରୁଟି : (ଘ) ଅତିରିକ୍ତ ପାଠ

ଆଲୋଚ୍ୟ ସଂସ୍କରଣରେ ସାଧାରଣ ପାଠକୁ ମୁଖ୍ୟ ରୂପେ ଗ୍ରହଣ କରି ଅଳ୍ପ ସଂଖ୍ୟକ ପୋଥିରେ ଥିବା ଅତିରିକ୍ତ ପାଠକୁ ଗୌଣ ରୂପେ ବିଚାର କରାଯାଇଛି । ଗୌଣ ପାଠ ନାତିଦୀର୍ଘ ହୋଇଥିଲେ ତାହାକୁ ପାଦଟୀକା ଭାବରେ ସ୍ଥାନ ଦିଆଯାଇଛି ଓ ଦୀର୍ଘ ହୋଇଥିଲେ ତାହାକୁ ପର୍ବ ଶେଷରେ ଅତିରିକ୍ତ ପାଠ ବା ଅଧିକ ପାଠ ଶୀର୍ଷକ ଦେଇ ପରିଶିଷ୍ଟରେ ପ୍ରକାଶ କରାଯାଇଛି । ଅତିରିକ୍ତ/ଅଧିକ ପାଠ ଥିବା କଥା ମୁଖ୍ୟ ପାଠ ମଧ୍ୟରେ ପାଦଟୀକାରେ ସୂଚାଇ ଦିଆଯାଇନାହିଁ ଓ ଅନେକ ସ୍ଥଳେ ପରିଶିଷ୍ଟରେ ମଧ୍ୟ ତାହା ମୁଖ୍ୟ ପାଠର କେଉଁଠାରେ ରହିବ ଜଣାଇ ଦିଆଯାଇନାହିଁ । ଏପରି କେତୋଟି ଅତିରିକ୍ତ/ଅଧିକ ପାଠ :–

୧. ମହେନ୍ଦ୍ରଗିରି ବିବରଣ (ଆଦି ୨/୧୦୨୭)
୨. ପଞ୍ଚପାଣ୍ଡବଙ୍କର କ୍ଷୀରପାନ (ଆଦି୨/୧୦୩୩)
୩. ହିଡ଼ମ୍ବକ ବନେ ଘଟୋତ୍କଚର ଅଭିଷେକ (ଆଦି ୨/୧୦୭୨)
୪. ସଞ୍ଜୟ, ଶକୁନି, ବିଦୂର ଓ କୃଷ୍ଣଙ୍କର ପରାମର୍ଶ (ଆଦି ୨/୧୦୭୬)
୫. କୁନ୍ତୀ-ଗାନ୍ଧାରୀ କଳି (ମଧ୍ୟ ୨/୧୧୫୭)
୬. (ସ୍ୱର୍ଗାରୋହଣ ପର୍ବର ଶିରୋନାମ ନଥିବା ପରିଶିଷ୍ଟ, ପୃ. ୯୮ ରୁ ୧୦୦)

ଏବଂବିଧ ତ୍ରୁଟିବିଚ୍ୟୁତି ସତ୍ତ୍ୱେ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ସାରଳା-ମହାଭାରତ ଚର୍ଚ୍ଚା ଓ ଗବେଷଣା ପାଇଁ ନିଶ୍ଚୟ ମୂଲ୍ୟବାନ୍ । କୌଣସି ତାଳପତ୍ର ପୋଥି ଉପରେ ନିର୍ଭର କଲେ ତାହାର ଏକାଧିକ ନକଲ ନଥିବାରୁ ଆଲୋଚନା କ୍ଷେତ୍ରକୁ ଅଧିକ ସଂଖ୍ୟକ ଲୋକ ଆସିପାରୁ ନଥିଲେ । ଏହି ସଂସ୍କରଣଟି ଅନ୍ୟାନ୍ୟ ମୁଦ୍ରିତ ସଂସ୍କରଣ ଅପେକ୍ଷା ଅଧିକ ଶୁଦ୍ଧ ମଧ୍ୟ ।

# ପରିଶିଷ୍ଟ

ସାହିତ୍ୟ ପ୍ରଚାରର ଉପାଦାନ ବଦଳିଲେ ତାହାର ପ୍ରଭାବ ଲିପି ଉପରେ ଓ ସାହିତ୍ୟିକ ଶୈଳୀ ଉପରେ ପଡ଼େ । ସାହିତ୍ୟର ସୃଷ୍ଟି ସହିତ ପ୍ରଚାରର ନୂଆ ଉପାଦାନର ଆବଶ୍ୟକତା ଦେଖାଦେଲା, ପ୍ରସ୍ତର-ତାମ୍ରପତ୍ର ଏଥିପାଇଁ ଅନୁପଯୁକ୍ତ ହେଲା । ତାଳପତ୍ରରେ ଲେଖନୀ ଚଳାଇବାରୁ ଓଡ଼ିଆ ଲିପିର ରୂପ କେତେକାଂଶରେ ବଦଳିଗଲା । ଓଡ଼ିଆ ସାହିତ୍ୟର ପ୍ରାଚୀନ ଯୁଗ ତାଳପତ୍ରାଶ୍ରୟୀ ଯୁଗ ଥିଲା । ସାରଳାଦାସଙ୍କ ବେଳେ କାଗଜ ଜଣାଥିଲା କିନ୍ତୁ କାଗଜ ଅପେକ୍ଷା ତାଳପତ୍ର ଦୀର୍ଘସ୍ଥାୟୀ ହେବାରୁ ତାଳପତ୍ର ବଛାଗଲା । ଓଡ଼ିଶାର ଆର୍ଦ୍ର ଜଳବାୟୁ ଓ ଉତ୍ତାପ ଯୋଗୁଁ କାଗଜର ଆୟୁଷ ଅପେକ୍ଷା ତାଳପତ୍ରର ଆୟୁଷ ଦୁଇଗୁଣରୁ ଅଧିକ । ଦୁଃଖର କଥା କାଗଜ ତୁଳନାରେ ପ୍ଲାଷ୍ଟିକ୍ ଭଳି ବିକଳ୍ପ ଉପାଦାନ Mass Production ପାଇଁ ବ୍ୟବହାର ହୋଇପାରୁନାହିଁ । ମାତ୍ର ଊଣାଅଧିକେ ୩୫ ବର୍ଷ ତଳେ ମୁଦ୍ରିତ ସାରଳା-ମହାଭାରତର ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ସଂସ୍କରଣର କାଗଜ ଛୁଇଁଲେ ଭାଙ୍ଗିପଡୁଛି । ଏଥିପାଇଁ ଶସ୍ତା କାଗଜ ବ୍ୟବହୃତ ହୋଇଛି ।

ସାହିତ୍ୟ ମୁଦ୍ରାଯନ୍ତ୍ରର ଆଶ୍ରୟ ନେବାରୁ ଅନେକ ଅକ୍ଷରର ରୂପ ବଦଳିଗଲା । ଫଳରେ ଆଧୁନିକ ଶିକ୍ଷିତ ବର୍ଗ ତାଳପତ୍ର ପୋଥି ପଢ଼ି ପାରୁନାହାନ୍ତି । ମୁଦ୍ରାଯନ୍ତ୍ର ଦାଣ୍ଡୀ ଶୈଳୀକୁ ଲୋପ କରିଦେଲା । ଦାଣ୍ଡୀକୁ ୧୪ ଅକ୍ଷରୀ ଛନ୍ଦରେ ବଦଳାଇ ଦିଆଗଲା । ଖ୍ରୀ. ୧୯୨୭ରେ ପ୍ରକାଶିତ ସାରଳା-ମହାଭାରତର ପ୍ରକାଶକ ଏ କାର୍ଯ୍ୟକୁ ସଂଶୋଧନ ବୋଲି ପ୍ରଚାର କରି ପୁସ୍ତକ ଶେଷରେ 'ସଂଶୋଧକର ନିବେଦନ' ଶୀର୍ଷକରେ ଜଣାଇଛନ୍ତି–

''ଅକ୍ଷର ନିୟମ ମଧ୍ୟ କାହିଁ ନ ପାଇଲି ।
ଅତୁଆ ପାଳ ପରାୟେ ସର୍ବତ୍ର ଦେଖିଲି ।।
କାହିଁ ଚଉଦ ଅକ୍ଷର କାହିଁ ବିଂଶ ତ୍ରିଂଶ ।
ଏରୂପେ ଅକ୍ଷର ତହିଁ ହୋଇଛି ବିନ୍ୟାସ ।।
ଶ୍ରୀ ସାରଳାଦାସଙ୍କର ନୁହେଁ ଏ ବିଧାନ ।
ଅଯୋଗ୍ୟ ଲେଖକ ଦୋଷେ ଘଟିଛି ଏମାନ ।।
ଆଉ କା'ର ଦୋଷ ନାହିଁ ସେମାନଙ୍କ ଛଡ଼ା ।
କେବଳ ଏ କରିଛନ୍ତି ଆୟକୁ ଆୟଡ଼ା ।।

× × ×

ଶିରୋନାମା ତ ତହିଁରେ ନ ମିଳଇ କାହିଁ ।
ଲେଖା ହୋଇଛି କେବଳ ଦାଣ୍ଡିମାଳ ହୋଇ ॥
ପ୍ରଥମରେ କରିଅଛି ଅକ୍ଷର ବିନ୍ୟାସ ।
କାହିଁ ଚଉଦ ପନ୍ଦର କାହିଁ ବିଂଶ ତ୍ରିଂଶ ।
ଏମନ୍ତ ସ୍ଥଳରେ ପୁଣି କାହଁ ଯତି ଅଛି ।
ଆଠ ଛଅ ନିୟମରେ ମୁଁ ଯତି ରଖିଛି ।''

ବର୍ତ୍ତମାନ କାଗଜ ଯୁଗ କ୍ଷୀୟମାଣ । କମ୍ପ୍ୟୁଟର ଘରେ ଘରେ ପଶିଲାଣି । ମୁଦ୍ରାଯନ୍ତ୍ରର ଅନେକ ଅକ୍ଷର କମ୍ପ୍ୟୁଟରରେ ରହୁନାହିଁ । କମ୍ପ୍ୟୁଟରର ଇଂରାଜୀ ଭାଷା ଅଜବ, ଓଡ଼ିଆ ସେହିପରି ଅଜବ ହେବ ବୋଲି ଆବଶ୍ୟକ ହେଉଛି । ତାଳପତ୍ର ପୋଥି ପରି ମୁଦ୍ରିତ ପୁସ୍ତକ ବିରଳ ପଦାର୍ଥ ହୋଇଯାଇପାରେ । ତେଣୁ ଏବହୁଁ ସାଇତି ରଖିବା ଉଚିତ ।

---



ସଚ୍ଚିଦାନନ୍ଦ ମିଶ୍ର

ଗଞ୍ଜାମ ଜିଲାର ଛତ୍ରପୁରରେ ୩୦.୦୫.୧୯୩୦ରେ ଜନ୍ମ । ବିଜ୍ଞାନ ଓ ଆଇନରେ ସ୍ନାତକ ହେଲେହେଁ ପିତା ଶ୍ରୀ ହର୍ଷ ମିଶ୍ରଙ୍କ ଉଦ୍‌ବୋଧରେ ଯୌବନାବଧି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ନୈପୁଣ୍ୟ ଅର୍ଜନ କରିଛନ୍ତି । ୧୯୫୦ରୁ ଅଦ୍ୟାବଧି ତାଙ୍କର ପ୍ରାୟ ୩୦୦ ପ୍ରବନ୍ଧ, ୮୦ କବିତା, ୭ଟି କ୍ଷୁଦ୍ରଗଳ୍ପ ଓ ଶତାଧିକ ହାସ୍ୟରସାତ୍ମକ ଓ ରମ୍ୟରଚନା ବିଭିନ୍ନ ସାମୟିକ ପତ୍ରିକାରେ ପ୍ରକାଶ ପାଇଛି । ଏଯାଏଁ ତାଙ୍କର ୨୨ଟି ପୁସ୍ତକ ପ୍ରକାଶ ପାଇଲାଣି ।

ଓଡ଼ିଶାର ପ୍ରାଚୀନ ସାହିତ୍ୟ, ଇତିହାସ, ଧର୍ମ, ସଂସ୍କୃତି ଆଦି ବହୁବିଧ ବିଷୟରେ ଗବେଷଣାମୂଳକ ସମାଲୋଚନା ପାଇଁ ଶ୍ରୀ ମିଶ୍ର ଜଣାଶୁଣା । ସାରଳାଦାସଙ୍କଠାରୁ ଆରମ୍ଭ କରି ବଳଦେବ ରଥଙ୍କ ପର୍ଯ୍ୟନ୍ତ ତାଙ୍କର ଅଧ୍ୟୟନ ଯେପରି ଗଭୀର ସେହିପରି ବ୍ୟାପକ । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଶୁଦ୍ଧ ଓ ଯୁକ୍ତିପ୍ରମାଣ ନିର୍ଭର କରାଇବା ଦିଗରେ ସେ ବହୁ ଶ୍ରମ ସ୍ୱୀକାର କରିଛନ୍ତି ।

ତାଙ୍କର ପ୍ରକାଶିତ ପୁସ୍ତକ ମଧ୍ୟରେ ଚଉତିଶା ବିଚିତ୍ରା (ସଂପାଦନା), ବିଚିତ୍ର ରାମାୟଣ (ସଂପାଦନା), ପ୍ରାଚୀନ ହାସ୍ୟ ସମୁଚ୍ଚୟ (ସଂପାଦନା), ନରସିଂହ ସେଣଙ୍କ ଗୋପକେଳି (ସଂପାଦନା), ବଳଦେବ ରଥ ଅଧ୍ୟୟନ, ପୀତାମ୍ବର ଦାସ ଅଧ୍ୟୟନ, ଅତୀତର ବର୍ଣ୍ଣବୋଧ (ପ୍ରାଚୀନ ସାହିତ୍ୟ ଚର୍ଚ୍ଚା) ଓ ବଳଦେବ ରଥ : ସାହିତ୍ୟ ସାଧନା ଓ ସିଦ୍ଧି ଉଲ୍ଲେଖନୀୟ । ସେ ପ୍ରଥମ ଓଡ଼ିଆ ପୁରାଣ ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ', ପ୍ରାଚୀନତମ ଓଡ଼ିଆ କାବ୍ୟ ନରସିଂହ ସେଣଙ୍କ ଗୋପକେଳି ଓ ବହୁସଂଖ୍ୟକ ଅବଲୁପ୍ତ ରଚନାକୁ ଆବିଷ୍କାର କରିବାର ଶ୍ରେୟ ଲାଭ କରିଛନ୍ତି ।

ତାଙ୍କର 'ବଳଦେବ ରଥ ଅଧ୍ୟୟନ' ପୁସ୍ତକଟି ସମାଲୋଚନା ପୁସ୍ତକ ଭାବରେ ୧୯୮୪ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛି । ସେ ଜଣେ ଗବେଷକ ଓ ପ୍ରାବନ୍ଧିକ ଭାବରେ ସାହିତ୍ୟ ଓ ଗବେଷଣା ସଂସ୍ଥାର ପୁରସ୍କାର ପାଇଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ଛତ୍ରପୁର ନଗରପାଳିକାଦ୍ୱାରା ସଂବର୍ଦ୍ଧିତ ହୋଇଛନ୍ତି ।

୧୯୮୮ରେ ଓଡ଼ିଶା ସରକାରଙ୍କ ବିଧି ବିଭାଗର ଯୁଗ୍ମ ଶାସନ ସଚିବ ପଦରୁ ଅବସର ନେଇ ନିଜ ବାସଗୃହରେ ସାହିତ୍ୟ ଚର୍ଚ୍ଚାରେ ଅନ୍ତିମ ଜୀବନ ବିତାଉଛନ୍ତି ।

ଠିକଣା – ପୁରୁଣା ଡାକଘର ସାହି, ଛତ୍ରପୁର